ଅନ୍ତର୍ଜାତୀୟ ପୁସ୍ତକମାଳା

# ଯାତ୍ରାର ଶେଷ

ନୀଲ. ପଦ୍ମନାଭନ୍

ଅନୁବାଦ

ଚିତ୍ତରଞ୍ଜନ ଦାସ



ନ୍ୟାସ୍‌ନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

ISBN-81-237-0439-9

1993 ( ଶକାବ୍ଦ 1915 )

ମୂଳ ରଚନା © ନୀଲ୍. ପଦ୍ମନାଭନ

ଓଡ଼ିଆ ଅନୁବାଦ © ନ୍ୟାସ୍‌ନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, 1993

*Original Title* : PALLIKONDAPURAM (*Tamil*)

*Oriya Translation* : YATRARA SHESHA

ଟ **48.00**

ନିର୍ଦ୍ଦେଶକ, ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, ଏ-5, ଗ୍ରୀନ ପାର୍କ, ନୂଆ ଦିଲ୍ଲୀ-110016 କର୍ତ୍ତୃକ ପ୍ରକାଶିତ ଏବଂ ସୁରେଖା ପ୍ରିଣ୍ଟର୍ସ, କଟକ ଠାରେ ମୁଦ୍ରିତ ।

# ଭୂମିକା

**ତାମିଲ ଭାଷାରେ ଉପନ୍ୟାସର ଉଦ୍‌ଭବ ଓ ସ୍ଥିତି :**

ତାମିଲ ଭାଷାର ସର୍ବପ୍ରଥମ ଉପନ୍ୟାସ ପ୍ରାୟ ଶହେବର୍ଷ ତଳେ 1870 ମସିହାର ପାଖାପାଖି ପ୍ରକାଶିତ ହୋଇଥିଲା । ଏହି ଉପନ୍ୟାସଟିର ଲେଖକ ଥିଲେ ଶ୍ରୀ ବେଦନାୟକ ପିଲ୍ଲଇ, ଯିଏକି ମାୟୂରମ୍ ଜିଲ୍ଲାର ମୁନ୍‌ସିଫ୍ ଥିଲେ ଓ ଧର୍ମରେ ଖ୍ରୀଷ୍ଟିଆନ୍ ଥିଲେ । ସିଏ ତତ୍କାଳୀନ ଅନେକ ତାମିଲ ବିଦ୍ୱାନ୍‌ଙ୍କର ମିତ୍ର ଥିଲେ । ସେ ତାମିଲ ଭାଷାରେ ଅନେକ କବିତା ଓ ସଙ୍ଗୀତ ମଧ୍ୟ ରଚନା କରିଥିଲେ । "ପାଶ୍ଚାତ୍ୟ ଦେଶର ଭାଷାଗୁଡ଼ିକରେ ଯେଉଁ 'ଉପନ୍ୟାସ' ରହିଛି ଓ ଯାହାକୁ 'ବଚନ-କାବ୍ୟ' ବୋଲି କୁହାଯାଇପାରିବ, ତାମିଲ ଭାଷାରେ ସେହି ଉପନ୍ୟାସର ଅଭାବକୁ ଦୂର କରିବା" ସକାଶେ ସିଏ 'ପିରତାପ ମୁଦାଲିୟର୍ ଚରିତ୍ତିରମ୍' ନାମରେ ଉପନ୍ୟାସଟିଏ ଲେଖିଲେ ଏବଂ ତାହାକୁ ପ୍ରକାଶିତ କରିଥିଲେ । ଏହି ଉପନ୍ୟାସଟିରେ ଉଚ୍ଚବର୍ଗୀୟ ତାମିଲଭାଷୀ ଲୋକମାନଙ୍କ ବିଷୟରେ, ସେମାନଙ୍କର ଆଚାର-ବିଚାର ଏବଂ ସେମାନଙ୍କର ପ୍ରଗତି ଲାଗି ଉପଯୋଗୀ କେତେକ ପରାମର୍ଶ ଦିଆଯାଇଛି ଏବଂ ଲେଖକଙ୍କର ଭାଷା ସମ୍ବନ୍ଧୀ ମତଟିକୁ ମଧ୍ୟ ବ୍ୟକ୍ତ କରାଯାଇଛି । ଏହି ଉପନ୍ୟାସଟିର ଭାଷାଶୈଳୀ ସାଧାରଣ କଥୋପକଥନର ତାମିଲ ନ ହୋଇ ଶାସ୍ତ୍ରୀୟ ପଦ୍ଧତି ଉପରେ ଆଧାରିତ ହୋଇ ରହିଥିଲା । ଏହି ଉପନ୍ୟାସଟିର ଏକ ବିଶେଷତ୍ୱ ରହିଛି ଯେ ଏଇଟିକୁ ଆମେ ଆଜି ମଧ୍ୟ ଠିକ୍ ପୂର୍ବରୁ ସେହି ରୁଚି ସହିତ ପାଠ କରିପାରିବା । ଏକଥା ମଧ୍ୟ କୁହାଯାଇପାରିବ ଯେ ଲେଖକ, ଥାକରେଙ୍କର ହିଷ୍ଟ୍ରି ଅଫ ହେନ୍‌ରି ଏସ୍‌ମଣ୍ଡ, ସର୍ଭାଣ୍ଟିସ୍‌ଙ୍କର ଡନ୍ କୁଇକ୍‌ଜୋଟ୍ ପ୍ରଭୃତି ଉପନ୍ୟାସର ଆଦର୍ଶକୁ ଭିତ୍ତି କରି ଏହି ଉପନ୍ୟାସଟି ରଚନା କରିଥିଲେ । ଏଥିରେ ବ୍ୟଙ୍ଗର ଏକ ପୁଟ ଦିଆଯାଇଥିଲେ ମଧ୍ୟ ତଥାପି ସଂସ୍କାରର ଭାବନା ହିଁ ଏହାର ପ୍ରଧାନ ଧ୍ୟେୟ ହୋଇ ରହିଛି । ଲେଖକ ସ୍ୱୟଂ ଲେଖିଛନ୍ତି ଯେ, "ତାମିଲ ଭାଷାମାନଙ୍କର 'ରାଜରାଣୀ'ଙ୍କ କାହାଣୀଗୁଡ଼ିକ ଲାଗି ଯେଉଁ ଅଧିକ ଅଭିରୁଚି ରହିଛି, ସେଇଟିକୁ ଦୃଷ୍ଟି ସମ୍ମୁଖରେ ରଖି ମୁଁ ଏହି ଉପନ୍ୟାସର ନାୟିକାକୁ କେତେ କାଳ ପର୍ଯ୍ୟନ୍ତ ଗୋଟିଏ ଦେଶର ରାଣୀ କରି ରଖିବାର ପ୍ରୟାସ କରିଛି ।" ଯେପରି ମନେହେଉଛି, ଲେଖକ ସେତେବେଳର ବ୍ରିଟିଶ୍ ସାମ୍ରାଜ୍ଞୀ ଭିକ୍ଟୋରିଆଙ୍କୁ ତାଙ୍କ ଆଗରେ ଆଦର୍ଶ ସ୍ୱରୂପ କରି ରଖିଥିଲେ ।

ଏଇଟି ପରେ ଆହୁରି କେତେକ ଉପନ୍ୟାସ ପ୍ରକାଶିତ ହେଲା । ନଟେ ବେଦନାୟକମ୍ ପିଲ୍ଲଇ ମଧ୍ୟ ଆଉଗୋଟିଏ ଉପନ୍ୟାସ ଲେଖିଥିଲେ । କୁହାଯାଇପାରେ

ଯେ ସେଇଟିର ସ୍ତର ପୂର୍ବ ଉପନ୍ୟାସର ସ୍ତର ପର ହୋଇ ନ ଥିଲା । ତାହା'ର କୋଡ଼ିଏ ବର୍ଷ ପରେ ପ୍ରାୟ ଏକା ସମୟରେ ହିଁ ଦୁଇଟି ଉପନ୍ୟାସ ପ୍ରକାଶିତ ହୋଇ-ଥିଲା । ସେଗୁଡ଼ିକ ହେଉଚି : ରାଜମ୍ ଆୟର୍‌ଙ୍କର 'କମଲାମ୍ବାଲ୍ ଚରିତ୍ରିରମ୍' ଏବଂ ଅ: ମାଧବାୟାଙ୍କର 'ପଦ୍ମାବତୀଚରିତ୍ରିରମ' । ଏହି ଦୁଇଟିଯାକ ଉପନ୍ୟାସ ବେଶ୍ ଉଚ୍ଚସ୍ତରର ଥିଲା । ମୋଟେ ଛବିଶ ବର୍ଷ ବୟସରେ ହିଁ ରାଜମ୍ ଆୟାରଙ୍କର ଅକାଳ ମୃତ୍ୟୁ ହୋଇ-ଯାଇଥିଲା । 'କମଲାମ୍ବାଲ ଚରିତ୍ରିରମ୍'ରେ ତାମିଲ ପ୍ରଦେଶର ଗୋଟିଏ ଗ୍ରାମ ଏବଂ ସେହି ସମୟରେ ରୂପ ଗ୍ରହଣ କରୁଥିବା ଭାରତୀୟ ନଗରଗୁଡ଼ିକର ଯଥା ତଥ୍ୟ ବର୍ଣ୍ଣନା ପ୍ରଦାନ କରାଯାଇଛି । ଆଜିପର୍ଯ୍ୟନ୍ତ ବାହାରିଥିବା ଶହଶହ ତାମିଲ ଉପନ୍ୟାସ ମଧ୍ୟରେ ଏଇଟିର ଆଜି ମଧ୍ୟ ଏକ ବିଶିଷ୍ଟ ସ୍ଥାନ ରହିଛି । ଦର୍ଶନ ଓ ବେଦାନ୍ତରେ ବି ରାଜମ୍ ଆୟର୍‌ଙ୍କର ରୁଚି ରହିଥିଲା । ଆପଣାର କଥାନାୟକ ମୁଥୁସ୍ୱାମୀ ଆୟର୍‌ଙ୍କ ମୁହଁରେ ସେ ବ୍ୟକ୍ତ କରିଛନ୍ତି ଯେ ଜୀବାତ୍ମାକୁ ଅନେକ ଦୁଃଖର ଅଗ୍ନି ଭିତର ଦେଇ ପରିପକ୍ୱ ହେବାକୁ ହୁଏ ଓ ସଂକଳ୍ପର ସହିତ ତାହା ଏକ ଉଚ୍ଚସ୍ଥିତିରେ ଯାଇ ଉପନୀତ ହୋଇଥାଏ । ମାତ୍ର କଥାର ନାୟିକା କମଲାମ୍ବାଲ୍ ମୁହଁରେ ସିଏ ଏ କଥାଟି ମଧ୍ୟ ସ୍ପଷ୍ଟ କରି ଦେଇଛନ୍ତି ଯେ, ଯେଉଁ ବ୍ୟକ୍ତିମାନେ ସଂକଳ୍ପ ସହିତ ସେଭଳି ଏକ ଉଚ୍ଚସ୍ଥିତି ପାଇବାକୁ ସମର୍ଥ ନ ହୁଅନ୍ତି, ସେମାନଙ୍କ ଲାଗି ଭକ୍ତିର ମାର୍ଗଟି ହିଁ ପ୍ରଶସ୍ତ ହୋଇ ରହିଥାଏ ।

'ପିରତାପ ମୁଦାଲିଅର୍ ଚରିତ୍ରିରମ୍'ରେ ଆଂଶିକ ଭାବରେ ସଂସ୍କାରର ଯେଉଁ ଉଗ୍ରରୂପଟିକୁ ପ୍ରକଟ କରାଯାଇଛି, ମାଧବାୟାଙ୍କର 'ପଦ୍ମାବତୀ ଚରିତ୍ରିରମ୍'ରେ ଆମେ ମୁଖ୍ୟାଂଶତଃ ତାହାହିଁ ଦେଖିବାକୁ ପାଇବା । 'ପଦ୍ମାବତୀ ଚରିତ୍ରିରମ୍'ରେ ମଧ୍ୟ ଗୋଟିଏ ବ୍ରାହ୍ମଣ ପରିବାରର କାହାଣୀ ବର୍ଣ୍ଣିତ ହୋଇଅଛି । ମନୁଷ୍ୟମାନଙ୍କୁ ଭଲ ଆଉ ମନ୍ଦ ଦୁଇଟି ଶ୍ରେଣୀରେ ବିଭକ୍ତ କରି ସେମାନଙ୍କର ଜୀବନକ୍ରମକୁ ବର୍ଣ୍ଣନା କରିବାର ପଦ୍ଧତିରେ ରାଜମ୍ ଆୟର୍ ଯେତେଦୂର ସଫଳତା ଲାଭ କରିଥିଲେ; ଏହି ଉପନ୍ୟାସଟିର ଲେଖକ ସେତିକି ସଫଳତା ପାଇଥିଲେ ବୋଲି ଆଦୌ କହିହେବ ନାହିଁ । ଘଟଣା ତଥା ପରିବେଶଗୁଡ଼ିକର ଚୟନରେ ମଧ୍ୟ ତାଙ୍କୁ ରାଜମ୍ ଆୟରଙ୍କ ପରି ସଫଳତା ଆଦୌ ମିଳି ନଥିଲା । ତଥାପି, ଏହି ଉପନ୍ୟାସଟିରେ ରଚନାର ସଂଘଟନ ଏବଂ ଏକପ୍ରକାରର ରୋଚକତା ଅବଶ୍ୟ ବିଦ୍ୟମାନ ରହିଛି । ପ୍ରାୟ ତିରିଶି ବର୍ଷକାଳ ମାଧବାୟା ଅନେକ ଉପନ୍ୟାସ ଓ ଗଳ୍ପର ରଚନା କରିଥିଲେ, ତଥାପି ତାଙ୍କର ସବୁ କୃତିଗୁଡ଼ିକ ମଧ୍ୟରେ 'ପଦ୍ମାବତୀ ଚରିତ୍ରିରମ୍' ହିଁ ସର୍ବୋତ୍ତମ ବୋଲି ମନେ ହୋଇଥାଏ ।

**ମଧ୍ୟକାଳ :**

୧୯୦୦ରୁ ଆରମ୍ଭ କରି ୧୯୨୦ ମସିହା ମଧ୍ୟରେ ପ୍ରାୟ ଦୁଇହଜାର ଉପନ୍ୟାସ ଛପା ହୋଇଥିଲା । ମାତ୍ର ଏଗୁଡ଼ିକରୁ ଅଧିକାଂଶ ଉପନ୍ୟାସ ଏପରି ଥିଲେ, ଯେଉଁଗୁଡ଼ିକ

କ ସେତେବେଳେ ଲୋକପ୍ରିୟ ହୋଇଥିବା ଇଂରାଜୀ ଏବଂ ଅନ୍ୟ ଇଉରୋପୀୟ ଭାଷାର ନାନା ଉପନ୍ୟାସର କେବଳ ଗୋଟିଏ ଗୋଟିଏ ଅନୁକରଣ ହିଁ ଥିଲେ । ବିଶେଷତଃ, ରୋମାଞ୍ଚକାରୀ ଘଟଣାରେ ଭର୍ତ୍ତିହୋଇ ରହିଥିବା ଜି. ଡବ୍ଲିଉ. ଏଚ୍. ରେମଣ୍ଡ୍ସଙ୍କ ଦ୍ୱାରା ଲିଖିତ ଉପନ୍ୟାସ, କନାନ୍ ଡଏଲ୍‌ଙ୍କର ଡିଟେକ୍ଟିଭ୍ କାହାଣୀମାନ, ଭିକ୍ଟର୍ ହିଉଗୋଙ୍କର ଅନେକ ଉପନ୍ୟାସ ଓ ତା' ବ୍ୟତୀତ ଶ୍ରୀମତୀ ହେନରି ଉଡ଼୍, ଏଚ୍. ରାଇଡ଼ର୍ ହେଗର୍ଡ଼୍ ପ୍ରଭୃତିଙ୍କର ଉପନ୍ୟାସ ଗୋଟିକ ପରେ ଗୋଟିଏ ହୋଇ ତାମିଲ ଭାଷାରେ ରୂପାନ୍ତରିତ ହୋଇ ପ୍ରକାଶ ପାଇଥିଲେ । ପୋନ୍ନୁସାମି ପିଲ୍ଲଇ, ଆରଣି କୁପ୍ପୁସାମି ମୁଦାଲିଅର୍, ଏସ୍. ଏମ୍. ନଟେଶ ଶାସ୍ତ୍ରିଅର୍ ଆଦି ଲେଖକମାନେ ତାମିଲ୍ ପାଠକମାନଙ୍କର ମନୋରଞ୍ଜନ କରିବାର ପ୍ରୟାସ କରିଥିଲେ । ହିନ୍ଦୀ ଓ ବଙ୍ଗଳାରୁ ମଧ୍ୟ କେତୋଟି ଉପନ୍ୟାସର ତାମିଲ ଅନୁବାଦ ବାହାରିଥିଲା । ଏହି ସନ୍ଦର୍ଭରେ ମୌଳିକ ଉପନ୍ୟାସ ଲେଖୁଥିବା କେତେଜଣ ଲେଖକ ମଧ୍ୟ ରହିଥିଲେ : ଅ. ସୁବ୍ରମଣ୍ୟମ୍ ଭାରତୀ (ଜଟାଓ୍ୱଲ୍ଲଭର୍ -୧୯୧୩) ଓ ଗୁରୁମଲେ ସୁନ୍ଦରମ୍ ପିଲ୍ଲଇ (ପେଟ୍ରୋଲ୍ଡ-୧୯୧୪) ପ୍ରଭୃତି । ରାଷ୍ଟ୍ରୀୟ କବି ସୁବ୍ରମଣ୍ୟମ୍ ଭାରତୀ ଦୁଇଟି ଉପନ୍ୟାସ ରଚନା କରିଥିଲେ । ସେଥିରୁ ଗୋଟିଏ ସମ୍ପୂର୍ଣ୍ଣ ରୂପେ ଅଙ୍କିତ ହୋଇ ରହିଲା, ଆଉ ଗୋଟିଏ ସମ୍ପୂର୍ଣ୍ଣ ହୋଇ-ପାରିନଥିଲା ।

୧୯୨୦ ମସିହାରୁ ୧୯୩୦ ପର୍ଯ୍ୟନ୍ତ କାଳଟିକୁ 'ତାମିଲ ପାଠକଙ୍କର ବୃଦ୍ଧିର ସମୟ' ବୋଲି କୁହାଯାଇଥାଏ । ଯେଉଁ କେତେ ଶହ ଉପନ୍ୟାସ ଏହି ସମୟରେ ପ୍ରକାଶିତ ହୋଇଥିଲେ, ସେଗୁଡ଼ିକ କେବଳ ଅନୁକରଣ ହିଁ ଥିଲେ । ତଥାପି ଉପନ୍ୟାସ ବୋଲି କୁହାଯାଇପାରିବାର ଏକ ତାମିଲ ଶୈଳୀ ବଡ଼ୁଓ୍ୱର୍ ଦୁରାଇସାମି ଆୟଙ୍ଗର୍‌ଙ୍କ ଉପନ୍ୟାସରେ ଅବଶ୍ୟ ଆକାର ଗ୍ରହଣ କରିପାରିଥିଲା । ଏହି ସମୟର ପତ୍ରିକାଗୁଡ଼ିକ ମଧ୍ୟ ଉପନ୍ୟାସଗୁଡ଼ିକୁ ଧାରାବାହିକ ଭାବରେ ବାହାର କରିବାର ରୀତିଟିକୁ ଖୁବ୍ ପ୍ରୋତ୍ସାହିତ କରିଥିଲେ । ତାମିଲ୍ ପାଠକମାନଙ୍କ ମଧ୍ୟରେ ରୋମାଞ୍ଚକାରୀ ଉପନ୍ୟାସ ପଢ଼ିବାର ଅଭ୍ୟାସଟିକୁ ବଢ଼ାଇଥିବା ଲେଖକମାନେ ହେଉଛନ୍ତି : ବଡ଼ୁଓ୍ୱର୍ ଦୁରାଇସାମି ଆୟଙ୍ଗର, ବୈ. ମୁ. କୋଦୈନାୟକି ଅମ୍ମାଲ୍ ଓ କଲ୍କି ଇତ୍ୟାଦି । ଧାରାବାହିକ କାହାଣୀଗୁଡ଼ିକୁ ରୋଚକ ଭାବରେ ଲେଖିବା ସଙ୍ଗେ ସଙ୍ଗେ ସେଗୁଡ଼ିକର ସାହିତ୍ୟିକ ସ୍ତରଟିକୁ ମଧ୍ୟ ରକ୍ଷା କରିପାରିଥିବା ଲେଖକ ହିସାବରେ ଏସ୍. ବି. ବି. ଙ୍କର ଉଲ୍ଲେଖ କରାଯାଇପାରେ । ତାଙ୍କର 'ରାମମୂର୍ତ୍ତି' ଏବଂ 'ଗୋପାଳନ୍, ଆଇ.ସି.ଏସ୍' ତାମିଲ ଭାଷାରେ ଦୁଇଟି ଉଚ୍ଚକୋଟୀର ଉପନ୍ୟାସ ।

ଶଙ୍କର ରାମଙ୍କ ଉପନ୍ୟାସ 'ମଣ୍ଣାସୈ' (ପୃଥିବୀର କାମନା) ୧୯୪୦ ମସିହାରେ ପ୍ରକାଶିତ ହୋଇଥିଲା । ଏହି ଉପନ୍ୟାସଟି ତାମିଲ ଉପନ୍ୟାସ-ସାହିତ୍ୟରେ

ଏକ ନୂତନ ମୋଡ଼ ଆଣି ଦେଇଥିଲା ବୋଲି କୁହାଯାଇପାରେ । ଜମିଲାଗି ଜଣେ କୃଷକର ରହିଥିବା ଅଭିଳାଷଟିରୁ କିପରିଭାବରେ ତା'ର ଜୀବନ ଓ ମନରେ ନାନା ପ୍ରକାର ସଂଘର୍ଷ ଆସି ଉତ୍ପନ୍ନ ହୋଇଥାଏ, ଉପନ୍ୟାସଟିରେ ଲେଖକ ତାହାର ଚିତ୍ରଣ କରିଛନ୍ତି । ଅଭିବ୍ୟକ୍ତିରେ ବିଶେଷତ୍ୱ, ଯଥାର୍ଥ ଚରିତ୍ର ଚିତ୍ରଣ ଏବଂ କୌଣସି ପ୍ରକାର ଅସ୍ୱାଭାବିକତା ସୃଷ୍ଟି ନ କରି ଗତିଥିବା ଘଟଣା-ପ୍ରବାହ ହେତୁ ଏହି ଉପନ୍ୟାସଟି ତାମିଲ ଉପନ୍ୟାସ ସାହିତ୍ୟରେ ଏକ ନୂଆ ପରିବର୍ତ୍ତନ ଘଟାଇ ପାରିଥିଲା ।

ଏଇଟି ପରେ ମଧ୍ୟ ଶଙ୍କର ରାମ ଅନେକ ଉପନ୍ୟାସ ଲେଖିଥିଲେ, ମାତ୍ର ତାଙ୍କୁ ସେଗୁଡ଼ିକରୁ 'ମଣ୍‌ଣାଶୈ' ଉପନ୍ୟାସ ପରି ସେତେ ବେଶି ସଫଳତା ମିଳିପାରି ନଥିଲା ।

1930 ମସିହାରୁ 1940 ମଧ୍ୟରେ ତାମିଲରେ ଏକ 'ପତ୍ରିକା-ଜାଗରଣ'ର ପର୍ବ ଜନ୍ମଲାଭ କରିଥିଲା । 'କଲ୍‌କି' ସେହି ଜାଗରଣର ଅଗ୍ରଦୂତ ଥିଲେ । ତାଙ୍କର ପ୍ରକୃତ ନାମ ହେଉଛି ରା. କୃଷ୍ଣମୂର୍ତ୍ତି । ସେ 'ତ୍ୟାଗ ଭୂମି' ଓ 'ତକାଏତର ପ୍ରେମ୍ୱର୍ଗ' ଭଳି ମନୋରଞ୍ଜନର ଅଂଶରେ ପୂର୍ଣ୍ଣ ହୋଇଥିବା ଏବଂ ନାନା ହାଲୁକା ସମସ୍ୟାକୁ ବଡ଼ ହାଲୁକା ଭାବରେ ବର୍ଣ୍ଣନା କରିଥିବା ଅନେକ ଉପନ୍ୟାସ ଲେଖିଲେ ଏବଂ ବଡ଼ୁର୍ଭୁର ଦୁରାଇସାମି ଆୟଙ୍ଗାରଙ୍କ ପରି ସିଏ ମଧ୍ୟ ଆପଣା ଲାଗି ତାମିଲ ପାଠକମାନଙ୍କର ଏକ ବିଶାଳ ଶ୍ରେଣୀ ତିଆରି କରି ନେଇଥିଲେ ।

**ଉତ୍କର୍ଷର ଯୁଗ :**

1940 ମସିହା ପରେ ପରବର୍ତ୍ତୀ ତିରିଶି ବର୍ଷକୁ ତାମିଲ ଉପନ୍ୟାସର ଉତ୍କର୍ଷ -ଯୁଗବୋଲି କୁହାଯାଇ ପାରେ । 1940 ଦଶକଟିର ଆରମ୍ଭ ବର୍ଷଗୁଡ଼ିକର ଅବଧିରେ କୋୟମ୍ବତ୍‌ତୂରର ତରୁଣ ଲେଖକ ଶ୍ରୀ ରା. ଷଣ୍‌ମୁଗସୁନ୍ଦରମ୍ ତିନୋଟି ଉପନ୍ୟାସ ଲେଖିଥିଲେ : 'ନାଗମ୍ମାଲ୍' ପୂଚ୍ଚିମ୍ ପିଞ୍ଜୁମ୍' (କଢ଼ ଓ ଶାଖା), ଏବଂ 'ପଳନ୍ଥ୍‌ଲ' (ଶିଶିର ବିନ୍ଦୁ) । ତାମିଲ ଭାଷାରେ ଉପନ୍ୟାସକୁ ଯେଉଁ ନିଶ୍ଚିତ ସାହିତ୍ୟିକ ସ୍ତରଟି ଉପଲବ୍ଧ ହୋଇଥିଲା, ତାହା ରାଜମ୍ ଅୟର୍‌ଙ୍କ ପରେ ଏହି ଲେଖକଙ୍କର ରଚନାଗୁଡ଼ିକ ଦ୍ୱାରା ଉପଲବ୍ଧ ହୋଇଥିଲା । 'ନାଗମ୍ମାଲ୍' ହେଉଛି ଏକ ଅଦ୍‌ଭୁତ ସୃଷ୍ଟି । ଏଥିରେ ଲେଖକ ସମାସଶୈଳୀରେ ଏକ ଗ୍ରାମୀଣ କାହାଣୀକୁ ରୂପ ପ୍ରଦାନ କରିଛନ୍ତି । ତାମିଲଭାଷାର ଯେଉଁ ପାଠକମାନେ 'କଲ୍‌କି' ଓ 'ଦେବନ୍'ଙ୍କ ପରି ଲେଖକଙ୍କର ମନୋରଞ୍ଜନ ମଧ୍ୟରେ ବୁଡ଼ି କରି ରହିଥିଲେ, ସେମାନେ ଏହି ଉତ୍ତମ ଉପନ୍ୟାସକାରଙ୍କୁ ତାଙ୍କର ଯଥୋଚିତ ସମ୍ମାନ ଅଥବା ଉପଯୁକ୍ତ ପାରିଶ୍ରମିକ ଆଦୌ ଦେଇପାରି ନଥିଲେ । ଫଳରେ ପରବର୍ତ୍ତୀ 16-17 ବର୍ଷ ଯାଏ ସିଏ ଆଉ କିଛି ଲେଖିଲେ ନାହିଁ । ମାତ୍ର 1985 ମସିହାରେ ତାଙ୍କର ଚତୁର୍ଥ ଉପନ୍ୟାସ 'ଅରୁଓ୍ୱଡ଼ୈ' (ଫସଲକଟା) ପ୍ରକାଶିତ ହେଲା । ଶବ୍ଦ କ୍ଷେତ୍ରରେ ମିତବ୍ୟୟିତା, ବସ୍ତୁଗୁଡ଼ିକର ସ୍ପଷ୍ଟ ତଥା ସମ୍ପୂର୍ଣ୍ଣ ଅଭିବ୍ୟକ୍ତି, ଉତ୍କୃଷ୍ଟ ଚରିତ୍ର-ସୃଜନ,

ଏହିସବୁ ବୈଶିଷ୍ଟ୍ୟ ସହିତ ଏହି ଉପନ୍ୟାସ ମୋତେ ଏପରି ଏକ ମତ ଦେବାଲାଗି ପ୍ରେରଣା ଦେଉଛି ଯେ, ବର୍ତ୍ତମାନ ପର୍ଯ୍ୟନ୍ତ ତାମିଲ ଭାଷାରେ ପ୍ରକାଶିତ ହୋଇଥିବା ସବୁ ଉପନ୍ୟାସଗୁଡ଼ିକ ମଧ୍ୟରେ ଏଇଟି ହେଉଛି ସର୍ବୋତ୍ତମ ଉପନ୍ୟାସ । ଏଇଟି ପରେ ଷଣ୍-ମୁଖସୁନ୍ଦରମ କ୍ରମାଗତ ସାତୋଟି ବା ଆଠୋଟି ଉପନ୍ୟାସ ଲେଖିଥିଲେ । ମୋ ମତରେ ସେଗୁଡ଼ିକ ମଧ୍ୟରେ 'ଶଟ୍ଟିଶୁଟ୍ଟିଦୁ' (ହାଣ୍ଡି ପୋଡ଼ିଗଲା) ହେଉଛି ସବୁଠାରୁ ଅଧିକ ସୁନ୍ଦର । ସ୍ତରରେ ଉତ୍ତମ କୋଟୀର ହୋଇଥିବା କୌଣସି ଗୋଟିଏ ଉପନ୍ୟାସ ଲେଖିବାକୁ ସମର୍ଥ ହେଉଥିବା ଅନ୍ୟ ଲେଖକମାନଙ୍କ ପରି ନ ହୋଇ ଷଣ୍ମୁଖସୁନ୍ଦରମ୍ ଉଚ୍ଚକୋଟିର ଅନେକୋଟି ଉପନ୍ୟାସ ଲେଖିପାରିଲେ,—ଆମେ ଏଇଟିକୁ ତାଙ୍କର ଏକ ବିଶେଷତ୍ୱ ବୋଲି କହିବା ।

ମୋ' ନିଜର ଉପନ୍ୟାସଗୁଡ଼ିକ ମଧ୍ୟ 1942 ପରେ ପ୍ରକାଶିତ ହୋଇଥିଲେ । 'ପସି' (କ୍ଷୁଧା),' ଶରମାଓ୍ୱିନ୍ ଉଇଲ୍ (ଶର୍ମାଙ୍କର ଉଇଲ୍), 'ପୋୟ୍ତ୍ତ୍ ତେଓ୍ୱ' (ମିଛ ଭଗବାନ) 'ଏଲୁପେର୍,' (ସାତଜଣ), 'ଓରୁନାଲ୍' (ଦିନେ)'—ଏହି ସବୁଯାକ ଉପନ୍ୟାସ 1950 ମସିହା ଆଗରୁ ହିଁ ଲେଖା ହୋଇଥିଲେ । 'ଅସୁରଗଣମ୍', 'ଆଟ-କୋଲ୍ଲି' (ମନୁଷ୍ୟହତ୍ୟା), 'ପେରିୟ ମନିଦନ୍' (ବଡ଼ ମଣିଷ) ପ୍ରଭୃତି ଉପନ୍ୟାସ ଏଗୁଡ଼ିକର ପରେ ଆସିଲେ । ମୋର ଗୋଟିଏ ଉପନ୍ୟାସ ଆଉ ଗୋଟିଏ ପରି ହେବା ଉଚିତ ନୁହେଁ, ଏହାହିଁ ମୋ'ର ଲକ୍ଷ୍ୟ ହୋଇ ରହିଥିଲା । ଷଣ୍ମୁଖ ସୁନ୍ଦରମ୍ଙ୍କ ପରି ମୁଁ ମଧ୍ୟ କମ୍ ଶବ୍ଦରେ ସ୍ପଷ୍ଟ ଭାବରେ ନିଜର କଥାଗୁଡ଼ିକ ଅଭିବ୍ୟକ୍ତ କରିପାରିବି ବୋଲି ଧ୍ୟେୟ କରି ରଖିଥିଲି ।

1950 ପରେ ଟଦମ୍ପୁର ସୁବ୍ରମଣ୍ୟମ୍ଙ୍କର 'ଇଦୟନାଦମ୍' (ହୃଦୟର ନାଦ) ପ୍ରକାଶିତ ହେଲା । ଜଣେ ସଙ୍ଗୀତ-କଳାବିତ୍ ବ୍ୟକ୍ତିର ଜନ୍ମ, ପାଳନପୋଷଣ, ଉଚ୍ଚ ସ୍ଥିତିରେ ଆସି ଉପନୀତ ହେବା, ଯେତେ ଯେପରି ଜଣେ ସ୍ୱରକୁ କ୍ରମଶଃ ନିମ୍ନରୁ ଅଧିକ ଉଚ୍ଚ କରି ଗୀତଟିଏ ଗାଉଛି, ଲେଖକ ସେହିପରି ଭାବରେ ଘଟଣାଗୁଡ଼ିକର କ୍ରମଟିକୁ ଚିତ୍ରିତ କରିଛନ୍ତି । ପ୍ରସଙ୍ଗ-ବହିର୍ଭୂତ କୌଣସି ବିଷୟକୁ ନ ଛୁଇଁ ଏକ ସିଧା ଓ ସରଳ ଢଙ୍ଗରେ ଉପନ୍ୟାସଟିର ବିକାଶ କରାଇ ଆଣି ଲେଖକ ତାହାକୁ ପୂର୍ଣ୍ଣତ୍ୱ ପ୍ରଦାନ କରିଛନ୍ତି ।

ମୁଁ ଯେତେବେଳେ ଏଠାରେ ଉପନ୍ୟାସର ବିକାଶ ବିଷୟରେ ଆଲୋଚନା କରୁଛି ସେତେବେଳେ ଏ କଥାଟି ନିଶ୍ଚୟ ସ୍ପଷ୍ଟ ହୋଇଯାଇଥିବ ଯେ ମୁଁ କେବଳ ମନୋରଞ୍ଜନ କରାଉଥିବା ଏବଂ ସମୟକୁ କଟାଇ ଦେବା ପାଇଁ ପାଠ କରାଯାଉଥିବା ଉପନ୍ୟାସଗୁଡ଼ିକର ଲେଖକଙ୍କର ହିଁ ଏଠାରେ ଉଲ୍ଲେଖ କରୁନାହିଁ । ମାତ୍ର ଏଭଳି ଅନେକ ଉପନ୍ୟାସକାର ଅଛନ୍ତି, ଯେଉଁମାନେ ସାହିତ୍ୟିକ ସ୍ତର ପର୍ଯ୍ୟନ୍ତ ଉଠିପାରି ନାହାନ୍ତି ସତ, ମାତ୍ର ସେମାନେ

ଆପଣା ଆପଣାର ସ୍ତରରେ ତାମିଲ ଉପନ୍ୟାସର ଶ୍ରୀବୃଦ୍ଧି କରି ଆସିଛନ୍ତି,—ଆମେ ଏ କଥା ନିଃସନ୍ଦେହ କହିପାରିବା । ଶହେ ବର୍ଷ ତଳେ ଶ୍ରୀ ବେଦନାୟକମ୍ ପିଲ୍ଲେ ଯାହା କହିଥିଲେ, ତାମିଲଭାଷୀ ଲୋକେ ରାଜା ରାଣୀଙ୍କର ଗପକୁ ଖୁବ ପସନ୍ଦ କରନ୍ତି, ମାତ୍ର ଏଣେ ମଧ୍ୟ ଯୁଗକୁ ଆସି ଏ କଥାଟି ମଧ୍ୟ ବ୍ୟାପକ ରୂପରେ ପ୍ରମାଣିତ ହେବାକୁ ଲାଗିଲା ଏବଂ 'ଐତିହାସିକ ଉପନ୍ୟାସ'ର ନାମ ନେଇ ଏପରି ଏକ ରୂପ ଉତ୍ପନ୍ନ ହେଲା, ଯାହାକୁ ଆମେ ପ୍ରକୃତରେ ଉପନ୍ୟାସ ବୋଲି କହିପାରିବା ନାହିଁ । ଏହି କ୍ଷେତ୍ରରେ ପ୍ରଧାନ ନାମଗୁଡ଼ିକ ହେଉଛି,—କଲ୍କି, ଶାଣ୍ଡିଲ୍ୟନ୍, ଅକିଲନ୍, ଜଗନ୍ନିର୍ପିୟନ୍, କୋଓ୍ୱି ମଣିଶେଖରନ୍, ନା ପାର୍ଥସାରଥି ପ୍ରଭୃତି । ଏମାନେ ସମସ୍ତେ ନିଜର ଐତିହାସିକ ଉପନ୍ୟାସଗୁଡ଼ିକର ମାଧ୍ୟମରେ ସମସାମୟିକ ସମାଜର ଚିତ୍ରଣ କରିଥିଲେ ଏବଂ ତାମିଲ ଅଞ୍ଚଳରେ ଅଧିକତର ପାଠକ ଏହି ଉପନ୍ୟାସଗୁଡ଼ିକୁ ହିଁ ପଢ଼ି ଆସୁଥିଲେ । ଏହିପରି ସମସ୍ତ ଚଟାଇ ନେଉଥିବା ଉପନ୍ୟାସଗୁଡ଼ିକର ପ୍ରଚାର ଓ ପଢନ୍ତି 1950 ମସିହା ପରେ ମାତ୍ରାରେ କିଛିତ ଅଧିକ ହୋଇଥିଲା ଏବଂ ବେଳେବେଳେ ଏପରି ହୋଇଥିଲା ଯେ ଏହି ପଢନ୍ତି ସାହିତ୍ୟିକ ଗତିବିଧିକୁ ଅଦୃଶ୍ୟ କରି ଅଟକାଇ ବି ଦେଇଥିଲା ।

ସମସ୍ତ ଚଟାଇ ନେଉଥିବା ଓ ମନୋରଞ୍ଜନ କରୁଥିବା କଥାବସ୍ତୁକୁ ନେଇ ଯେଉଁମାନେ ଉପନ୍ୟାସ ଲେଖୁଥିଲେ, ସେମାନଙ୍କ ମଧ୍ୟରେ ବେଶ୍ କେତେଜଣ ଲେଖକ ସାହିତ୍ୟିକ ସ୍ତରରେ ମଧ୍ୟ ଯାଇ ପହଞ୍ଚି ପାରିଥିଲେ,—ପି. ଏମ୍. କଣ୍ଣାନ୍ ଅନୁଭମା ଏବଂ ଅର୍ ବି. । ମାତ୍ର ବି. ଜାନକୀରାମନ୍‌ଙ୍କର 'ମୋହମୁଲ୍' (ମୋହର କଣ୍ଟା), ଏବଂ ସୁନ୍ଦର ରାମସ୍ୱାମୀଙ୍କର 'ଓରୁ ପୁଲିୟ୍ ମରିତ୍ତିନ୍ କଦୈ' (ଗୋଟିଏ) ତେନ୍ତୁଳି ଗଛର କାହାଣୀ), ଏ ଦୁଇଟିଯାକକୁ ଆମେ ଉଚ୍ଚସ୍ତରୀୟ ସାହିତ୍ୟିକ ରଚନା ବୋଲି କହିପାରିବା । ଜାନକୀରାମନ୍ ଅଉ କେତୋଟି ଉପନ୍ୟାସ ବି ଲେଖିଛନ୍ତି । ସେଗୁଡ଼ିକ ମଧ୍ୟରୁ 'ଅମ୍ମା ବନ୍ଦାଲ୍' (ମାଆ ଆସିଲେ) ଉପନ୍ୟାସଟି ନାନା କାରଣରୁ ଅନେକସଂଖ୍ୟକ ପାଠକଙ୍କର ଆଦର ଲାଭ କରିପାରିଥିଲା । ମୁଁ ସ୍ୱୀକାର କରୁଛି ଯେ ଆଜଯାଏ ସିଏ ଯେତୋଟି ଉପନ୍ୟାସ ଲେଖିଛନ୍ତି, 'ମୋହମୁଲ୍' ହେଉଛି ସେଗୁଡ଼ିକ ମଧ୍ୟରେ ଶ୍ରେଷ୍ଠ ଉପନ୍ୟାସ । ସୁନ୍ଦର ରାମସ୍ୱାମୀଙ୍କର ଏକମାତ୍ର ଉପନ୍ୟାସ 'ପୁଲିୟ୍ ମରମ୍' (ତେନ୍ତୁଳି ଗଛ) ଉପନ୍ୟାସ-କଳାକୁ ଏକ ନୂତନ ଢଙ୍ଗ ଆଣି ଦେଇଥିଲା । ଆମେ ତାହାକୁ ଜଣେ ଶିଳ୍ପୀର ଡକ୍ୟୁମେଣ୍ଟେସନ୍ ଉପନ୍ୟାସ ବୋଲି କହିପାରିବା ।

ହେବ୍‌ସିବା ଯେସୁଦାସନ୍‌ଙ୍କର 'ପୁତ୍ତମ୍‌ଭାଡ଼ୁ' (ନୂଆ ଘର), ଅଶୋକମିତ୍ରନ୍‌ଙ୍କର 'କରେଇନ୍ଦ ନିଲ୍‌ଲ୍‌କଲ୍' (ତରଳ ଗୁହା), ଶ୍ରୀ କନ୍ଦସାମିଙ୍କର 'ସୂର୍ଯ୍ୟୋଦୟନମ୍' (ସୂର୍ଯ୍ୟୋଦୟ)—ଏହି ଉପନ୍ୟାସଗୁଡ଼ିକ 1960 ମସିହା ପରେ ଲେଖାଯାଇଛି ଏବଂ ଲେଖକ-ମାନଙ୍କର ପ୍ରଥମ ପ୍ରୟାସ ରୂପେ ପ୍ରକାଶ ପାଇଛି । ଏଗୁଡ଼ିକ ଆପଣା ଆପଣା ସ୍ତରରେ

ଏକ ସଫଳତା ମଧ୍ୟ ମିଳିଛି । ଷଣ୍ମୁଖସୁନ୍ଦରମ୍‌ଙ୍କ ପରି ଉଚ୍ଚସ୍ତରର ସାହିତ୍ୟିକ ଉପନ୍ୟାସ ଲେଖିବାରେ ଜଣେ ଲେଖିକା ସଫଳତା ଲାଭ କରିଛନ୍ତି—ସିଏ ହେଉଛନ୍ତି କୃତ୍ତିକା । 'ପୁର୍କ୍ ନଡ୍ଡୁଓ୍ିଲ୍ (ଧୂଆଁ ଭିତରେ) ରୁ ଆରମ୍ଭ କରି 'ଧର୍ମକ୍ଷେତ୍ର' ପର୍ଯ୍ୟନ୍ତ ତାଙ୍କର ପ୍ରତ୍ୟେକ ଉପନ୍ୟାସରେ ଆମେ ନୂତନ ବିଶେଷତ୍ୱମାନ ଦେଖିବାକୁ ପାଇବା । 'ବାସୁଦେଓ୍ୱ ଶୁଡ଼ରମ୍' ହେଉଛି ତାଙ୍କର ଉତ୍ତମ ପ୍ରୟାସଗୁଡ଼ିକ ମଧ୍ୟରୁ ଗୋଟିଏ । ସେହିପରି 'ନକୁଲନ୍' ଉପନାମ ଗ୍ରହଣ କରିଥିବା ଟି.କେ ଦୂରେଇସାମି ଦଶ ବର୍ଷ ମଧ୍ୟରେ ପ୍ରୟୋଗ ସ୍ୱରୂପ ଖୁବ ପାଞ୍ଚୋଟି ଉପନ୍ୟାସ ଲେଖି ସଫଳତା ଲାଭ କରିପାରିଛନ୍ତି । ମୁଁ ଏଠାରେ 'ରୋଗିକଳ୍' (ରୋଗୀମାନେ) ଓ 'ନନୈଓ୍ୱପ୍‌ପାଦେ' (ସ୍ମୃତିର ପଥ), ଏହି ଦୁଇଟି ଉପନ୍ୟାସର ଉଲ୍ଲେଖ କରିବାକୁ ଇଚ୍ଛାକରୁଛି । ସି.ଶୁ. ଶେଲପ୍‌ପାଙ୍କର ଦୁଇଟି ଉପନ୍ୟାସର ନାମ ମଧ୍ୟ ଏଠାରେ ଉଲ୍ଲେଖନୀୟ । 'ଓ୍ୱାଡ଼ିଓ୍ୱାଶଲ୍' ହେଉଛି ଗୋଟିଏ ଲଘୁ ଉପନ୍ୟାସ ଯେଉଁଥିରେ କି ବଳଦ ଧରିବାର ଖେଳ (ତାମିଲରେ ଯାହାକୁ 'ଜେଲ୍ଲି-କ୍ କଟ୍ଟୁ' ବୋଲି କହନ୍ତି) ର ବର୍ଣ୍ଣନା କରାଯାଇଛି । 'ଜୀବନାଂଶମ୍' ହେଉଛି ଏକ ଶ୍ରେଷ୍ଠ ଉପନ୍ୟାସ, ଯେଉଁଥିରେ କି ଷ୍ଟ୍ରୀମ୍ ଅଫ୍ କନ୍‌ସମ୍‌ନେସ୍‌ର ଉକ୍ତି ପ୍ରକୃତରେ ସାର୍ଥକ ହୋଇଛି । ଏହି ଦୁଇଟି ଉପନ୍ୟାସ ଏବଂ ନକୁଲନ୍‌ଙ୍କର ଦୁଇଟି ଉପନ୍ୟାସକୁ ଆମେ ଶ୍ରେଷ୍ଠତମ କଳାକାରଙ୍କର ଉପନ୍ୟାସ ବୋଲି ସ୍ୱୀକାର କରିପାରିବା ।

ଏହିପରି ଗତ ଶତାବ୍ଦୀ ମଧ୍ୟରେ ପ୍ରାୟ କୋଡ଼ିଏ ପଚିଶ ଜଣ ଲେଖକ ଉପରି ପର୍ଯ୍ୟନ୍ତ ଉଚ୍ଚସ୍ତରୀୟ ଉପନ୍ୟାସ ଲେଖି ତାମିଲ ସାହିତ୍ୟର ଶ୍ରୀବୃଦ୍ଧି କରି ଯାଇଛନ୍ତି । ସମସ୍ତ ଭାବରେ ଦେଖିଲେ ଆମେ ଏପରି କଦାପି କହିପାରିବା ନାହିଁ ଯେ ଏହି ଉପନ୍ୟାସ, ଇତ୍ୟାଦି କୌଣସି ଗୋଟିଏ ଗୋଷ୍ଠୀର ସୃଷ୍ଟି ଅଥବା କୌଣସି ଗୋଟିଏ ଚିନ୍ତାଧାରାର ପରିଣାମ ସ୍ୱରୂପ ଉତ୍ପନ୍ନ ହୋଇପାରିଛି । ଏପରି ସ୍ୱୀକାର କରାଯାଇପାରିବ ଯେ ଏହିସବୁ ଉପନ୍ୟାସ ହେଉଛି ପୃଥକ୍ ପୃଥକ୍ ବ୍ୟକ୍ତିଙ୍କର ଆପଣା ଆପଣାର ନିପୁଣ କଳାକାରିତାର ହିଁ ସୃଷ୍ଟି । ଏହି ଶତାବ୍ଦୀ ବର୍ଷ ମଧ୍ୟରେ ଚିନ୍ତାର ଗମ୍ଭୀରତା, ଚରିତ୍ର ସୃଷ୍ଟିର ଶ୍ରେଷ୍ଠତା ଏବଂ ଜୀବନର ସମସ୍ୟାଗୁଡ଼ିକର ସିଧା ସମ୍ମୁଖୀନ ହେବାର ପ୍ରବୃତ୍ତି ବୃଦ୍ଧିପାଇ ଆସିଛି ।

## ନୀଲ ପଦ୍ମନାଭନ୍,

ତାମିଲ ଉପନ୍ୟାସର ଏହି ସମୃଦ୍ଧିରେ ଦାୟାଦ ରୂପେ 1960 ଦଶକର ଅନ୍ତିମ ଚରଣରେ ନୀଲ, ପଦ୍ମନାଭନ୍ ଆପଣାର ସର୍ବପ୍ରଥମ ଉପନ୍ୟାସ 'ତଲୈମୁରୈକଲ୍' (କେତେ ପୁରୁଷ) ପ୍ରକାଶିତ କରିଥିଲେ । ଏହି କଥାଟିରୁ ହିଁ ତାମିଲ ରାଜ୍ୟର ପ୍ରକାଶକ-ମାନଙ୍କର କଳ୍ପନାଗତ ଦାରିଦ୍ର୍ୟର ଏକ ସଙ୍କେତ ମିଳିପାରିବ ଯେ ତାଙ୍କୁ ସ୍ୱୟଂ ଏହି ଉପନ୍ୟାସଟିକୁ ପ୍ରକାଶ କରିବାକୁ ପଡ଼ିଥିଲା । ପ୍ରକାଶିତ ହେବା ପରେ ପରେ ହିଁ ଏହି ଉପନ୍ୟାସଟି ଆପଣାର ଲେଖକଙ୍କୁ ନେଇ ନିପୁଣ ତାମିଲ ଉପନ୍ୟାସ ଲେଖକଙ୍କର ସମୂହ ମଧ୍ୟରେ ଏକ ସ୍ଥାୟୀ ସ୍ଥାନ ନିର୍ମାଣ କରି ବସାଇ ଦେଇଥିଲା । ଅନ୍ତିମ ଭାଗରେ

ଘଟଣାବଳୀ କେତେକ ପରିମାଣରେ ମେଲୋଡ୍ରାମାଟିକ୍ ହୋଇଯାଇଥିଲେ ମଧ୍ୟ, ତଥାପି ଚରିତ୍ର-ସୃଷ୍ଟି, କଥାବସ୍ତୁକୁ ପରିଚାଳିତ କରିନେବାର ଶୈଳୀ ଏବଂ ଗମ୍ଭୀରତା— ଏଗୁଡ଼ିକରେ ଏହି ଉପନ୍ୟାସଟିକୁ ଗୋଟିଏ ଉତ୍ତମ ତାମିଲ ଉପନ୍ୟାସ ବୋଲି କୁହାଯାଇପାରିବ ।

## 'ପଲ୍‌ଲିକୋଣ୍ଡ଼ପୂରମ୍' (ଯାତ୍ରାର ଶେଷ)

ନୀଲ. ପଦ୍ମନାଭନ୍ ଏକାବେଳେକେ କେତେ ପୁରୁଷର ଇତିହାସକୁ ଏବଂ ତିନୋଟି ପୁରୁଷର ଘଟଣାବଳୀକୁ ଆପଣାର 'ତଲେମୁରେକଲ୍' ଉପନ୍ୟାସରେ ଚିତ୍ରଣ କରିଥିଲେ । ତାଙ୍କର ଦ୍ୱିତୀୟ ଉପନ୍ୟାସ 'ପଲ୍‌ଲିକୋଣ୍ଡ଼ପୁରମ୍' (ଯାତ୍ରାର ଶେଷ)ରେ ଏକ ନିର୍ଦ୍ଦିଷ୍ଟ ଘଟଣା କେନ୍ଦ୍ରରୁ ଆଦୌ ଅପସରି ନ ଯାଇ ଗୋଟିଏ ଚରିତ୍ରର ଜୀବନର ଅଟେଚାଳିଶ ଘଣ୍ଟା ମଧ୍ୟରେ ଘଟିଯାଇଥିବା ଘଟଣାଗୁଡ଼ିକର ଏବଂ ସେହି ଘଟଣାଗୁଡ଼ିକ ଦ୍ୱାରା ସେହି ଚରିତ୍ରର ମନ ଭିତରେ ଉତ୍ପନ୍ନ ହୋଇଥିବା ଭାବନାଗୁଡ଼ିକର ବର୍ଣ୍ଣନା କରି ସେ ଉପନ୍ୟାସଟିର ନିର୍ମାଣ କରିଛନ୍ତି । 'ତଲେମୁରୈକଲ୍'ର ତୁଳନାରେ ଏହି ଉପନ୍ୟାସଟିର ସଂଘଟନ ଅଧିକ ସଂଯତ ଭାବରେ ହୋଇଛି । ଘଟଣାଗୁଡ଼ିକରେ ମେଲୋଡ୍ରାମ ଆଦୌ ଅଧିକ ପରିମାଣରେ ଦେଖିବାକୁ ମିଳୁ ନାହିଁ । ଅନେକ ଲଘୁକଥା ଲେଖି ଅଭ୍ୟସ୍ତ ହୋଇ-ଯାଇଥିବା ହାତଗୁଡ଼ିକ କେତୋଟି ଚିନ୍ତନ ରେଖାକୁ କଥାର ଶୈଳୀରେ ପ୍ରସ୍ତୁତ କରିଦେଇଛି । ତଥାପି, ଉପନ୍ୟାସର କଥାବସ୍ତୁର ବିକାଶରେ ସେଗୁଡ଼ିକ କୌଣସି ପ୍ରକାରେ ବାଧକ ହୋଇ ନାହାନ୍ତି ।

ଲେଖକ ସବୁ ଚରିତ୍ର ତଥା ଘଟଣାକ୍ରମକୁ କଥାଟିର ନାୟକଙ୍କର ଚିନ୍ତନର ମାଧ୍ୟମରେ ପ୍ରକଟ କରିଛନ୍ତି । ଅନ୍ୟ କୌଣସି ଲେଖକ ହୁଏତ ଯେତେ ବିସ୍ତାର କରିବା ଲାଗି ଆଦୌ ସାହସ କରି ନଥାନ୍ତେ, ସିଏ ଏହି ଉପନ୍ୟାସରେ ସେତେଦୂର ଭୌଗୋଳିକ ବିସ୍ତାର ମଧ୍ୟ କରି ପାରିଛନ୍ତି । ଗୋଟିଏ ନଗରର ପୂର୍ବ, ପଶ୍ଚିମ, ଉତ୍ତର ତଥା ଦକ୍ଷିଣ ସୀମାଗୁଡ଼ିକର ପର୍ଯ୍ୟାପ୍ତ ବିବରଣ ଏଥିରେ ଦିଆଯାଇଛି । କ'ଣ ଏତେ-ଗୁଡ଼ାଏ ଭୌଗୋଳିକ ବିବରଣୀ ଦେବାଲାଗି ପ୍ରକୃତରେ ଆବଶ୍ୟକତା ରହିଥିଲା ? କେତେକ ଲୋକ ଏପରି ଏକ ପ୍ରଶ୍ନ ମଧ୍ୟରେ କରିଥାନ୍ତି । ମୁଁ ଅନୁଭବ କରୁଛି ଯେ ଏଭଳି ବିବରଣୀମାନ ଉପନ୍ୟାସକୁ ଅକୃତ୍ରିମ ଅଣି ଦେବାରେ ନିଶ୍ଚୟ ସହାୟକ ହୋଇ-ଥାନ୍ତି । ବିଶେଷତଃ, ଯେଉଁ ବ୍ୟକ୍ତିମାନେ ଏହି ଉପନ୍ୟାସଟିର ଘଟଣାକେନ୍ଦ୍ର ତିରୁଅନନ୍ତ-ପୁରମ୍‌କୁ ଖୁବ୍ ଭଲକରି ଜାଣିଛନ୍ତି, ସେମାନଙ୍କୁ ଏହି ବିବରଣ ଆବଶ୍ୟକ ବୋଲି ମନେହେବ, ରୋଚକ ମଧ୍ୟ ଲାଗିବ । ଜଣେ ବ୍ୟକ୍ତିର ହୃଦୟ ସହିତ ଗୋଟିଏ ସହର ମଧ୍ୟ କିପରି ଜୀବନ୍ତ ରୂପ ଧାରଣ କରି ଆବିର୍ଭୂତ ହୋଇଆସୁଛି, ଆମେ 'ପଲ୍‌ଲିକୋଣ୍ଡ ପୁରମ୍' ଉପନ୍ୟାସରେ ସେହି କଥାଟିକୁ ଦେଖିପାରିବା । ଏଠାରେ ମୁଁ କଥାବସ୍ତୁଟିର

ବିବରଣ ଦେବାକୁ ଇଚ୍ଛା କରୁନାହିଁ । ମାତ୍ର ଏତିକି କଥା ଅବଶ୍ୟ କହିବାକୁ ହେବ ଯେ ଏହି ଉପନ୍ୟାସରେ ଲେଖକ ଜଣେ ସାଧାରଣ ବ୍ୟକ୍ତିର ହୃଦୟରେ ସାଧାରଣ ଘଟଣାଗୁଡ଼ିକର ପ୍ରତିକ୍ରିୟାରୁ ଉତ୍ପନ୍ନ ହେଉଥିବା ଭାବନା ଏବଂ ବିସ୍ମୟଗୁଡ଼ିକୁ ମନୋବୈଜ୍ଞାନିକ ଦୃଷ୍ଟିରୁ ବର୍ଣ୍ଣନା କରିଛନ୍ତି । ତାହା ସଙ୍ଗେ ସଙ୍ଗେ, କୌଣସି ଏକ ଅସାଧାରଣ ଘଟଣା ହେଲେ ସେହି ବ୍ୟକ୍ତି କେଉଁ କେଉଁ ପ୍ରକାରେ ପ୍ରଭାବିତ ହେଉଛି ଓ ସେଗୁଡ଼ିକ ଉପରେ ଚିନ୍ତନ କରୁଛି ଏବଂ ସେହି ଘଟଣାଟିର ପରିଣାମଗୁଡ଼ିକୁ ସିଏ କିପରି ଭାବରେ ଆପଣା ଉପରେ ବହନ କରି ନେଉଛି,—ଲେଖକ ଏ କଥାଟିକୁ ମଧ୍ୟ ଅତ୍ୟନ୍ତ ସଫଳତା ସହିତ ପ୍ରକାଶ କରିପାରିଛନ୍ତି ।

ଏବେ ଗତ କେତେବର୍ଷ ଭିତରେ ତାମିଲ ଭାଷାରେ ପ୍ରକାଶିତ ଭଲ ଭଲ ଉପନ୍ୟାସମାନଙ୍କ ମଧ୍ୟରେ 'ପଲ୍ଲିକୋଣ୍ଡପୁରମ୍' ହେଉଛି ଅନ୍ୟତମ । ପୁନଶ୍ଚ, ଏଥିରେ ଏପରି କେତେକ କଥା ମଧ୍ୟ ଉତ୍ଥାପିତ ହୋଇଛି, ଯାହାକୁ କି ମୁଁ ଭାରତୀୟ ଉପନ୍ୟାସର ବିଶେଷତ୍ୱ ବୋଲି ସ୍ୱୀକାର କରିଥାଏ । ତେଣୁ ନ୍ୟାସ୍‌ନାଲ୍ ବୁକ୍‌ଟ୍ରଷ୍ଟ ଏହି ଉପନ୍ୟାସଟିକୁ ଯେ ଭାରତର ଅନ୍ୟାନ୍ୟ ଭାଷାରେ ଅନୂଦିତ କରି ପ୍ରକାଶିତ କରିବାର ପ୍ରୟାସ କରିଛନ୍ତି, ତାହା ଏକ ପ୍ରଶଂସନୀୟ ପ୍ରୟାସ ।

ଯାହାକୁ ମୁଁ ଭାରତୀୟ ଉପନ୍ୟାସର ବିଶେଷତ୍ୱ ବୋଲି କହୁଛି, ସମାଲୋଚନାର ଏହିପରି କେତୋଟି କଥା ଯେତେବେଳେ ଯାଇ ସ୍ପଷ୍ଟ ହୋଇ ଆସିବ, ସେତେବେଳେ କି ଏହିଭଳି ପଚିଶ ବା ଶହେଖଣ୍ଡ ଉପନ୍ୟାସ ଭାରତୀୟ ଭାଷାଗୁଡ଼ିକରୁ ଅନ୍ୟ ଭାଷାଗୁଡ଼ିକରେ ମଧ୍ୟ ଅନୂଦିତ ହେବେ । 'ରୁଷ ଉପନ୍ୟାସ' କହିଲେବେଳେ ତାହାର ଏକ ବିଶିଷ୍ଟ ସ୍ୱରୂପ ଆମ ମନରେ ଆବିର୍ଭୂତ ହୋଇ ଆସୁଛି । ଏହିପରି 'ଇଂରାଜୀ ଉପନ୍ୟାସ'ର ଆପଣାର ଏକ ସ୍ୱରୂପ ରହିଛି, 'ଫରାସୀ' ଓ 'ଜର୍ମାନ୍' ଆଦି ଉପନ୍ୟାସ ସାହିତ୍ୟଗୁଡ଼ିକର ମଧ୍ୟ ନିଜ ନିଜର ସ୍ୱରୂପ ରହିଛି । ଏହିପରି, ଆମେ ସମସ୍ତେ ଜାଣିଛୁ ଯେ ଇଉରୋପୀୟ ଉପନ୍ୟାସ ସାହିତ୍ୟର ମଧ୍ୟ ଆପଣାର ଏକ ବିଶିଷ୍ଟ ମହତ୍ତ୍ୱ ରହିଛି । ଇଉରୋପୀୟ ଉପନ୍ୟାସ କିପରି ଜାପାନି, ଚୀନ୍ ଏବଂ ଭାରତୀୟ ଉପନ୍ୟାସ-ସାହିତ୍ୟରୁ ଭିନ୍ନ ପ୍ରକାରର, ଏଥିରୁ ଆମେ ତାହା ଜାଣିବାକୁ ପାଉଛୁ ।

ଭାରତୀୟ ଭାଷାଗୁଡ଼ିକର ସୀମାଗୁଡ଼ିକୁ ଅତିକ୍ରମ କରି ଭାରତୀୟ ଉପନ୍ୟାସର ଏକ ବିଶିଷ୍ଟ ସ୍ୱରୂପ ମଧ୍ୟ ସେତେବେଳେ ନିଶ୍ଚୟ ଆବିର୍ଭୂତ ହୋଇ ଆସିବ, ଯେତେବେଳେ କି ଅନେକସଂଖ୍ୟକ ଉପନ୍ୟାସକୁ ଅନ୍ୟ ନାନା ଭାଷାରେ ଅନୁବାଦ କରିବା ସମ୍ଭବ ହୋଇଯିବ ।

15-12-1973 —କି. ନା. ସୁବ୍ରହ୍ମଣ୍ୟମ୍

●

## ଏକ

ଅନନ୍ତନ୍ ନାୟର୍ ପଲଓ୍ୱାଙ୍ଗାଡ଼ର ଗଣେଶ ମନ୍ଦିର ସାମନାରେ ଥିବା ରାଜରାସ୍ତାରେ ଗୋଟିଏ ମିନଟ୍ ପାଇଁ ଠିଆ ହୋଇ ରହିଲେ; ତାଙ୍କର ଆଖି ବନ୍ଦ ହୋଇଯାଇଥାଏ, ଦୁଇ ହାତ ଯୋଡ଼ି ହୋଇଯାଇଥାଏ ଓ ସିଏ ଧ୍ୟାନମଗ୍ନ ହୋଇ ଠିଆ ହୋଇଥାନ୍ତି ।

ବୃକ୍ଷ, ଲତା, ଜୀବଜନ୍ତୁ—ସମସ୍ତଙ୍କୁ ମୌନ ରୂପରେ ରହସ୍ୟମୟ ଭାବରେ ସଜୀବ କରି ଦେଉଥିବା ଏହି ବ୍ରାହ୍ମମୁହୂର୍ତ୍ତ,—ଭୋର ସମୟର ଏହି ଶୀତଳ ବାତାବରଣ ।

ଦିନଟିର ଯାନ୍ତ୍ରିକ ସଂଚଳନ ଦ୍ୱାରା ଅକ୍ଲାନ୍ତ ଓ ହାଲିଆ ହୋଇ ଘୋର ନିଦରେ ଶୋଇପଡ଼ିଥିବା ନଗର...

ନୀରବ ଶାନ୍ତିର ସମ୍ମୋହନକାରୀ ନିଶାରେ ମତ୍ତ ହୋଇ ରହିଥିବା ପ୍ରକୃତିମାତାର ଦୃଶ୍ୟ...

ଗଣେଶ-ମନ୍ଦିର ପାଖରୁ ବାଟ ଭାଙ୍ଗି ଅନନ୍ତନ୍ ନାୟର୍ ଡାହାଣପଟ ବାଟରେ ଚାଲିବାକୁ ଲାଗିଲେ ।

ତାଙ୍କର ସ୍ନାନ ସରି ଯାଇଥିଲା । ତାଙ୍କ ଦେହ ଉପରେ କେବଳ ଖଣ୍ଡିଏ ଗାମୁଛା ପଡ଼ି ରହିଥିଲେ ମଧ୍ୟ ତାଙ୍କୁ ଚାରିପାଖର ଏହି ଜାଡ଼ ଆଦୌ ଲାଗୁ ନଥିଲା । ଶରୀର ରୁଗ୍ଣ ତା' ସହିତ କେତେ ଯେ ମାନସିକ ଅଡ଼ୁଆ ଭିତରେ ସେ ପଡ଼ିଯାଇଥାନ୍ତି, ସେକଥା କିଏ କହିବ ? ତଥାପି ସେ ଭାରି ଉତ୍ସାହ ଅନୁଭବ କରୁଥିବା ପରି ମନେ ହେଉଥାନ୍ତି । ଇଏ କ'ଣ ଆଉ ସେହି ସ୍ନାନର ମହିମା ବୋଲି କୁହାଯିବ ?

ଏହି ବସ୍ତିଟି ମଧ୍ୟ କେଡ଼େ ଚଉଡ଼ା । ଉତ୍ତର ଦିଗରେ, ନଗରର ପ୍ରଧାନ କାର୍ଯ୍ୟାଳୟଟି ଅଡ଼କୁ ଲମ୍ବିଯାଇଥିବା ବଡ଼ ବଜାର · · ଦକ୍ଷିଣ ଦିଗରେ ସେଠାରୁ ସାତ ମାଇଲ ଦୂରରେ ଅବସ୍ଥିତ ସୁନ୍ଦର 'କୋବଲମ୍' । ସମୁଦ୍ରକୂଳ ଆଡ଼କୁ ଲମ୍ବା ହୋଇପଡ଼ିଥିବା ଗମ୍ଭୀର ସଡ଼କ-ବାଟର ଡାହାଣ ପଟରେ ଥିବା ପଡ଼ିଆଟିରେ ସବୁଜ ରଙ୍ଗର ବସ୍‌ଗୁଡ଼ିକ ଅସ୍ତବ୍ୟସ୍ତ ବିକ୍ଷିପ୍ତ ଭାବରେ ଅରାମ କରିବାରେ ଲାଗିଛନ୍ତି । ତାହାର ମଝିରେ ନଗରର ବାଣିଜ୍ୟକେନ୍ଦ୍ର ଶାଲେଁ ବଜାର ପଶ୍ଚିମ ଦିଗରୁ ପୂର୍ବଆଡ଼େ ପଡ଼ି ସଡ଼କଥିବା ଚଳାଇବାରେ ଲାଗିଛି ।

ଡାହାଣ ପଟକୁ ପଲଓ୍ୱାଙ୍ଗାଡ଼ ପଡ଼ିଆଟି ଅବସ୍ଥିତ, ଯାହାକି ଏହି ଦେଶରେ କେତେ ନା କେତେ ଐତିହାସିକ ଘଟଣାର କାରଣ ହୋଇ ରହିଆସିଛି । ଏଇଠି ଠିଆ ହୋଇ "ହେ ମୋ'ର ପ୍ରିୟ ଦେଶବାସୀମାନେ..." ବୋଲି ଆରମ୍ଭ କରି ଭାଷଣ ବର୍ଷା

ନ କରିଥିବା ଗ୍ରଜମାନେ ଅଥବା ପାର୍ଟିର ନେତା ଏହି ଦେଶରେ କେବେହେଲେ କୌଣସି ସ୍ଥାନରେ ନଥିବେ ।

ନଗରର ବସ୍-କେନ୍ଦ୍ରଟି ପଛଆଡ଼କୁ ଲାଗିଛି । ତା'ପରେ ଧବଳ-ଉଜ୍ଜ୍ୱଳ ଗଚକେନ୍ଦ୍ରିତ ସୁନ୍ଦର ସେହି କଚେରୀ-ଘର ଠିଆ ହୋଇଛି, ଯାହାର ଦୁଇପାଖରୁ ଧଳା ଅନେକ ସ୍ତମ୍ଭଦ୍ୱାରା ବେଷ୍ଟିତ ଦୁଇଟି ଶ୍ରେଷ୍ଠ ମଣ୍ଡପଦ୍ୱାରା ଶୋଭାନ୍ୱିତ ହୋଇ ରହିଛି । ତାହାର ଫାଟକ ପର୍ଯ୍ୟନ୍ତ ଆସିବା ମାତ୍ରକେ ତାଙ୍କର ସମ୍ମୁଖରେ କୁହୁଡ଼ିର ସ୍ତରରେ ଏକ ସ୍ୱପ୍ନଦୃଶ୍ୟ ସଦୃଶ ଶ୍ରୀ ପଦ୍ମନାଭ ସ୍ୱାମୀଙ୍କର ମନ୍ଦିର 'ଗୋପୁରମ୍' ପରମ ପବିତ୍ର ରୂପରେ ଆସି ପ୍ରକଟ ହୋଇଗଲା ।

କଚେରୀ-ଘରର ପ୍ରାଙ୍ଗଣରେ କ୍ଷଣେ ଠିଆ ହୋଇ ସେ ଦେବାଳୟଟିକୁ ଦେଖୁ ଦେଖୁ ଆଖି ବନ୍ଦ କରିଦେଲେ ଏବଂ ଭକ୍ତି ଓ ଶ୍ରଦ୍ଧା ସହିତ ଦୁଇ ହାତକୁ ଯୋଡ଼ି ନମସ୍କାର କଲେ ।

ପୁନଶ୍ଚ, କଚେରୀ-ଘରର ହତା ଭିତରକୁ ଆସିବା ମାତ୍ରେ ହିଁ ଅନ୍ୟ ନାନା ପ୍ରଦେଶରୁ ଆସି ପହଞ୍ଚିଥିବା ଏକ୍ସପ୍ରେସ-ଯାତ୍ରୀଙ୍କର ଦୁଇ ତିନୋଟି ବସ୍ ଉପରେ ବି ତାଙ୍କର ଆଖି ପଡ଼ିଗଲା ।

ପଦ୍ମନାଭସ୍ୱାମୀଙ୍କର ପୂଜାପାତ୍ରମାନ ଓ ଗ୍ରେଷଘରର ବଡ଼ ବଡ଼ ହଣ୍ଡା ବାସନ ପ୍ରଭୃତି ଆଗେ ଯେଉଁଠାରେ ମଜା ଓ ଧୁଆ ହେଉଥିଲା ସେହି ପାଦ ସରୋବର ବାଥର ବାଆଁ ପଟକୁ ଅନାଇଟିଏ ପଣ ପଡ଼ିରହିଛି । ବର୍ତ୍ତମାନ ସେଥିରେ ଏତେ ଅଧିକ ପରି-ମାଣରେ ଶିଉଳ ମାଡ଼ିଯାଇଛି ଯେ ପାଣି ମୋଟେ ବାହାରକୁ ଦେଖାଯାଉ ନାହିଁ । ସେହି ପୁରୁଣା ବଡ଼ପୋଖରିଟି ବର୍ତ୍ତମାନ ପୁରୁଷ ଓ ସ୍ତ୍ରୀମାନଙ୍କ ଦ୍ୱାରା ପୁଣ ମୁଖ୍ୟ ପାଇଁ ନିର୍ବାଚିତ ହେଉଥିବା ଏକ ଅପୂର୍ବ ପାବନତୀର୍ଥ ହୋଇ ରହିଛି ।

ପୋଖରିଟିକୁ ଲାଗି କରି ଦୁର୍ଗ-ପୋଲିସ୍‌ର ଗୋଟିଏ ଫାଣ୍ଡି-ଅଫିସ୍ । ତାହାର ବାଆଁ ପଟକୁ ଗୋଟିଏ ଏକାନ୍ତ ମାର୍ଗ ଲମ୍ବା ହୋଇ ଚାଲିଯାଇଛି । ସେହି ମାର୍ଗଟିର କଡ଼କୁ ବାଲମୁକୁଳା କରି ଠିଆ ହୋଇଥିବା 'କାନ୍ତ୍ରାଡ଼ି' ଗଛଗୁଡ଼ିକ ତଳେ ଅବସ୍ଥିତ ପ୍ରାସାଦ-କାର୍ଯ୍ୟାଳୟଟିକୁ ଦେଖୁ ଦେଖୁ ଅନନ୍ତନ୍ ନାୟର୍ ସଡ଼କର ମଝିରେ କରି ଆସି ଛିଡ଼ା ହୋଇଗଲେ ।

ଏହି ମନ୍ଦିରର ଯାବତୀୟ କାର୍ଯ୍ୟକୁ ମହାରାଜ ପଦ୍ମନାଭ ଦାସ ଏହି କାର୍ଯ୍ୟା-ଳୟଟି ଜରିଆରେ ହିଁ କରାଉଥାନ୍ତି । "ହଁ···ଏହି କାର୍ଯ୍ୟାଳୟର ମୁଖ୍ୟ କେନ୍ଦ୍ରଟିରେ ମୁଁ ବି ତିରିଶି ବର୍ଷରୁ ଅଧିକ ସମୟ କାର୍ଯ୍ୟ କରିଛି"—ମନ ଭିତରକୁ ଏହି କଥାଟି ଆସିବା ମାତ୍ରକେ ତାଙ୍କ ମୁହଁରୁ ଛିଟି ହୋଇ ଗୋଟିଏ ଦୀର୍ଘଶ୍ୱାସ ବାହାରି ଆସିଲା ।

ସିଏ ଯେଉଁଠି ଠିଆ ହୋଇଥିଲେ, ସେଠାରୁ ଗ୍ରାନାଇଟ୍ ପଥରଗୁଡ଼ାକ ସ୍ପଷ୍ଟ ଆଡ଼କୁ ବାହାରିଯାଇଥାନ୍ତି । ସେଗୁଡ଼ିକ ଉପରେ ରଙ୍ଗ ଲଗାହୋଇଥିବା ଅଳଙ୍କାରଗୁଡ଼ିକର ଗୋଟିଏ ପଂକ୍ତି ଲମ୍ବ ହୋଇ ଦିଶୁଥିଲା । ନବରାତ୍ର ସମୟରେ ପଦ୍ମନାଭସ୍ୱାମୀଙ୍କ ଶୋଭା-ଯାତ୍ରାରେ ଆସି ସରସ୍ୱତୀ ଦେବୀ ଯେଉଁଠାରେ ବିଶ୍ରାମ କରନ୍ତି, ସେହି ନବରାତ୍ରି ମଣ୍ଡପଟି ବାଆଁ ପଟକୁ ବେଶ୍ ଦେଖାଯାଉଥାଏ । ସିଏ କିଛି ଦୂର ଆଗକୁ ଗଲେ ଓ ଉପରକୁ ମୁହଁ କରି ଦେଖିବାକୁ ଲାଗିଲେ । ନବରାତ୍ର ମଣ୍ଡପ ଉପରେ ଅନେକ ଉଚ୍ଚକୁ ରହିଥିବା ଓ 'ଫିରଙ୍ଗି ଘଣ୍ଟା' (୧) ବୋଲି କୁହାଯାଉଥିବା ସେହି ବଡ଼ଘଣ୍ଟାଟିର ମଝିରେ ଥିବା ରାକ୍ଷସର ମୁହଁଟା ସତେଅବା ଖେଳିଯିବାକୁ ଲାଗିଲା । ଦାନ୍ତଗୁଡ଼ାକ ବାହାରକୁ ବାହାରିଗଲା । ଠିକ୍ ସେହି ସମୟରେ ହଠାତ୍ ଦୁଇ ପଟରୁ ଦୁଇଟି ଖେଳନା ଛେଳି ବାହାରକୁ ବାହାରି ପଡ଼ିଲେ ଓ ସେହି ମୁହଁଟିର ଗାଲ ଉପରେ ଆସି 'ଟପ୍' କରି ଧକ୍କା ବାଜିଗଲେ ।

ଘଡ଼ିଟିର ଗ୍ରେଟ କଣ୍ଟା ତିନି ଉପରେ ଓ ବଡ଼ କଣ୍ଟା ଛଅ ଉପରେ ଅଛି ବର୍ତ୍ତମାନ ସାଢ଼େ ତିନି ବାଜୁଛି ।

ଫିରଙ୍ଗି ଘଣ୍ଟା ବାଜିବାକୁ ଲାଗିଲା । ପହରାରେ ନିଯୁକ୍ତ ପୋଲିସ୍ ସିପାହୀ ଜଣକ ତଳେ ଝୁଲୁଥିବା କଂସା ଘଣ୍ଟା ଉପରେ ଗୋଟାଏ କାଠର ହାତୁଡ଼ି ଧରି ଜୋର କରି ଥରେ ପିଟିଦେଲା ଏବଂ ସେହି ଧ୍ୱନିର ବନ୍ୟାରେ ସମସ୍ତ ନଗରଟି କ୍ଷଣକ ପାଇଁ ସତେଅବା ଏକାବେଳକେ କମ୍ପି ଉଠିଲା । ରାତି ହେଉ ବା ଦିନ ହେଉ, ଆପଣାର ଶବ୍ଦଟି ଦ୍ୱାରା ନଗରରେ କାଳଗଣନାର ସୂଚନା ଦେବା ହେଉଛି ଏହି ମହାନାଦର କାର୍ଯ୍ୟ ।

ସ୍ୱରଟା ବାଜିଲେ ଯାଇ ନିର୍ମାଲ୍ୟ-ପୂଜା ପାଇଁ ମନ୍ଦିର ଭିତରକୁ ଯିବାକୁ ଦେବେ । ଆହୁରି ଅଧଘଣ୍ଟାଏ ବାକି ଅଛି । ସେତେବେଳ ଯାଏ କେଉଁଠି ଯାଇ ବସିବାକୁ ହେବ ?

---

(୧) ତିରୁଅନନ୍ତପୁରମ୍‌ର ଶ୍ରୀ ପଦ୍ମନାଭସ୍ୱାମୀଙ୍କ ମନ୍ଦିରରେ ଏକ ଭବନ ଉପରେ ଗୋଟିଏ ବଡ଼ ଘଣ୍ଟା ଅଛି ଯାହାକୁ କି ସେଠା ଲୋକମାନେ 'ମେତ୍ତମଣି' (ଫିରଙ୍ଗି ଘଣ୍ଟା) ବୋଲି କହନ୍ତି । ସେଥିରେ ଏକ ଭୟଙ୍କର ଚେହେରାର ଆକୃତିଟିଏ ରହିଛି । ଯେତେବେଳେ ଘଣ୍ଟା ବାଜିବାକୁ ଆରମ୍ଭ କରେ, ସେତେବେଳେ ସେହି ଚେହେରାଟି ମୁହଁ ଖୋଲିଦିଏ ଓ ତା'ର ଦୁଇ ପଟରୁ ଦୁଇଟି ଖେଳନା-ଛେଳି ତା' ଗାଲ ଉପରେ ଏକାବେଳେକେ ଆସି ଧକ୍କା ଖାଆନ୍ତି । ଘଣ୍ଟାର ବାଜିବା ଓ ଛେଳିଙ୍କର ଧକ୍କା ମାରିବା ଏକାସାଙ୍ଗରେ ଚାଲିଥାଏ, ଧକ୍କା ବାଜିବା ମାତ୍ରକେ ଚେହେରାଟି ମୁହଁ ବନ୍ଦ କରିଦିଏ । ଘଣ୍ଟା ଯେତେଥର ବାଜେ, ଠିକ୍ ସେତିକିଥର ଏହିପରି ହେବାରେ ଲାଗିଥାଏ ।

ଅନନ୍ତନ୍ ନାୟର୍ ଖୁବ୍ ସକାଳେ 'ଫିରଙ୍ଗି ଘଣ୍ଟା' ଆଗରେ ଅଟକି କରି ଠିଆ ହେଲେ । ଉପରକୁ ଉଠି ମନ୍ଦିର ଆଡ଼କୁ ଯାଇଥିବା ପାହାଚ ମନ୍ଦିରର ଅଗଣା ଓ ପ୍ରତ୍ୟେକ ମାହାଳରେ ଥିବା ଗମ୍ବୁଜଗୁଡ଼ିକରେ ଚକ୍ ଚକ୍ କରୁଥିବା ଦୀପଗୁଡ଼ିକ ଆଡ଼କୁ ଏକାଗ୍ର ହୋଇ ଅନାଇ ସାରି ସିଏ ମୁହଁ ବୁଲାଇ ଚାଲିବାକୁ ଲାଗିଲେ ।

ବାଆଁ ପଟକୁ ଜ୍ଞାନାନନ୍ଦ ସ୍ୱାମୀଙ୍କର ଆଶ୍ରମଟି ଆଡ଼କୁ ବୁଲି ବୁଲି ଯାଇଥିବା ଗୋହିରୀଟିରେ ଯାଇ ପହଞ୍ଚିଲେ । ଆଶ୍ରମ ଆଗରେ ଅଶ୍ୱତ୍ଥ ଗଛଟିର ତଳେ ନାଗ-ମୂର୍ତ୍ତି ଗୁଡ଼ିକର ଚାରିପାଖରେ ନିର୍ମିତ ପଥରର ବିଶାଳ ଚବୁତରାଟି ଉପରେ ଯାଇ ବସି ପଡ଼ିଲେ ।

ବର୍ତ୍ତମାନ ଦେବାଳୟର ବଡ଼ 'ତୀର୍ଥ-ସରୋବର'ଟି ତାଙ୍କ ସମ୍ମୁଖରେ ବେଶ୍ ସ୍ପଷ୍ଟ ହୋଇ ଦେଖାଯାଉଛି । ଲୋକମାନେ ଯେପରି ସେଇଟିକୁ ମଇଳା କରି ନ ପକାଇବେ, ସେଥିଲାଗି ଚତୁର୍ଦ୍ଦିଗରୁ ଲୁହାତାରର ବାଡ଼ ଭିତରେ ତାହାକୁ ବନ୍ଦୀ କରି ଦିଆଯାଇଛି । ଦେବାଳୟ ଗୋପୁରର ଦୁଇଟି ଦୀପର ପ୍ରତିବିମ୍ବ ପାଣି ଭିତରେ ଚକ୍ ଚକ୍ ହୋଇ ଆନନ୍ଦରେ ନାଚିବାରେ ଲାଗିଛନ୍ତି । କିଛି ସମୟ ପର୍ଯ୍ୟନ୍ତ ସେହିପରି ଭାବରେ ଏକାଗ୍ର ହୋଇ ପାଣି ଆଡ଼କୁ ଅନାଇ ରହିଲେ ପ୍ରାୟ ଏପରି ଏକ ଭ୍ରମ ଉତ୍ପନ୍ନ ହେଉଛି ଯେପରି କି ତାହା ଭିତରେ ପ୍ରକୃତରେ ଗୋଟିଏ ନଗର ହିଁ ସଂସ୍ଥାପିତ ହେବାରେ ଲାଗିଛି ଓ ପୁଣି ଅଦୃଶ୍ୟ ହୋଇଯାଉଛି ।

ଅଶ୍ୱତ୍ଥ ଗଛଟି ଉପର ଡାଳଗୁଡ଼ିକର ପତ୍ରସବୁ ସିର ସିର ହେଉଛି । ସେହି ଗୋହିରୀଟିର ବସ୍ତିରେ କୌଣସି ଗୋଟିଏ ଘରୁ ଗୋଟିଏ ପିଲା କାନ୍ଦୁଥିବାର କ୍ଷୀଣ ଆବାଜ ଶୁଣାଯାଉଛି । ଦୂରରେ ଥିବା ପୋଲିସ୍ କାର୍ଯ୍ୟାଳୟରୁ ଗୋଟିଏ ପୋଲିସ୍ ଭ୍ୟାନ୍ ଘର୍ ଘର୍ ଶବ୍ଦ କରି ଡେଇଁ ଡେଇଁ ଚାଲିବାକୁ ଆରମ୍ଭ କଲାଣି ।

ପ୍ରକୃତିର ମୌନ ତପସ୍ୟାରେ ଲୀନ ହୋଇ ରହିବାର ଏହି ମଙ୍ଗଳମୟ ସମୟ··· । ଅନନ୍ତନ ନାୟର୍‌ଙ୍କ ମନରେ ହଠାତ୍ ଗୋଟାଏ କଥା ଆସି ମନେ-ପଡ଼ିଯାଉଛି । ହଁ, ଏହାଦ୍ୱାରା ମନ୍ଦିର ପ୍ରାଙ୍ଗଣ ଖୋଲିବା ପର୍ଯ୍ୟନ୍ତ ସମୟଟି ମଧ୍ୟ ବେଶ୍ ଅତିବାହିତ ହୋଇଯିବ ।

ପଦ୍ମାସନରେ ବସିବାକୁ ଚେଷ୍ଟା କରିବାକୁ ଯାଇ ଗୋଡ଼କୁ କାଟୁଛି । କେତେ ବର୍ଷ ତଳେ 'ପୁନ୍-ଚୁରେ' ଆଶ୍ରମରୁ ପ୍ରାପ୍ତ ହୋଇଥିବା ଅଭ୍ୟାସଟି ମଧ୍ୟ ବର୍ତ୍ତମାନ କାମ ଦେବାକୁ ନାହିଁ କରି ଦେଉଛି । "ହଁ, — ବର୍ତ୍ତମାନ କ'ଣ ଆଉ ସେହି ଟୋକା-ବେଳ ଅଛି । ବର୍ତ୍ତମାନ ତ ଆସି ପଚାଶ ବର୍ଷ ପଶିବାକୁ ହେଲାଣି··· ।"

ତଥାପି, ଦୁଇ ତିନିଥର ଟିକିଏ କଷ୍ଟ କରିବା ପରେ ପଦ୍ମାସନଟି ହୋଇଗଲା । ସେ ଆଖି ବନ୍ଦ କରିଦେଲେ, ନିଃଶ୍ୱାସର ଗତିକୁ ଧୀର କରି ଆଣିଲେ । ସେହିପରି ଭାବରେ ପ୍ରାଣାୟାମରେ ବସି ରହିଲେ ।

ବାହ୍ୟ ଜଗତଟି ମୂଢ଼ ହୋଇ ଆସିବା ମାତ୍ରକେ ଅନ୍ତଃ ଜଗତ ଜାଗ୍ରତ ହୋଇ ଉଠେ । ଅନ୍ତଃ ଜଗତକୁ ସେପରି ଭାବରେ ଜାଗ୍ରତ ହେବାକୁ ଛାଡ଼ିଦେବା ଯେ ବର୍ତ୍ତମାନ ଆଦୌ ସେତେ ଭଲ ହେବ ନାହିଁ ସିଏ ସେହିପରି ଅନୁଭବ କରିବାକୁ ଲାଗିଲେ । ଯାହା ସବୁବେଳେ ହୋଇଥାଏ, ବର୍ତ୍ତମାନ ମଧ୍ୟ ମନର ସଚେତନତା କୌଣସି ଭିତରେ କୋଣ-ଭିତରୁ କାତ୍ୟାୟିନୀର ଆକୃତିଟି ଧୀରେ ଧୀରେ ଆବର୍ତ୍ତିତ ହୋଇ ଆସିବାକୁ ଲାଗିଲା । ସେ ଝଟ୍ କରି ଆଖି ଖୋଲିଦେଲେ ।

କାତ୍ୟାୟିନୀଙ୍କୁ ଛାଡ଼ି କ'ଣ ସଂସାରରେ ଆଉ କୋଉଠି କିଛି ନାହିଁ ଯାହା ବିଷୟରେ କି କିଛି ଚିନ୍ତା କରି ହେବ ।

"ଭଗବାନଙ୍କର ଏତେ ନିକଟବର୍ତ୍ତୀ ହୋଇ ବସିଥିଲେ ମଧ୍ୟ ପୁଣି ଏହି ବୁଢ଼ା କାଳରେ କେବେ ମୋର ପତ୍ନୀ ହୋଇ ରହିଥିବା ସେହି କୃତଘ୍ନ ଦୁଷ୍ଟ ସ୍ତ୍ରୀ ଟାର କଥା ମନକୁ ଆଣି ତୋତେ କ'ଣ ଲଜ୍ଜା ଲାଗୁନାହିଁ ?" ତାଙ୍କର ଅନ୍ତରାତ୍ମା ପ୍ରଶ୍ନ କରିବାକୁ ଲାଗିଲା ।

ଦୃଢ଼ଚିତ୍ତ ହୋଇ ଶ୍ରୀ ପଦ୍ମନାଭଙ୍କର ଶୟନ ମୁଦ୍ରାକୁ ସେ ଅନ୍ତର୍ନେତ୍ରର ସମ୍ମୁଖକୁ ନେଇ ଆସିଲେ । ···ଏହାକୁ 'ଶ୍ରୀପାଦ ଭୂମି' ବୋଲି କହନ୍ତି ନା ! ଏହି ପବିତ୍ର ସ୍ଥାନ ଓ ଆଖପାଖରେ ବାତାବରଣ ଆପଣା ଭିତରେ କେତେକେତେ ଐତି-ହାସିକ ଘଟଣା ଏବଂ ଆନ୍ଦୋଳନକୁ ଲୁକ୍କାୟିତ କରି ରଖିଛନ୍ତି ।

ତାଙ୍କର ଶରୀର ରୋମାଞ୍ଚିତ ହୋଇ ଆସିଲା । ସିଏ ପୁଣି ଆଖି ଦୁଇଟିକୁ ବୁଜି ଆଣିଲେ । ତାଙ୍କର ଜିଭ ଅତ୍ୟନ୍ତ ସଂଚେତନ ଭାବରେ 'ଅନନ୍ତବନର ମାହାତ୍ମ୍ୟ' ନାମକ ପଦ୍ମନାଭସ୍ୱାମୀ ମନ୍ଦିରର ସ୍ଥଳ ପୁରାଣରେ ଥିବା ପଦ୍ୟଗୁଡ଼ିକୁ ଧୀର ସ୍ୱରରେ ଉଚ୍ଚାରଣ କରିବାକୁ ଲାଗିଲା । ଅଧରରୁ ଉଚ୍ଚାରିତ ହେଉଥିବା ଶବ୍ଦଗୁଡ଼ିକର ଅର୍ଥର କବଳରୁ ଆପଣାକୁ ମୁକ୍ତ କରିନେଇ ପାରିବା ପାଇଁ ଅପଣାର ଛଟପଟ ହେଉଥିବା ମନଟିକୁ ସେ ବଳପୂର୍ବକ ଅସ୍ୱର ମଧ୍ୟକୁ ଆଣି ସେହିସବୁ ଶବ୍ଦର ସ୍ୱଚ୍ଛତା ମଧ୍ୟରେ ବନ୍ଦୀ କରି ରଖିଲେ । ଇଏ ତ ତାଙ୍କ ଦ୍ୱାରା ଆଜି ବା କାଲି କରାଯାଉଥିବା କୌଣସି ନୂଆ ଅଭ୍ୟାସ ନଥିଲା । ଗତ ପନ୍ଦର ବର୍ଷ ହେଲା ପ୍ରାଣପଣ ଚେଷ୍ଟା କରି ଆସିଥିଲେ ମଧ୍ୟ ତାଙ୍କର ସେହି ସାଧନାଟି ସିଦ୍ଧ ହୋଇନାହିଁ ବରଂ ତଥାପି ଅସିଦ୍ଧ ହୋଇ ରହିଥିଲା । ମଝିରେ ମଝିରେ ଆସି ବିରକ୍ତ କରୁଥିବା ପାରିବାରିକ ସ୍ମୃତିଗୁଡ଼ାକୁ ପଲକ-କପାଟର ବାହାରକୁ ଠେଲି ରଖିବାକୁ ଚେଷ୍ଟା କରି ଅପଣାର ବସିବା ଥାନଟିର ସ୍ଥଳ ପୁରାଣର ଦୃଶ୍ୟଗୁଡ଼ିକୁ ମଧୁର ସ୍ୱପ୍ନର ରୂପ ଦେଇ ସେଗୁଡ଼ିକୁ ଅନ୍ତରର ଘରଆଡ଼କୁ ନେଇ ବୁଲାଇ ଦେବାକୁ ସିଏ ଯଥାଶକ୍ତି ଚେଷ୍ଟା କରିବାକୁ ଲାଗିଲେ ।

# ଦୁଇ

ହୃଦୟର ବେଦୀ ଉପରେ ଆଧ୍ୟାତ୍ମିକ ସୃଷ୍ଟିମୂଳକ ପ୍ରତିଷ୍ଠିତ କରିବା ନିମିତ୍ତ ଏହି କଠୋର ସାଧନା…

ପରଶୁରାମ ଆପଣାର ପରଶୁଟିକୁ ଫୋପାଡ଼ି ଦେଇ ସମୁଦ୍ର ଭିତରୁ ଯାହାକୁ ଆବିର୍ଭୂତ କରାଇ ଆଣିଥିଲେ, ସେହି ପାବନ ଭୂଇଁରେ…

ଦେଶ ଓ ନଗର, ସହର ଆଉ ବଜାର ଠିଆ ହୋଇ ସମୃଦ୍ଧିମନ୍ତ ହୋଇ ଉଠିବା ପୂର୍ବରୁ ହିଁ ··ଏହି ସ୍ଥାନଟିରେ ଭଲ୍ଲୁକଙ୍କର ବନ୍ୟଜନ୍ତୁମାନଙ୍କର ନିବାସ ଘୋର ଅରଣ୍ୟ ମଧ୍ୟରେ ବସ୍ତୃତ ହୋଇ ରହିଥିବା ସେହି ସମୟରେ ଦିନେ…

ଭକ୍ତଶ୍ରେଷ୍ଠ ବିଲ୍ୱମଙ୍ଗଳ ମହର୍ଷି, ଯାହାଙ୍କୁ ଲୋକେ ଦିବାକର ମୁନି ବୋଲି ମଧ୍ୟ କହୁଥିଲେ – ସବୁଦିନ ପରି ଯେମିତି ଶାଳଗ୍ରାମଟିକୁ ରଖି ବାଳକୃଷ୍ଣଙ୍କର ଧ୍ୟାନ କରି ଯେତେବେଳେ ପୂଜାମଗ୍ନ ହୋଇ ରହିଥିଲେ, ସେତେବେଳେ ତାଙ୍କର କର୍ଣ୍ଣପୁଟରେ ମଂଜୀରର ମନ୍ଦମଧୁର ରୁଣୁଝୁଣୁ ଧ୍ୱନି କୁଆଡ଼ୁ ଆସି ଶୁଭିବାକୁ ଲାଗିଲା । ସିଏ ଆଖି ଫିଟାଇ ଅନାଇଲେ । ଗାଇ ଚରାଉଥିବା ସାନପିଲାଟିଏ ଠୋ' ଠୋ' ହୋଇ ହସି ପବିତ୍ର ପୂଜାସାମଗ୍ରୀଗୁଡ଼ିକୁ ହାତ ଆଉ ଗୋଡ଼ରେ ଅସ୍ତବ୍ୟସ୍ତ କରି ପକାଇ ଦୁଷ୍ଟାମି କରି ଖେଳିବାରେ ଲାଗିଛି । ଏଭଳି ଏକ ଅପରୂପ ଆଖିରେ ପଡ଼ିବାରୁ ଓ ଏକଥାଟି ପ୍ରକୃତରେ କେଡ଼େ ବଡ଼ ବିଡ଼ମ୍ବନା, ସେକଥା ଚିନ୍ତା କରି ସେ ହଠାତ୍ ଉତ୍ତେଜିତ ହୋଇପଡ଼ିଲେ ଏବଂ ବାଆଁ ହାତରେ ବାଳକଟିକୁ ଘୁଂଚାଇ ଦେଇ ପକାଇଲେ । ସେତେ-ବେଳେ ଏକ ଅଦୃଶ୍ୟ ବାଣୀ ଶୁଣାଗଲା, "ମୋର ଦର୍ଶନ ପାଇବା ସକାଶେ ଦୀର୍ଘ କାଳରୁ ତପସ୍ୟା କରୁଥିବା ହେ ତପସ୍ୱୀ, ଯେତେବେଳେ ମୁଁ ତୋତେ ଦର୍ଶନ ଦେବାଲାଗି ଆସିଲି, ସେତେବେଳେ ତୁମେ ପୁଣି ମୋତେ ଚଟକଣା ମାରି ବାହାର କରିଦେଲ !… ଯଦି ମୋତେ ପୁନର୍ବାର ଦେଖିବାକୁ ଇଚ୍ଛା କରୁଥାଅ, ତେବେ ତୁମେ ଅନନ୍ତବନକୁ ଆସ ।"

"ହାୟ ! ହାୟ ! ମୁଁ ସତେ କେଡ଼େ ଅପରାଧ ନ କଲି…ଏକଥା କହି ଅନୁତାପ କରି କାନ୍ଦି କାନ୍ଦି ଦୁଃଖାର୍ତ୍ତ ହୋଇ ଅନବରତ କ୍ରମଶଃ ଦୂରକୁ ଦୂରକୁ ଚାଲିଯାଉଥିବା ରୁଣୁଝୁଣୁ ଧ୍ୱନିର ଅନୁସରଣ କରି ସେହି ମୁନି ଅନନ୍ତବନର ସନ୍ଧାନରେ ଗତି କରିବାକୁ ଲାଗିଲେ । ଯାଇ ଯାଇ ବାଟ ଭୁଲିଗଲେ । ଶେଷରେ ଜଣେ ବ୍ୟାଧ-କନ୍ୟା ତାଙ୍କୁ ବାଟ ବତାଇଦେଲା ଏବଂ ସିଏ ଆସି ସେହି ବନରେ ପହଞ୍ଚିଗଲେ । ସେଠାବରି ……

ଶ୍ରୀଦେବୀ ଓ ଭୂଦେବୀ ପାଖରେ ଆସୀନ ରହିଥିଲେ—
କମଳ-ନାଭି ଉପରେ ଚତୁର୍ମୁଖ ଆସୀନ ରହିଥିଲେ,
ଅନନ୍ତ ନାଗର ଆନନ୍ଦମୟ ଶଯ୍ୟା ଉପରେ—
'ତିରୁଓ୍ବାକ୍ଷ' ଉପରେ ମୁଣ୍ଡ,
ଅନନ୍ତବନରେ ଦେହ,
'ତିରୁ-ପ୍-ପାପ୍ପୁର'ରେ ଶ୍ରୀପାଦ

ଏହିପରି ଅଠର ମାଇଲ ପର୍ଯ୍ୟନ୍ତ ବ୍ୟାପ୍ତ ହୋଇ ଶୟନ କରିଥିବା ଭଗବାନଙ୍କୁ ନମସ୍କାର କରି ସେବା କରିବାର ପ୍ରଣାଳୀକୁ ଜାଣି ନ ଥିବାରୁ ବିଲ୍ୱମଙ୍ଗଳ ସ୍ତବ୍ଧ ହୋଇ ଦଣ୍ଡାୟମାନ ରହିଲେ ଓ ପ୍ରାର୍ଥନା କରିବାକୁ ଲାଗିଲେ । ତା'ପରେ ଭଗବାନ ଆପଣାର ଆକୃତିଟିକୁ ଅଠରପାଦ ପରିମାଣକୁ ସଙ୍କୁଚିତ କରି ଆଣିଲେ ଓ ଦର୍ଶନ ଦେଲେ । ସେହି ଭଗବାନଙ୍କର ଉପାସନା କରିବା ପାଇଁ ନୈବେଦ୍ୟର ଉପଯୁକ୍ତ ପଦାର୍ଥ ବି କେଉଁଠି ହେଲେ ମିଳିଲା ନାହିଁ । ସେଥିଠୁ ସିଏ ସେହି ବ୍ୟାଧକନ୍ୟା ପାଖକୁ ଗଲେ ଓ ଅତ୍ୟନ୍ତ ଭକ୍ତିଭାବ ସହକାରେ ଅରୁଆ ଚାଉଳର ଖାଜ ଓ ଆମ୍ବ ଆଚାରକୁ ତା'ଠାରୁ ନିଜ ଅଞ୍ଜୁଳାରେ ମାଗି ନେଇ ଆସିଲେ ଓ ତାହାକୁ ନୈବେଦ୍ୟରୂପେ ସମର୍ପଣ କରି ପ୍ରସନ୍ନଚିତ୍ତ ହେଲେ ..

ଏହିପରି ସ୍ୱରରେ ଲେଖା ହୋଇଥିବା ସ୍ଥଳପୁରାଣର ପଦ୍ୟଗୁଡ଼ିକ ଅନନ୍ତନ୍ ନାୟର୍‌ଙ୍କର ଅଧରକୋଣରୁ ଉଚ୍ଚାରିତ ହୋଇ ତାଙ୍କର ମନ-ମୁକୁର ଉପରେ ଯାଇ ପଡ଼ିବାକୁ ଲାଗିଲେ ଓ ଦୃଶ୍ୟମାନ ହେବାଲାଗି ସଂଘର୍ଷ କରିବାକୁ ଲାଗିଲେ । ତାଙ୍କ ଅନ୍ତରର ଗଭୀରତା ମଧ୍ୟରୁ ଅପରିଚିତ ମାୟାମୟ ଧୂମ୍ରରେଖାଗୁଡ଼ିକ ମଧ୍ୟ ଅଦମ୍ୟ ଗତିରେ ଉଚ୍ଛୁଳି ପଡ଼ି ବଡ଼ ନିରର୍ଥକ ଢଙ୍ଗରେ ଘରଆଡ଼େ ବ୍ୟାପ୍ତ ହୋଇଗଲେ ଏବଂ ତାଙ୍କର ନିଃଶ୍ୱାସକୁ ଘାଣ୍ଟି ପକାଇଲେ ।

ତାଙ୍କର ଅନ୍ତଃକରଣରେ ଜଣେ ଆଜାନୁବାହୁ ବୃଦ୍ଧଙ୍କର ଆକୃତି ପ୍ରତିବିମ୍ବିତ ହୋଇ ଉଠିଲା । ବୃଦ୍ଧଙ୍କର ପାଦରେ କଠାଉ, ବେକରେ ବଡ଼ ବଡ଼ ସ୍ୱର୍ଣ୍ଣମୁକ୍ତାର ମାଳା ଦୁଇ କାନର ଦାଢ଼ି ଉପରେ ଘନ ହୋଇ ଉଠିଥିବା କଳା ବାଳଗୁଡ଼ିକ ମଧ୍ୟରେ ରକ୍ତ-ବର୍ଣ୍ଣ କାନ୍ତି ବିକୀରଣ କରୁଥିବା କୁଣ୍ଡଳ । ସତେ ଯେପରି କେହି ଚନ୍ଦନ ଘୋରି ଲଗାଇ ଦେଇଛି ସେହିଭଳି ହଳଦିଆ ହୋଇ ଦିଶୁଥିବା ମୁଣ୍ଡଟି ଉପରେ ଯେଉଁଠି ମନ ସେଠି ଚକ୍ ଚକ୍ ହେଉଥିବା ରଜତକେଶ, ଲଲାଟ ଉପରେ ସୁରଭିତ ବିଶାଳ ଚନ୍ଦନ-ବିନ୍ଦୁ । ମଧ୍ୟ ବୟସ ପ୍ରାପ୍ତ ହୋଇପଡ଼ିଥିବା କୁଙ୍କୁମର ବୃତ୍ତ ଏହିପରି ଗୋଟିଏ ବିଲକ୍ଷଣ ଓ ବିଚିତ୍ର ଆକୃତିର କଟି ଉପରେ ଧବଳଶୁଭ୍ର ଧୋତି, ଧୋତିରେ ପ୍ରାପ୍ତ ଦୁଇ ଆଙ୍ଗୁଳ

ସରକ କଲା ଧଡ଼ି ଏବଂ ଶରୀରର ଉପର ଭାଗରେ ଚେତ୍ଲାପଡ଼ିଆ ଧଡ଼ି ରହିଥିବା ଖଣ୍ଡେ ଚାଦର ।

ଇଏ ଗତ କେତେବର୍ଷ ହେଲା ପରଲୋକ ଗମନ କରିଥିବା ତାଙ୍କର ଅଚଳ୍ (ପିତା) ନା ? ପାଲ୍-କ-କୁଲେ କରେ କୁଟୁମ୍ବର ଯିଏ ହେଉଛନ୍ତି କର୍ତ୍ତା···ନାୟର୍ ବଂଘର ସ୍ଥାନୀୟ ଶାଖାର ସର୍ବପଥ ଭଗବତପିଲୈଙ୍କର ଭୂଷପ୍ରଭାବ ଓ ବଳଭୂଲୀ ହୃଦୟକୁ ନ ଜାଣିଥିବା ଲୋକ କଦାପି କେଉଁଠିହେଲେ ନଥିବେ । କିନ୍ତୁ ଏତେଯାଏ ହୋଇଥିଲେ ମଧ୍ୟ ଯିଏ ଆମ ଭିତରୁ— ଆପଣାର ପୁଅମାନଙ୍କ ଭିତରୁ, କାହାକୁ କୂଳରେ ଲଗାଇ ପାରିଲେ ? ଯାହାକରୁ ସମ୍ପତ୍ତି ଓ ଯାହାକରୁ ମର୍ଯ୍ୟାଦା ସବୁ ଯାଇ ତ ସେଇ ଗୋବର୍ଦ୍ଧନ ନାୟର୍‌ଙ୍କ ହାତରେ ଯାଇପଡ଼ିଲା । ଗୋବର୍ଦ୍ଧନ ନାୟର୍ ତାଙ୍କର ଏକମାତ୍ର ଭଗିନୀ କୁନ୍ତ ଲକ୍ଷ୍ମୀଙ୍କର ଗୋଟିଏ ବୋଲି ପୁଅ ଥିଲା । ଏଇ ଭଉଣୀ ଓ ଟଣକର୍ତ୍ତାଙ୍କର ସମସ୍ତ ସମ୍ପତ୍ତିର ହିଁ ମାଲିକ ହେବାକୁ ଆସେ !

ହୁ । ଗୋବର୍ଦ୍ଧନ ନାୟର୍‌କୁ ତାଙ୍କର ପିଉସୀ କୁନ୍ତଲକ୍ଷ୍ମୀ ହିଁ ଜନ୍ମ ଦେଇ-ଥିଲେ । ସେଥିରେ ଆଦୌ କୌଣସି ସନ୍ଦେହ ନାହିଁ । ମାତ୍ର ଯିଏ କ'ଣ ପ୍ରକୃତରେ ସେହି ଶଂକୁଣ୍ଣି ନାୟର୍‌ଠାରୁ ହିଁ ଜନ୍ମଗ୍ରହଣ କରିଥିଲା, ଯାହାଙ୍କ ସହିତ ତାଙ୍କର ପିତା ତାଙ୍କୁ ଧାନ ବସ୍ତା ହୋଇଥିବା ବେଦୀ ଉପରେ ନଡ଼ିଆ ଗଛର ଚଅଁର ଆଉ ଡାଳକୁ ଯୋଡି ଛାଉଣି ହୋଇଥିବା ବିବାହ-ମଣ୍ଡପରେ ମହୁସ୍ତ ଓ ଅନୁର କେତେକେତେ ବାଜା ବାଜୁଥିବା ବେଳେ ପରସ୍ପରର ମୁଦି ବଦଳାଇ ଦେଇ ବିବାହ କରି ଦେଇଥିଲେ ?

ସମ୍ଭବତଃ ଭକ୍ତମାନେ ଜଳାଶୟ ମଧ୍ୟକୁ ଓହ୍ଲାଇ ସ୍ନାନ କରିବାକୁ ଆରମ୍ଭ କଲେଣି । ତା' ସହିତ ଲୁଗା ହକାକୁ ଥିବାର ଝପ ଝପ ଶବ୍ଦ ମଧ୍ୟ ବେଶ୍ ଶୁଣାଯାଉଛି । ଓ ସେହି ଶବ୍ଦ ଉପସ୍ଥିତ ପାଖରେ ରହିଥିବା କୂଳ ପର୍ଯ୍ୟନ୍ତ ପ୍ରତିଧ୍ୱନିତ ହୋଇ ପୁଣି ଲେଉଟି ଆସୁଛି ।

କେଉଁଠି ଦୂରରେ କାଉମାନେ କାଆଁ କାଆଁ କରି ଉଠିଲେ ।

ହୁଁ !·· ସମସ୍ତେ କହନ୍ତି ଯେ ତାଙ୍କର ପିଉସା ଶଂକୁଣ୍ଣି ନାୟର୍ ପିଉସୀ କୁନ୍ତଲକ୍ଷ୍ମୀଙ୍କ ସକାଶେ ହିଁ ପ୍ରାଣ ରଖିଥିଲେ । ସମସ୍ତେ ଏକଥା ମଧ୍ୟ କହନ୍ତି ଯେ ତାଙ୍କ ପିଉସୀଙ୍କ ଠାରୁ ଯିଏ ବୟସରେ କେବଳ ଦୁଇ ବର୍ଷ ମାତ୍ର ବଡ଼ ଥିଲେ । ସୁସ୍ଥ ଦେହ । ସୁନ୍ଦର ଆଉ ପାତଳା ନବଯୁବକ । ତାଙ୍କର ବାପା ମଧ୍ୟ ବେଶ୍ ପରିଶ୍ରମ କରିବା ପରେ ପରେ ଯାଇ ଶଂକୁଣ୍ଣି ନାୟରଙ୍କୁ କୁନ୍ତଲକ୍ଷ୍ମୀ ସକାଶେ ଖୋଜି ପାଇ ପାଇଥିଲେ । ହୁଁ :···ଏତେ କଥା ହୋଇଥିଲେ ମଧ୍ୟ...

ଗଛଗୁଡ଼ାକ ଉପରେ ପବନର ଝିରଝିର ଶବ୍ଦ ··ମୁଣ୍ଡ ଉପରେ ଅସି ପଡ଼ୁଥିବା ଗୋଟିଏ ଦୁଇଟି ପାଚିଲା ପତ୍ରର ମୃଦୁ ସ୍ପର୍ଶ ।

ମାତ୍ର ଅଧଘଣ୍ଟାଏ ସମୟ ଲାଗି ମଧ୍ୟ ପାଞ୍ଚ ଇନ୍ଦ୍ରିୟଙ୍କୁ ଗୋଟିଏ ନିର୍ଦ୍ଦିଷ୍ଟ ବସ୍ତୁ ଉପରେ କେନ୍ଦ୍ରିତ କରି ଏକାଗ୍ର ରହିବା ଆଦୌ ସମ୍ଭବ ହୁଏ ନାହିଁ । ଆଖିରେ ପତାକୁ ବନ୍ଦ କରିଦେବା ମାତ୍ରକେ ଅତୀତର ନାନା ଅନାବଶ୍ୟକ, ଜଙ୍କ୍ ଲାଗିଯାଇଥିବା, ସ୍ମୃତି ଭିତରର କେତେ କ'ଣ କଥା · ···

ଏବଂ ଏହାର ମଧ୍ୟରେ ''ମୁଁ ବର୍ତ୍ତମାନ ମଧ୍ୟ ଏଇଠି ରହିଛି'' ବୋଲି କହି ଉତ୍ଥିତ ହୋଇଆସୁଥିବା କାତ୍ୟାୟିନୀର ସ୍ମୃତି

ଶୟନ ଅବସ୍ଥାରେ ଭଗବାନ ଏହି ସ୍ଥାନରେ ହିଁ ବିଲ୍ୱମଙ୍ଗଳଙ୍କୁ ତାଙ୍କର ବିଶ୍ୱରୂପ ଦେଖାଇଥିଲେ । ଏଇଠି ଠିକ୍ ଏହି ସ୍ଥାନଟିରେ ଆଗେ କେତେ ଘନ ଅରଣ୍ୟ ରହିଥିଲା ··

ଆଜି...
ଠାକୁରଙ୍କର ନିବାସର ସ୍ଥାନ ହୋଇଛି ।
ସେଇଁଠିକି ଦୃଷ୍ଟି ପଡ଼ୁ ନା କାହିଁକି, ଖାଲି ପ୍ରାସାଦଗୁଡ଼ାକ ରହିଛି...
ମନ୍ଦିରମାନେ ଅଛନ୍ତି ···
ସେହି ମନ୍ଦିର-ସମୁଦ୍ରରେ ସିଏ ନିଜେ ମଧ୍ୟ ଜଣେ ହୋଇ ରହିଛନ୍ତି···।
କାତ୍ୟାୟିନୀ ମଧ୍ୟ ଜଣେ ହୋଇ ରହିଛି...
ଆପଣାର ପୁଅ ପ୍ରଭାକରନ୍···
ଝିଅ ମାଧବୀ କୁଟ୍ଟୀ ··
ବନ୍ଧୁ କରି ମରିଥିବା ତାଙ୍କର ବାପା ଭଗବତ ପିଲ୍ଲାଇ ତ ରହିଛନ୍ତି...
ବୋଉ ବିଶ୍ୱେଶ୍ୱରୀ ଅମ୍ମା...
ପିଉସୀ କୁଞ୍ଜୁଲକ୍ଷ୍ମୀ, ଶଂକୁଣ୍ଣି ନାୟର୍
ବୋଚ୍ ଚକୃଷ୍ଣ କୁଟ୍ଟମ୍ବ କର୍ତ୍ତା ··

ଏକଦା ଏହି ମାଟିର ରକ୍ଷାକର୍ତ୍ତା ହୋଇ ରହିଥିବା ମହାରାଜା ! ହଁ ! ସେଇ ତ ତାଙ୍କର ବି ଅନ୍ନଦାତା ହୋଇ ରହିଥିଲେ ।

ପୁଣି...

ପୁଣି ...

—ଅନନ୍ତନ୍ ନାୟର୍ଙ୍କର ସମାଧି ଭାଙ୍ଗିଲା । ସିଏ ଆଖି ଖୋଲିଦେଲେ । ତାଙ୍କ ସାମନାରେ ଘୁରୁ ପାଞ୍ଚଜଣ ଯାତ୍ରୀ— ସମ୍ଭବତଃ ଉତ୍ତର ଭାରତୀୟ ଯାତ୍ରୀ । ଭକ୍ତିଭାବ ସହକ

ପଲକ ବନ୍ଦ କରି ପ୍ରଣାମ କରିବା ଅବସ୍ଥାରେ ଠିଆ ହୋଇଥିଲେ, ସେମାନଙ୍କର ପରିହିତ ଓଦା ଲୁଗାପଟାରୁ ମନେହେଉଥିଲା ଯେ ପଦ୍ମତୀର୍ଥରେ ମଜ୍ଜନ କରିସାରି ସେମାନେ ସେଠାରେ ଆସି ଠିଆ ହୋଇଥିଲେ । ଜଳାଶୟ ଭିତରେ ବି ଆହୁ କେତେଜଣ ବ୍ୟକ୍ତି ଗାଧୋଉ ଥିବାର ଦେଖାଯାଉଥିଲା ।

ଜଳ ଉପରେ ପ୍ରତିବିମ୍ବିତ ଗୋପୁର ଏବଂ ଗୋପୁର-ଧ୍ୱଜ ରେଶମର ପରଦା ପରି ଫର୍‌ଫର୍ ହେଉଥିଲେ । ଦୁଇଟା ଗୋଟାଏ କାହୁ ମଧ୍ୟ ଉଡ଼ୁଥିଲେ···

ଠିକ୍ ଏହି ସମୟରେ 'ମ୍ଳେଚ୍ଛଙ୍କ ଘଣ୍ଟା' ଓ ତା' ସହିତ କଂସାର ଘଣ୍ଟା ମଧ୍ୟ ରହି ରହି ବାଜିବାକୁ ଆରମ୍ଭ କଲେଣି ।

ସ୍ୱରଟା ବାଜିଲା ।

ବର୍ତ୍ତମାନ ପ୍ରାଙ୍ଗଣ ଖୋଲିଯିବଣି ।

ଯେକଥା ହେଜରେ ଆସିବା ସଙ୍ଗେ ସଙ୍ଗେ ପଥର ହିଗଟିକୁ ଝାଡ଼ିଝୁଡ଼ି ଅନନ୍ତନ୍ ନାମ୍ବୁର୍ ଉଠି ଠିଆହେଲେ ।

"ବାବାଜୀଙ୍କର ନିବାସ କେଉଁଠାରେ ?"—ଶୁଣି ଅନନ୍ତନ୍ ନାମ୍ବୁର୍ ଚମକି ପଡ଼ିଲେ । ନିଜର ହାତ ଦୁଇଟିକୁ ଯୋଡ଼ି କରି ତାଙ୍କ ପ୍ରତି ଅତ୍ୟନ୍ତ ବିନମ୍ରତା ଦେଖାଇ ପ୍ରଶ୍ନଟି ପଚାରିଥିବା ବ୍ୟକ୍ତିଙ୍କୁ ତାଙ୍କର ଆଖି ନିରୀକ୍ଷଣ କରି ଦେଖିବାକୁ ଲାଗିଲେ ।

ତାଙ୍କର ଆଙ୍ଗୁଠିଗୁଡ଼ିକ ଅକାରଣରେ ହିଁ ଗତ କେତେମାସ ଧରି ବଢ଼ି ଆସିଥିବା ଗହଳ ଦାଢ଼ି ଏବଂ ନିଶ ଉପରେ ବୁଲି ଆସିଲେ ।

"ମୁଁ ବାବା ଫାବା କିଛି ନୁହେଁ । ତୁମରି ପରି ଜଣେ ସାମାନ୍ୟ ମନୁଷ୍ୟ । ଦୁଆର ଖୋଲିଯିବଣି । ଚାଲ ଯିବା ଭଗବାନଙ୍କର ଦର୍ଶନ କରିବା ।"—କହି ବୁଲି କରି ନ ଦେଖି ଅନନ୍ତନ୍ ନାମ୍ବୁର୍ ଆଗକୁ ପଦକ୍ଷେପ ପକାଇଲେ ।

ସିଏ ବେଗଗତି ହୋଇଗଲେ ଓ ପାହାଚଗୁଡ଼ାକ ଉପରେ ଭୁସ୍ ଭୁସ୍ କରି ଚଢ଼ିଗଲେ । ମନ୍ଦିରର ଦ୍ୱାରରେ ହାତରେ ବନ୍ଧୁକ ଧରି ପହରା ଦେଉଥିବା ସିପାହୀ ଏବଂ ଶିଳାରୂପ ହୋଇ ପହରା ଦେଉଥିବା ମୂର୍ତ୍ତିଗୁଡ଼ିକୁ ପାର ହୋଇ ସିଏ କାନ୍ଥରେ ପଡ଼ିଥିବା ଗାମୁଛାକୁ ଅଣ୍ଟାରେ ଆଣି ଗୁଡ଼ାଇଦେଲା । ଦୁଇ ପଟରେ ଧାଡ଼ି ବାନ୍ଧି ଠିଆ ହୋଇଥିବା ଶିଳ୍ପ-ପ୍ରତିମାଗୁଡ଼ିକର ହାତରେ ଧୃତ ଦୀପଗୁଡ଼ିକର ଶୀତଳ ଜ୍ୟୋତିଦ୍ୱାରା ବହିର୍ଗତ ହୋଇଯାଉଥିବା ଆଲୋକ-ବୃତ୍ତଗୁଡ଼ିକୁ ଅବାଧ୍ୟ କରି ଅଧୀନସ୍ଥ କରି ନେଉଥିବା ଅନ୍ଧକାର-ଖଣ୍ଡଗୁଡ଼ିକ ହେତୁ ପାଦରେ ମାଟି ବାର ବାର ମାର୍ଗକୁ ଚିହ୍ନି ଦେଖି ଦେଖି, ଭିତରେ ଥିବା ଶ୍ରେଷ୍ଠ ଶ୍ରେଷ୍ଠ ପାହାଚ ଗୁଡ଼ିକୁ ଚଢ଼ି ପାର ହୋଇ, ତେମଣି କେ କାଁ ହେଉଥିବା ମନ୍ଦିରର ପ୍ରାକାର-ମାର୍ଗଟିରୁ ସେ କ୍ରମେ ଭିତରକୁ ଭିତରକୁ ଖସିଯିବାରେ ଲାଗିଥିଲେ ।

ଦେବାଳୟ ଭିତରେ ରହିଥିବା ଗୋଟିଏ ଶିଳା ନିର୍ମିତ ମଣ୍ଡପ ଉପରୁ 'ନାଦସ୍ୱର'ର ମୃଦୁ ତରଙ୍ଗଗୁଡ଼ିକ ପବନରେ ଭାସି ଆସୁଥିଲେ ଏବଂ ମଧୁରତା ଭରିଦେଇ କାନଭିତରେ ବୁଲିବାରେ ଲାଗିଥିଲେ ।

ମନ୍ଦିରର ଏକାନ୍ତ ପ୍ରାଚୀର ।

ଦୀର୍ଘିକା ଭିତରେ ଲମ୍ବ ଧାଡ଼ିରେ ମିଟି ମିଟି କରି ପଲକ ପକାଉଥିବା ଓ ପୁଣି ପଲକ ଉଠାଉଥିବା ଘୃତଦୀପ...

ଏହିସବୁର ମଝିରେ କରି ମସ୍ତକ ଉତ୍ତୋଳନ କରି ଠିଆ ହୋଇଥିବା ସ୍ୱର୍ଣ୍ଣମୟ ଧ୍ୱଜସ୍ତମ୍ଭଟି ସେହି ଆଲୁଅରେ ଚକ୍‌ଚକ୍ କରି ଉଠୁଛି ।

ତାହାର ପାଖକୁ ଲାଗି ଦଣ୍ଡାୟମାନ ରହିଥିବା ହନୁମାନଙ୍କର ବିରାଟ ମୂର୍ତ୍ତି ଉପରେ ଲିପା ହୋଇଥିବା ଲହୁଣୀର ଉଜ୍ଜ୍ୱଳତା ସହିତ, ନବନୀତର ମହକ...

ତାଙ୍କର ଦୃଷ୍ଟି ସଙ୍ଗେ ସଙ୍ଗେ, ଲୁଚି ଲୁଚି, ଡ଼ାହାଣ କୋଣଆଡ଼େ ବୁଲି ବୁଲି କ'ଣ ସବୁ ନିରୀକ୍ଷଣ କରିବାକୁ ଲାଗିଲା ।

ପୀତ ଦୀପକାନ୍ତିର ଅର୍ଦ୍ଧଦୀପ୍ତ ଆଲୋକରେ ପ୍ରଜ୍ୱଳିତ ହୋଇ ରହିଥିବା କଳା ରଙ୍ଗର ସେହି ମନୁଷ୍ୟାକାର ଶିଳ୍ପ-ପ୍ରତିମା···

ତାଙ୍କ ଦେହରୁ ଝାଳ ବୋହି ଆସିଲା । ତାହା ସଙ୍ଗେ ସଙ୍ଗେ କେତେକେତେ ଅନୁଭୂତିର ଗୋଟିଏ ମୃଦୁ ସ୍ପର୍ଶ...

ଇଏ ହେଉଛି ସେହି ମନ୍ଦିର, ଯେଉଁଠାରେ କି ସିଏ ବୟସରେ ତାଙ୍କର କାହିଁରୁ ମାଡି ହେଉ ହେବା ଦିନଠାରୁ ଆରମ୍ଭ କରି କେତେ ଦୀର୍ଘ କାଳରୁ କେତେ ଥର ଆସିକରି ଘଣ୍ଟା ଘଣ୍ଟା ଠିଆ ହୋଇ ରହି ଭଗବାନଙ୍କୁ ପ୍ରାର୍ଥନା କରି ଆସିଛନ୍ତି । ଏହି ମନ୍ଦିରଟିର ପ୍ରତ୍ୟେକ କୋଣ ତାଙ୍କ ପାଇଁ ତାଙ୍କ ନିଜ ହାତରେ ପାପୁଲିଟି ପରି ହିଁ ପରିଚିତ ହୋଇ ରହିଛି । ଏକଥା ସତ୍ତ୍ୱେ ସେହି ଚାତ୍ୟାପ୍ତିମା ହିଁ ତ ସିଏ ଯେତେବେଳ ଯାଏ ଦେଖି ପାରିନଥିବା ଶିଳ୍ପ-ପ୍ରତିମାଟି ଅତ୍ତ୍ୱ ତାଙ୍କର ଦୃଷ୍ଟି ଆକର୍ଷଣ କରି ଆଣିଥିଲା ସେକଥା ଯାହା ହୋଇଥାଉ ପଛକେ, ପ୍ରତ୍ୟେକ ବୟସରେ ଚାତ୍ୟାପ୍ତିମାର ହିଁ ତାଙ୍କଠାରୁ ଅଧିକ ପୋଖତ ଅନୁଭୂତି ସବୁବେଳେ ରହିଥିଲା । ନୁହେଁ ?

ହନୁମାନଙ୍କୁ ନମସ୍କାର କରି,ବ.ର ବାହାନାରେ ଅନନ୍ତନ୍ ନାସ୍ୱର୍ ସେହିଠାରେ ବେଶ୍ କିଛି ସମୟ ପର୍ଯ୍ୟନ୍ତ ସବୁକିଛି ଭୁଲି ଠିଆହୋଇ ରହିଲେ ।

ଯେତେବେଳ କାତ୍ୟାୟିନୀଙ୍କୁ ଶାଢ଼ୀ ଦେବାର (1) ଦୁଇଟ ଗୋଟିଏ ମାସ ବି ଯାଇନଥିଲା । ସେଦିନ ପ୍ରଥମ ଥର ପାଇଁ ସେ କାତ୍ୟାୟିନୀଙ୍କୁ ସାଙ୍ଗରେ ନେଇ ମନ୍ଦିରକୁ ଆସିଥିଲେ ।

ଫାଲ୍‌ଗୁନ ମାସର ଉତ୍ସବରେ ଧ୍ୱଜାରୋହଣ କରାଯାଇଥିଲା । ସେଦିନ ଚତୁର୍ଥୀ ଉତ୍ସବ । ସକାଳେ 'ଶୀଭେଲି' (ଭଗବାନଙ୍କର ଶୋଭାଯାତ୍ରା) ହେଉଥିଲା । କେତେ କେତେ ପତକା, ଛତ୍ର, ଶ୍ୱେତଚମର, ନିଶାଣ ଓ ପଞ୍ଚବାଦ୍ୟ ଦ୍ୱାରା ପରିବେଷ୍ଟିତ ହୋଇ ଏକ ପଟ୍ଟବସ୍ତ୍ର ପରିଧାନ କରି ମହାରାଜା ସ୍ୱୟଂ ଶ୍ରୀଦେହ ସପରିବାର ଗୁଲ୍ ଗୁଲ୍ ସାଙ୍ଗରେ ଯାଉଥିଲେ ଏବଂ ହାତୀ ଉପରେ ବିରାଜମାନ ଶ୍ରୀ ପଦ୍ମନାଭସ୍ୱାମୀ, ମେଲ ଶାନ୍ତି (ପ୍ରଧାନ ପୂଜାରୀ), କୀଲ୍ ଶାନ୍ତି (ସାହାଯ୍ୟକାରୀ ପୂଜାରୀ), ଶ୍ରୀ କାର୍ଯ୍ୟକର୍ତ୍ତା (ମନ୍ଦିରର କାର୍ଯ୍ୟାଧିକାରୀ) ଆଦି ମନ୍ଦିର-କର୍ମଚାରୀମାନଙ୍କର ଗହଣରେ ଗୋଟିଏ ଶିଳା-ମଣ୍ଡପକୁ ଘେରି ବିଶାଳ ଏବଂ ଗଗନୋନ୍ନତ ହୋଇ ପ୍ରସାରିତ ରହିଥିବା ମନ୍ଦିର-ପ୍ରାଙ୍ଗଣଟିର ପ୍ରଦକ୍ଷିଣ କରି ଆସିବାରେ ଲାଗିଥିଲେ । ଏହିପରି ଗୋଟିଏ ଅବସର ··

ସେହିପରି ଗୋଟିଏ ଅବସରରେ ମନ୍ଦିର ଭିତରକୁ ଆସିବା କ'ଣ ଏତେ ସହଜ କାମ ହୋଇଛି ? ମାତ୍ର ମନ୍ଦିରର ଭୋଜନାଳୟ କାର୍ଯ୍ୟାଧିକାରୀ ଆଦିଶେଷ ଆୟରଙ୍କର କନ୍ୟା କାତ୍ୟାୟିନୀ ଏବଂ ଜାମାତାଙ୍କ ପାଇଁ ମଧ୍ୟ ମନ୍ଦିର ଭିତରକୁ ଆସିବାଟା କ'ଣ ଅବୈ ଗୋଟାଏ କଠିନ କାର୍ଯ୍ୟ ଥିଲା ?

ଏଇଠି ଏହି ହନୁମାନ-ପ୍ରତିମାଟି ପାଖରେ ହିଁ ଠିଆ ହୋଇ ସିଏ ଓ କାତ୍ୟାୟିନୀ ଶୋଭାଯାତ୍ରାଟିକୁ ଦର୍ଶନ କରୁଥିଲେ ।

ଜରିଧଡ଼ି ରହିଥିବା ଧଳା ଶାଢ଼ୀଟିଏ ପିନ୍ଧି, ତେଲ୍ ଚକ୍‌ଚକ୍ ଉଜ୍ଜ୍ୱଳ ଦେହଟି ଉପରେ ଶୋଭା ଧାରଣ କରି କାତ୍ୟାୟିନୀ ଠିଆ ହୋଇଥିଲା, ସେହି ସୌନ୍ଦର୍ଯ୍ୟ ଆଜି ମଧ୍ୟ ଖୁବ୍ ସ୍ପଷ୍ଟ ଭାବରେ ତାଙ୍କର ସ୍ମରଣ ରହିଛି ।

ମହାରାଜା ଭଗବାନଙ୍କ ପଛେ ପଛେ ସପରିବାର ସେମାନଙ୍କୁ ଅତିକ୍ରମ କରି ଯାଉଥିଲେ । ସେହିଆଡ଼କୁ ହିଁ ସମସ୍ତଙ୍କର ଦୃଷ୍ଟି ଲାଖି ରହିଥିଲା । ପଞ୍ଚବାଦ୍ୟ ତଥା ନାଦସ୍ୱର ଭାରି କୋଳାହଳ ସୃଷ୍ଟି କରୁଥିଲେ ।

ଅନୁଭବ ହେଲା କାତ୍ୟାୟିନୀ ତାଙ୍କ ହାତକୁ ଚିମୁଟି ଦେଉଛି । ଯେତେ-ବେଳେ ସେ ତାର ମୁହଁଟି ଆଡ଼କୁ ଅନାଇ ଦେଖିଲେ ସେତେବେଳେ ତା'ର ସତେଅବା କାଗଜ ମଡ଼ା ହୋଇ ଚକ୍‌ଚକ୍ କରୁଥିବା ଆଖି ଦୁଇଟି ଉପରେ କେତେକ ପରିମାଣରେ

(1) ନାୟର୍ ସମାଜରେ ବର କନ୍ୟାକୁ ଶାଢ଼ୀ ଦିଏ ଏବଂ ତାହାକୁ ବିବାହର ସଙ୍କେତ ବୋଲି ଗ୍ରହଣ କରାଯାଏ ।

ଏକ ଦୃଷ୍ଟତା ଝଟକ ଉଠୁଥିଲା । ତାହା ସଙ୍ଗେ ସଙ୍ଗେ ଲଜ୍ଜାର କବଳରେ ପଡ଼ି ଯାଇଥିବାର ଅନୁଭୂତ...

ଜୀବନରେ ପ୍ରଥମ ଥର ପାଇଁ ଏହି ଶିଳ୍ପ-ପ୍ରତିମାଟି ଉପରେ ତାଙ୍କର ଦୃଷ୍ଟି ପଡ଼ିଲା ।

ଇଏ କ'ଣ ପ୍ରକୃତରେ ଏକ ଶିଳ୍ପ-ପ୍ରତିମା ? କେଉଁ ଅଜ୍ଞାତ ଜଣେ ଶିଳ୍ପୀଙ୍କ ଦ୍ୱାରା ପଥର ଭିତରେ ଅବତାର୍ଣ୍ଣ କରାଯାଇଥିବା ଗୋଟିଏ କମନୀୟ ମହାକାବ୍ୟ । ଜନ୍ମକାଳରେ ଯେଉଁ ପରଚ୍ଛଦଟି ରହିଥିଲା, ଠିକ୍ ସେଇଥିରେ...

କାତ୍ୟାୟିନୀ ସହିତ ମାତ୍ର ଅଳ୍ପଦିନ ହେଲା ତାଙ୍କର ବିବାହ ହୋଇଥିଲା । ତେଣୁ ତାଙ୍କର ସଦ୍ୟ ନିଶା ତଥାପି ମନ୍ଦ ପଡ଼ି ନଥିଲା । ଏପରି ଏକ ସ୍ଥିତିରେ ସେଦିନ ପ୍ରଥମ ଥର ପାଇଁ ସିଏ ଯେତେବେଳେ ଏହି ନଗ୍ନବରଣ ପ୍ରତିମାଟି ଆଡ଼କୁ ହାତ ବଢ଼ାଇ ଦେଖାଇଦେଲା, ସେତେବେଳେ ତାଙ୍କ ଭିତରେ ଯେଉଁ ଅନୁଭୂତି ଜାଗ୍ରତ ହୋଇ ଉଠିଲା...

କେଜାଣି କାହିଁକି ଏହି ପ୍ରତିମାଟି ଏବଂ କାତ୍ୟାୟିନୀ ମଝରେ କୌଣସି ପ୍ରକାରର ଏକ ମାୟାମୟ ସାମଞ୍ଜସ୍ୟ ମଧ୍ୟ ରହିଛି,—ଏହିପରି ଗୋଟିଏ ମାନସିକ ଭାବନା ତାଙ୍କ ଭିତରେ ସତେଅବା ବିଜୁଳି ପରି ଚଳସିବାକୁ ଲାଗିଲା... ।

ଶୋଇବା ଘରେ ବି କ'ଣ ସେଦିନ ରାତିରେ ଶେଷ ପ୍ରହର ବେଳକୁ ଠିକ୍ ସେହିପରି ଦୃଶ୍ୟଟିଏ ବର୍ତ୍ତମାନ ରହିଥିଲା ? ତା'ପରେ ସିଏ ଯେତେଥର ଏହି ମନ୍ଦିରକୁ ଆସିଛନ୍ତି । ସେତେଥର ଏହି ପ୍ରତିମାଟିକୁ ନ ଦେଖି ସିଏ ଆଦୌ ସମ୍ଭାଳ ହୋଇ ରହି ପାରିନାହାନ୍ତି । ଦେଖିବାରେ ଯେତେ ଯାହା ବାଧା ରହିଥାଉ ପଛକେ, ସେହି ପ୍ରତିମାଟିରୁ ମଧ୍ୟ ଉତ୍ପନ୍ନ ହୋଇଆସୁଥିବା ଶିହରଣ କାତ୍ୟାୟିନୀର ଶରଣ ପଶିବାଲାଗି ହିଁ ତାଙ୍କୁ ବଡ଼ ବିହ୍ୱଳ କରି ପକାଇଛି ।

ଛି...ଛି...ଏସବୁ କ ପାଗଳାମି ! ଭଗବାନଙ୍କର ପ୍ରାର୍ଥନା କରିବାକୁ ଆସିଲେ ଏବଂ ଏଠାରେ ମଧ୍ୟ କ'ଣ ଏହିପରି କପଟ୍ରିତ ଚନ୍ତନଗୁଡ଼ାକ ... ?

ପୁରୁଣା ସ୍ମୃତିଗୁଡ଼ାକ ଭିତରୁ ଆପଣାକୁ ଛଡ଼ାଇ ଆଣି ଅନନ୍ତନ୍ ନାୟର୍ ମନ୍ଦିରର ଆନ୍ତର ଭିତର ଭାଗ ଆଡ଼କୁ ଚାଲିଗଲେ ।

ସଭ୍ୟତାର ଏତେବେଶି ସୁବିଧା ବଢ଼ିଯାଇଛି, ତଥାପି ମନ୍ଦିର ଭିତରେ ବିଜୁଳି ଆଲୁଅର ଚକ୍ଷୁ ଝଲସାଇ ଦେଇପାରୁଥିବା କାନ୍ତିକୁ ପ୍ରବାହିତ କରିବା ଲାଗି ସାହସ ହେଉ ନାହିଁ । ଏହି ମନ୍ଦିରର ନଟାହକର୍ତ୍ତା ମହାରାଜଙ୍କ ପ୍ରତି ଅନନ୍ତନ୍

ନାୟର୍‌ଙ୍କର ଶ୍ରଦ୍ଧାଭାବ ବର୍ତ୍ତମାନ ଏଠାରେ ବ୍ୟାପି ରହିଥିବା ଏହି ଅନ୍ଧାରଟିର ମନୋହରତା ଯୋଗୁଁ ଆହୁରି ଅଧିକ ବୃଦ୍ଧି ପାଇଲା ।

ଗୋଟିଏ ଶିଳା-ମଣ୍ଡପର ବାଆଁ ପାଖରେ, ଯେଉଁଠି ଶ୍ରୀପଦ୍ମନାଭ ସ୍ୱାମୀ ଶୟନମୁଦ୍ରାରେ ବିରାଜମାନ ଅଛନ୍ତି, ସେଠାରେ ହେଉଛି ଭଦ୍ର-ମଣ୍ଡପ । ଏଠାରେ ଶ୍ରୀ ନରସିଂହଙ୍କର ମୂର୍ତ୍ତି ପ୍ରତିଷ୍ଠିତ ହୋଇଛନ୍ତି । ସେଠାକୁ ଅସି ତାଙ୍କର ମନ କହିବାକୁ ଲାଗିଲା,—ଠିକ୍ ଏହିଠାରେ ହିଁ ମକର ଆଉ କର୍କଟ ମାସରେ ଭଦ୍ରଦୀପ ନାମକ ଗୋଟିଏ ବଡ଼ ଉତ୍ସବ ହୁଏ । ଛଅବର୍ଷ ପରେ ଯେଉଁ ଋୟୋଦଶ ଉତ୍ସବଟି ପଡ଼ିବ, ସେତେବେଳେ ଛପନ ଦିନ ପର୍ଯ୍ୟନ୍ତ ଅଖଣ୍ଡ ଭାବରେ ଚାଲୁଥିବା ଜମଜମା ଉତ୍ସବ ଏବଂ ସେହି ଉପଲକ୍ଷରେ ସର୍ବଶେଷ ଦିନଟିରେ ସମ୍ପନ୍ନ ହେଉଥିବା ଲକ୍ଷଦୀପ ଉତ୍ସବଟି ତାଙ୍କର ସ୍ମୃତିରେ ଜାଗ୍ରତ ହୋଇ ଆସିଲା ।

ହୁଁ ; ଆଜକାଲ୍ ଏସବୁ କଥା ଆଗପରି ଯଥାକ୍ରମ କେଉଁଠି ବା ଚାଲୁଛି—ସେ ଏ କଥା ଭାବି ଗୋଟିଏ ଦୀର୍ଘନିଃଶ୍ୱାସ ପକାଇଲେ ।

ଭଦ୍ର—ଦୀପ ପାଖରୁ ଯାଇ ଅନନ୍ତନ୍ ନାୟର୍ ଶ୍ରୀପଦ୍ମନାଭ ସ୍ୱାମୀଙ୍କର ଶୟନ-ସ୍ଥାନ ଗୋଟିଏ ଶିଳା-ମଣ୍ଡପରେ ଭକ୍ତିଭାବ ସହିତ ପ୍ରବିଷ୍ଟ ହେଲେ ।

ଏହି ଭୋର ସମୟରେ ମଧ୍ୟ ସେଠାରେ ଭକ୍ତମାନଙ୍କର ଅପାର ଭିଡ଼ ଲାଗିଥିଲା, ଏକଥା ଦେଖି ତାଙ୍କୁ ଭାରି ଆଶ୍ଚର୍ଯ୍ୟ ଲାଗିଲା ।

ଭକ୍ତିର ଆବେଶରେ ଶ୍ରୀପାଦର ସେବା କରୁଥିବା ଦଣ୍ଡାୟମାନା ନାରୀମାନେ...

ଯେଉଁଠାରେ ଗର୍ଭଗୃହ ଥିଲା, ସେହି ମଣ୍ଡପଟି ଉପରକୁ ପଡ଼ୁଥିବା କଳା ପଥରର ପାହାଚଗୁଡ଼ିକୁ ଦେଖିବା ମାତ୍ରକେ ହିଁ ତାଙ୍କର ସେହି ଘଟଣାଟି ମନେ ପଡ଼ିଗଲା, ଯାହାକି 'ପାହାଚ ଉପରେ ଦାନ' ନାମରେ ଇତିହାସରେ ପ୍ରସିଦ୍ଧ ହୋଇ ରହିଛି । ମହାରାଜା ମାର୍ତ୍ତଣ୍ଡ ବର୍ମା ସବୁ ଶତ୍ରୁମାନଙ୍କୁ ଦମନ କରି ରାଜ୍ୟର ବିସ୍ତାର କରି ସାରିବା ପରେ ଏହି ମନ୍ଦିରକୁ ଆସିଥିଲେ ଏବଂ ଶ୍ରୀପଦ୍ମନାଭଙ୍କର ଏହି ପାହାଚଗୁଡ଼ିକ ଉପରେ ନିଜର ତରବାରିଟିକୁ ଖୋଲି ରଖି ଦେଇଥିଲେ । ଏବଂ ତା'ପରେ ନତମସ୍ତକ ହୋଇ ପ୍ରତିଜ୍ଞା କଲେ, "ଏହି ଦେଶକୁ ମୁଁ ତୁମରି ଚରଣତଳେ ଏହି ପାହାଚ ଉପରେ ରଖି ତୁମକୁ ଦାନ କରି ଦେଉଛି । ବର୍ତ୍ତମାନ ମୁଁ ତୁମର ଦାସ, ପଦ୍ମନାଭ ଦାସ, ହୋଇ ତୁମରି ଲାଗି ତୁମର ପ୍ରତିନିଧି ରୂପେ ଏହି ରାଜ୍ୟର ଶାସନ କରିବି ।"

ପାହାଚରେ ଏଠି ସେଠି ହୋଇଥିବା କଣାଗୁଡ଼ିକରେ ଜହ୍ନି ତରଲାଇ ଲଗାଇ ଦିଆଯାଇଛି ।

"ପୁଅରେ ! ଏଇଠି କ୍ଷୀରସମୁଦ୍ର ଉପରେ ହିଁ ଶ୍ରୀପଦ୍ମନାଭ ଶୟନ କରିଛନ୍ତି, ସେଇଥିଲାଗି ବେଳେବେଳେ ଏହି ପାହ୍ୱାଚଗୁଡ଼ିକର ଫାଟଗୁଡ଼ିକ ବାଟେ ସମୁଦ୍ରପାଣି ଉଠି ଉପରକୁ ବି ଆସିଯାଏ ଏବଂ ତାହାକୁ ଅଟକାଇବା ଲାଗି ହିଁ ଏଠାରେ ଧାରୁ ଭରି ଦିଆଯାଇଛି ।" ଯେତେବେଳେ ସେ ପିଲା ଥିଲେ, ସେତେବେଳେ ନିଜ ମାଅଙ୍କର ହାତ ଧରି ଏଠାକୁ ଆସୁଥିଲେ ଏବଂ ମାଆ ତାଙ୍କର ସଂଶୟଗୁଡ଼ିକର ସମାଧାନ କରୁଥିଲେ ।... ଅନନ୍ତନ୍ ନାୟର୍‌ଙ୍କର ଏହି କଥାଟି ମନେପଡ଼ିଗଲା ।

ପାହ୍ୱାଚଗୁଡ଼ିକର ଉପରେ ମଣ୍ଡପ...

ସେଇଟିକୁ ପାର ହୋଇଗଲେ ଗର୍ଭଗୃହଟି ଅବସ୍ଥିତ, ଯେଉଁଠାରେ ତିନୋଟି ଦ୍ୱାର ରହିଛି ।

ପ୍ରଥମ ଦ୍ୱାରଟିରୁ ଶୟନ-ମୁଦ୍ରାରେ ଅବସ୍ଥିତ ଭଗବାନଙ୍କର ଶିରୋଭାଗ ଦୃଷ୍ଟି-ଗୋଚର ହେଉଛି । ମଝିଦ୍ୱାରଟିରୁ ଭଗବାନଙ୍କର ଦେହ ଦୃଷ୍ଟିଗୋଚର ହେଉଛି, ତାଙ୍କ ସହିତ କମଳନାଭି ଉପରେ ବ୍ରହ୍ମା ଆସୀନ ରହିଛନ୍ତି ଏବଂ ସମନାସାମନି ହୋଇ ଶ୍ରୀ ଦେବୀ ଓ ଭୂ ଦେବୀ । ତୃତୀୟ ଦ୍ୱାରଟିରୁ ଶ୍ରୀଚରଣ—ଦର୍ଶନ...ମଝି ଦ୍ୱାରଟିରେ ମହାବିଷ୍ଣୁଙ୍କର ସୁବର୍ଣ୍ଣ ମୂର୍ତ୍ତି ରହିଛି । ବର୍ତ୍ତମାନ ତାକୁ ପଶ୍ଚିମ ଦ୍ୱାରର ଡାହାଣ ପାଖକୁ ଆଣି ସ୍ଥାପିତ କରାଯାଇଛି ଏବଂ ପୂଜାରୀ ବିଷ୍ଣୁ ସହସ୍ରନାମ ଜପ କରି ଦୁଧର ଅଭିଷେକ କରୁଛନ୍ତି ।

ଅଭିଷେକ ଓ କର୍ପୂର—ଆରତି ସମୟରେ ଅନନ୍ତନ୍ ନାୟର୍ କ୍ଷଣକ ପାଇଁ ଆପଣା ଜୀବନର ସବୁକିଛି ନୈରାଶ୍ୟପୂର୍ଣ୍ଣ ଘଟଣାକୁ ଭୁଲିଯାଇ ଭଗବାନଙ୍କ ଠାରେ ହିଁ ଆପଣାର ମନଟିକୁ ନେଇ ବିଲୀନ କରି ଦେଇଥାନ୍ତି ।

କର୍ପୂର—ଆରତି ହେବା ମାତ୍ରକେ ସବୁ ମୂର୍ତ୍ତିଗୁଡ଼ିକ ଗର୍ଭଗୃହର ମଝି ଦ୍ୱାରଟି ସମ୍ମୁଖରେ ପୁନରାୟ ସ୍ଥାନ ଗ୍ରହଣ କରି ନିଅନ୍ତି । ବର୍ତ୍ତମାନ ପୁଣି କାଲି ଯାଇ ନିର୍ମାଲ୍ୟ ପୂଜା ସମୟରେ ହିଁ ଅଭିଷେକ—ଆରାଧନା ସକାଶେ ତାକୁ ବାହାରକୁ ଅଣାହେବ । "ହେ ଭଗବାନ ! ଆପଣାର ମନ ଭିତରେ ରହିଥିବା ସବୁଯାକ ବ୍ୟାକୁଳତାକୁ ମୁଁ ତୁମର ଚରଣ କମଳରେ ହିଁ ସମର୍ପିତ କରିଦେଉଛି ।" ମନରେ ଏହି ପ୍ରାର୍ଥନାଟି କରି ଅନନ୍ତନ୍ ନାୟର୍ ସାଷ୍ଟାଙ୍ଗ ପ୍ରଣିପାତ କଲେ ।

ଯେତେବେଳେ ପୁଣି ଉଠିଲେ, ସେତେବେଳେ ଦେଖିଲେ ଯେ ଭକ୍ତମାନେ ପୂଜାରୀଙ୍କ ପାଖରୁ ଚରଣାମୃତ ଆଉ ପ୍ରସାଦ ପାଇ ବାହାରକୁ ବାହାରି ଯାଉଛନ୍ତି ।

ଆଜ ତାଙ୍କର ପଚୀଶବର୍ଷ ପୂରିବ । ଏହା କ'ଣ ଜନ୍ମଦିନ ନା ?

"ପୁନର୍ବସୁ ନକ୍ଷତ୍ର, ଅନନ୍ତ ନ ସ୍ବର"—ଆପଣାର ଜନ୍ମ—ନକ୍ଷତ୍ର ଓ ନାମଟିକୁ କହି ସିଏ ଅର୍ଚ୍ଚନା ପାଇଁ ଗୋଟିଏ ଟଙ୍କା ଭେଟି ଦେଲେ । ପୁଣି ପୂଜାରୀଙ୍କ ଦ୍ୱାରା କରାହୋଇଥିବା ଭଗବାନଙ୍କ ଚରଣରେ ପୁଷ୍ପ—ଅର୍ଚ୍ଚନାକୁ ଦେଖୁ ଦେଖୁ ସିଏ ନମସ୍କାରର ମୁଦ୍ରାରେ ଠିଆ ହୋଇ ରହିଲେ । ଗର୍ଭଗୃହର ଘନୀଭୂତ ଅନ୍ଧାରରେ, ତେଲର ଚକ୍ ଚକ୍ ରଙ୍ଗ ସହିତ କଳା ରଙ୍ଗର ଅର୍ଦ୍ଧଦୀର୍ଘ ଗ୍ରୀସ୍ମାରେଖାରେ ପ୍ରକଟ ହୋଇଥିବା ଶୟନ ମୁଦ୍ରାରେ ସ୍ଥିତ ଭଗବାନଙ୍କ ଠାରେ ହିଁ ମନକୁ ବିଲୀନ କରିଦେଇ, ହାତ ଯୋଡ଼ି ଅନନ୍ତନ୍ ନାମ୍ବୂର୍ ଠିକ୍ ସେହିଭଳି ଠିଆ ହୋଇ ରହିଲେ ।

ଅନନ୍ତନ୍ ନାୟରଙ୍କ ପିଲାଦିନେ ତାଙ୍କର ମାଆ ଅଧିକାଂଶ ସମୟରେ ଯେଉଁ କଥାଟିକୁ କହୁଥିଲେ ବର୍ତ୍ତମାନ ତାଙ୍କର ସେହି କଥାଟି ମନେ ପଡ଼ିଗଲା ଯେ ଶୟନ ମୁଦ୍ରାରେ ସ୍ଥିତ ଭଗବାନଙ୍କ ପଛଆଡ଼କୁ ରହିଥିବା ଗର୍ଭଗୃହର ଭିତରକୁ ଅଜଣା କେହିହେଲେ ଯାଇ ଦେଖି ନାହାନ୍ତି ।

"ମାଟ, କେତେବର୍ଷ ତଳେ ଜଣେ ପୂଜାରୀ ଦିନେ ହଠାତ୍ ସେଠାକୁ ଗ୍ଲି ଯାଇଥିଲେ । ସେଠାରେ ସିଏ ଦେଖିବାକୁ ପାଇଲେ ଯେ ଗୋଟିଏ ଛୋଟ ଛିଦ୍ର ଦେଇ ସମୁଦ୍ରର ପାଣି ଦୁଧଧର ବାହାର ସେଠାରେ ବହି ଲାଗିଛି । ସେହି ଛିଦ୍ରଟିର କଳନା କରିବାଲାଗି ପୂଜାରୀ ଗୋଟିଏ ଲମ୍ବା ବାଉଁଶରେ ନିଜର ଆଙ୍ଗୁଠିଟିକୁ ବାନ୍ଧି ଭିତରକୁ ପୁରାଇଲେ । ଶେଷରେ ଅଳ୍ପଯାଇ ଦଉଡ଼ିଟିକୁ ବାହାରକୁ ଟାଣି ଆଣି ଦେଖିଲେ ଯେ ତାଙ୍କ ହାତରେ ଆଉ ଆଙ୍ଗୁଠିଟି ନଥିଲା । ତହିଁ ଆରଦିନ ରାଜପ୍ରାସାଦର ଜଣେ ସେବେଇଆ ସେହିଦିନ ଧରି ହୋଇଥିବା ଗୋଟିଏ ମାଛ ଯେମିତି କାଟି ଦେଲା, ତା'ପେଟରୁ ଲକ୍ଷଣାତ୍ ଗୋଟିଏ ଶବ ଭଳି ଜଣେ ଫଟିଏ ବାହାର ତଳେ ପଡ଼ିଗଲା । ସିଏ ଉଠାଇକରି ଦେଖିଲା ଯେ ପୂଜାରୀଙ୍କର ମୁଦି ।" ମାଆ କହିଥିବା କାହାଣିଟି ତାଙ୍କର ମନେପଡ଼ିଗଲା ।

ଭଦ୍ର – ଦୀପ ମଣ୍ଡପରେ ଶ୍ରୀ ନରସିଂହ ଆଳୟର ଦୀପ—ଆରତିର ଘଣ୍ଟା ବାଜି ଉଠିଲା । ଅନନ୍ତନ୍ ନାୟର୍ ବୁଲିପଡ଼ି ଯେମିତି ସେହିଆଡ଼କୁ ଯିବାକୁ ବାହାରିଲେ ସେତେବେଳେ ଶିଳାମଣ୍ଡପର ବାଆଁ କୋଣରେ ରଖା ହୋଇଥିବା ଟୁଲ୍‌ଟି ତାଙ୍କର ଦୃଷ୍ଟିଗୋଚର ହେଲା ।

ହଁ, ଏହି ଟୁଲ୍‌ଟି ଉପରେ ତ ବୈଧ ଧାରୁ ଓ କାଠରେ ତିଆରି ହୋଇଥିବା ଛୋଟ ଛୋଟ ବାଳପ୍ରତିମା ପଡ଼ି ରହିଛନ୍ତି । ସେଠାରେ ଏକାବେଳେକେ ଘନ ଅନ୍ଧାର, ବିବାହିତା ତରୁଣୀ ଏବଂ ବିବାହଯୋଗ୍ୟ କନ୍ୟାମାନେ ସେଠାରେ ବୃତ୍ତାକାରରେ ଠିଆ ହୋଇ ଦୁଇ ଆଖି ବନ୍ଦ କରି ଶ୍ରୀ ପଦ୍ମନାଭଙ୍କର ଧ୍ୟାନ କରୁ କରୁ ଟୁଲ୍ ଭିତରେ ହାତ ପୁରାଇ ଅନ୍ଧାଳନ୍ତି ଏବଂ ଯେଉଁ ପ୍ରତିମାଟି ପ୍ରଥମେ ସେମାନଙ୍କର ହାତରେ ବାଜେ, ସେଇଟିକୁ ଉଠାଇ ନିଅନ୍ତି, ଯେଉଁମାନଙ୍କୁ ଧାତୁନିର୍ମିତ ପ୍ରତିମା ମିଳେ, ସେମାନେ ଅତ୍ୟନ୍ତ ପ୍ରସନ୍ନ ହୋଇଯାଆନ୍ତି, କାରଣ ତଦ୍ୱାରା ସେମାନଙ୍କୁ ସନ୍ତାନଭାଗ୍ୟ ପ୍ରାପ୍ତ ହୋଇଯିବା ଏବଂ ଯେଉଁମାନଙ୍କୁ କାଠର ଖେଳନାପୁତ୍ତଳିକରୁ ଗୋଟିଏ ମିଳେ, ସେଇଟିକୁ ଭଲ ସଙ୍କେତ ନୁହେଁ ବୋଲି ଜାଣି ସେମାନେ ବ୍ୟାକୁଳ ହୋଇ ଉଠନ୍ତି ।

ସେହିଦିନ, ଯେଉଁଦିନ କାତ୍ୟାୟିନୀ ବହୁତ ସେ ପ୍ରଥମଥର ପାଇଁ ଏଠାକୁ ଆସିଥିଲେ, ସେଦିନ ସିଏ କେତେ ବ୍ୟଗ୍ର ଓ ଉତ୍କଣ୍ଠିତ ହୋଇ ଏକ ଉତ୍କଟ ଅଭିଳାଷ ସହିତ ଭଗବାନଙ୍କୁ ପ୍ରାର୍ଥନା କରିଥିଲି ଏବଂ ଝୁଲି ଭିତରୁ ପ୍ରତିମା ଉଠାଇଥିଲି, ତା'ର ହାତରେ ଧାତୁନିର୍ମିତ ପ୍ରତିମାଟିଏ ଅଛି, ବୋଲି ଯେମିତି ଦେଖିବାକୁ ପାଇଲି, ସିଏ ଠିକ୍ ପିଲାଟିଏ ପରି କେତେ ଖୁସି ହୋଇ, ନାରୀସୁଲଭ ଲଜ୍ଜାରେ ଆଖିପତାକୁ ମିଟିମିଟି କରି ତାଙ୍କ ଆଡ଼କୁ ଅନାଇ ରହିଥିଲି । ତା' ଆଖିର ସେହି ଦୃଷ୍ଟି ···

ହୁଁ ! ହେଇ ତ ସେହି ସ୍ତ୍ରୀ, ଯିଏ ଅତି କଷ୍ଟରେ ଲବ୍ଧ ଦୁଇଟି ପିଲାଙ୍କୁ ଗ୍ରହି ... !

କର୍ପୂର—ଆରତିର ଆଳଟିକୁ ପୂଜାରୀ ତାଙ୍କ ଆଗକୁ ଆଣି ଦେଖାଇଲି ଏବଂ ଆରତିର ଧୂପ ତାଙ୍କ ମୁହଁ ଉପରେ ଆସି ବାଜିଗଲି । ଅନନ୍ତନ୍ ନାୟର୍ ଏତେବେଳେ ଯାଇ ଆପଣାର ହୋସ୍‌କୁ ଆସିଲେ । ଏତେବେଳଯାଏ ସେ ନରସିଂହ ସ୍ୱାମୀଙ୍କର ଧୂପ—ଆରତି ଆଡ଼କୁ ହାତଯୋଡ଼ି ଠିଆ ହେଲେ, ତଥାପି ତାଙ୍କ ମନରେ ଥରେ ସୁଦ୍ଧା ଭଗବାନଙ୍କର ସ୍ମରଣ ହୋଇପାରିଲି ନାହିଁ ? ହୁଁ, ଜୀବନର ଏତେଗୁଡ଼ାଏ ବର୍ଷ କଟିଗଲି, ତଥାପି ଯେଉଁଠାକୁ ଗଲେ ତାଙ୍କର ମନ ସେହି ନାରୀର ପାପସ୍ମୃତିଗୁଡ଼ାକରୁ ଆପଣାକୁ ମୁକ୍ତ କରି ପାରିଲି ନାହିଁ ।

କର୍ପୂର—ଧୂପକୁ ଦୁଇ ହାତର ପାପୁଲିରେ ସ୍ପର୍ଶ କରି ସିଏ ତାକୁ ଆଖି-ଉପରେ ଆଣି ଲଗାଇ ଲଗାଇ ଜ୍ୟୋତି ଲାଗିଯାଇ ତାଙ୍କର ପାପୁଲି ପୋଡ଼ିଗଲି । ସେ ଅନୁଭବ କଲେ, ସତେ ଯେପରି ଏହାଦ୍ୱାରା ତାଙ୍କ ମନ ଭିତରର ତାପଟି କିଛି ଅଂଶରେ ପ୍ରକୃତରେ ଊଣା ହିଁ ହୋଇଗଲି । ପ୍ରାକାର—ମଣ୍ଡପର ମାର୍ଗରେ ଗୋଟିଏ ଶିଳା – ମଣ୍ଡପର ପରିକ୍ରମା କରି ସିଏ ଧୀରେ ଧୀରେ ଶ୍ରୀକୃଷ୍ଣ ମନ୍ଦିର ଆଡ଼କୁ ଚାଲିଗଲେ ।

ଦକ୍ଷିଣ ଅଗଣାଟିକୁ ପାର ହେଉଥିବା ସମୟରେ, ସେହି ପ୍ରାତଃକାଳରେ ବାତାବରଣରେ ମୌନ ନିଦ୍ରା କରୁଥିବା ଦକ୍ଷିଣ ଅଗ୍ରହାର, ବାଆଁପାଖକୁ ରହିଥିବା ଦକ୍ଷିଣବାଥିଟିର ପ୍ରାଚୀନ-ଭିତ୍ତି, ଡାହାଣ ପାଖକୁ ମୋଡ଼ହୋଇ ଯାଇଥିବା 'ଶେଟ୍ଟରୁ ପୁରେ' ଗଳି, ଏହି ସବୁଗୁଡ଼ିକ ଦୃଷ୍ଟିଗୋଚର ହୋଇଗଲି । ସେହି ଗଳିଟି ମଧ୍ୟରେ ବର୍ତ୍ତମାନ ଆଉ ଅଳ୍ପ ସମୟ ଗଲେ ମନ୍ଦିରରୁ ଭୋଗ ଲାଗି ଆସୁଥିବା ଅନ୍ନପ୍ରସାଦର ବିକାକଣା ଖୁବ ଜୋରରେ ଆରମ୍ଭ ହୋଇଯିବ । ଶସ୍ତାରେ ମିଳୁଥିବା ଏହି ଅନ୍ନପ୍ରସାଦକୁ ଖାଇ କେତେ ଦରିଦ୍ର ପରିବାର ଏହି ଜଗତରେ ପ୍ରକୃତରେ ଚଳି ଯାଉନାହାନ୍ତି ?—ଅନନ୍ତନ୍ ନାୟର୍ ମନେ ମନେ ଭାବୁଥାନ୍ତି । ତାଙ୍କର ମନ ଏପରି ଅନେକ ଲୋକଙ୍କୁ ଗଣନା କରିବାରେ ଲାଗିଗଲି, ଯେଉଁମାନେ ଅନ୍ନପ୍ରସାଦ ଓ ପାୟସର ଠିକା ନେଇ ଖୁବ ଧନବାନ୍ ହୋଇଯାଇଛନ୍ତି ଏବଂ ଜଣେ ଜଣେ ପ୍ରମୁଖ ନାଗରିକ ମଧ୍ୟ ହୋଇପାରିଛନ୍ତି ।

ଧୀରେ ଧୀରେ ଦକ୍ଷିଣ ଦୁଆରଟିକୁ ଅତିକ୍ରମ କରି ସେ ପଶ୍ଚିମ ପଟ ଦୁଆରରେ ଆସି ପହଞ୍ଚିଲେ ।

ବର୍ଷାଋତୁ ସମୟରେ ଥରେ କାର୍ତ୍ତିକ ମାସରେ ଓ ଆଉଥରେ ଫାଲ୍‌ଗୁନ ମାସରେ ଏହିପରି ଦୁଇଟିଥର ଜଳମଜ୍ଜନ ଉତ୍ସବଟି ଅନୁଷ୍ଠିତ ହୁଏ । ସେହି ସମୟରେ ଭଗବାନ 'ଶଙ୍ଖମୁଖ' ସମୁଦ୍ରତଟରକୁ ସ୍ନାନ କରିବାକୁ ଯାଆନ୍ତି । ତାଙ୍କ ସହିତ ମହାରାଜା ମଧ୍ୟ ସ୍ନାନ କରିବାକୁ ଯାଆନ୍ତି । ତାଙ୍କ ସହିତ ମହାରାଜା ମଧ୍ୟ ଯାଆନ୍ତି । ସିଏ ଏହି ବାଟରେ ମନ୍ଦିରରୁ ଓହ୍ଲାଇ ଆପଣାର ପରିଜନମାନଙ୍କୁ ଯାଇ ଭେଟନ୍ତି ।

ଏହି ଦୁଆରଟିକୁ ଆସି ଅନନ୍ତନ୍ ନାୟର୍‌ଙ୍କର ଦୃଷ୍ଟି ପହରା ଦେଉଥିବା ବନ୍ଧୁକଧାରୀ ସିପାହୀମାନଙ୍କୁ ଅତିକ୍ରମ କରି, ବାହାରେ ଲମ୍ବାହୋଇ ପଡ଼ିଥିବା ଅଗ୍ରହାର-ବୀଥିର ମୁହଁ ପାଖରେ ଥିବା ମନ୍ଦିର-କାର୍ଯ୍ୟାଳୟର ପାଚେରି ଉପରେ ଲେଖା ହୋଇଥିବା ବାକ୍ୟଗୁଡ଼ିକ ଉପରେ ଯାଇ ପଡ଼ିଲା । 'କାମରୁ ବାହାର କରି ଦିଆଯାଇଥିବା ମନ୍ଦିରର କର୍ମଚାରୀମାନଙ୍କୁ ପୁଣି କାମରେ ଭର୍ତ୍ତିକର,' 'ବେତନ ବଢ଼ାଅ', ଇତ୍ୟାଦି ବାକ୍ୟଗୁଡ଼ିକ ପୋଷ୍ଟରଗୁଡ଼ିକ ଉପରେ ଲେଖାଯାଇଥିଲା । ନଡ଼ିଆ ପତ୍ରର ଛାଇରେ ତିଆରି ହୋଇ-ଥିବା ଗୋଟିଏ ସାନ ଗୁମୁଣ୍ଡିଆ ଭିତରେ ଚାରି ପାଞ୍ଚଜଣ ସତ୍ୟାଗ୍ରହୀ, ଏବଂ…

ଶୁଣିବାକୁ ମିଳୁଛି ଯେ ବର୍ତ୍ତମାନ ଏହି ମନ୍ଦିରର ସମସ୍ତ କାର୍ଯ୍ୟ ତଥା ସେବା-ଗୁଡ଼ିକର ବ୍ୟୟକୁ ବହନ କରୁଥିବା ମହାରାଜା ଶ୍ରୀ ଶ୍ରୀ ଶ୍ରବଣ ନକ୍ଷତ୍ର ପ୍ରଭୁ ମିଳାମିଶା କରିବା ଲାଗି ଆସିଥିବା ଲେବର୍ ଅଫିସରଙ୍କୁ କହି ଦେଇଛନ୍ତି ଯେ ତାଙ୍କର ପେନ୍‌ସନକୁ କମ୍ କରି ଦିଆଯାଇଛି । ଏହି କାରଣରୁ ହିଁ ଖର୍ଚ୍ଚ କମ୍ କରିବା ଉଦ୍ଦେଶ୍ୟରେ କର୍ମଚାରୀମାନଙ୍କର ସଂଖ୍ୟାକୁ ମଧ୍ୟ କମ୍ କରିଦେବାକୁ ପଡ଼ୁଛି ।

ହୁଁ ! ଏହିପରି ଖବରେ ଏଠାରୁ ପାଞ୍ଚମାଇଲ ଦୂରରେ ଥିବା ମାର୍ଓ୍ୱଲଆର୍‌ର ପ୍ରଧାନ ରାଜପ୍ରାସାଦର ଫାଟକ ଆଗରେ ବି ଚାକିରିରୁ ବାହାର କରି ଦିଆଯାଇଥିବା ଏମାନଙ୍କର ସାଥୀମାନେ ଆପଣା ହାତରେ "ଚାକିରିରୁ ବାହାର କରି ଦିଆଯାଇଥିବା ପ୍ୟାଲେସ୍-ସେବାକାରୀମାନଙ୍କର ସତ୍ୟାଗ୍ରହ ବୋଲି ଲେଖା ହୋଇଥିବା ପ୍ଲାକାର୍ଡ଼ମାନ ଧରି ଗର୍ଜନ ତର୍ଜନ କରି ଗଗନଭେଦୀ ନାଦମାନ ବି ଦେବାରେ ଲାଗିଥିବେ—ଅନନ୍ତନ୍ ନାୟର୍ ଏକଥାଟିକୁ ନ ଭାବି ଅଦୌ ରହି ପାରିଲେ ନାହିଁ ।

ସେଠାରେ, ରାଜପରିବାରର ହିସାବ-କିତାବ, ମନ୍ଦିରର ଯାବତୀୟ କାର୍ଯ୍ୟ, ଜମିବାଡ଼ି, ଭବନ ଓ ଅଦାଲତ ସମ୍ବନ୍ଧୀ କାର୍ଯ୍ୟ ଆଦି କେତେ ପ୍ରକାରର କାମ ରହିଛି, ଯେଉଁଗୁଡ଼ିକୁ କି ଠିକ୍ ଭାବରେ କରିପାରିବାଲାଗି ରାଜାଙ୍କର ଆପଣାର ସେକ୍ରେଟାରି ରହିଛନ୍ତି ଏବଂ ତାଙ୍କ ଅଧୀନରେ ମ୍ୟାନେଜର, ପ୍ରଧାନ ଲେଖାକାର, ଉଚ୍ଚ ଶ୍ରେଣୀର

ଲେଖାକାର ନିମ୍ନ ଶ୍ରେଣୀର ଲେଖାକାର ଓ ଚପରାଶୀ···କେତେକେତେ ପ୍ରକାରର ଶହ ଶହ କର୍ମବ୍ୟସ୍ତ ରହିଛନ୍ତି !

ଏତେ ବର୍ଷ ହେଲା ସେହି କାର୍ଯ୍ୟାଳୟରେ ସେ ପ୍ରଧାନ ଲେଖାକାରର କାର୍ଯ୍ୟ କରି ଆସୁଥିଲେ । ଏହି ଖର୍ଚ୍ଚକାଟ ସକାଶେ ତାଙ୍କୁ ମଧ୍ୟ ଚାକିରିରୁ ଅନ୍ତର କରି ଦିଆଗଲା —ଅନନ୍ତନ୍ ନାୟର୍ ଦୀର୍ଘ ନିଃଶ୍ୱାସ ପକାଇଲେ ।

ମନ୍ଦିର ଭିତରେ ରହିଥିବା ସମସ୍ତିରେ ମଧ୍ୟ, ଆଧ୍ୟାତ୍ମିକ ଚିନ୍ତନକୁ ଦବାଇ ଦେଇ ମନ୍ଦିରର ବାହାରେ ରହିଥିବା ଲୌକିକ ଜୀବନର ସମସ୍ୟାଗୁଡ଼ାକ ହିଁ ତାଙ୍କ ମନକୁ ଅତ୍ୟନ୍ତ ଦୃଢ଼ ଭାବରେ ଜାବୁଡ଼ି କରି ରହିଥାନ୍ତି—ଏହିକଥା ଭାବି ଅନନ୍ତନ୍-ନାୟରଙ୍କର ମନ ବ୍ୟଥିତ ହୋଇପଡ଼ିଲା ।" ହୁଁ ! ଖାଲି ଏଇଟି ହିଁ ହେଉଛି ମୋର ଅଭିଶାପ···! ସେଥିରୁ ମୁଁ ଆଉ କେବେ ନିସ୍ତାର ପାଇ ପାରିଲି ? ଜଳ ଉପରେ ନଳିନୀ ଦଳବତ୍ ଲୌକିକ ଜୀବନ ଭିତରେ ରହି ମଧ୍ୟ ସେଥିରୁ ତଥାପି ଅଲଗା ହୋଇ ରହିବା ମୋ ପାଇଁ ଏକ ଅସମ୍ଭବ କଥା," — ସିଏ ଆପଣାଛାଏଁ କହିଉଠିଲେ ।

ଉତ୍ତର ଅଗଣା, କୁଳଶେଖର ମଣ୍ଡପ, ଶ୍ରୀ ବଳିମଣ୍ଡପ, ସବୁଗୁଡ଼ିକୁ ଅତିକ୍ରମ କରି ସେ ଯେତେବେଳେ ଶ୍ରୀକୃଷ୍ଣ ମନ୍ଦିର ଭିତରକୁ ଆସିଲେ, ସେତେବେଳେ ପୂଜାରୀ ଶ୍ରୀକୃଷ୍ଣ-ଅଷ୍ଟୋତ୍ତର ଜପ ପଢୁଥିବାର ଗମ୍ଭୀର ଧ୍ୱନି ଶୁଣାଯିବାକୁ ଲାଗିଲା । ଦୀପ-ଆରତିର ଦର୍ଶନ କରି, କିଛିଟା ଦୂରରେ ଅବସ୍ଥିତ ଶାସ୍ତାଙ୍କ ମନ୍ଦିରକୁ ଯାଇ ଦର୍ଶନ କରି ତା'ପରେ ସେ ମନ୍ଦିର-ଭୋଜନାଳୟ ଆଡ଼କୁ ଅଗ୍ରସର ହେଲେ, ଯେଉଁଠାରେ କି ଅନ୍ନପୂର୍ଣ୍ଣା ପ୍ରତିଷ୍ଠିତ ରହିଛନ୍ତି ।

ଅନ୍ନପୂର୍ଣ୍ଣାଙ୍କୁ ନମସ୍କାର କରି ଓ ପ୍ରସାଦ ପାଇ ଅନନ୍ତନ୍‌ନାୟର୍ ଘରିଆଡ଼କୁ ଚାହିଁ ଦେଖିଲେ । ହୁଁ ! ଭୋଜନାଳୟ ଠିକ୍ ସେମିତି ଶୂନ୍‌ଶାନ୍ ହୋଇପଡ଼ିଛି, ଯେଉଁପରି କଥାକଳି ନାଚଟି ସମାପ୍ତ ହୋଇଗଲା ପରେ ରଙ୍ଗମଞ୍ଚ ମଧ୍ୟ ଶୂନ୍‌ଶାନ୍ ହୋଇ-ପଡ଼ିଥାଏ । ଏପରି ଏକ ସମୟ ଥିଲା, ଯେତେବେଳେ ଦୁଇବକ୍ତ ଭୋଜନ ଉପରେ ନିର୍ଭର କରି କେତେକେତେ ବ୍ରାହ୍ମଣ ପରିବାର ଆପଣା ଜୀବନ ଅତିବାହିତ କରୁଥିଲେ । ସେହି ସମୟରେ, ତାଙ୍କ ଶ୍ୱଶୁର ଅଦଶେପ ଆୟର୍ କେଡ଼େ ଫୁର୍ତ୍ତି ଓ ଉତ୍ସାହରେ ଅଗଣାର କାର୍ଯ୍ୟଗୁଡ଼ିକୁ କରି ଯାଉଥିଲେ । ସେତେବେଳେ କ'ଣ ଏହି ସ୍ଥାନଟି ସତେ ଅବା ଶୂନ୍ୟହୋଇଥିବା ପରି ପଡ଼ିରହିଥିଲା ? ସେତେବେଳେ କେତେ କୋଳାହଳ ଥିଲା କେତେ ଦଉଡ଼ ଧାପଡ଼ ମଧ୍ୟ ରହିଥିଲା ।

ପ୍ରତିଦିନ ସକାଳେ ଦର୍ଶନ ପାଇଁ ପୌନେ ଆଠଟା ବେଳକୁ ମନ୍ଦିରକୁ ବିଜେ କରୁଥିବା ମହାରାଜା ଦର୍ଶନ ସାରି ପୌନେ ନଅଟା ସମୟକୁ ବାହାରକୁ ଆସି ଯାଉଥିଲେ ।

ସେତେବେଳେ ଏଠାରେ ହଜାର ହଜାର ବଡ଼ ବଡ଼ କଦଳୀ ପତ୍ର ଧାଡ଼ିବାନ୍ଧି ପଡ଼ୁଥିଲା ଏବଂ ସେଗୁଡ଼ିକ ଉପରେ ଡାଲି, ପାମ୍ପଡ଼, ବରା, ଶମ୍ବର ଓ ଚଟନି କିସମର ପାୟସ ସହିତ ଭୋଜନ ପରଷା ଯାଉଥିଲା । ଏହିସବୁ କଥା ତାଙ୍କର ଶ୍ୱଶୁର ଆଦିଶେଷ ଅୟରଙ୍କର ତତ୍ତ୍ୱାବଧାନରେ ହିଁ ହେଉଥିଲା । ତେଣୁ ତାଙ୍କୁ ସେଠାରେ ରାତିଯାକ ରହିବାକୁ ପଡ଼ୁଥିଲା ।

ହୁଁ ! ସିଏ ବି କପରି ଜଣେ ମନୁଷ୍ୟ ନ ଥିଲେ ! ଲୁହାପରି ହୃଷ୍ଟପୁଷ୍ଟ ଦେହ, ଅଣ୍ଟାରେ ଖୋଇଣିମାରି ପିନ୍ଧା ହୋଇଥିବା ଧୋତି, କାନ୍ଧରେ ଗାମୁଛା—ଯେତେବେଳେ ଦେଖିବ କୁଞ୍ଚିକୁଞ୍ଚି ହୋଇ ରହିଥିବ । ପଇତା, ଶିଖା, ହାତରେ ଚକମକ କରୁଥିବା ନାସଡ଼ବା,—ଏଗୁଡ଼ିକ ତାଙ୍କର ଟ୍ରେଡ଼ମାର୍କ ହୋଇ ରହିଥିଲା । ପଚିଶିବର୍ଷଯାଏ ସେ ବ୍ରହ୍ମଚାରୀ ରହିଲେ, ଶେଷରେ ମନ୍ଦିରରେ ଧାନ କୁଟୁଥିବା ଜଗଦମ୍ବା ନାୟର୍ ପାଖରେ କେଜାଣି କାହିଁକି ଆପଣାର ହୃଦୟକୁ ଦେଇ ବସିଲେ । ତା'ପରେ ଜୀବନଯାକ ତାହାକୁ ହିଁ ଆପଣାର ଗୃହିଣୀ କରି ରଖିଲେ ।

ସେ ଏଠାକୁ ତଦାରଖ କରିବାକୁ ଚାଲି ଆସୁଥିଲେ । ବଡ଼ ବଡ଼ ହାଣ୍ଡିରେ ଫୁଟୁଥିବା ପଦାର୍ଥରେ କରଚୁଲି ପକାଇ ତାପରେ ସେହି କରଚୁଲିଟିକୁ ଆପଣାର ନାକ ପାଖକୁ ନେଇ ଆସୁଥିଲେ । ବାସ୍… ତା'ପରେ ଯଦି ସେ "ଆରେ ବଲ୍ଲୀ, ତୁ ସମ୍ଭରେ ଲୁଣ ନେଇ ଆସିଲୁ "ବା" ଅହିକଟୁ ନଡ଼ିଆରସ ଦେବାକୁ ହେବ" ବୋଲି ପାଟିକରି ଉଠୁଥିଲେ, ତେବେ ସମସ୍ତ ଶିଳାମଣ୍ଡପଟି କମ୍ପି ଉଠୁଥିଲା । ରୋଷେଇର ବିଶେଷଜ୍ଞ ବଲ୍ଲୀ, ସହସ୍ରନାମ ଆୟର୍, ପଟ୍ଟାଭି ସମସ୍ତେ ଭୟରେ ଥରି ଥରି ଦଉଡ଼ି ଯାଉଥିଲେ । ସେ ବିଷୟରେ ତାଙ୍କର ଏତେ ନିଷ୍ଠିତ ଜ୍ଞାନ ରହିଥିଲା !

ହୁଁ ! ନିମ୍ନବର୍ଗୀୟ ହିନ୍ଦୁମାନଙ୍କର ଅନେକ ଆନ୍ଦୋଳନ ଫଳରେ ଯେତେବେଳେ ହରିଜନମାନେ ମନ୍ଦିର ଭିତରେ ପ୍ରବେଶ କରି ପାରିଲେ, ସେହି ସମୟଠାରୁ ଏହି ଭୋଜ ପ୍ରଥାଟି ଧୀରେ ଧୀରେ ହ୍ରାସ ପାଇବାକୁ ଲାଗିଲା ଓ ବର୍ତ୍ତମାନ ତ ତାହା ବିଲ୍‌କୁଲ୍ ବନ୍ଦ ବି ହୋଇଗଲାଣି ।

ସକାଳର ଆଲୁଅ କ୍ରମେ ବ୍ୟାପ୍ତ ହେବାରେ ଲାଗିଛି ।

କିଛିସମୟ ପରେ ମହାରାଜା ମନ୍ଦିରକୁ ଭେଟେ କରିବେ । ଶ୍ରୀ ପଦ୍ମନାଭଙ୍କୁ ନମସ୍କାର କରିବେ ଓ ତାପରେ 'ଭୂତବଳି' ଦେବେ । ସେହି ବଳିରେ ଦିଆଯାଉଥିବା ଭାତକୁ ଖାଇବାଲାଗି ଅପେକ୍ଷାକରି ପ୍ରତିଦିନ ଏଠାକୁ ଆସିବାରେ ଅଭ୍ୟସ୍ତ ଶହ ଶହ କୁଆ ବର୍ତ୍ତମାନଠାରୁ ବଳି-ପୀଠର ଚାରିପାଖରେ ମୁଣ୍ଡଳା କାଟି ଉଡ଼ିବାକୁ ଆରମ୍ଭ କଲେଣି ।

ଅନନ୍ତନ୍ ନାୟର୍ ଧୀରେ ଧୀରେ ସେହି ପୂର୍ବପଟ ଦୁଆରଟି ଆଡ଼କୁ ଅଗ୍ରସର ହୋଇଯିବାକୁ ଲାଗିଲେ, ଯେଉଁବାଟ ଦେଇ ସିଏ ମନ୍ଦିର ଭିତରେ ପ୍ରଥମେ ପ୍ରବେଶ କରିଥିଲେ । ଅଳ୍ପ ସମୟ ପୂର୍ବେ ମନ୍ଦିର ଭିତରକୁ ଆସିବା ସମୟରେ ତାଙ୍କ ମନ ଉପରେ ଯେଉଁ ବୋଝ୍‌ଟି ରହିଥିଲା, ସେଇଟି ଯେ ବର୍ତ୍ତମାନ କିଛି କମ୍ ହୋଇଯାଇଛି, ସେପରି କୌଣସି ଅନୁଭବ ହେଉନଥିଲା ।

ପ୍ରତିଦିନ ମହାରାଜା ଯେତେବେଳେ ମନ୍ଦିରକୁ ଆସନ୍ତି ସେତେବେଳେ ପୁରୁଷ-ସୂକ୍ତ ଆଦି ମନ୍ତ୍ରଗୁଡ଼ିକର ଉଚ୍ଚାରଣ କରି ରାଜାଙ୍କର ସ୍ୱସ୍ତିବାଚନ କରୁଥିବା କୋଡ଼ିଏ ତିରିଶି ଜଣ ସଶକ୍ତ ଯୁବକ ମଧ୍ୟ ରହିଥାନ୍ତି, ଯେଉଁମାନଙ୍କୁ ମାସିକ ବ୍ୟାଳିଶି ଟଙ୍କା ଏବଂ ପ୍ରତ୍ୟେକ ଦୁଇବକ୍ତ ଅନ୍ନଭୋଜନ ବେତନରୂପେ ମିଳୁଥିଲା । ସେମାନେ ବର୍ତ୍ତମାନ ଆପଣାର ପାଠଗୁଡ଼ିକୁ ପ୍ରସ୍ତୁତ କରିବାରେ ଲାଗିଥିଲେ ।

ଏହା ବ୍ୟତୀତ, ମହାରାଜାଙ୍କ ଆଡ଼ୁ ଦିଆଯାଉଥିବା ମାସିକ ବେତନରେ ହିଁ ରାମାୟଣ ପାଠ କରୁଥିବା ପଣ୍ଡିତ ମୂଳରୁ ରାମାୟଣ ପଢ଼ିବା ଆରମ୍ଭ କରି ଶେଷ କରୁଥିଲେ ଓ ପୁଣି ମୂଳରୁ ଆରମ୍ଭ କରି ପୁଣି ଶେଷ କରୁଥିଲେ । ଏହିପରି ଭାବରେ ବର୍ଷର ତିନିଶହ ପଞ୍ଚଷଠି ଦିନ ବାର ବାର ମନ୍ଦିରରେ ବସି ରାମାୟଣ ପାଠ କରୁଥିବା ଆୟର୍ ଘଣ୍ଟାପରି ବାଜି ଉଠୁଥିବା ଆପଣାର ଗମ୍ଭୀର କଣ୍ଠଧ୍ୱନିରେ ବଡ଼ ଶ୍ରଦ୍ଧା ସହକାରେ ରାମାୟଣ ପାଠ କରୁଥିଲେ ।

ହୁଁ ! ଏହିପରି ଭାବରେ କେତେକେତେ ପରିବାର ଯେ ଏହି ମନ୍ଦିରଟିରେ ମନ୍ଦିରର ନିର୍ବାହ କରୁଥିବା ମହାରାଜାଙ୍କଠାରୁ ଜୀବିକା ପାଇଯାନ୍ତି, ସେକଥା କେହି କହି ପାରିବେ ନାହିଁ । ଅନନ୍ତନ୍ ନାୟର୍ ମୁହୂର୍ତ୍ତିକ ଲାଗି ଭାବିବାକୁ ଲାଗିଲେ । ତାଙ୍କର ମନ ଭିତରେ ଏକଥା ବି ଆସିଲା ଯେ ବର୍ତ୍ତମାନ ତ ଏପରି ସମସ୍ୟା ପଡ଼ିଛି, ଯେତେବେଳେ କି ବେକାର ଲୋକଙ୍କୁ କାମ କରିବାକୁ ଖୋଜାଯାଉଛି, ଉଦ୍ୟୋଗ ଧନ୍ଦାର ସୁବିଧାମାନ ବଢ଼ାଇବା ଉଦ୍ଦେଶ୍ୟରେ ବଡ଼ ବଡ଼ କାରଖାନା ବସାଇବାର ଯୋଜନା ମଧ୍ୟ ତିଆରି କରାଯାଉଛି ।

ଆଉ ନାଗରା ବାଜି ଉଠୁଥିଲା । କେହି ଏକ ଜଣ ବ୍ୟକ୍ତି କୌରବଙ୍କର ରୂପ ଧାରଣ କରି ଧନୁବାଣ ହାତରେ ଧରି ସେହି ପଞ୍ଚ ପାଣ୍ଡବଙ୍କ ଉପରେ ଅତି ପ୍ରଚଣ୍ଡ ଭାବରେ ଆକ୍ରମଣ କରୁଥିଲେ, ତା'ପରେ ଯୁଦ୍ଧରେ ପରାସ୍ତ ହୋଇଗଲା ପରେ ପୁଣି ପିଠି ବୁଲାଇ ପଳାଇ ଯାଉଥିଲେ । ଅଭିନେତାମାନେ ଯତେଅବା ଲଟ୍ଟୁ ପରି ବୁଲି ପଡୁଥିଲେ; ସେହି ବେଳକାଳର ନୃତ୍ୟଟିକୁ ଦେଖିବା ଲାଗି ଯିଏ ନଜେ କପଣ ମଧ୍ୟାହ୍ନରେ ଏବଂ ରାତିରେ କେତେଥର ଘରେ କହି ବା ଲୋକମାନଙ୍କର ନଜରକୁ ଫାଙ୍କି ଦେଇ ଏଠାକୁ ବାହାରି ଆସୁଥିଲେ । ଶୈଶବର ସେହି ମଧୁମୟ ଦିନଗୁଡ଼ିକ…।

ବାଆଁ ପାଖରେ ଥିବା ଗୋଟିଏ ପଦ୍ମତୀର୍ଥ ବର୍ତ୍ତମାନ ଦିନର ଆଲୁଅରେ ରୂପା ପରି ଚମକି ଉଠିଲା ।

ମୁରୈଜତାମ୍ ଉତ୍ସବର ଶେଷ ଦିନ, ଏହାର ସବୁଯାକ ପାଣିକୁ ବାହାର କରି ଦିଆଯାଏ ଏବଂ ସରୋବରର ତଳଟିକୁ ସଫା କରାଯାଏ । ତା'ପରେ 'ଜମ୍ବୁଡିରି' ବ୍ରାହ୍ମଣ-ମାନଙ୍କୁ ସରୋବରରେ ସେହି ଶୁଖିଲା ଚଟାଣ ଉପରେ ବସାଇ ଭୋଜନ ଦିଆଯାଏ । ସେମାନେ ଯେମିତି ଦଧି-ଅନ୍ନ ଭୋଜନ କରିବାକୁ ଆରମ୍ଭ କରି ଦିଅନ୍ତି, ସେତେବେଳେ ସଙ୍ଗେ ସଙ୍ଗେ ବନ୍ଧଟିକୁ ମଧ୍ୟ ଖୋଲି ଦିଆଯାଏ, ଯାହା ଫଳରେ ପାଣିର ବନ୍ୟା ସରୋ-ବରଟି ମଧ୍ୟକୁ ମାଡ଼ିଆସେ ଓ ଖାଇବା ପତରଗୁଡ଼ିକୁ ଭସାଇ ନେଇଯାଏ । ଜମ୍ବୁଡିରି ବ୍ରାହ୍ମଣ-ପଙ୍ଗତ ଭୋଜନକୁ ଅଧା ଛାଡ଼ିଦେଇ, ବ୍ୟାକୁଳ ହୋଇ କୂଳ ଆଡ଼କୁ ଦଉଡ଼ି ପଳାଇବାରେ ଲାଗନ୍ତି । ଅନନ୍ତନ୍ ନାମ୍ବିଆର୍‌ଙ୍କର ସ୍ମୃତିପଟଳ ଉପରେ ଏହି ସବୁଯାକ ଦୃଶ୍ୟ ଯତେଅବା ଆଚ୍ଛାଦିତ ହୋଇ ଆସିବାକୁ ଲାଗିଲା ।

ପୂର୍ବଦିଗରେ ଥିବା କଚେରୀଘର ବର୍ତ୍ତମାନ ନଷ୍ଟ ହୋଇ ଦେଇ ଗଲାଣି । ତା' ସେ ପାଖକୁ ସଡ଼କ ତେର୍ଚ୍ଛା ହୋଇ ଚାଲି ଯାଇଛି, ସେହି ସଡ଼କ ଉପରେ ସବୁଜ ରଙ୍ଗର ବସ୍ ସବୁ ଜଲ୍‌ଦି ହୋଇ ଦୌଡ଼ିବାରେ ଲାଗିଲେଣି । କଚେରୀର ଫାଟକଟିର ପୂର୍ବକୁ ଲମ୍ବି ହୋଇ ଚାଲିଯାଇଥିବା 'ଶାଲୈ ବଜାର' ଯତେଅବା ଗୋଟାଏ ଲମ୍ବ ପେନ୍‌ସିଲ୍ ପରି ଦେଖାଯାଉଛି । ଯେତେବେଳେ ଟି ଆର୍ ପାର୍ଥସାରଥି ଆୟଙ୍ଗାର୍ ଏଠି ଦେବାନ୍ ଥିଲେ, ସେତେବେଳେ ସେ ଦିନେ ହଠାତ୍ ଘୋଷଣା କରିଦେଲେ ଯେ ଏହି ବଜାରର ଦୁଇପାଖରେ ଅବସ୍ଥିତ ସବୁଯାକ ଦୋକାନକୁ ଭାଙ୍ଗି ପକାଯିବ ଏବଂ ସେହି ଘୋଷଣାରେ ବିଚଳିତ ହୋଇପଡ଼ି ସବୁ ଦୋକାନଦାର ଦଉଡ଼ି ଦଉଡ଼ି ସିଧା ଦେବାନଙ୍କ ପାଖରେ ଯାଇ ପହଞ୍ଚିଲେ । ପୁଣି ଲୋକମାନେ କହନ୍ତି ଯେ ସେଦିନ ସୁନା ଆଉ ପଇସାରେ ଖୁବ୍ ପସରା ଭର୍ତ୍ତି ହୋଇ ଭେଟି ଚଢ଼ିଥିଲା । ଯାହାଫଳରେ କି ସେମାନଙ୍କର ଦୋକାନଗୁଡ଼ିକ ରହିଗଲା । ଏହାଦ୍ୱାରା ସରକାରଙ୍କର ଖାଲି ପଡ଼ିଥିବା ଖଜଣାଖାନା ପୁଣି ଏହିପରି ଭାବରେ ଭର୍ତ୍ତି ହୋଇଗଲା । ଖଜଣା ଭରିବା ଲାଗି ହିଁ ଦେବାନ୍ ଏହିପରି

ଉପାସ୍ଥିତିଏ ବାହାର କରିଥିଲେ । ଶାଲୈ ବଜାର ଉପରେ ଦୃଷ୍ଟି ପକାଇ ପକାଇ ଅନନ୍ତନ୍ ନାୟରଙ୍କରପିଷ୍ଟ ଉପରେ ସେହି ମଜା ଘଟଣାଟି ଭାସି ଉଠିବାକୁ ଲଗିଲ । ଏହି କାହାଣୀଟି ଯେ ପ୍ରକୃତରେ କେତେଦୂର ସତ ସେକଥା କେହି କହି ପାରିବ ନାହିଁ । ତଥାପି ଏହି କାହାଣୀଟିକୁ ଯିଏ କେହି ମନରୁ ଫାନ୍ଦ ତିଆରି କରିଥାଇ ପଛକେ, ସିଏ ନିଶ୍ଚୟ ଜଣେ ବଡ଼ ରାଜତନ୍ତ୍ରଜ୍ଞ ଅବଶ୍ୟ ହୋଇଥିବ, ଅନନ୍ତନ ନାୟର୍ ମନେ ମନେ ତାହା କହି ଉଠିଲେ ।

ମୁଣ୍ଡର ବାଲଗୁଡ଼ାକୁ ମୁକୁଳାଇ ଦେଇ ଦୂରରେ କଲ୍ପବୃକ୍ଷ, ନାରକେଳର ବୃକ୍ଷ ଗୁଡ଼ିକ ନାଚିବାରେ ଲଗିଥା'ନ୍ତି, ସେମାନଙ୍କର ଶିଖର ଉପରେ ପତ୍ରଗୁଡ଼ିକର ଆଢ଼ୁଆଳରେ ସକାଳର କଅଁଳ ସୂର୍ଯ୍ୟ ଉଙ୍କି ମାରି ଅନାଉଥାନ୍ତି । ଏହି ଦୃଶ୍ୟଟିକୁ ଦେଖୁ ଦେଖୁ ସେ ଧୀରେ ଧୀରେ ପାହାଚ ଗୁଡ଼ିକ ଉପରୁ ତଳକୁ ଓହ୍ଲାଇ ଆସୁଥିଲେ ।

ଫିରଙ୍ଗି ଘଣ୍ଟାରେ ଛଅଟା ବାଜିବାକୁ ଯାଉଛି । ସେହି ଦୃଶ୍ୟ ଦେଖିବା ସକାଶେ ଧଳେ ଉଲ୍ଲାସ-ଯାତ୍ରୀ ସେଠାରେ ଉପର ଆଡ଼କୁ ମୁହଁ କରି ଠିଆ ହୋଇ ରହିଥିଲେ ।

ଜ୍ଞାନାନନ୍ଦ ସ୍ୱାମୀଙ୍କର ଆଶ୍ରମରେ ପ୍ରାତଃଭଜନ ଗୀତ ହେଉଥିଲ, ଯାହାର ମନ୍ତ୍ର-ଧ୍ୱନି ବେଶ୍ କାନରେ ଆସି ବାଜୁଥିଲ । ନାୟର୍ ଧୀରେ ଧୀରେ ଆଶ୍ରମ ଆଡ଼କୁ ଯିବାକୁ ଲଗିଲେ ।

ଆଶ୍ରମରେ ଝୁବ୍‌ବେଶି ମଣିଷ ନ ଥିଲେ । ସେଠାରେ ଏବେ ପ୍ରତିଷ୍ଠିତ କୃଷ୍ଣ-ମନ୍ଦିରଟି ଆଗରେ ଗେରୁଆ ରଙ୍ଗର କଉପୁନ ପିନ୍ଧି ଶ୍ରୀ ଜ୍ଞାନାନନ୍ଦସ୍ୱାମୀ ଆସୀନ ହୋଇ ରହିଥିଲେ । ରାଧାଙ୍କ ମୂର୍ତ୍ତି ପାଖରେ ଉପବେଶନ କରିଥିବା ନରନାରୀ 'ହରେ ରାମ ହରେ ରାମ ରାମ ରାମ ହରେ ହରେ, ହରେକୃଷ୍ଣ ହରେକୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ' ବୋଲି ଭଜନ କରୁଥିଲେ । ସ୍ତ୍ରୀ ଲୋକମାନଙ୍କର ପାତଳା କଣ୍ଠସ୍ୱର ସହିତ ଏକାଠି ମିଶି ପୁରୁଷ-ମାନଙ୍କର ମୋଟା ଧ୍ୱନି ଝଙ୍କାର ସୃଷ୍ଟି କରୁଥିଲ ଏବଂ ତାହା ଶୁଣିବାକୁ ଭାରି ଭଲ ଲଗୁଥିଲ ।

ଅନୁକ୍ଷଣ ଚବ୍ବିଶିଘଣ୍ଟାଯାକ ଗୋଟିଏ ବୀଣାକୁ କେତେବେଳେ ମାଟି ଉପରେ ନରଖି ମଧ୍ୟ କେତେକ ଶିଷ୍ୟ ପାଳି ଅନୁସାରେ ହାତକୁ ହାତ ବଦଳାଇ ଭଜନ ଗାଇବାରେ ଲଗିଥିଲେ । ବର୍ତ୍ତମାନ ସେମାନେ ଗାଇ ଗାଇ ପରିକ୍ରମା କରି ଆସୁଛନ୍ତି ।

ଡାହାଣ ପାଖରେ ଶଙ୍କର୍‌ଟମ୍ପି ସ୍ୱାମୀଙ୍କ ସମାଧି ଉପରେ ସ୍ଥାପିତ ମୂର୍ତ୍ତି ଉପରେ ମଧ୍ୟ ଦୀପଗୁଡ଼ିଏ ଜଳୁଥିଲେ ।

ବର୍ତ୍ତମାନ ପର୍ଯ୍ୟନ୍ତ ଯେଉଁ କ୍ଳାନ୍ତ ଆଦୌ ନ ଥିଲ, ତାହା ବର୍ତ୍ତମାନ ଅନୁଭୂତ ହେବାକୁ ଲଗିଲ । ସେ ଲମ୍ବ ଲମ୍ବ ନିଃଶ୍ୱାସ ନେବାକୁ ଲଗିଲେ । ହୃଦୟ ଭିତରେ ସତେ ଅବା କୌଣସି ଦରଜ ରହି ରହି ଅନୁଭୂତ ହେଉଥିଲା । ତା' ପାଟିକୁ ତଣ୍ଟି ଶୁଖିଗଲ

ପରି ବି ଲାଗୁଥିଲା । ଏତେ ବେଶୀ ଶୋଷ ହେଉଥିଲା ଯେ ମନେ ହେଉଥିଲା, ମାଠିଆରେ ମାଠିଆଏ ପାଣି ପାଇଲେ ମଧ୍ୟ ସିଏ ଗଡ଼ ଗଡ଼ କରି ସବୁତକ ପିଇ ଶେଷ କରିଦେଇ ପାରିବେ ।

ଦେହ ବେଶ୍ ଖରାପ ଥିଲା, ତଥାପି ଭଜନ ଭିତରେ ନିଜକୁ ନିମଜ୍ଜିତ କରି ଦେଇ ସେ ଆଖିପତାକୁ ବନ୍ଦ କରି ରଖିବାକୁ ଚାହାଁରଲେ । ଦେହ ଓ ମନକୁ ତା'ପରେ କିଛି ଶାନ୍ତି ମିଳିଲା ପରି ମନେହେଲା ।

ସମସ୍ତ ଅତିବାହିତ ହୋଇଯାଉଥିବାର କୌଣସି ଜ୍ଞାନ ନଥିଲା···

"ଆରେ ସେ କିଏ ? ଅନନ୍ତନ୍ ନା କ'ଣ ?"

ଆପଣା ସମ୍ମୁଖରେ ଅନେକ ପାଖରୁ ଏହି କଥାଗୁଡ଼ିକ ଶୁଣାଯିବାରୁ ତାଙ୍କର ଆଖିପତା ଖୋଲିଗଲା । କଳା ଧଡ଼ି ଥିବା ଧଳା ଶାଢ଼ୀ ତଳେ ହଳଦିଆ ବର୍ଣ୍ଣର ଦୁଇଟି ପାଦ ସେହି ଧଳା ବାଲି ଉପରେ, ଯେଉଁଠି ସେ ନିଜେ ମଧ୍ୟ ବସିଥିଲେ, ଠିଆ ହୋଇ ରହିଥିଲେ ।

ଉପରକୁ ଆଖି କରି ଅନାଇବାକୁ ତାଙ୍କର କିଛିସମୟ ପର୍ଯ୍ୟନ୍ତ ମନେ ହିଁ ପଡ଼ିଲା ନାହିଁ । ସତେଅବା କୌଣସି ଭ୍ରମରେ ପଡ଼ି ଯାଇଥିବା ପରି ମନେ ହେଉଥାଏ । ସେହି ପାଦ ଦୁଇଟିକୁ ସେ କେବଳ ଦେଖିକରି ହିଁ ରହିଗଲେ ।

ବାର୍ଦ୍ଧକ୍ୟ ହେତୁ କଳା ପଡ଼ି ଯାଇଥିଲେ ମଧ୍ୟ ରଙ୍ଗଟି ବେଶ୍ ଉଜ୍ଜ୍ୱଳ ହୋଇ ରହିଥିଲା, ପାଦଦୁଇଟି ତେଲରେ ଚକ୍ ଚକ୍ ଦେଖାଯାଉଥିଲା···

"ଆରେ ଭାଇ, ତୁମେ ସେଠି ସେପରି ବସି ରହିଗଲ କାହିଁକି ?" ସେହି ସ୍ତ୍ରୀ କଣ୍ଠଟିକୁ ପୁନର୍ବାର ଶୁଣିବାକୁ ପାଇ ସେ ଚମକି ଉଠିଲେ ଓ ମୁଣ୍ଡଟିକୁ ଉପରକୁ ଟେକି ଅନାଇଲେ । ସେହି ସ୍ତ୍ରୀଟିର ନାକର ଫୋଡ଼ଗୁଡ଼ିକ ତାଙ୍କୁ ସବାଆଗ ଦେଖାଗଲା । ସେହି ଫୋଡ଼ଗୁଡ଼ିକର ସେ ପାଖରେ ହସି ଉଠୁଥିବା ଆଖିଡୋଳାଗୁଡ଼ିକ ! ଲଲାଟ ଉପରେ ଚନ୍ଦନର ଚନ୍ଦ୍ରିକା । ମୁଣ୍ଡରେ ଭଲ କରି କୁଣ୍ଡାଇ ସୁନ୍ଦର ପଡ଼ି ରହିଥିବା ଲାଉଫୁଲ ପରି ଧବଳ କେଶ···

ଇଏ ତ ମୋ ନିଜ ଭଉଣୀ କଲ୍ୟାଣୀ ଅମ୍ମା··· । "କିଏ, ଭଉଣୀ ?"—ପଶ୍ଚିର ଅନନ୍ତନ୍ ନାମ୍ବିର୍ ଉଠି ଠିଆହେଲେ । ଆଶ୍ରମର ମଣ୍ଡପଟିର ବାହାରେ ଖରା ପଡ଼ି ଚକ୍ ଚକ୍ ଦିଶୁଥିଲା । ଭଜନ ତଥାପି ଲାଗି ରହିଥିଲା ।

ସିଏ ଆପଣା ଭଉଣୀ ଆଡ଼କୁ ପୁଣି ଥରେ ଅନାଇ ଦେଖିଲେ ।

ତାଙ୍କର ଦେହ ଉପରେ ପ୍ରାଚୁର୍ଯ୍ୟର ଉଜ୍ଜ୍ୱଳ ଛାପ । ସିଏ ତାଙ୍କଠାରୁ ମଧ୍ୟ ଆହୁରି ଦଶବର୍ଷ ବଡ଼ । ବାର୍ଦ୍ଧକ୍ୟ ହେତୁ ମୁହଁ ଓ ଦେହ ଉପରେ ଚମ ଢିଲା ପଡ଼ିଲାଣି, ଦାଗ ବସିଗଲାଣି; ତଥାପି ଏପରି ଏକ ସମୟ ଥିଲା ଯେତେବେଳେ କି ତାଙ୍କ ଦେହ ଉପରେ ରମଣୀୟତା ନୃତ୍ୟ କରୁଥିଲା । ଟାଣ ହୋଇ ଉଠି ଯାଇଥିବା ନାକଟି ବର୍ତ୍ତମାନ ମଧ୍ୟ ତାହାର ରମଣୀୟତାର ବେଶ୍ ସାକ୍ଷ୍ୟ ଦେଇଯାଉଛି···

"ଆଗଥର ଯେତେବେଳେ ଦେଖିଥିଲି, ଏଥର ତାହା ଅପେକ୍ଷା ଆହୁରି ଅଧିକ ଝାଉଁଳିଯାଇଛୁ । ପୁଣି ମୁହଁ ଉପରେ ଏହି ଦଶ ଆଉ ବୁଢ଼ ଗୁଡାକ । ମୁହଁକୁ ଦେଖି ତୋତେ ଚିହ୍ନିବା ମଧ୍ୟ କଷ୍ଟକର ହୋଇଗଲାଣି । କାହିଁକି ଏପରି ହୋଇଛୁ ? ବର୍ତ୍ତମାନ କ'ଣ କୌଣସି ଔଷଧ ଖିଆ ହେଉ ନାହିଁ ?···"

ଅନନ୍ତନ୍ ନାମ୍ବୁଦ୍ରି ହସିଦେଲେ । ଫିକାଫିକା ହସ । ତା'ପରେ କହିଲେ, "ହଁ ସବୁ ଖାଉଛି··· ।" ମିଛ ବୋଲି ଜାଣି କରି ମଧ୍ୟ ସିଏ ସେହିପରି କହି ପକାଇଲେ । ଭଉଣୀଟା ମନରେ କାହିଁକି ଦୁଃଖ ଦେଇଥାନ୍ତେ··· !

"କଥା କ'ଣ ? ତୋ'ର କେବେହେଲେ ତ ଏପରି ଅଭ୍ୟାସ ନଥିଲା, ଆଜି ଏଠାକୁ ପୁଣି ଆଶ୍ରମକୁ କିପରି ଆସିଲୁ ?" ଭଉଣୀ ପଚାରିଲେ । ଏକଥା କହିବାକୁ ମନ ହେଲାନାହିଁ ଯେ ଆଜି ତାଙ୍କର ଜନ୍ମଦିନ । ଆଜି ତାଙ୍କୁ ପଚାଶବର୍ଷ ପୂରିଗଲା, ମନ୍ଦିରକୁ ଦର୍ଶନ ଲାଗି ଆସିଥିଲେ, ସେଠାରୁ ଏଠି ଏହି ଆଶ୍ରମରେ ବି ଆସି ପହଞ୍ଚିଗଲେ । "ଏମିତି ଚାଲିଆସିଲି···ଶ୍ରୀପଦ୍ମନାଭଙ୍କର ଦର୍ଶନ କରିବାପରେ ଅନେକ ଦିନ ହୋଇଯାଇଥିଲା । ତେଣୁ ଭାବିଲି, ଯାଏ, ନିର୍ମାଲ୍ୟପୂଜାର ଦର୍ଶନ କରିଆସେ । ଏଠାରୁ ଭଜନ ଶୁଣାଗଲା ତ ଭାବିଲି ଯେ ଏଠୁ ମଧ୍ୟ ଟିକିଏ ବୁଲିଦେଇ ଯିବି । ବାସ୍ ! ଏତିକି କଥା··· ।" ଅନନ୍ତନ୍ ନାମ୍ବୁଦ୍ରି ଉତ୍ତର ଦେଇ କହିଲେ ।

ଆପଣାର ବାଆଁ ପାଖରେ ବଡ଼ ସତର୍କ ଭାବରେ କଦଳୀପତ୍ରରେ ଗୁଡ଼ା ହୋଇ ରଖା ହୋଇଥିବା ନାଲିଆ କର୍ନିଅର ଫୁଲଗୁଡ଼ିକ ମଧ୍ୟରୁ କିଛି ଚନ୍ଦନ ବାହାର କରି ସିଏ ଭଉଣୀଙ୍କ ଆଡ଼କୁ ବଢ଼ାଇଦେଲେ । ତାହାକୁ ନେଇ ମୁଣ୍ଡରେ ଲଗାଉ ଲଗାଉ ଭଉଣୀ ପଚାରିଲେ, "ତୁ କ'ଣ ନିର୍ମାଲ୍ୟ ସେବା ଦେଖିବାକୁ ଯାଇଥିଲୁ ?" ଏହି ପ୍ରଶ୍ନଟି କେଜାଣି କାହିଁକି ଅନନ୍ତନ୍ନାମ୍ବୁଦ୍ରିଙ୍କୁ ବଡ଼ ଅନ୍ୟ ପ୍ରକାର ଲାଗିଲା । ସିଏ ଅନୁଭବ କଲେ ଯେ ତାଙ୍କର ହୁଏତ ଏପରି ପ୍ରଶ୍ନ ପଚାରିବା ଆଦୌ ଉଚିତ ନଥିଲା । ଏକ ଅପରାଧ-ଭାବନା ସହିତ ସିଏ କଥା ବଦଳାଇ ଯେପରି ପ୍ରଶ୍ନ କରୁଥିଲେ, "ପ୍ରଭାକରନ୍ ନାମ୍ବୁଦ୍ରିକୁ କ'ଣ ଚାକିରି ମିଳିଗଲା କି ?" ଅନନ୍ତନ୍ନାମ୍ବୁଦ୍ରି ସେହିପରି ଅନୁମାନ କଲେ ।

ଅନନ୍ତନ୍ନାମ୍ବୁଦ୍ରି ତାଙ୍କ ଭଉଣୀଙ୍କର ଧର୍ମସଙ୍କଟଟିକୁ ବୁଝିପାରିଲେ । ତେଣୁ କଥାର ମୋଡ଼ଟିକୁ ବଦଳାଇ ଦେବାଲାଗି ଭଉଣୀ ଯେଉଁ ଚେଷ୍ଟା କରୁଥିଲେ, ସେ ଆପେ

ମଧ୍ୟ ସେଥିରେ ସହଯୋଗ କରିବାକୁ ହିଁ ଉପଯୁକ୍ତ ବୋଲି ମନେକଲେ । ସେହିପରି ଅନୁମାନ କରି ଟିକିଏ ସ୍ୱରକୁ ମିଶାଇ କହିଲେ, " ନା । ଇଞ୍ଜିନିୟରିଙ୍ଗ୍ ପାସ୍ କରୁଥିବା ଲୋକଙ୍କୁ ବର୍ତ୍ତମାନ କ'ଣ କୋଉଠି ଚାକିରି ମିଳିଲାଣି ?"

ତାଙ୍କୁ ଟିକିଏ ଆଶ୍ୱସ୍ତ କରିବା ଲାଗି ଭଉଣୀ କହିଲେ, "ସିଏ ଇଞ୍ଜିନିୟରିଙ୍ଗ୍ ଡିଗ୍ରୀ ପାଇବାର ପୂରା ତିନିବର୍ଷ ହୋଇଗଲାଣି ନା ! ହୁଁ, ସବୁ ତ ଭାଗ୍ୟର ଖେଳ !"

ସିଏ ପଚାରିଲେ, "ଭଉଣୀ, ତୁମେ ଏକାଏକା ଆସିଛ ? ଭାସ୍କରନ୍ ନାୟର୍ ସାଙ୍ଗରେ ଆସିପାରିଲା ନାହିଁ ?"

"କିଏ ଭାସୀ ? ସିଏ ତ ମନ୍ଦିର, ଆଶ୍ରମ, ସବୁକିଛି ପାରହୋଇ ଗୋଟାସୁଦ୍ଧା ଦାର୍ଶନିକ ପାଲଟି ଗଲାଣି । ତୁ ସେକଥା ଜାଣିନାହୁଁ ? କହୁଛି ଯେ ତା'ଲାଗି ଏହି ସବୁ-କିଛିର ଆଦୌ କୌଣସି ଆବଶ୍ୟକତା ନାହିଁ । ରାତିକୁ କେବେ ଘରକୁ ଫେରିଲା ତ ଠିକ୍, ନଫେରି ପାରିଲେ ମଧ୍ୟ ଠିକ୍ ଏବଂ କେବେ ଆସିଗଲା ତ ତେବେ ବାରଟା ଗୋଟାଏ ପର୍ଯ୍ୟନ୍ତ ଦର୍ଶନଶାସ୍ତ୍ରର କୌଣସି ନା କୌଣସି ମୋଟା ବହିଟାଏ ନିଶ୍ଚୟ ପଢ଼ିବାରେ ଲାଗିଥିବ । କେତେବେଳେ ପଢ଼ିସାରି ଶୋଇବାକୁ ଯାଏ କେଜାଣି ? ଭୋର ଦୁଇଟା ବେଳକୁ ପୁଣି ଉଠିପଡ଼େ, ଥଣ୍ଡା ପାଣିରେ ଗାଧୋଇ ପକାଏ, ତାପରେ ଭିତରୁ କବାଟ ବନ୍ଦ କରି ସେହିପରି ଘଣ୍ଟାକରୁ ଅଧିକ ସମୟ ଧ୍ୟାନମଗ୍ନ ହୋଇ ବସେ । ଷାଠିଏ ବର୍ଷ ପାରହୋଇ ଯାଇଥିବା ସନ୍ନ୍ୟାସୀମାନେ ସିନା ତାକୁ ଖୋଜିବାକୁ ଆସିବେ । କହୁଛି, ମୋତେ ବିବାହ କରିବ ନାହିଁ । ଏବେ ମୁଁ ମଧ୍ୟ ତାକୁ ବାଧ୍ୟ କରିବା ଛାଡ଼ିଦେଇଛି । କିନ୍ତୁ ଯାହା କରୁ ପଛକେ, ଅଫିସ୍ ସିବାରେ କିଛି ଗୋଳମାଳ ନାହିଁ ।"

ତାଙ୍କର ଏହିସବୁ କରୁଣ କାହାଣୀ ଶୁଣୁଶୁଣୁ ଆଶ୍ରମରୁ ବାହାର ଆଡ଼କୁ ଯାଉଯାଉ ଅନନ୍ତନ୍‌ନାୟରଙ୍କର ହୃଦୟରେ ଗୋଟାଏ ଦୁଃଖ ଜମି ଆସିବାକୁ ବାହାରିଲା । ଏହାହିଁ କ'ଣ ମାଧବୀ କୁଟୀର ଭାଗ୍ୟ ?

ସିଏ ଜାଣିଥିଲେ ଯେ ଭାସୀ ସେକ୍ରେଟେରିଏଟ୍‌ରେ କୋଉଠି କ'ଣ ସୁପରିଟେଣ୍ଡେଣ୍ଟ୍‌ର କାମ କରୁଛି ।

"ତାକୁ ବର୍ତ୍ତମାନ ବୟସ କେତେ ?"

"ଏଇ କର୍କଟକୁ ପଇଁତିରିଶି ପୂରିଯିବ । ଭାଗ୍ୟରେ ଯାହା ଲେଖାହୋଇଥିବ, କେବଳ ସେଇୟା ହେବ । ଆମ ହାତରେ ଆଉ କ'ଣ ଅଛି ?" କହି ଭଉଣୀ ଦୀର୍ଘ-ନିଃଶ୍ୱାସ ପକାଇଲେ । ସେଇ ଦୀର୍ଘନିଃଶ୍ୱାସଟିକୁ ଯେ ସେ ଅନନ୍ତନ୍‌ନାୟରଙ୍କ ଲାଗି ମଧ୍ୟ ପକାଇଲେ, ଅନନ୍ତନ୍‌ନାୟର୍ ସେକଥା ପରିଷ୍କାର ଭାବରେ ବୁଝିପାରୁଥିଲେ । ତଥାପି ସେହି ସମୟରେ ତାଙ୍କ ଅନ୍ତଃସ୍ତଳରେ ରହିଥିବା ସକଳ ବ୍ୟଥାକୁ ଭୁଲିଯାଇ କେବଳ ନିଜ ଭଉଣୀଟି ଲାଗି ହିଁ କରୁଣା ଉଦ୍‌ବେଳିତ ହୋଇ ଉଠିଲା ।

## ଛଅ

ତା'ର ଜନ୍ମ ହେବାର କ'ଣ ପଚିଶଟି ବର୍ଷ ହୋଇଯାଇ ନଥିବ ? ସେତେବେଳେ ତାଙ୍କ ନିଜ ବୟସ ପନ୍ଦର ଥିଲା । ତଥାପି ଆଜି ମଧ୍ୟ ସେହି ସ୍ମୃତିଟି ଅନେକ ରଙ୍ଗୀନ୍ କେତୋଟି ରେଖାର ରୂପରେ ମନରେ ଅଙ୍କିତ ହୋଇ ରହିଛି !

କଲ୍ୟାଣୀ ବଡ଼ ଝିଅ, ତେଣୁ ବାପମାଆ ଖୁବ୍ ଖର୍ଚ୍ଚ କରି କେଡ଼େ ଶ୍ରଦ୍ଧାରେ ତାହାର ଲାଳନପାଳନ କରିଥିଲେ । ଶେଷରେ ଯେତେବେଳେ ଦର୍ଶନ ବିଷୟରେ ଡାକ୍ତର ଉପାଧି ଲାଭ କରିଥିବା ଅରବିନ୍ଦାକ୍ଷ କୁରୁପଙ୍କ ସହିତ ତା'ର ବିବାହ ଦିଆଗଲା, ସେତେବେଳେ ସମସ୍ତେ କେଡ଼େ ପ୍ରସନ୍ନ ହୋଇ ନଥିଲେ ! ମାଆ ତ ଅଧିକାଂଶ ସମୟରେ ବାପାଙ୍କୁ ଯାଇ କହୁଥିଲେ, "ଖାଲି ଯାହା ଗେରୁଆ ବସ୍ତ୍ର ପିନ୍ଧନାହିଁ । ବାସ୍ ଏତିକ ଅଭାବ ରହିଯାଇଛି । ତା'ନହେଲେ ଖାଣ୍ଟି ବେଦାନ୍ତୀ··· !"

ଏକଥା ଶୁଣି ବାପା ଆପଣା ସ୍ୱଭାବସୁଲଭ ଢଙ୍ଗରେ ଏକ ଗମ୍ଭୀର କଣ୍ଠରେ କହି ଉଠୁଥିଲେ, "ଆରେ ବିଶେଷଜ୍ଞ; ତାଙ୍କୁ ପାଇବାଲାଗି ମୋତେ ଯେ କେତେ ପୁଣ୍ୟ ଅର୍ଜନ କରିବାକୁ ହୋଇଥିବ, ସେକଥା ତୁମେ କ'ଣ ଜାଣିଛ ? ତୁମେ ଜାଣିଛ, ତା'ଠାରୁ ବେଦାନ୍ତ ଆଉ କୁଣ୍ଡଳିନୀ ଯୋଗ ଶିଖିବା ପାଇଁ ଆମେରିକା ଆଉ ଇଂଲଣ୍ଡରୁ କେତେ ଇଂରାଜୀ ଲୋକ ଆସନ୍ତି ? ହୁଁ, ତୁମକୁ ସେସବୁ କ'ଣ ଜଣା ଅଛି ? ଗଧ କୁଆଡ଼ୁ କର୍ପୂରର ବାସନାକୁ ଜାଣିବ ?" ଏପରି କହି ସେ ମାଆଙ୍କର ମୁହଁକୁ ଏକାବେଳେକେ ବନ୍ଦ କରି ଦେଉଥିଲେ ।

"ଆମ ଭିଣୋଇ ସତେ ଏଡ଼େବଡ଼ ଲୋକ ?"

"ହୁଁ······ତା' ନହେଲେ······"

ଥରେ ତିରୁଓଣମ୍-ଉତ୍ସବ ଦିନରେ ପାଲ୍‌କୁଲଂକରୈଙ୍କ ଘରେ ଏହି ଘଟଣାଟି ଘଟିଥିଲା ।

ଏଣମ୍ ପର୍ବରେ ସେହି ଦିନଟିରେ ଆଗ ତା'ର ଭଉଣୀ କଲ୍ୟାଣୀ ଓ ଭିଣୋଇ ତାଙ୍କ ଘରକୁ ଆସିଥିଲେ ।

ନାୟର୍ ମାନଙ୍କ ସମସ୍ତଙ୍କ ଘରେ ଗୀତ ବଜାଣ, ନାଚ ଏବଂ କେତେ ନା କେତେ କୋଳାହଳ ଲାଗିଥିଲା । ସମସ୍ତେ ନୂଆ ନୂଆ କପଡ଼ା ପିନ୍ଧିଥିଲେ, ଘରଯାକ କେତେ କ'ଣ ରନ୍ଧା ହେଉଥିବାର ବାସନା ଭର୍ତ୍ତିହୋଇ ରହିଥିଲା । ପାୟସ ଓ ଚପ୍‌ସ୍ ପ୍ରଭୃତି ତିଆରି ହେଉଥିଲା ।

ଭଉଣୀ ଏବଂ ପଡ଼ଶାର ସ୍ତ୍ରୀଲୋକମାନେ ମହାବଳଙ୍କ ଶାସନର ସୁବର୍ଣ୍ଣ କଳାର ସ୍ତୁତିକରି ବଡ଼ ଉତ୍ସାହରେ ଗୀତ ଗାଉଥିଲେ—

"ଯେତେବେଳେ ମହାବଳ ରାଜା ହୋଇଥିଲେ
ମଣିଷମାନେ ଯେତେବେଳେ ଏକାଠି ହୋଇ ରହୁଥିଲେ
ଛନ୍ଦକପଟ କିଛି ନଥିଲା, ଷଡ଼ଯନ୍ତ୍ର ବି ନଥିଲା······"

ତା'ସହିତ ନଡ଼ିଆଗଛର ଦୁଇଟା ଡାଳକୁ ଠିଆ କରିଦେଇ ସେଥିରେ ବନ୍ଧା ହୋଇଥିବା ବଡ଼ ଦଉଡ଼ିରେ ଲଟକା ହୋଇ ରହିଥିବା କାଠଝୁଲାରେ ବସି ସାଇଁ ସାଇଁ କରି ଆକାଶକୁ ଛୁଇଁ ଛୁଇଁ ସେମାନେ ଝୁଲୁଥିବାରେ ଲାଗିଥିଲେ ।

ନାରାୟଣ ପିଲାଇ ଭଉଣୀ କଲ୍ୟାଣୀ ପଛରେ ଏବଂ ଅନନ୍ତନ୍ ନାୟରଙ୍କ ଆଗରୁ ହିଁ ଜନ୍ମ ଗ୍ରହଣ କରିଥିଲେ । ସିଏ ପାଞ୍ଚ ବରଷ ବଡ଼ ଥିଲେ । ଦୁଇ ଭାଇ ମିଶି ଓଣମ୍‌ର ପେଣ୍ଡୁ ଖେଳ ଖେଳୁଥିଲେ । ସେତିକିବେଳେ ମାଆ ଆସି ସନ୍ଧ୍ୟା ବେଳର ପୁଷ୍ପ-ପୂଜା ଲାଗି କିଛି ଫୁଲ ଆଣିବାକୁ କହିଲେ । ପଡ଼ଶାଘର ବଗିଚାରୁ ସେମାନେ ଫୁଲ ଆଣିବାକୁ ଚାଲିଗଲେ ।

ଝୁଲ ଝୁଲିବାର ଗୀତ ହଠାତ୍ ବନ୍ଦ ହୋଇଗଲା । ସବୁଆଡ଼େ ଏକ ଭୟଙ୍କର ନୀରବତା । କିଛି ସମୟ ପରେ ଭଉଣୀ ଆଉ ମାଆଙ୍କର କାନ୍ଦୁଥିବାର ବିକଳ ଧ୍ୱନି···

ସେତେବେଳେ ମନେହେଉଥାଏ, ସତେ ଯେପରି ହୃତ୍‌ପିଣ୍ଡର ସ୍ପନ୍ଦନ ହିଁ ବନ୍ଦ ହୋଇଯାଇଛି ! ସିଏ ଦୌଡ଼ି କରି ଘରକୁ ଗଲେ ଓ ଦେଖିଲେ ଯେ ସେଠାରେ ଚାରି ପାଞ୍ଚ ଜଣ ଲୋକ ଭଣୋଇଙ୍କୁ ଉଠାଇ କରି ଆଣୁଛନ୍ତି ଓ ବାହାରେ ବୁଦନୀ ଉପରେ ଶୁଆଉଛନ୍ତି । ସେତେବେଳେ ସେ କଥା କହି ପାରୁ ନଥାନ୍ତି ।

ଡାକ ଆଉ ଚିତ୍କାର ଲାଗି ରହିଥାଏ···କ'ଣ କରିବାକୁ ହେବ ଠିକ୍ କରି ପାରୁ ନଥିବାରୁ ବାପା ସ୍ତବ୍ଧ ହୋଇ ଠିଆ ହୋଇ ରହିଥାନ୍ତି ।

ଠିକ୍ ସେହି ସମୟରେ ନିଶ ଦାଢ଼ି ଥିବା ଜଣେ ସନ୍ନ୍ୟାସୀ କେଜାଣି କେଉଁଠୁ ଆସି ପହଞ୍ଚିଲେ । ଭଣୋଇଙ୍କର ନେଡ଼ାକୁ ହାତରେ ଉଠାଇ ସିଏ ତାଙ୍କର ନାଡ଼ୀ ଦେଖିଲେ, ତା'ପରେ ଘରର ପଛପଟକୁ ଥିବା ଜଙ୍ଗଲ ଭିତରୁ ଗୋଟିଏ କନ୍ଦରୁ ଏକ ଚେରମୂଳୀ ନେଇ ଆସିଲେ ଏବଂ ହାତପାପୁଲିରେ ମଳି ସେଥିରୁ ବାହାରିଥିବା ରସରୁ ଟିକିଏ ଭଣୋଇଙ୍କର ମୁଣ୍ଡରେ ନେଇ ଘଷିଦେଲେ । ତାଙ୍କର ଓଠବାଟେ ମୁହଁ ଭିତରେ ମଧ୍ୟ ସେହି ରସରୁ କେତେ ବୁନ୍ଦା ପକାଇଦେଲେ ।

କେତେ ସମୟ ପରେ ଭଣୋଇଙ୍କର ଆଖି ଫିଟିଲା । "ପୁଅ, ଗୁରୁଙ୍କର ଏପରି ପରୀକ୍ଷା କେବେ ନେବୁନାହିଁ, ମନେ ରହିଲା ? ସେପରି କରିବା ବଡ଼ ପାପ··· ।" କହି ସନ୍ନ୍ୟାସୀ ଉଠି ଠିଆହେଲେ ଏବଂ ଘରୁ ବାହାରକୁ ଆସି ତା'ପରେ ଅଦୃଶ୍ୟ ହୋଇଗଲେ । ପରେ ଜଣାପଡ଼ିଲା, ସେଇ ହେଉଛନ୍ତି ପ୍ରସିଦ୍ଧ ଶଙ୍କରମଠ ସ୍ୱାମୀ ।

ଭଣୋଇ ଉଠିକରି ବସିଲେ । ଆଖିରୁ ଲୁହ ବହି ଯାଉଥାଏ । ଏହି ଘଟଣାଟି ଘଟିବା ପରେ ବାପା, ମାଆ, ଭଉଣୀ ଏବଂ କେଜାଣି କେତେ କେତେ ଲୋକ କେତେ ପ୍ରକାର ତାଙ୍କୁ ସେ ବିଷୟରେ ପଚାରିଲେ, ସିଏ ମୁହଁ ଫିଟାଇ ତାହାର କୌଣସି ଉତ୍ତର ଦେଲେ ନାହିଁ । ତା'ପରେ ତାଙ୍କୁ ଆଉ କେହି କିଛି ପଚାରିବାର ଶୁଣା ବି ଗଲା ନାହିଁ । ସବୁବେଳେ ଖାଲି ଚୁପ୍···ଚୁପ୍···ସମ୍ପୂର୍ଣ୍ଣ ମୌନ । ମୁଖମଣ୍ଡଳ ଉପରେ ଗୋଟାଏ ପ୍ରକାରର ବେଦନା ମିଶ୍ରିତ ଚିନ୍ତା । ତା' ସହିତ ଖାଇବାର ପରିମାଣ ମଧ୍ୟ କମ୍ ହୋଇ-ଯିବାକୁ ଲାଗିଲା ।

ଆଉ ଅଧିକ କ'ଣ କହିବା··· ! ତୃତୀୟ ମାସରେ ହିଁ ସେହିପରି ବସିଥିବା ଅବସ୍ଥାରେ ସିଏ ସମାଧିଲୀନ ହୋଇଗଲେ ।

ସେତେବେଳେ ଭଉଣୀ ଗର୍ଭବତୀ । ତିନି ଚାରିମାସ ପରେ ଭାସ୍କରନ୍ ଜନ୍ମଗ୍ରହଣ କଲା ।

ଭଣୋଇଙ୍କ ମୃତ୍ୟୁ ପରେ ଭଉଣୀ ଝଡ଼ି ଝଡ଼ି ଅଧା ହୋଇଗଲେ । ତଥାପି, ତାଳଗଛର ଗୁଚ୍ଛ ପରି ତାଙ୍କର କେଶଭାର ଓ ଦେହର ରମଣୀୟତା କୌଣସି ଗୁଣରେ ଆଦୌ କମ୍ ହୋଇ ଯାଇ ନଥିଲା ଓ ତାହାକୁ ଦେଖି ଦେଖି ମାଆ କେବଳ ଦୀର୍ଘନିଃଶ୍ୱାସ ପକାଉଥିଲେ, ଆଖିରୁ ଲୁହ ପୋଛୁଥିଲେ··· ।

ଭଣୋଇ ମରିବାର ଗୋଟିଏ ବର୍ଷ ପରେ ପୁଣି ଭଉଣୀଙ୍କର ବିବାହ ବିଷୟରେ କଥାବାର୍ତ୍ତା ହେବାକୁ ଲାଗିଲା । ଦଲାଲ ଶଙ୍କର ପିଲାଇ ମହାରାଜାଙ୍କ କୁଟୁମ୍ବରୁ ମଧ୍ୟ ଗୋଟିଏ ପ୍ରସ୍ତାବ ନେଇ ଆସିଥିଲା ।

ଭଉଣୀ ଏକଦମ୍ ମନା କରିଦେଲେ ଓ କହିଲେ ଯେ ଆଉ ବିବାହ ବିଷୟରେ କୌଣସି କଥା ଉଠିବ ନାହିଁ ।

କିନ୍ତୁ ମାଆ ବାପା ଛାଡ଼ିଲେ ନାହିଁ । ସେମାନେ ସବୁବେଳେ ଭଉଣୀ ପାଖରେ ବସି ମନ୍ତ୍ରୋପଦେଶ କରୁଥିବାର ଦେଖାଯାଉଥିଲା ।

"ଆରେ, ମୋ' ସୁନାଟିଅଟା, ନାମ୍ବୁର୍ ଘରର ସ୍ତ୍ରୀ କେବେହେଲେ ବିଧବା ହୁଏ ନାହିଁ କି ସମୁଦ୍ରରେ ଲହଡ଼ି ମଧ୍ୟ ବନ୍ଦ ହୁଏ ନାହିଁ । ତୋ'ର ବି କ'ଣ ଏମିତି ବୟସ

ହୋଇଗଲଣି ? ତେଣୁ ଆଉ କିଛି ଆପତ୍ତି ନ କରି ହିଁ କରିଦେ'—ସିଏ ଆସିବ, ସିଏ ସ୍ତ୍ରୀକୁ ମଧ୍ୟ ଠିକ୍ ଭାବରେ ପାଳନ କରିବ— । ତୋର ବି କୋଉଥିରେ କିଛି କମ୍ ହେବ ନାହିଁ···ପେଶସ୍ୱତର୍ମ୍ମ···କୁଟୁମ୍ବ କ'ଣ ଏମିତ ସେମିତ କୁଟୁମ୍ବ ହୋଇଛନ୍ତି ?"

—ମା'ଆ ତାକୁ ଏହିସବୁ କଥା କହୁଥିଲେ ।

"ଆରେ ଝିଅ ! ତୁ ଆଉ କେତେଦିନ ଏପରି ଲୁହ ଗଡ଼ାଉଥିବୁ ? ପାଣିରେ ସାପ ମନ କରିବ ତ ଗୋଡର ଖାଇବା ମଧ୍ୟ ବନ୍ଦ କରିଦେଇ ପାରିବ (ଅର୍ଥାତ୍ କୌଣସି ଦୁର୍ବଳ ବ୍ୟକ୍ତି ମଧ୍ୟ ଆକ୍ରମଣକର ଅନିଷ୍ଟ କରିପାରିବ) । ସମସ୍ତ ସେମିତ ହେଲଣି । କେହି ତଣ୍ଟି ଚିପି ମାରିବାକୁ ଆସୁଥିବ ତ ତା'ଠାରୁ ଲୁଚି ଜୀବନ ରକ୍ଷା କରାଯାଇ ପାରିବ । କିନ୍ତୁ ସିଏ ଗ୍ରହି କରି ମାରି ପକାଇବ, ତା' କବଳରୁ ତୁ ଭଲା ଆପଣାକୁ କିପରି ରକ୍ଷା କରି ପାରିବୁ କହିଲୁ ? ତେଣୁ ଆଉ ଆପତ୍ତି ନ କରି ଏହି ବିବାହରେ ତୁ ସମ୍ମତ ହୋଇ ଯା' ଝିଅ । ଆମେ ତୋ'ର ଭଲ ପାଇଁ ସିନା ଏସବୁ କହୁଛୁ···" ବାପା ଏହିଭଳି କେତେ ଉପଦେଶ ଦେଉଥିଲେ ।

କିନ୍ତୁ ଏସବୁ ଶୁଣିବା ପରେ ମଧ୍ୟ ଭଉଣୀ ଦୃଢ଼ ଭାବରେ ନାହିଁ କରିଦେଲା ।

"ଏସବୁ ବିଷୟରେ ତୁମେମାନେ ଦକ୍ଷ । କିନ୍ତୁ ମୋତେ ଆଉ କିଛିହେଲେ କହିବ ନାହିଁ ।···ବର୍ତ୍ତମାନ ମୋର ଆଉ କୌଣସି ବିବାହରେ ଲୋଡ଼ା ନାହିଁ···ସ୍ୱାଭିମାନିକୁ ସମ୍ଭାଳିନେଇ ପାରୁଥିବା କୌଣସି ଲୋକ ହୋଇଥିଲେ ମଧ୍ୟ ତା'ର କ୍ଳାନ୍ତି ଆସିବ । ବାସ୍, ମୋର କେବଳ ସେତିକି ହିଁ କହିବା କଥା । ମୋ' ସ୍ୱାମୀର ବାପାଙ୍କୁ ଛାଡ଼ି ଆଉ କାହାରିକୁ, ସିଏ ମହାରାଜା ହୋଇଥାଉ କି ଆଉ ସିଏ ମନ ଯିଏ ହୋଇଥାଉ, ମୁଁ ଆପଣାର ପତିରୂପେ ମାନିନେଇ ପାରିବି ନାହିଁ । ହଁ, ଏଇଟା ମଧ୍ୟ ଠିକ୍ କଥା ଯେ ମୁହଁରୁ ବି ଯାହା ବାହାରିବ, ତାକୁ ପଧ କାମୁଡ଼ିବାକୁ ମନ ହେବ । ମୁଁ ତୁମମାନଙ୍କ ଲାଗି କଦାପି ଏକ ବୋଝ ହୋଇ ରହିବି ନାହିଁ······ଆଉ ତୁମେମାନେ ମୋତେ ବାଧ୍ୟ କରିବ ତ ହୁଏତ ମୋତେ ଆଉ ମୋତେ ଦେଖିବାକୁ ପାଇବନାହିଁ । ······"

ଏହିସବୁ ଟାଣ ଟାଣ କଥା କହି ସେହି ଭଉଣୀ ସମସ୍ତଙ୍କର ମୁହଁକୁ ବନ୍ଦ କରି ଦେଇଥିଲା ।

ତା'ପରେ ପଚିଶି ବର୍ଷ କାଳ ଏପରି ଏକ ଆଧ୍ୟାତ୍ମିକ ଜୀବନ । ସକାଳୁ ଉଠିବାଠାରୁ ଆରମ୍ଭ କରି ରାତିରେ ଶୋଇବାକୁ ଯିବା ପର୍ଯ୍ୟନ୍ତ ଖାଲି ଆଶ୍ରମ, ମନ୍ଦିର, ପୋଖରୀ, ପୂଜା-ପାଠ, ପୁରାଣ-ପ୍ରବଚନ । ବାସ୍, ସମସ୍ତ ଏହିପରି ଭାବରେ ହିଁ କଟିବାରେ ଲାଗିଛି । ଭଉଣୀ ବଳାତ୍କାର-ଶାଳୋରେ ଦୁଇ ଥନୋଟି ଜଳ ପାତ୍ର ଓ ନେତ୍ରୁଙ୍କାଡ଼ୁରେ

ଗୋଟିଏ ବଡ଼ କ୍ଷେତ ରଖି ଯାଇଥିଲେ । ସେହି କାରଣରୁ ପୁଅ ଶ୍ରୀଧରନ୍ ନାୟରର ଶିକ୍ଷା ଲାଗି ଉତ୍ତମ ବ୍ୟବସ୍ଥା କରାଯାଇ ପାରିଲା । ବର୍ତ୍ତମାନ ତ ସିଏ ସ୍ୱୟଂ ମୁଠା ମୁଠା ରୋଜଗାର କରିବାକୁ ଲାଗିଲାଣି । ତେଣୁ ଆଉ କୌଣସି ଚିନ୍ତା ହିଁ ନାହିଁ ।

ହୁଁ ! ଏତେଦୂର ବୈରାଗ୍ୟଶାଳୀ ଚିତ୍ତ ଥିବା ଭଉଣୀ କଲ୍ୟାଣୀ ଯୋଉ ଘରେ ଜନ୍ମ ହୋଇଛୁ, ଠିକ୍ ସେହି ଘରେ ତ ପିଉସୀ କୁଞ୍ଜଲକ୍ଷ୍ମୀଙ୍କର ବି ଜନ୍ମ ହୋଇଥିଲା ।

କାହିଁକି ! କାତ୍ୟାୟିନୀ, ଯାହାକୁ ମୁଁ ବାହା ହୋଇଥିଲି··· । ପିଉସୀ କୁଞ୍ଜଲକ୍ଷ୍ମୀଙ୍କର ମଧ୍ୟ ଆଦୌ କୌଣସି କଥା ଉଠିବ ନାହିଁ, ସିଏତ କେବଳ ନିଜର ବିବାହିତ ପତିଙ୍କୁ ଛାଡ଼ି ହିଁ ଏହି ସଂସାର ଛାଡ଼ି ଚାଲି ଯାଇଥିଲା : ।

କିନ୍ତୁ କାତ୍ୟାୟିନୀ······ ।

ମୁଁ ସତେ ଗୋଟାଏ ପଥର ପରି ହିଁ ହୋଇଥିବି···ତା'ର ପେଟରୁ ତ ମୋ'ର ସନ୍ତାନ ପ୍ରଭାକର ଓ ମାଧବୀ କୁଟ୍ଟୀ ଦୁହେଁଯାକ ଜନ୍ମ ହୋଇଛନ୍ତି । ଏମାନଙ୍କୁ ସମସ୍ତଙ୍କୁ··· ।

"ଶାଳୈରେ ଭୈରବାନ୍ ପିଲାଇର ଦୋକାନ କାମ କିପରି ଚାଲିଛି ?"— ଭଉଣୀ କଲ୍ୟାଣୀଙ୍କର ଏହି ପ୍ରଶ୍ନଟି ଅନନ୍ତନ୍ ନାୟରଙ୍କୁ ପୁଣି ପ୍ରକୃତିସ୍ଥ କରାଇ ଆଣିଲା ।

"ସେମିତି ବିଶେଷ କିଛି କହିବାକୁ ନାହିଁ । ହିସାବ କିତାବରହିଁ ତ ଯାହା କାମ ସେଠି ରହିଛି··· ।" ଏକଥାଟିକୁ କହିବା ସମୟରେ ମଧ୍ୟ ତାଙ୍କର ମନ ଏପାଖ ସେପାଖ ଆନ୍ଦୋଳିତ ହୋଇଗଲା ।

"ପ୍ରାସାଦ-କାର୍ଯ୍ୟାଳୟରେ ସେମାନେ ତୁମକୁ ପୁଣି କେଉଁ କାମରେ ନେବେ ? ସତ୍ୟାଗ୍ରହ କିପରି ଚାଲିଛି ?"

"ସେମାନେ ମୋତେ ପୁଣି କାମକୁ ନେବେ ବୋଲି ଆଦୌ ଲାଗୁନାହିଁ । ହଁ, ସତ୍ୟାଗ୍ରହ ଯେମିତି ଚାଲିଥିଲା ଚାଲିଛି । ଉପରୁ ଯେତେ ଯାହା ଆସି ମିଳିଯାଉଥିବ, ତାହାହିଁ ଭାଗ୍ୟର କଥା··· ।" ଅନନ୍ତନ୍ ନାୟର୍ କର୍କଶ ଭାବରେ କଥାକୁ ଶେଷ କଲେ ।

"ଆଚ୍ଛା, ମୁଁ ତା'ହେଲେ ଯାଉଛି ?"

ଭଉଣୀ କଲ୍ୟାଣୀ କାର୍‌ରେ ବସିବାକୁ ଯାଉଥିଲେ । ତାଙ୍କ ଘର ବଲିୟ-ଶାଳୈରେ ଥିଲା ।

"ତୁମେ ମୋ' ସାଙ୍ଗରେ ଆସିବ ତ ମୁଁ ତୁମକୁ ପୁରୁନ୍ତାନରେ ନେଇ ଛାଡ଼ି-ଦେଇ ପାରିବି ।··· ତେବେ ଗାଡ଼ିରେ ବସ···।" ଭଉଣୀ ଡାକୁଥିଲେ ।

"ନାଇଁ ଥାଉ ! ··· ଏଠି ବାଟରେ ମୋର ଜଣେ ଲୋକକୁ ଯାଇ ଦେଖା କରିବାର ଅଛି । ··· ତୁମେ ଯାଅ···", ସାମାନ୍ୟ ମିଛକଥା କହି ଅନନ୍ତନ୍ ନାୟର୍ ଭଉଣୀକୁ ବିଦାୟ ଦେଲେ ।

କେବେ ମାଧବୀ କୁଟ୍ଟିକୁ ସାଙ୍ଗରେ ନେଇ ଆମ ଘରକୁ ଆସିବ ।······ ମୁଁ ତାକୁ କେତେ ଦିନରୁ ଦେଖିନାହିଁ··· ।" କଲ୍ୟାଣୀଙ୍କର ଏହି କଥାଟିର ଉତ୍ତରରେ 'ଠିକ୍' ବୋଲି କହି ନାୟର୍ ମୁଣ୍ଡ ହଲାଉଥିଲେ । ଡ୍ରାଇଭର୍ କାର୍ ଷ୍ଟାର୍ଟ୍ କରିଦେଲା ।

## ସାତ

ଅନନ୍ତନ୍ ନାୟର୍ ଶୁଳବାରେ ଲାଗିଥିଲେ ଏବଂ ସକାଳ ସାତଟା ସମୟର ଖରା ତାଙ୍କର ମୁହଁ ଉପରେ ସମ୍ପୂର୍ଣ୍ଣ ଭାବରେ ପଡ଼ୁଥିଲା ।

ସେହି ସମୟରେ ପଦ୍ମତୀର୍ଥ ପୁଷ୍କରଣୀରେ ଅଲଗା ଅଲଗା ହୋଇ ଚାଆରି ହୋଇଥିବା ଘାଟରେ ସ୍ତ୍ରୀ ଓ ପୁରୁଷଙ୍କର ଦଳମାନ ଭିଡ଼ ଲଗାଇ ଗାଧୋଇବାରେ ଲାଗିଥିଲେ ।

ସେତେବେଳକୁ ପୁଷ୍କରଣୀର ଜଳରେ ମନ୍ଦିରର ଗୋପୁର, ନବରାତ୍ର ମଣ୍ଡପ ଏବଂ ଅନ୍ୟ ଶ୍ୱେତବର୍ଣ୍ଣ ଭବନଗୁଡ଼ିକ ବଡ଼ ସୁନ୍ଦୃଶ୍ୟ ଭାବରେ ପ୍ରତିବିମ୍ବିତ ହୋଇ ଉଠୁଥିଲା । ସ୍ଫଟିକବତ୍ ସେହି ଜଳକୁ ଦର୍ଶନ କରିବା ମାତ୍ରକେ ଅନନ୍ତନ୍ ନାୟର୍ଙ୍କର ମନରେ ପୁଣିଥରେ ସ୍ନାନ କରିବାରେ ଇଚ୍ଛା ଜାଗ୍ରତ ହୋଇ ଉଠିଲା । ମାତ୍ର ସ୍ୱାସ୍ଥ୍ୟର କାରଣରୁ ସେ ନିଜକୁ ବାଧ୍ୟ କରି ସେଥିରୁ ନିବୃତ୍ତ କରି ରଖିଲେ ।

ପ୍ରାକାରର କାର୍ଯ୍ୟାଳୟର ଗୋଟିଏ ପାଖକୁ କାନ୍ତାଡ଼ି ଗଛରେ ବାଦୁଡ଼ିମାନଙ୍କର ଚେଁ ଗୁଁ ହେବାରେ ଲାଗିଥିଲା ।

ସେଦିନ ଶଟ୍ଟମ୍ବି ସ୍ୱାମୀ ଭିଣୋଇଙ୍କୁ କହି ଯାଇଥିଲେ ଯେ ଗୁରୁଙ୍କର ପରୀକ୍ଷା ନେବା କଦାପି ଉଚିତ ନୁହେଁ । ସେପରି କ'ଣ କାରଣ ଥାଇପାରେ ?

ସେହି ପିଲାଦିନରେ ସେ ଯେଉଁ ପ୍ରଶ୍ନଟିକୁ ବୁଝି ପାରିନଥିଲେ, ତା'ର ତାତ୍ପର୍ଯ୍ୟ ପ୍ରକୃତରେ କ'ଣ ହୋଇଥିବ ? - ବଡ଼ ହୋଇ ସେ ଭଉଣୀକୁ ଏବଂ ଭିଣୋଇଙ୍କର ଅତି ନିକଟର ବନ୍ଧୁମାନଙ୍କୁ ଅଦମ୍ୟ କୌତୁହଳ ନେଇ ଏହି ପ୍ରଶ୍ନଟିକୁ ପଚାରିଛନ୍ତି, ତଥାପି ସେ ବର୍ତ୍ତମାନ ସୁଦ୍ଧା ବି ଜାଣିପାରିଲେ ନାହିଁ ସେଦିନ ସେ କାହିଁକି ଏପରି କହିଥିଲେ । ସେପରି କହିବାର ଉଦ୍ଦେଶ୍ୟ ବା କ'ଣ ଥିଲା ?

ବାପର ଚାଲିବା ବାଟକୁ ଅନୁସରଣ କରି ବାଟ ଚାଲୁଥିବା ଭାସ୍କରନ୍ ନାୟର୍ ହୁଏତ ସେକଥା ଜାଣିଥିବ । ଆସନ୍ତା ଥରକୁ ତା'ସହିତ ସାକ୍ଷାତ ହେଲାବେଳେ ଏହି କଥାଟି ବିଷୟରେ ଆଲୋଚନା କରିବାକୁ ହେବ...... ।

ହୁଁ ! ଏସବୁ ଅନାବଶ୍ୟକ କଥାରେ ମୋ'ର କ'ଣ ଯାଏ ଆସେ । ନିଜ ଅବସ୍ଥା ତ ଏଠାରେ କହିଲେ ନସରେ... । ବର୍ତ୍ତମାନ ପର୍ଯ୍ୟନ୍ତ ଭଉଣୀର ପବିତ୍ର ଜୀବନଟି ବିଷୟରେ ସ୍ମରଣ କରି ମନ ସେଇଥିରେ ଭୋଳ ହୋଇ ରହିଥିଲା ଓ ନିଜର ଦୁଃଖଟିକୁ ଭୁଲି ଯାଇଥିଲା । ବର୍ତ୍ତମାନ ଅନ୍ତଃମନଟି ପୁନର୍ବାର ଜାଗ୍ରତ ହୋଇଉଠିଲା ।

କହୁ ବସିଲେ ପିଉସୀ କୁଞ୍ଜଲକ୍ଷ୍ମୀଙ୍କର ବି ନିନ୍ଦା କରିବା ଉଚିତ ନୁହେଁ । ପିଉସୀ ଶଙ୍କରୀ ସାଙ୍ଗ ସଂସାରଲାଗି ହୁଏତ ଜଣେ ସୁନ୍ଦର ପୁରୁଷ ବେଶ୍ ହୋଇପାରନ୍ତି । ପିଉସୀଙ୍କ ପାଇଁ ସିଏ ହୁଏତ ନିଜର ଜୀବନ ଦେବାକୁ ରାଜି ହୋଇଯିବେ, କିନ୍ତୁ କୁଞ୍ଜଲକ୍ଷ୍ମୀ ତାଙ୍କୁ ନେଇ କଦାପି ସନ୍ତୋଷ ଲାଭ କରି ନଥିବେ । କିନ୍ତୁ ସେକଥା ଏବେ କିଏ ଜାଣିଛି ? ସେମାନଙ୍କର ସନ୍ତାନ ବୋଲି ବି କେହି ନାହାନ୍ତି—ବିବାହ ସଂସାରର ଶାଢ଼ୀ ଦେବାର ଗୋଟିଏ ବର୍ଷ ବି ହେବା ପୂର୍ବରୁ ତାହାର ମଧ୍ୟରେ ହିଁ ତାଙ୍କଠାରୁ ସମ୍ବନ୍ଧ ଛଡ଼ାଇ ଆଗରୁ ବିବାହିତ ଓ ପାଞ୍ଚ ଛଅଟି ପିଲାଙ୍କର ବି ବାପ କୋଚୁକୃଷ୍ଣ କର୍ତ୍ତାଙ୍କ ପାଖରେ ସିଏ ଯାଇ ପହଞ୍ଚିଥିଲେ ।

ହୁଁ ! ସିଏ ନିଜେ ଏହିସବୁ ବିଷୟରେ ଠିକ୍ କରି ହୁଏତ କିଛି ଜାଣି ନାହାନ୍ତି । ତାଙ୍କ ମାଆ ତାଙ୍କୁ କହିବାରୁ ସିନା ପିଲାଦିନର ସବୁକଥା ସେ ଜାଣିବାକୁ ପାଇଲେ ।

କିନ୍ତୁ......

କାର୍ତ୍ତ୍ୟାୟିନୀର କଥା ବି କ'ଣ ଠିକ୍ ଏମିତି ? ଆପଣାର ପତି ବିଷୟରେ କ'ଣ ତା'ମନରେ ବି ଅସନ୍ତୋଷ ରହିଥିଲା ?

ପ୍ରଭାକରନ୍ ନାୟର୍ ଏବଂ ମାଧବୀ କୁଟ୍ଟୀ ଏମାନେ ସୁନାର ପ୍ରତିମା ପରି । ବର୍ଷ ତଳେ ପ୍ରଭାକରନ୍ ନାୟର୍‌ଙ୍କୁ ଦଶ ବର୍ଷ ହୋଇଥିଲା, ମାଧବୀ କୁଟ୍ଟୀକୁ ପାଞ୍ଚ ବର୍ଷ । ସଂସାରକୁ ବୁଝି ପାରିବାର ବୟସ ହୋଇଯାଇଥିଲା ।

ସେପରି ହୋଇ ମଧ୍ୟ......

ଅନନ୍ତନ୍ ନାୟର୍ ପୂର୍ବ ତରଫର ଫାଟକ ତଳକୁ ଠିଆ ହୋଇଥିଲେ । ହଠାତ୍ ଦୂରରୁ ପଲଓ୍ବାଙ୍ଗାଡ଼ି ମନ୍ଦିର ପାଖରୁ ପୁଲିସ୍‌ର ଲମ୍ବା ହିଇସିଲ ଶୁଣିବାକୁ ମିଳିଲାଣି । ସଙ୍ଗେ ସଙ୍ଗେ ସେହି ପୂର୍ବ ତରଫର ଫାଟକରେ ସ୍ପେଶାଲ୍ ଡ୍ୟୁଟିରେ ଠିଆ ହୋଇଥିବା ଟ୍ରାଫିକ୍ କନ୍‌ଷ୍ଟେବଲ୍ ମଧ୍ୟ ହାତରେ ଥିବା ପିତ୍ତଳ ହୁଇସିଲଟିକୁ ମୁହଁରେ ରଖି ଲମ୍ବାକରି ବଜାଇ-ବାରେ ଲାଗୁଛି । ସେହି ଶବ୍ଦକୁ ଶୁଣି ଡାହାଣ ପଟରେ ଥିବା ବେଙ୍କଟ୍ ମୁରଚାନ୍ ଫାଟକର ଅଗଣାରେ ଠିଆ ହୋଇଥିବା ସିପାହୀ ଜଣକ ମଧ୍ୟ ହୁଇସିଲ ବଜାଇ ଦେଲା ଏବଂ ତାହାର ମନ୍ଦ ଆବାଜଟି ଏଠାଯାଏ ମଧ୍ୟ ବେଶ୍ ଶୁଣାଯାଉଥିଲା ।

ପୌନେ ଆଠଟା ବାଜିଗଲାଣି ? ଶ୍ରୀ ଶ୍ରାବଣ ମହାରାଜ ପଦ୍ମନାଭଙ୍କ ଦର୍ଶନଲାଗି ବାହାରିଛନ୍ତି—ହୁଇସିଲ ବାଜିବାରୁ ହିଁ ତାହାର ସୂଚନା ମିଳିଯାଉଛି ।

ସଡ଼କରେ ପାଦରେ ଚାଲିଚାଲି ଯାଉଥିବା ଲୋକମାନେ ଅଣ୍ଟାରେ ଭଙ୍ଗା ହୋଇ ଖୋସା ହୋଇଥିବା ନିଜର ଧୋତିଟିକୁ ଠିକ୍ କରି ଦେଇ ଭଦ୍ରଭାବ ସହିତ ସଡ଼କର

ପାର୍ଶ୍ୱକୁ ଘୁଞ୍ଚିଯାଇ ଠିଆ ହେଉଛନ୍ତି ଓ ମୁଣ୍ଡ ନୁଆଁଇ ପ୍ରଣାମ କରୁଛନ୍ତି । ସଡ଼କରେ ଚାଲୁଥିବା ସବୁ କାର୍, ବସ୍‌କୁ ଅଟକାଇ ଦିଆଯାଇଛି । କେତେକ ଲୋକ କାର୍ ଏବଂ ବସ୍ ଗୁଡ଼ିକରୁ ତଳକୁ ଓହ୍ଲାଇ ଆସୁଛନ୍ତି ଓ ମୁଣ୍ଡ ନୁଆଁଇ ପ୍ରଣାମ କରୁଛନ୍ତି । ଶ୍ରୀ ଚିତ୍ରାବଣ ମହାରାଜା ସେହି ବହୁମୂଲ୍ୟ କାର୍‌ଟି ମଧ୍ୟରେ ସ୍ମିତ ହସରେ ବସି ରହିଛନ୍ତି ଓ ହାତ ଯୋଡ଼ି ନମସ୍କାର କରିବାରେ ଲାଗିଛନ୍ତି । ତାଙ୍କର ସେହି ନାଳିଆ ରଙ୍ଗର କାର୍, ଯାହା ଉପରେ ଆଗ ପଟକୁ ଶଙ୍ଖର ଚିହ୍ନ ଅଙ୍କିତ ହୋଇଛି । ଅଭ୍ୟାସବଶତଃ ହାତଯୋଡ଼ି ପ୍ରଣାମ କରୁଥିବା ଅନନ୍ତନ୍ ନାୟରଙ୍କୁ ସେହି କାର୍‌ଟି ଆଗକୁ ଆସି ଅତିକ୍ରମ କରିଯାଉଛି ।

ମହାରାଜା ରାଜପ୍ରମୁଖ ହୋଇଗଲେ, ତା'ପରେ ମଧ୍ୟ ସେ ପୂଜାକାର୍ଯ୍ୟରେ ଆଉରି କୌଣସି ତ୍ରୁଟି ରଖିଲେ ନାହିଁ । ମହାବଳୀ ପ୍ରାସାଦ ଭିତରୁ ବାହାରି ମୁଖ୍ୟ ସଡ଼କ ଦେଇ ସକାଳ ପୌନେ ଆଠଟା ସମୟରେ ସିଏ ପଦ୍ମନାଭ ସ୍ୱାମୀଙ୍କର ମନ୍ଦିରକୁ ଯାଆନ୍ତି, ଏବଂ ପୌନେ ନଅଟା ସମୟରେ ମନ୍ଦିରରୁ ପୁଣି ପ୍ରାସାଦକୁ ଫେରନ୍ତି,—ଏଇଟା ହେଉଛି ଦୈନିକ ରାଜକୀୟ ଯାତ୍ରା । 'ବେଟ୍ଟର ମୁରଚାନ୍ ଫାଟକକୁ ପାରି ହେଉ ହେଉ ଡାହାଣ ପଟକୁ ରହିଥିବା ରାସ୍ତାରେ ବୁଲି ସେହି କାର୍ ଆଖିଆଗରୁ ଅଦୃଶ୍ୟ ହୋଇଯାଏ ।

ଅନନ୍ତନ୍ ନାୟର୍ ବାଆଁ ପଟକୁ ବୁଲି ଚାଲିବାକୁ ଲାଗିଲେ । ନିଦରୁ ଉଠି ନଗର କଡ଼ ଲେଉଟାଉ ଥାଏ । ଖରା ଖାରି ଫୁର୍ତ୍ତିରେ ମାଡ଼ିଆସୁଛି, ଏହି ସଙ୍କେତଟି କେଇ ଯାତାୟତ ଏବଂ ଜନସଞ୍ଚରଣ ବଢ଼ିବାରେ ଲାଗିଲା ।

ପ୍ରାୟ ପାଞ୍ଚଘଣ୍ଟା ପୂର୍ବରୁ ସେ ଠିକ୍ ଏହି ରାସ୍ତାଟି ଦେଇ ମନ୍ଦିରକୁ ଯାଇଥିଲେ; ସେତେବେଳେ ଏଠାରେ ସର୍ବତ୍ର ଯେଉଁ ଶାନ୍ତି ଓ ନୀରବତା ରହିଥିଲା, ତାହା ବର୍ତ୍ତମାନ କେଉଁଠି ଯାଇ ଲୁଚିଗଲା ?—ପିଲାଳିଆମି କରି ତାଙ୍କର ମନ ଏହି ପ୍ରଶ୍ନଟି ପଚାରି ଉଠିଲା ।

ଅନନ୍ତନ୍ ନାୟରଙ୍କର ହୃଦୟରେ ବର୍ତ୍ତମାନ ରାଜ-ପରିବାରଟିର ମଧୁର ସ୍ମୃତିଗୁଡ଼ିକ ଭରିସିବାକୁ ଲାଗିଲା, ଯାହାର ରାଜା ଏହି ନଗରଟିକୁ ରାଜଧାନୀ କରି ତିଆରି କରିଥିଲେ, ଏହି ନଗରର ମନ୍ଦିରରେ ଶୟନ ମୁଦ୍ରାରେ ଅବସ୍ଥିତ ଶ୍ରୀ ପଦ୍ମନାଭଙ୍କର ଦାସ ହୋଇ ଏକଦା ଦକ୍ଷତାର ସହିତ ଏହି ରାଜ୍ୟଟିର ପାଳନ କରୁଥିଲେ ।

ବୀରତ୍ୱରେ, ସଂଗୀତରେ, ଚିତ୍ରକଳାରେ, ଲକ୍ଷ୍ୟ-ଲକ୍ଷଣ ସାହିତ୍ୟରେ ଏବଂ ଆଧ୍ୟାତ୍ମିକତାରେ ସର୍ବଦା ଆପଣାର କ୍ଷମତାକୁ ପ୍ରଭାବଶାଳୀ ଭାବରେ ପ୍ରୟୋଗ କରି ଓ ଅନେକ ଅପୂର୍ବ କାର୍ଯ୍ୟକୁ ସମ୍ପନ୍ନ କରି ଇତିହାସରେ ଯଶ ଅର୍ଜନ କରିଥିବା ଉତ୍ତମ ରାଜା-ମାନଙ୍କର ଏହି ବଂଶ······

ମାତୃସତ୍ତ୍ୱର ବ୍ୟବସ୍ଥା (୧) ନା ! ଶ୍ରୀ ଭରଣି ମହାରାଜାଙ୍କ ପରେ ଶାସନ କରିବାଲାଗି ଦତ୍ତକ ନିଆଯାଇଥିବା ଦୁଇଭାଇଙ୍କ ମଧ୍ୟରୁ ଜ୍ୟେଷ୍ଠର ରାଣୀ ଥିଲେ ।

(୧) କେରଳରେ ଏହି ଅଳ୍ପ କେତେବର୍ଷ ପୂର୍ବ ପର୍ଯ୍ୟନ୍ତ, ପାରିବାରିକ ସମ୍ପତ୍ତିର 'ମାତୃସତ୍ତ୍ୱ-ପ୍ରଧାନ' ବ୍ୟବସ୍ଥା ପ୍ରଚଳିତ ହେଉଥିଲା, ଭାରତବର୍ଷର ଅନ୍ୟାନ୍ୟ ଅଞ୍ଚଳରେ ସାଧାରଣତଃ ପ୍ରଚଳିତ ହେଉଥିବା 'ପିତୃସତ୍ତ୍ୱ-ପ୍ରଧାନ' ବ୍ୟବସ୍ଥାଟି ସେଠାରେ ପ୍ରଚଳିତ ହେଉ ନଥିଲା । ବିଶେଷତଃ ନାୟର୍‌ମାନଙ୍କ ମଧ୍ୟରେ ଏହି ପ୍ରଥାଟି ରହିଥିଲା । ଏହାର କାରଣ ହେଉଛି ଯେ, କେରଳରେ ବ୍ରାହ୍ମଣମାନଙ୍କ ମଧ୍ୟରେ ଏପରି ଗୋଟିଏ ନିୟମ ରହିଥିଲା ଯେ ବଂଶର ଦ୍ୱିତୀୟ ପୁତ୍ରମାନେ ଆପଣା ଜାତିର କୌଣସି ସ୍ତ୍ରୀ ସହିତ ବିବାହ କରିପାରୁ ନଥିଲେ । ଏମାନେ ନାୟର୍ ଜାତିର ସ୍ତ୍ରୀ ସହିତ ବୈବାହିକ ସମ୍ବନ୍ଧ ରଖିପାରୁଥିଲେ । ଏହିପରି ସମ୍ବନ୍ଧକୁ ମାଲୟଲମ୍‌ରେ ମଧ୍ୟ 'ସବନ୍ଧମ୍' ବୋଲି କୁହାଯାଉଥିଲା । ଯଦି କୌଣସି ବ୍ରାହ୍ମଣ କୌଣସି ନାୟର୍ କନ୍ୟାକୁ ଶାଢ଼ୀ ଦେଉଥିଲା ଏବଂ ସେହି କନ୍ୟା ତାହାକୁ ସ୍ୱୀକାର କରି-ନେଉଥିଲା, ତେବେ ସେହି କ୍ଷେତ୍ରରେ 'ସବନ୍ଧମ୍' ହୋଇଯାଉଥିଲା । ପତି ଯାଇ ରାତିରେ ପତ୍ନୀଘରେ ରହୁଥିଲା, ସକାଳ ହେଲେ ଚାଲିଯାଉଥିଲା । ପତ୍ନୀଘରେ ସେ ଖିଆପିଆ କରୁ ନଥିଲା, କାରଣ ସେପରି କରିବା ବର୍ଜିତ ହୋଇ ରହିଥିଲା । ସିଏ ଆପଣା ପିଲାଙ୍କର ବି ପାଳନପୋଷଣ କରି ପାରୁନଥିଲା । ସେହି ପିଲାମାନଙ୍କର ମଧ୍ୟ ନିଜ ପିତାର ସମ୍ପତ୍ତି ଉପରେ କୌଣସି ଅଧିକାର ରହୁନଥିଲା । ପିଲାମାନଙ୍କର ପଦ୍ମାବତୀ ଏବଂ କନିଷ୍ଠର ରାଣୀ ଥିଲେ ଭଗୀରଥୀ ରାଣୀ ।

ଯେତେବେଳେ ଶ୍ରୀ ଭରଣି ମହାରାଜା ସଂସାରରୁ ବିଦାୟ ନେଇ ଗଲେ, ସେତେବେଳେ କନିଷ୍ଠା ରାଣୀ ଭଗୀରଥୀଙ୍କର ଜ୍ୟେଷ୍ଠ ପୁତ୍ର ଶ୍ରୀ ଶ୍ରାବଣ ମହାରାଜା ତଥାପି ସାବାଳକ ହୋଇ ନଥିଲେ । ତେଣୁ କେତେକାଳ ପର୍ଯ୍ୟନ୍ତ ରିଜେଣ୍ଟଙ୍କର ତତ୍ତ୍ୱାବଧାନରେ ଶ୍ରୀ ଶ୍ରାବଣ ମହାରାଜାଙ୍କର ଜେଠେଇ ପଦ୍ମାବତୀ ହିଁ ଶାସନ କରିଥିଲେ । ତା'ପରେ ବୟଃପ୍ରାପ୍ତ ହୋଇସିବା ପରେ ଶ୍ରୀ ଶ୍ରାବଣ ମହାରାଜା ଜେଠେଇଙ୍କ ଠାରୁ ଶାସନଭାର ଗ୍ରହଣ କରିଥିଲେ ।

ସେତିକବେଳେ ପ୍ରାସାଦ-କାର୍ଯ୍ୟାଳୟର କିରାଣୀ ସିଏ ବି ସେଠାରେ ଯାଇ ପହଞ୍ଚିଲେ,—ଅନନ୍ତନ୍ ନାୟର୍ ଆପଣାର ସ୍ମୃତିକୁ ତାଜା କରିନେଲେ ।

ହାଇସ୍କୁଲ୍ ପରୀକ୍ଷାଟି ପାସ୍ କରି କଲେଜକୁ ପାଠ ପଢ଼ିବାକୁ ଯିବେ ନା ନାହିଁ, ସିଏ ସେହି ବିଷୟ ଚିନ୍ତା କରିଥିଲେ··· ।

ଭଉଣୀ କଲ୍ୟାଣୀ ବିଧବା ହୋଇଗଲେ । ମଝିଆ ଭାଇ ନାରାୟଣ ପିଲାଙ୍କ ପାଳନ ପୋଷଣ କରିବାର ଦାୟିତ୍ୱ ମାମୁଁର ଥିଲା । ତେଣୁ ସ୍ତ୍ରୀ ହିଁ ସମ୍ପତ୍ତିର ଅଧିକାରିଣୀ ହେଉଥିଲା ଏବଂ ସ୍ତ୍ରୀ'ର ବଡ଼ଭାଇ ଘରର ଯାବତୀୟ ବ୍ୟବସ୍ଥା ବୁଝୁଥିଲା ।

ପୁରୁଷର ମୃତ୍ୟୁପରେ ତା'ର ଭଉଣୀ ଓ ଭଣଜାକୁ ମିଳୁଥିଲା, ତା ନିଜର ସନ୍ତାନମାନଙ୍କୁ ମିଳୁ ନଥିଲା । ପରିବାରଟି ଏକ ସଂଯୁକ୍ତ ପରିବାର ହୋଇଥିବାରୁ ଭଉଣୀ, ଭାଇ ଓ ଭଉଣୀର ସନ୍ତାନମାନେ ଗୋଟିଏ ପରିବାରରେ ରହୁଥିଲେ, ଭାଇର ସ୍ତ୍ରୀ ତେଣେ ତା' ନିଜ ପରିବାରରେ ଯାଇ ରହୁଥିଲା ଏବଂ ତା'ର ସନ୍ତାନମାନେ ମଧ୍ୟ ସେଇଠାରେ ରହୁଥିଲେ ।

ନାୟର୍ ଘରର ସ୍ତ୍ରୀମାନେ ପତିକୁ ଛାଡ଼ପତ୍ର ଦେଇ ପାରୁଥିଲେ ଏବଂ ପୁନଃ-ବିବାହ କରି ପାରୁଥିଲେ । ବ୍ରାହ୍ମଣ ବ୍ୟତୀତ ଅନ୍ୟ କୌଣସି ଜାତି ଅଥବା ନିଜ ଜାତିର ପୁରୁଷ ସହିତ 'ସମ୍ବନ୍ଧମ୍' କରିପାଇ ପାରୁଥିଲା । ସମ୍ପତ୍ତି ବିଷୟରେ ଏହିଭଳି ଏକ ବ୍ୟବସ୍ଥା ଚଳୁଥିବାରୁ ସେଥିରୁ କେତେକେତେ ପାରିବାରିକ ସମସ୍ୟା ଉତ୍ପନ୍ନ ହେଉଥିଲା । ସେହି ପ୍ରଥା ଏବେ ପ୍ରାୟ ଅପ୍ରଚଳିତ ଅବସ୍ଥାକୁ ଆସିଗଲଣି ଏବଂ କେରଳରେ ମଧ୍ୟ ଭାରତର ଅନ୍ୟ ଭାଗଗୁଡ଼ିକ ପରି ପତିପତ୍ନୀ ଏବଂ ସେମାନଙ୍କର ସନ୍ତାନମାନଙ୍କୁ ନେଇ ନିଜର ପୃଥକ୍ ପରିବାରଟିଏ ତିଆରି ହୋଇଯାଉଛି । ମାତାପିତାଙ୍କର ଉପାର୍ଜିତ ସମ୍ପତ୍ତିର ଉତ୍ତରାଧିକାରୀ ପୁତ୍ରମାନଙ୍କୁ ହିଁ ପ୍ରାପ୍ତ ହେଉଛି ।

ତୃତୀୟ ଶ୍ରେଣୀରୁ ଆଉ ଆଉ ଆଗକୁ ଯାଇ ପାରିଲେ ନାହିଁ । ସେତିକ ବାଟ ଯାଉଯାଉ ତାଙ୍କର ସବୁଯାକ ଧ୍ୟାନଯାଇ ପିଲମାନଙ୍କର ନାଟକକମ୍ପାନୀରେ ରମି ଯାଇଥିଲା, ସେହି କମ୍ପାନୀ ତାମିଲନାଡ଼ୁରୁ ସେଠିକୁ ଆସି କୋଓ୍ୱଲନ୍ ନାଟକ ପ୍ରଦର୍ଶନ କରୁଥିଲା । ବାପା କେତେ କହିଲେ, ବୁଝାଇଲେ, ଏପରିକି ଥରେ ଗୋଟାଏ ଲୁହାଛଡ଼ ତତାଇ ତାଙ୍କ ପିଠିରେ ଚିହ୍ନ ଦେଇ ଦାଗ ବସାଇଦେଲେ । କିନ୍ତୁ ଭାଇ ମାନିଲା ନାହିଁ । ଶେଷକୁ "ଝିଅ ଘୋଡ଼ାରେ ବୁଲେ" କହି ସିଏ ତାକୁ ଘରୁ ଆଉ କେଉଁଠାକୁ ବାହାର କରିଦେଲେ । ଅନେକ ସମୟରେ ଖବର ଆସୁଥିଲା ଯେ ନାଟକ-କମ୍ପାନୀ ସାଙ୍ଗରେ ଏପରି ସେପରି ଯାବତୀୟ ପ୍ରକାରର ଝିଅମାନଙ୍କ ସାଥିରେ ଧରି ସିଏ ଗାଁ ଗାଁ ବୁଲିବାରେ ଲାଗିଛି । ବପାଙ୍କର ଦୃଷ୍ଟିକୁ ଏଡ଼ାଇ ମାଆ କେତେ କାନ୍ଦନ୍ତି······ଯଦି କେତେବେଳେ ବାପା ମାଆଙ୍କୁ ସେହି କାରଣରୁ କାନ୍ଦୁଥିବାର ଦେଖି ନେଉଥିଲେ, ତେବେ ମାଆଙ୍କୁ ଆଉ ଭୂଇଁ ଉପରେ ଠିଆ ହେବାକୁ ହିଁ ଦେଉନଥିଲେ । ସେହି କଥାଟି ବିଷୟରେ ତାଙ୍କର ଏତେ-ବେଶୀ କ୍ରୋଧ ରହିଥିଲା······

ହୁଁ······ ! ସେଇ ନାରାୟଣ ପିଲଇ ଆଜି କେତେ ଧନସମ୍ପତ୍ତିର ଅଧିକାରୀ ନ ହେଲା ! ସିଏ ତ ଏକାବେଳେକେ ଜଣେ ବଡ଼ଲୋକ ହୋଇଯାଇଛି । ପଦ୍ମନଗର କଲୋନୀରେ ବିରାଟ ଘର ତିଆରି କରିଛି, ଜାହଜ ସିନେମାରେ ଅଭିନେତା ହେବା କ'ଣ ମାମୁଲି କଥା ହୋଇଛି ? 'ପାଲକ୍କୁଲଙ୍ଗରେ ନାରାୟଣ ପିଲଇ' ବୋଲି କହିବା ମାତ୍ରକେ ବର୍ତ୍ତମାନ ତାକୁ ଭଲ କିଏ ନଚିହ୍ନିବ ! ପ୍ରଥମେ ବିବାହ କରିଥିବା ସ୍ତ୍ରୀଟି ପତ୍ନୀଙ୍କୁ

ଛାଡ଼ିବା ପରେ ଏବେ ଉତ୍ତରରେ ଥିବା ତିଶୂରରୁ ଜଣେ ନବ୍ୟୁବତୀଙ୍କୁ ବିବାହ କରିନେଇ ଆସିଛି । ଶୁଣାଯାଉଛି ଯେ ତା'ର ଆଜୁରି ଦୁଇତିନୋଟି ପିଲା ଅଛନ୍ତି । ହୁଁ ! ତାପାଖକୁ ପୁଣି କିଏ ଯାଉଛି ! ତାର ଆଜୁର ଗୋଟିଏ ଗ୍ରେଟ୍‌ଭାଇ ରହିଛି ବୋଲି ସିଏ ତ ଭୁଲି ହିଁ ଯାଇଥିବ !

ଶେଷରେ ବାପା ଦିନେ ତାଙ୍କୁ ଡାକିକରି କହିଲେ, "ଅରେ ଅନନ୍ତ, ତୋ' ଭାଇଠାରୁ ତ ମୋତେ ଗୋଟାଏ ପଇସାର ବି ଲଭ ମିଳି ନାହିଁ । ଘରୁ ବାହାରି ଯାଇ-ଥିବା ବଳଦ, ଯେତେବେଳେ ହେଉ ପଛକେ, ଠେଙ୍ଗାମାଡ଼ ଖାଇ ହିଁ ତା'ର ମୃତ୍ୟୁ ହେବ । ମୋ' ଆଖିରେ ତ ସିଏ କୋଉଦିନୁଁ ମରି ସାରିଲାଣି । କିନ୍ତୁ ତୋ'ର ସାନ ଭାଇ ମଧୁସୂଦନକୁ ଅତି କମ୍‌ରେ ତୁ ଯେତିକି ଯାଏ ଆସିଲୁ, ସେତିକି ଯାଏ ତ ପୁଣି ପାଠ ପଢ଼ାଇବାକୁ ହେବ ! ସୁକୁମାରନ୍‌ର ତ ଏପରି ହେଲାଣି ଯେ ମୂର୍ଚ୍ଛାରୋଗ ହୋଇ ଅନେକ ସମୟରେ ତଳେ ପଡ଼ିଯାଉଛି । ତା'ର ଚିକିତ୍ସା ଖର୍ଚ୍ଚ ଏବଂ ଏପରି ଅବସ୍ଥାରେ ତୁ ପୁଣି ଆଜୁରି ଉପରକୁ ପଢ଼ିବାରେ ଲାଗିଥିବୁ ତ ଘରର ସର୍ବନାଶ ହୋଇଯିବ । ତେଣୁ ପ୍ରାସାଦ-କାର୍ଯ୍ୟାଳୟରେ ତୋ ପାଇଁ ଖଣ୍ଡେ ଚାକିରି ଯୋଗାଡ଼ କରାଇଦେବା ଲାଗି ମୁଁ ମହାରାଜାଙ୍କର ବ୍ୟକ୍ତିଗତ ସେକ୍ରେଟରିଙ୍କ ସହିତ କଥାବାର୍ତ୍ତା କରିସାରିଛି । ଯାହାକିଛି ହେଉ ପଛକେ, ଶ୍ରୀ ପଦ୍ମନାଭଙ୍କର ସେବାକରି ଗୋଟିଏ ପଇସା ବେତନ ମିଳିଲେ ମଧ୍ଯ ତାଠାରୁ ବଳି ବଡ଼ ଭାଗ୍ୟ ଆଉ କ'ଣ ଅଛି ?"

ବାପା ଯେତେବେଳେ ଡାକି କରି ଏପରି ଦୁଇପଦ କଥା କହିଦେଲେ, ସେତେବେଳେ ଉଚ୍ଚଶିକ୍ଷା ବିଷୟରେ ରହିଥିବା ତାଙ୍କର ସବୁଯାକ ସ୍ୱପ୍ନକୁ ପୁଡ଼ାରେ ବାନ୍ଧି ରଖିଥିବା ବ୍ୟତୀତ ତାଙ୍କର ଆଉ ଅନ୍ୟ ଗତି କ'ଣ ବା ଥିଲା ?

ପଲର୍ଓ୍ୱିଙ୍ଗାଡ଼ ଗଣେଶଙ୍କ ମନ୍ଦିରରେ ଗଦାଏ ନଡ଼ିଆ ଭଙ୍ଗାହୋଇ ଜମା ହେଉଥିଲା । ସକାଳେ ଯେଉଁସବୁ ନଡ଼ିଆ ଭଙ୍ଗା ହୋଇଥିଲା, ତା'ର ଫାଳଗୁଡ଼ିକୁ ଅଖାରେ ଭର୍ତ୍ତିକରି ବୋଝେଇ ଗାଡ଼ିରେ ଲଦା ଯାଉଥିଲା ।

ଏହି ମନ୍ଦିରରେ ନଡ଼ିଆଫାଳଗୁଡ଼ିକର ଠିକା ନେଉଥିବା ବ୍ୟକ୍ତିର ପ୍ରକୃତରେ କେତେ ଲାଭ ହେଉ ନଥିବ,—ଏହି ଲୌକିକ ଷଡ଼୍ୟନ୍ତ୍ରିକୁ ମନରୁ ଦୂର କରିବାକୁ ଚେଷ୍ଟା କରି ଅନନ୍ତନ୍ ନାମ୍ବୁର୍ ଗଣେଶଙ୍କ ଉଦ୍ଦେଶ୍ୟରେ ଦୁଇ ହାତ ଯୋଡ଼ି ନମସ୍କାର କରି ଶ୍ରୀ ପଦ୍ମନାଭ ସ୍ୱାମୀ ମନ୍ଦିରର ଉତ୍ତର ଆଡ଼କୁ ଅଗ୍ରହାରବୀଥିରେ ଧୀରେ ଧୀରେ ଅଗ୍ରସର ହୋଇ ଯାଉଥିଲେ ।

ପଟ୍ଟମ୍ ଦୁଗ୍ଧଶାଳାରୁ ବଡ଼ ବଡ଼ ମଟର ଗାଡ଼ିରେ ଦୁଧର କୁମ୍ଭଗୁଡ଼ାକୁ ଅଣା ଯାଉଥିଲା ଏବଂ ଦୁଧ ବାଣ୍ଟିବାର ଜାଗାରେ ଗାଡ଼ିରୁ ଓହ୍ଲାଇ ଦିଆଯାଉଥିଲା । ହାତରେ କୁପନ ଆଉ ପୂର୍ବ ଦିନର ବୋତଲଟି ଧରି ସ୍ତ୍ରୀ ଆଉ ପୁରୁଷମାନେ ପଂକ୍ତି ବାନ୍ଧି ଠିଆ ହୋଇଥିଲେ ।

ଠେଲାଗାଡ଼ି ଟାଣୁଥିବା ଜଣେ ମଜୁରିଆ ଠେଲାଗାଡ଼ି ଉପରେ ବସି ଖୁବ୍ ବଡ଼ ପାଟି କରି ସେଦିନର ଖବରକାଗଜ ପଢ଼ିବାରେ ଲାଗିଥିଲା ଏବଂ ତା'ର ସାଙ୍ଗ ଅନ୍ୟ ମଜୁରିଆମାନେ ସେହି କାର୍ଯ୍ୟଟି ଉପରେ ଟିପ୍ପଣୀ କରୁଥିଲେ । ସେମାନେ ଭାବୁଥିଲେ ଯେ ଏହିସବୁ ବଡ଼ ବଡ଼ ଲୋକେ ରାଜନୀତି ବିଷୟରେ ଯେତକ ଖବର ରଖିଛନ୍ତି, ସେମାନଙ୍କୁ ନିଜକୁ କ'ଣ କେବେହେଲେ ଆଦୌ ସେତେବେଶି ଖବର ମାଲୁମ ଅଛି ?

ପ୍ରାସାଦର ଲେଖାକାର ହୋଇ ନିଯୁକ୍ତ ହେବା ପୂର୍ବରୁ ଏବଂ ନିଯୁକ୍ତ ହେବା ପରେ ରାଜପ୍ରାସାଦ ତଥା ରାଜପରିବାର ବିଷୟରେ ତାଙ୍କର ଯେଉଁ ଧାରଣାମାନ ରହିଥିଲା, ସେଗୁଡ଼ିକ ଅନନ୍ତନ୍ ନାମ୍ବୁର୍ଙ୍କର ମନରେ କ୍ଷଣକେଲାଗି ଉଙ୍କିଟି ଉଠି ପୁଣି କୁଆଡ଼େ ଅଦୃଶ୍ୟ ହୋଇଗଲା ।

ଯେଉଁଦିନ ସେ ପ୍ରଥମ କରି ଗ୍ରନ୍ଥାଗାରରେ ଯାଇ ଯୋଗ ଦେଲେ, ସେଦିନ ତାଙ୍କୁ ସେଠାରେ ଯେଉଁ ଦୃଶ୍ୟଟି ଦେଖିବାକୁ ମିଳିଥିଲା, ସେ ସେଇଟିର କୌଣସି ଅର୍ଥ ହିଁ ବୁଝି ପାରିନଥିଲେ ।

ପ୍ରାସାଦର ଡାକ୍ତରବାବୁ ଖୁବ୍ ତର ତର ହୋଇ କାର୍‌ରେ ଆସି ପହଞ୍ଚିଗଲେ । ତାଙ୍କର ଆଜାନୁବାହୁ ଆକୃତିଟି ଦେଖିବାକୁ ବଡ଼ ସୁନ୍ଦର ଲାଗୁଥିଲା । ଅଳ୍ପ କିଛି ସମୟ

ପରେ ଯେତେବେଳେ ସେ ସେହି କାର୍‌ରେ ପୁଣି ଫେରଗଲେ, ସେତେବେଳେ ଅତିବେଶୀ କ୍ଲାନ୍ତ ହୋଇ ପଡ଼ିଥିଲା ପରି ଜଣା ଯାଉଥିଲେ ।

ଜଣେ କେହି ଖୁବ ଜୋର୍‌ରେ ଚକ୍ରାର କରୁଥିବା ପରି ଶବ୍ଦ ଶୁଣାଗଲା । କଛି ସମୟ ପରେ ବାହାରକୁ ବାହାର ସାଇଁ କରି ଗ୍ଭଲି ଯାଉଥିବା କାର୍‌ରେ ଜଣେ ବ୍ୟକ୍ତି ଚକ୍ରାର କରି କରି କେତେକ ନିରର୍ଥକ ଶବ୍ଦ ବଡ଼ ବଡ଼ କରି କହି ଯାଉଥାଏ । ଗ୍ଭରି ପାଖ ଜଣ ମଣିଷ ତାକୁ ଜୋର୍ କରି ଧରିଥାନ୍ତି ଏବଂ ସିଏ ଛଟପଟ ହୋଇ ଆପଣାକୁ ସେମାନଙ୍କ କବଳରୁ ଛଡ଼ାଇ ଆଣିବା ପକାଶେ ଚେଷ୍ଟା କରିବାରେ ଲଗିଥାଏ ।···

ସେଦିନ ସେ ଯେତେବେଳେ ଘରକୁ ଫେରି ଆସିଲେ, ସେତେବେଳେ ଯାଇ ତାଙ୍କ ବାପା ତାଙ୍କୁ ସେଠାରେ ଘଟିଥିବା ଘଟଣାଗୁଡ଼ିକ ବିଷୟରେ କହିଥିଲେ । ବାପା ସେତେବେଳେ କହିଥିଲେ, "ଆରେ ଅନନ୍ତ, ତୋତେ ମୁଁ କହିଥିଲି ନା, ଯଦି ପିଠା ଖାଇବାକୁ ସିବ, ତେବେ ବିନ୍ଧଗୁଡ଼ାକୁ ବି ଜାଣିବାକୁ ସିବ କାହିଁକି ? ତୋ'ର ଯାହା ସହିତ କୌଣସି ସମ୍ପର୍କ ନାହିଁ, ସେଭଳି ଅର୍ଥହୀନ କଥାଗୁଡ଼ିକୁ ଜାଣିବା ଲାଗି ତୁ କେବେହେଲେ ମନରେ ଭାବିବୁ ନାହିଁ । ଆଦେଶ ନପାଇବା ପର୍ଯ୍ୟନ୍ତ ତୁ କେବେହେଲେ କୋଉଠିକୁ ଯିବୁ ନାହିଁ । ବିରି ପଇସା ମିଳିବାର ଆଶା ରହିଥିଲେ ମଧ୍ୟ ଯିବୁ ନାହିଁ । ମହାରାଜାଙ୍କର ସ୍ୱହସ୍ତରୁ ଶ୍ରୀ ପଦ୍ମନାଭଙ୍କର ଧନକୁ ଲଭ କରିବା ପାଇଁ କେତେ ଭାଗ୍ୟ ରହିଥିବା ଦରକାର, ତୁ ସେକଥା ଜାଣିଛୁ ? ସେହି ଧନକୁ ଦୁଇ ହାତରେ ଗ୍ରହଣ କରିବୁ, ଦୁଇ ଆଖିରେ ନେଇ ଲଗାଇବୁ ଏବଂ ତୋତେ ଯେଉଁ କାମ କରିବାକୁ କୁହାଯିବ, ତାହାକୁ ଫୁର୍ତ୍ତି ହୋଇ କରିଦେବୁ ଏବଂ ପାହାଚେ ଦେଢ଼ ପାହାଚ ଆହୁରି ଉପରକୁ ଉଠିବାଲାଗି ମଧ୍ୟ ଚେଷ୍ଟା କରୁଥିବୁ । ଅନାବଶ୍ୟକ କୌଣସି ବିଷୟରେ କେବେହେଲେ ଚିନ୍ତା କରିବୁ ନାହିଁ । ମୁଁ କହି ଦେଉଛି··· ।"

ସେଦିନ ବାପା କହିଥିବା ଏହି କଥାଟିକୁ ସେ ଦିନମାସ ତଳେ ଲେକ ଛଟେଇ କରାଯାଉଥିବାର କାରଣରୁ ତାଙ୍କୁ ମଧ୍ୟ କାର୍ଯ୍ୟରୁ ଅନ୍ତର କରି ଦିଆଯିବା ପର୍ଯ୍ୟନ୍ତ ଗୋଟିଏ ଧ୍ୟାନରେ ପାଳନ କରି ଆସିଛନ୍ତି ।······

ଅନ୍ତର ଭିତରେ ଧ୍ୟାନସମାଧିରେ ନିମଗ୍ନ ହୋଇଯିବାର ଅଭ୍ୟାସଟି ତାଙ୍କର ଆଗରୁ ହିଁ ରହିଯାଇଥିବାରୁ ନିଜ ଜୀବନର ସଙ୍କଟଗୁଡ଼ିକ ସମୟରେ ମଧ୍ୟ ତାହା ତାଙ୍କୁ ସତେଅବା ଅମୋଘ ଔଷଧର କାମ ଦେଇ ଆସିଛି । ସେକଥା ନହୋଇଥିଲେ, ଏହି ପନ୍ଦର ବର୍ଷଯାକ ଏକ ଚଳନ୍ତା ଆଗ୍ନେୟଗିରି ପରି ଆପଣା ଭିତରୁ ଜଳିବାରେ ଲାଗି-ଥିଲେ ସିଏ କ'ଣ କଦାପି ଜୀବନ ଧରି ରହି ପାରିଥାନ୍ତେ ? ଉତ୍ତର ବାଥିର ଅଗ୍ରହାର···

ସାନ ସାନ କୁକୁଡ଼ାଘର ପରି ଘରଗୁଡ଼ିକ···। ସେଠାରେ ପବନ କମ୍ପା ଆଲୁଅ କଚିତ୍‌ହେଲେ ପଶି ପାରିବ ନାହିଁ । ଭଗବାନ ଜାଣନ୍ତି, ଏହିସବୁ ଘର ଭିତରେ ଲୋକେ କିପରି ଭାବରେ ଅମୁହାଁ ହୋଇ ରହିଥାନ୍ତି । ଏତେ କଷ୍ଟ ଯେ ସିଧା ହୋଇ କଡ଼ ମାଡି ଶୋଇବାକୁ ଗଲେ ଗୋଡ଼ ଲମ୍ବାଇବାକୁ ମଧ୍ୟ ଥାନ ହୁଏ ନାହିଁ । ଏହିପରି ହୋଇଥିଲେ ମଧ୍ୟ ନବରାତ୍ରି ଉତ୍ସବର ଦିନଗୁଡ଼ିକରେ ସେହିସବୁ ଘରେ ଫେଳନାର ସଜ୍ଜା ଦେଖିବାଲାଗି ଯେତେବେଳେ ସେ ସେଠାକୁ ଯାଉଥିଲେ, ସେତେବେଳେ ଅଗଣାରେ ଠିଆ ହୋଇଥିବା ଅବୋଧ ବାଳକାମାନେ କହି ପକାଉଥିଲେ, "ଆରେ, ଇଏ ଶୂଦ୍ର ପିଲ ଏଠିକି କେଉଁଠାରୁ ଆସିଲ, ଯା ପଳା, ପଳା !" ଏ କଥା କହି ସେମାନେ ଦୂରକୁ ଘୁଞ୍ଚିଯାଇ ଠିଆ ହୁଅନ୍ତି,—ଏକଥା ଅନନ୍ତନ୍ ନାୟର୍ ମନେ ରଖିଛନ୍ତି ।

"ହରେ ରାମ, ହରେ ରାମ", ଭଜନ ଗାନ କରି କରତାଳ ବଜାଇ ହଳଦିଆ ପତାକାଧରି ଓ ଗେରୁଆ ବସନ ପିନ୍ଧି ଜ୍ଞାନାନନ୍ଦ ଆଶ୍ରମର ସାତ ଆଠଜଣ ସନ୍ନ୍ୟାସୀ ଗଳି ଭିତରେ ଘର ଘରକୁ ଯାଇ ଭିକ୍ଷା ନେଉଥିଲେ, ଯାହାଫଳରେ କି ଗଳରେ ଏକପ୍ରକାର କୋଳାହଳ ବି ଲାଗି ଯାଇଥିଲ । ବାଆଁ ପଟକୁ, ଯେଉଁଠି ପଦ୍ମନାଭ ସ୍ୱାମୀ ମନ୍ଦିରର ନନ୍ଦନୋଦ୍ୟାନ ରହିଥିଲ, ସେହି ବିଶାଳ ସ୍ଥାନଟିରେ ବର୍ତ୍ତମାନ 'ନଗର ବିକାଶ ଯୋଜନା'ର ଅନ୍ତର୍ଗତ ବଡ ବଡ଼ ଧବଳବର୍ଣ୍ଣ ସୌଧମାନ ଠିଆ କରାଇ ଦିଆଯାଇଛି । ସେହି କୋଠାଗୁଡ଼ିକର ମଝି ଦେଇ ଗୋଟିଏ ବଡ଼ କାର୍ ସୁରୁସୁରୁ ଶବ୍ଦ କରି ଆସିଲ ଓ ତାଙ୍କ ପାଖକୁ ଆସି ଏପରି ଭାବରେ ଠିଆ ହୋଇଗଲ, ଯେତେଯେପରି ତାଙ୍କୁ ଛୁଇଁ ପକାଇବ ।

ଚମକି ପଡ଼ି ଅନନ୍ତନ୍ ନାୟର୍ ଗୋଟିଏ କଡ଼କୁ ଘୁଞ୍ଚିଗଲେ ।

"କିଏ ? ଅନନ୍ତ ?···କୋଉଠୁ ଆସୁଛ ? କ'ଣ ମନ୍ଦିର ଆଡ଼ୁ ଆସୁଛ କି ?"

ଅନନ୍ତନ୍ ନାୟର୍ ମୁଣ୍ଡ ଟେକି ଅନାଇଲେ । ଓ ହୋ ! ତା'ହେଲେ ଏଇ ମୋତେ ଡ଼ାକୁଥିଲ, ନିଜର ଏହି ଭାଇ ପାଲକ୍‌କୁଲମ୍ ନାରାୟଣ ପିଲାଇ···?

ରେଶମର କୁର୍ତ୍ତା, ବେକରେ ଚେନ୍ ପଡ଼ିଛି, ଚକ୍‌ଚକ୍ ହୋଇ ଦେଖାଯାଉଥିବା ଚଉଡ଼ା ଚଉଡ଼ା ନଖ···କାର୍‌ର ଷ୍ଟିଅରିଙ୍ଗ୍‌କୁ ଧରିଥିବା ହାତର ସବୁଯାକ ଆଙ୍ଗୁଠିରେ ମୁଦି ଲଗାହୋଇଛି···

ତା' ପାଖକୁ ଲଗି ଜଣେ ସମ୍ଭ୍ରାନ୍ତ ଯୁବତୀ । ବୋଧହୁଏ ତା'ର ପଞ୍ଚମ ପତ୍ନୀ । ତା'ର ବି କି ଫେଶନ ଦେଖ ! ଲିପଷ୍ଟିକ୍‌ର ରଙ୍ଗ, ହାତ ନଥିବା ସେମିଜ୍···।

ଦାଢ଼ି ଖିଅର ହୋଇସାରିଲେ ଯେଉଁ ଲୋଶନ୍ ଲଗାନ୍ତି, ତାହାର ସୁଗନ୍ଧ ମହକି ଉଠିବାରେ ଲଗିଛି ।

ହୁଁ ? ଇଏ ହେଉଛି ମୋର ବଡ଼ ଭାଇ । ମାତ୍ର ଦେଖିଲା ବେଳକୁ ସତେଅଥିବା ମୋ', ସାନଭାଇ ପରି ହିଁ ଦେଖାଯାଉଛି । ଶରୀରର ତେଜ ଓ ରଙ୍ଗକୁ ଦବାଇଦେଇ କେବଳ କାନ ଉପରେ ରହିଥିବା ବାଳଗୁଡ଼ିକ ଧଳା ହୋଇଯାଇଛି ବୋଲି ହୁଏତ ସେଇଥିରୁ ହିଁ ତା'ର ପ୍ରକୃତ ବୟସଟିର କିଛିତ୍ ସୂଚନା ବେଳେବେଳେ ମିଳିଯାଉଛି···।

ତାଙ୍କ ପ୍ରଶ୍ନର ଉତ୍ତର ଯେ ସିଏ ସଙ୍ଗେ ସଙ୍ଗେ ଦେବାକୁ ଇଚ୍ଛା କରୁ ନଥିଲେ, ସେକଥା ଆଦୌ ନୁହେଁ । କିନ୍ତୁ ତାଙ୍କୁ କ'ଣ କହିବାକୁ ହେବ, ସେଇଟା ହିଁ ପାଞ୍ଚିକୁ ନ ହୁଁ ନଥିଲି । ଅନନ୍ତନ୍ ନାୟର୍ ଠିକ୍ ସେହିପରି ଠିଆ ହୋଇ ରହିଲେ ।

ସଡ଼କରେ ଯାଉଥିବା ଦୁଇ ତିନିଜଣ ଲୋକ ନାରାୟଣ ପିଲାଇଙ୍କ ଆଡ଼କୁ ଇଶାରା କରି ଏଡ଼େ ଏଡ଼େ ଆଖିରେ ବିସ୍ମିତ ହୋଇ ଅନାଉ ଅନାଉ କ'ଣ ସବୁ କହୁଥିଲେ···ସେକଥା ଅନନ୍ତନ୍ ନାୟର୍ଙ୍କର ଦୃଷ୍ଟିରେ ଆସି ପଡ଼ିଲା···ସିନେମାର ଆକ୍ଟର୍‌ନା କ'ଣ !

ମୁଁ ପଅରଦିନ କାର୍ତ୍ତ୍ୟାୟିନୀକୁ ଏରୋଡ୍ରୋମ୍‌ରେ ଦେଖିଥିଲି । ତା'ର କେଡ଼େ ଗବ ଦେଖ । ମୋତେ ଜାଣିଛି ବୋଲି ତା'ଠାରେ ଏତେଟିକିଏ ବି ଲକ୍ଷଣ ଦେଖାଯାଉ ନଥାଏ ।"

ତାଙ୍କ ମୁହଁରୁ ଏପରି କଥା ଶୁଣି ଅନନ୍ତନ୍ ନାୟର୍‌ଙ୍କୁ ପ୍ରକୃତରେ କିପରି ଲାଗିଲା କେଜାଣି ? ସିଏ ମଧ୍ୟ, ଆପଣାର ନୂଆ ସ୍ତ୍ରୀ ପାଖରେ ବସିଥିଲା ବେଳେ, ସଡ଼କ ମଝିଟାରେ ଏହି ବିଷୟରେ କଥା ପକାଇବାଟା ତାଙ୍କୁ ଆଦୌ ଭଲ ଲାଗିଲା ନାହିଁ ।

ତେଣୁ ଆହୁରି କିଛି କହିବାଲାଗି ଉଦ୍ୟତ ହେଉଥିବା ନାରାୟଣ ପିଲାଇଙ୍କୁ କିଛି କହିବାକୁ ଅବସର ଦେବା ଆଗରୁ, "ମୁଁ ଟିକିଏ ତରତର ହୋଇ ଏଣେ ଯାଉଛି··· ପୁଣି କେବେ କଥାବାର୍ତ୍ତା ହେବ···" ବୋଲି କହିଦେଲେ । ଆପଣ କଥାର ଉତ୍ତର ପାଇବାକୁ ଆଉ ଅପେକ୍ଷା ନକରି ଅନନ୍ତନ୍ ନାୟର୍ କାର୍‌ଟିକୁ ଅତିକ୍ରମ କରି ଆଗକୁ ବାହାରିଗଲେ ।

"ସଇତାନ ପୁଣି ଏଠି ଧର୍ମଶାସ୍ତ୍ର ବଖାଣିବାକୁ ଆସିଛି ।" କାର୍ତ୍ତ୍ୟାୟିନୀ ବିଷୟରେ କହିବା ସକାଶେ ସ୍ମାର ପୁଣି କ'ଣ ଦରକାର ? ଇଏ ଜଣେ ଯେତେ ତଳକୁ ଖସି ସାରି-ଲଣି, ଆଉ କୌଣସି ମଣିଷ ସେତେ ତଳକୁ କଦାପି ଖସି ପାରିବ ? ସହରର ମଦଭାଟି-ଗୁଡ଼ାକରେ ଇଏ ତ ନାଗୁଆ ଅତିଥି । ମହିଳା କଲେଜ ପାଖରେ ଆପଣାର ସକଳ ପ୍ରକାର ବୁଭୁକ୍ଷାକୁ ଶାନ୍ତ କରିବାର ଏକମାତ୍ର ଉଦ୍ଦେଶ୍ୟ ନେଇ ଇଏ ସବୁପ୍ରକାର ଆଧୁନିକ ସୁବିଧା ଓ ଆରାମରେ ପରିପୂର୍ଣ୍ଣ ହୋଇ ରହିଥିବା ଗୋଟିଏ ବିରାଟ ହୋଟେଲ ମଧ୍ୟ

ଚଳାଉଛ । ହୁଁ ! କାତ୍ୟାୟିନୀ ବିଷୟରେ ମୋ' ପାଖେ ଅଭିଯୋଗପୂର୍ଣ୍ଣ କଥାଗୁଡ଼ାକ ଆସି କହିବାବେଳେ ତା' ଅନ୍ତଃଆତ୍ମା କ'ଣ ତାକୁ ସେଥିରୁ ନିବୃତ୍ତ କରି ରଖି ପାରୁନାହିଁ ?

ପଛରୁ କାହାର ହସ ଶୁଣିବାକୁ ମିଳୁଛି । ଅନନ୍ତନ୍ ନାୟର୍ ବୁଲି ପଡ଼ି ପଛକୁ ଅନାଇଲେ । ସିଏ ତା ପାଖରେ ବସିଥିବା ସ୍ତ୍ରୀ ଲୋକଟିକୁ ତାଙ୍କର ସମ୍ବନ୍ଧରେ ହିଁ କିଛି କହିବାରେ ଲାଗିଛି । ଖୁବ୍ ସମ୍ଭବ ସେହି ସ୍ତ୍ରୀ ଲୋକଟି କାର୍‌ଭିତରୁ ଆପଣାର ମୁହଁଟିକୁ ବାହାରକୁ କାଢ଼ି ତାଙ୍କୁ ଦେଖି ହସିବାରେ ଲାଗିଛି ।

କାର୍ ଖୁବ୍ ଜୋର୍‌ରେ ଅନ୍ୟ ଦିଗରେ ଯାଇ ଅଦୃଶ୍ୟ ହୋଇଗଲା । ହୁଁ ! କାହା ବିଷୟରେ ଅଭିଯୋଗ କରିବାରେ ଭଲା କି ଲାଭ ! ସବୁ କିଛି ତ ଆପଣା ଭାଗ୍ୟ··· । ନହେଲେ ତାଙ୍କର ଜୀବନରେ କାହିଁକି ବା ଏପରି ବଜ୍ରପାତ ହେବାକୁ ଯାଇଥାନ୍ତା— ଏହାକୁ ଆଉ ଅନ୍ୟ କ'ଣ ବୋଲି ବର୍ଣ୍ଣନା କରାଯାଇ ପାରିବ ?

ଏହିସବୁକିଛି ତାଙ୍କୁ ଏକ ବଜ୍ରପାତ ବୋଲି ହିଁ ପ୍ରତୀତ ହୋଇଛି ଏବଂ ସେଇଥି-ଲାଗି ମନର ସ୍ଥିତି ବି ଏହିପରି ହୋଇଛି··· । ଜୀବନରେ ଯାହାକିଛି ଅପମାନ ବା ଦୁଃଖ ଆସିବ, ସେହି ସବୁକିଛିକୁ ଝାଡ଼ିଦେଇ ସ୍ୱୟଂ ଯୋଗ୍ୟ ଏବଂ ସମ୍ମାନିତ ହେବାର ଦାବୀ କରୁ-କରୁ ହିଁ ଜୀବନଟାକୁ କଟାଇଦେବା ଉଚିତ । କିଛି ଦୁଃସ୍ୱପ୍ନ ଦେଖିଥିଲେ ସିଏ ତାକୁ ଭୁଲିଯାଇ ଦେବାକୁ ଚେଷ୍ଟା କରିଥାନ୍ତେ ଏବଂ କୌଣସି ସ୍ତ୍ରୀ ସହିତ, ଯେଉଁଠାରୁ ତାଙ୍କ ଜୀବନଟା ଭାଙ୍ଗି ଖଣ୍ଡଖଣ୍ଡ ହୋଇଗଲା, ସେଇଠାରୁ ଏକ ନୂତନ ଜୀବନ ଆରମ୍ଭ କରି ଦେଇଥାନ୍ତେ ତ ଅନ୍ତର ଭିତରର ଏହି ଦାଗଗୁଡ଼ାକୁ ନେଇ ସନ୍ତାପିତ ଜୀବନ ବଞ୍ଚିବା ଲାଗି ଆଉ କୌଣସି ପ୍ରୟୋଜନ ହିଁ ପଡ଼ିନଥାନ୍ତା ।

ସେ କଥା ନ କରି, ସବୁବେଳେ ଯେପରି କୌଣସି କଥାର ପ୍ରତିଶୋଧ ନେବାକୁ ଯାଉଛି, ସେହିପରି ନିଜେ ନିଜକୁ ତିଳ ତିଳ କରି ଉତ୍ତପ୍ତ କରି ପକାଉଥିବା ଓ ସାରି ଦେଉଥିବା ଜୀବନକୁ କିଏ କ'ଣ ଆଦୌ କୌଣସି ଜୀବନ ବୋଲି କହିବ ! ଗୋଟାଏ ଜୀଅନ୍ତା ଶବ···

ଏବଂ ଏଥିରେ ମଧ୍ୟ ତ ସିଏ ନିଜେ ବର୍ତ୍ତମାନ ପରାଜୟ ସ୍ୱୀକାର କରିବାକୁ ଯାଉଛନ୍ତି ନା ? ଗଳିର ବାଆଁପଟକୁ କେତେଦୂର ପର୍ଯ୍ୟନ୍ତ ପଦ୍ମନାଭ ସ୍ୱାମୀ ମନ୍ଦିରର ଉତ୍ତର ବେଢ଼ାଟି ବେଶ୍ ଦେଖାଯାଉଛି, ଅନନ୍ତନ୍ ନାୟର୍ ସେହି ଆଡ଼କୁ ମୁହଁ ବୁଲାଇ ପ୍ରଣାମ କଲେ ।

ତାଙ୍କର ନିଃଶ୍ୱାସ ଯେପରି ଫୁଲି ଫୁଲି ଆସୁଥିଲା, ବାଟ ଚାଲିବା ବଡ଼ ଦୁର୍ବହ ମନେ ହେଉଥିଲା । ଚାଲିବାକୁ ସମର୍ଥ ହେଉ ନଥିଲେ ମଧ୍ୟ ସିଏ ସମ୍ମୁଖସ୍ଥ ଗଳିଟି ଦେଇ ଚାଲିବାକୁ ଲାଗିଲେ ।

ସଡ଼କର ଡାହାଣ ପଟେ ଗୋଟିଏ ପୁରୁଣା କୋଠା ଥିଲା, ଯେଉଁଟି ବର୍ତ୍ତମାନ ଶୂନ୍‌ଶାନ୍ ହୋଇପଡ଼ିଛି । ବେଶ୍ କେତେବର୍ଷ ପୂର୍ବ ପର୍ଯ୍ୟନ୍ତ ମଧ୍ୟ ସେଠାରେ ବନ୍ଦ ହୋଇ ରହିଥିବା ଫାଟକ ଆଗରେ ସର୍ବଦା ଜଣେ ସିପାହୀ ଚୌକସ୍ ହୋଇ ଠିଆ ହୋଇଥିଲା ।

ବର୍ତ୍ତମାନ ଭିତରେ ଆଉ କେହି ରହୁନାହାନ୍ତି । ବାହାରୁ ସିପାହୀପହରା ମଧ୍ୟ ଉଠିଗଲାଣି । ତଥାପି ଏପରି ଗୋଟିଏ କିମ୍ବଦନ୍ତୀ ରହିଛି ଯେ ଦ୍ୱି'ପହରରେ ଏବଂ ଅଧରାତି ସମୟରେ ଏଠାରେ ଭୟଙ୍କର ଚିତ୍କାର ଓ କନ୍ଦାକଟାର ଶବ୍ଦ ଶୁଣାଯାଏ ଏବଂ ରାସ୍ତାରେ ଯାଉଥିବା କେତେ ବାଟୋଇ ସେହି ଶବ୍ଦକୁ ଶୁଣି ଭୟଭୀତ ହୋଇ ପ୍ରାଣ ନେଇ ଦଉଡ଼ି ପଳାନ୍ତି ।

ଏ କଥାଟି ପ୍ରକୃତରେ କେତେଦୂର ସତ, ଅନନ୍ତନ୍ ନାୟର୍‌ଙ୍କୁ ସେ ବିଷୟରେ କିଛି ଜଣା ନଥିଲା । କିନ୍ତୁ ଏହି ଗଳିର ଏହି ସ୍ଥାନଟି ବେଶ୍ କେତେକ ପରିମାଣରେ ଏକ ଅଜ୍ଞାତ, ଭୀତିଦାୟକ; ବିଚିତ୍ର ଓ ନୀରବ ବାତାବରଣରେ ଯେ ପୂର୍ଣ୍ଣ ହୋଇ ରହିଥାଏ, ତାଙ୍କ ମନରେ ମଧ୍ୟ ଏହି କଥାଟି ଅବଶ୍ୟ ଅନୁଭୂତ ହୋଇଛି । ଯେଉଁଠି ଆଗକୁ ଯାଇ ଏହି ଗଳିଟି ସରି ଯାଇଛି, ସେଠାରେ ତନଛକଠାରେ ଆଶ୍ୱିନ ଓ ଫାଲ୍‌ଗୁନ ମାସର ଜଳ-ମଜ୍ଜନ ଉତ୍ସବରେ ପୂର୍ବ ଦିନ ମହାରାଜାଙ୍କ ଦ୍ୱାରା ପାରମ୍ପରିକ ଶିକାରଖେଳ ଖୁବ୍ ଧୁମ୍‌ଧାମ୍ ସହିତ ପାଳନ କରାଯାଏ । ମହାରାଜାଙ୍କର ଭଉଣୀ ରୋହିଣୀ ରାଣୀ ଓ ମୋହନ ବର୍ମାଙ୍କର ଅଳ୍ପ କେତେବର୍ଷ ପୂର୍ବେ ଯେଉଁଠି ଭାରି ଆଡ଼ମ୍ବର ସହିତ ବିବାହକାର୍ଯ୍ୟ ସମ୍ପନ୍ନ ହୋଇଥିଲା, ସେହି ବଡ଼ ଅଟ୍ଟାଳିକାଟିର କଡ଼ ଛୁଇଁ ବାଆଁ ପାଖକୁ ବଙ୍କେଇ ଯାଇଥିବା ହାତୀ-ଗଳିରେ ଅନନ୍ତନ୍ ନାୟର୍ ଚାଲିବାକୁ ଲାଗିଲେ ।

କିଛିଦୂର ପରେ ସିବାପଟରେ ଗୋଟିଏ ଚୌରଛକ ।

ଦକ୍ଷିଣ ଆଡ଼କୁ ପଡ଼ିଥିବା ସଡ଼କଟି ଶ୍ରୀ ବରାହ ମନ୍ଦିରକୁ ଯାଇଛି, ଯେଉଁଠି ଗୋଟିଏ ବିରାଟ ପଦ୍ମପୋଖରୀ ବି ଅଛି ।

ଚୌରଛକିର ପୂର୍ବ ଆଡ଼କୁ ଶ୍ରୀ ପଦ୍ମନାଭ ସ୍ୱାମୀ ମନ୍ଦିରର ପଶ୍ଚିମ ଦ୍ୱାରରେ ଚୁକିଶରୁ ବାହାର କରି ଦିଆଯାଇଥିବା ଲୋକମାନଙ୍କର ଆକ୍ରୋଶ ପୂର୍ଣ୍ଣ ନାଦମାନ ବେଶ୍ ଶ୍ରୁତିଗୋଚର ହେଉଥିଲା ।

ତାଙ୍କର ବେଶ୍ ମନେପଡ଼ୁଛି···ଯେଉଁ ଦିନ ଜଳ-ମଜ୍ଜନ ଉତ୍ସବଟି ଥାଏ, ସେଦିନ ଶ୍ରୀ ପଦ୍ମନାଭ ସ୍ୱାମୀ, ମହାରାଜା, ଯୁବରାଜ ରାଜ ବର୍ମା, ଦେୱାନ୍, ମହାରାଜାଙ୍କର ସେକ୍ରେଟେରୀମାନେ, ଅନ୍ୟ ବଡ଼ ବଡ଼ ସରକାରୀ ହାକିମ, ପଦାତିକ ସେନା, ଘୋଡ଼ସବାର, ଓ ହସ୍ତୀସେନା ସମସ୍ତେ ଧାଡ଼ି ଲଗାଇ ଏଠାରୁ ଶୋଭାଯାତ୍ରାରେ ଚୌରଛକି ବାଟ ଦେଇ ପଶ୍ଚିମ ଦିଗକୁ ସିଧା ଚାଲି ଯାଇଥିବା ସଡ଼କଟିକୁ ଧରି ଶଙ୍ଖମୁଖ ସମୁଦ୍ରତଟରେ ଯାଇ

ପହଞ୍ଚୁଥିଲେ । ସେହି ଚମତ୍କାର ଦୃଶ୍ୟଟିକୁ ଦେଖିବାଲାଗି ଦେଶର ସବୁଆଡ଼ୁ ଅନେକ ସଂଖ୍ୟାରେ ଲୋକ ଆସି ଏଠାରେ ରୁଣ୍ଡ ହେଉଥିଲେ ଏବଂ ଶଙ୍ଖ ମୁଖ ପର୍ଯ୍ୟନ୍ତ ମାର୍ଗ ବାଧଟିର ଦୁଇ ପାଖରେ ଠିଆ ହୋଇ ଏହି ଆନନ୍ଦଯାତ୍ରା ଦେଖି ଆମୋଦ ଅନୁଭବ କରୁଥିଲେ ।

ପଶ୍ଚିମ ଦିଗରେ ସମୁଦ୍ର ତଟରେ ମାର୍ଗଟି ଧରି ଯାଉ ଯାଉ ଏହି କଥାଟିକୁ ଚିନ୍ତା କରି ଅନନ୍ତନ୍ ନାମ୍ବୁଦ୍ରିଙ୍କର ମନ ଏକାବେଳକେ ବିଚଳିତ ହୋଇପଡ଼ିଲା ଯେ ସେହି ଜଳ-ମଜ୍ଜନ ଉତ୍ସବଟିର ଅବସରଟିରେ ହିଁ ତ ତାଙ୍କ ସଂସାରରେ ଗୋଟାଏ ଝଡ଼ ଆସି ଉପସ୍ଥିତ ହୋଇଯାଇଥିଲା ।

## ନଅ

"ଜଗଦମ୍ବ ନାୟର୍ ତ ହେଉଛନ୍ତି ଏକ ଉଚ୍ଚ ଘରର । ଶ୍ରୀ ପଦ୍ମନାଭ ସ୍ୱାମୀ ମନ୍ଦିରର ଭୋଜନାଳୟର ଅଧିକାରୀ ଶେଷ ଆୟର୍‌ଙ୍କ ବିଷୟରେ ମୋର କିଛିହେଲେ କହିବାକୁ ନାହିଁ··· । ଅନନ୍ତନ୍ ନାୟର୍ ଥରେ ଝିଅକୁ ଯାଇ ଦେଖି ଆସନ୍ତୁ । ତେବେ ଯିନା କାତ୍ୟାୟିନୀର ମହିମାକୁ ଜାଣିବା ସମ୍ଭବ ହେବ । ସିଏ ତ ସାକ୍ଷାତ ରମ୍ଭା ପରି,— ଠିକ୍ ରମ୍ଭା ପରି··· । ଆଜ୍ଞା, ଆପଣ ମୋର ଯଜମାନ ! କଲମୀ ଆମ୍ବର ସୁଆଦ ତ ଅପୂର୍ବ ହିଁ ହୋଇଥାଏ । ଇଏ କ'ଣ ମାମୁଲି ଜାତିର କଲମୀ ଆମ୍ବ ହୋଇଛି ! ଅତି ଉଚ୍ଚ ଜାତିର କଲମ ଇଏ··· ।" ମଧ୍ୟସ୍ଥ ଶଙ୍କର ପିଲଇ ତାଙ୍କ ବାପାଙ୍କ ପାଖରେ ଆସି ଏପରି ବର୍ଣ୍ଣନା କରୁଥିବାର ସିଏ ନିଜେ ବି ଶୁଣିଛନ୍ତି ।

"କୁଟୁମ୍ବ-କର୍ତ୍ତା' ଆଦି ଶେଷ ଆୟର୍ ଏପରି ଜିଦ୍ ଧରି ବସିଛନ୍ତି ଯେ ତାଙ୍କର ଜ୍ୱାଇଁ ଏପରି ଜଣେ ବ୍ୟକ୍ତି ହୋଇଥିବ, ଯିଏ କି ଶ୍ରୀ ପଦ୍ମନାଭଙ୍କର ସେବାରେ ଦୁଇ ପଇସା ଅବଶ୍ୟ କମାଉଥିବ । ତା' ନହେଲେ, ଶାଳେ କୁକଡ଼େ ଦୋକାନ ଗୁଡ଼ାକରୁ କୌଣସି ବେପାରୀ ଆସି ତାକୁ ଝାମ୍ପି ମାରି ନେଇ ପଳାନ୍ତା ନାହିଁ ? ଆଗାମୀ ମେଷ ମାସକୁ ତାକୁ ପନ୍ଦରବର୍ଷ ପୂରିଯାଉଛି ! ଏତେ ଅଳ୍ପ ବୟସ··· ।

ଅନନ୍ତନ୍ ନାୟର୍‌ଙ୍କର ମନେ ପଡ଼ିଗଲା ଯେ ଶେଷରେ ତାଙ୍କର ଆଦେଶକୁ ଉଲ୍ଲଂଘନ କରି ନପାରି ତାଙ୍କୁ ଦିନେ କନ୍ୟା ଦେଖିବା ଲାଗି 'ତେଙ୍ଗାପୁରେ' ଗଳିରେ ଅବସ୍ଥିତ ତାଙ୍କ ଘରକୁ ଯିବାକୁ ହୋଇଥିଲା ।

ମଧ୍ୟସ୍ଥ ଶଙ୍କର ପିଲଇର ତ କଥାକୁ ବନାଇ କହିବାର କେଡ଼େ ନାଆଁ ଥିଲା; ତେଣୁ ଅନନ୍ତନ୍ ନାୟର୍ ସେପରି କୌଣସି ବଡ଼ କଥା ଦେଖିବେ ବୋଲି ଆଦୌ ଆଶା କରି ନଥିଲେ ।

ମାତ୍ର ସେଠାରେ ଯାଇ ସିଏ ଯେଉଁ ଦୃଶ୍ୟ ଦେଖିଲେ, ସେଥିରେ ତାଙ୍କର ମୁଣ୍ଡରୁ ଆଉ କଥାହିଁ ବାହାରିଲା ନାହିଁ ।

ସେଦିନ କେବଳ ଥରକ ପାଇଁ ସେ ଆଖି ଉପରକୁ କରି କାତ୍ୟାୟିନୀକୁ ଦେଖିଥିଲେ ।

ଜରି ଲଗା ହୋଇଥିବା ସେମିଜ ଆଉ ଶାଢ଼ୀ ପିନ୍ଧି, ପିଠି ଉପରକୁ ଲମ୍ବି ଆସିଥିବା କେଶଗୁଛ ଉପରେ ପୁଷ୍ପର ମାଳା ଲମ୍ବାଇ, ଆଖିପତା ଭରି କଳା ପିନ୍ଧିଥିବା ଦୁଇ ଆଖିରେ ଥରେ ତାଙ୍କ ଆଡ଼କୁ ଅନାଇଦେବା ପରେ ଆଖିକୁ ପୁଣି ଫେରାଇ ନେଇ ଭୂଇଁ

ତଳକୁ ଅନାଇ ପାଦର ଆଙ୍ଗୁଳି ଗୁଡ଼ିକରେ ଗାର ପାକାଉ ପକାଉ ସିଏ ଠିଆ ହୋଇ ରହିଥିଲି······

ଅନନ୍ତନ୍ ନାୟରଙ୍କର ଦେହରୁ ଝାଳ ବୋହିଯାଉଥାଏ ।

ଏତେ ସୁନ୍ଦର ! ସେହି ଅପୂର୍ବ ମୁହୂର୍ତ୍ତିଟିରେ ତା'ର ଆଗରେ ତଳେ ପଡ଼ିଯାଇ ଦଣ୍ଡବତ ହୋଇ ତା'ର କୋମଳସ୍ପ ଚରଣଯୁଗଳକୁ ନିଜର ଆଖି ଲୁହରେ ଧୁଆଇ ଦେବାଲାଗି ତାଙ୍କର ଅନ୍ତର ଭିତରେ ସେଦିନ ସେହି ଯେଉଁ କାମନାଟିର ଉଦୟ ହୋଇଥିଲା, ତାହା କପରି ଏକ ପାଗଳାମିରେ ପୂର୍ଣ୍ଣ ହୋଇ ରହିଥିଲା,—ସେ କଥା ବର୍ତ୍ତମାନ ବି ମନେ ପଡ଼ୁଛି ।

ତାଙ୍କ ବିବାହର ବିଷୟରେ ବାପା ତାଙ୍କୁ କିଛି ପଚାରିଲେ ନାହିଁ । ଯେତେବେଳେ ବାପାଙ୍କ ପ୍ରଶ୍ନ ଉଠୁଛି, ମଙ୍ଗଳ ସୂତ୍ର ବାନ୍ଧିଦିଅ ବୋଲି ଯଦି ସିଏ କହିଦିଅନ୍ତି, ତେବେ ବାସ୍, ମଙ୍ଗଳସୂତ୍ର ବନ୍ଧା ହେବ ହିଁ ହେବ । ତାଙ୍କ ଶ୍ରୀମୁଖରୁ ବାହାରୁଥିବା ଉକ୍ତିର ଆଉ କୌଣସି ପ୍ରତ୍ୟୁକ୍ତି ହିଁ ନଥିଲା । ବାପା ଯେ ତାଙ୍କୁ ଝିଅ ଦେଖିବାଲାଗି ପଠାଇ ଥିଲେ, ସେଇଟା କେବଳ ଗୋଟାଏ ପ୍ରଥାରକ୍ଷା ବ୍ୟତୀତ ଆଉ କିଛି ନଥିଲା······ ।

ଝିଅ କେମିତି ଲାଗିଲା ବୋଲି ମାଆ ପଚାରିବାରୁ ସିଏ ଯାହା ଉତ୍ତର ଦେଇଥିଲେ, ତାହା ଏବେ ମଧ୍ୟ ମନେଅଛି । ସିଏ କହିଥିଲେ, "ମାଆ ! ବାପାଙ୍କୁ କହିଦିଅ ଯେ ମୋ'ର ଏ ଝିଅ ଲୋଡ଼ାନାହିଁ । ସିଏ ତ ମନ୍ଦିରରେ ବସି ପୂଜା କରିବାର ଯୋଗ୍ୟ ହୋଇ ଜନ୍ମ ହୋଇଛି । ଏପରି ସୌନ୍ଦର୍ଯ୍ୟକୁ ଶୋଇବା ଘରକୁ ଆଣି ବନ୍ଦୀ କରି ରଖିବାଟା କ'ଣ ଠିକ୍ ହେବ ?"······ସେଦିନ ତାଙ୍କ ମନ ଭିତରେ ଠିକ୍ ସେହିପରି ହିଁ ବିଚାର ଆସିଥିଲା ।

ମାତା ଚକିତ ହୋଇ ରହିଗଲେ ।

"ଆରେ ଓଲୁ ! ସେପରି ଗୋଟିଏ ଝିଅକୁ ପାଇବାକୁ ହେଲେ ତ କେତେ ପୁଣ୍ୟ କରିବାକୁ ପଡ଼ିବ,"—କହି ମାଆ ତାଙ୍କର ମୁହଁ ବନ୍ଦ କରି ଦେଇଥିଲେ ।

ତାଙ୍କର ସେହି ଉତ୍ତର ବାପାଙ୍କ ପାଏ ପହଞ୍ଚି ନଥିଲା । ଯଦି ପହଞ୍ଚି ମଧ୍ୟ ଯାଇଥାନ୍ତା, ତେବେ ସେ ବିଷୟରେ ମଧ୍ୟ ସିଏ କଦାପି ପରବା କରି ନଥାନ୍ତେ,—ଏକଥା ବି ଅନନ୍ତନ୍‌ନାୟର୍ ଜାଣିଥିଲେ ।

ବାଆଁ ପାଖରେ ଅବସ୍ଥିତ ସିଦ୍ଧାନନ୍ଦପୁର ପୋଖରୀକୁ ଅତିକ୍ରମ କରି ଥଣ୍ଡା ପବନ ବହିବାକୁ ଲାଗିଲା । ସେହି ଘୁଞ୍ଚିଆ ପାଚେରୀଟି ଉପରେ ହାତରଖି ତଳେ ଗମ୍ଭୀର ହୋଇ ଦେଖାଯାଉଥିବା ପୁଷ୍କରଣୀଟି ଆଡ଼କୁ ଶୂନ୍ୟ ଦୃଷ୍ଟିରେ ଦେଖୁ ଦେଖୁ କ୍ଷଣକଲାଗି ଆପଣାର କ୍ଳାନ୍ତି ଦୂର କରିବାକୁ ଯାଇ ସିଏ ସେଇଠି ଠିଆ ହୋଇ ରହିଲେ ।

ଚତୁର୍ଦ୍ଦିଗରେ ସଜ୍ଜିତହୋଇ ବଢ଼ିଥିବା ସବୁଜ ରଙ୍ଗର ସାନବଡ଼ ଗଛ ପାଣି ଉପରେ ପ୍ରତିବିମ୍ବିତ ହେବାରେ ଲାଗିଥିଲେ ଏବଂ ପାଣିରେ ମଧ୍ୟ ସବୁଜ ରଙ୍ଗର ସଞ୍ଚାର କରିଦେଉଥିଲେ । ସାନ ସାନ ଲହଡ଼ି ହାବୁକା ଦେବାରେ ଲାଗିଥିଲେ ।

ମନ୍ଦିରର ପୂଜାରି ଓ ବ୍ରହ୍ମଚାରୀମାନେ ଗାଧୋଇବା ପାଇଁ ଏହି ପୁଷ୍କରଣୀ ତିଆରି ହୋଇଥିଲା । ସେମାନଙ୍କର ବ୍ରହ୍ମଚର୍ଯ୍ୟ-ବ୍ରତରୁ ସେମାନେ ଯେପରି ସ୍ଖଳିତ ହୋଇ ନଯିବେ, ସେଥିଲାଗି ସେହି ପୁଷ୍କରଣୀକୁ ସ୍ତ୍ରୀଲୋକମାନଙ୍କର ଆସିବା ବର୍ଜିତ ହୋଇ ରହିଥିଲା । ଏହି ନିୟମଟି ରଖିବା ପଛରେ ଯେଉଁ ବୁଦ୍ଧିମନ୍ତ୍ରୀ ରହିଛି, ତାଙ୍କର ମନ ସେଇଟିର ପ୍ରଶଂସା କରିବାକୁ ଲାଗିଲା ।

ଖରା ଟାଣ ହୋଇ ଆସିଥିଲା । ସିଏ ମନରେ ଭାବିଲେ—ଘରକୁ ଯାଇ କିଛି ଜଳଖିଆ କରିବି ଓ କଫିପିଇ ମୋତେ ତା'ପରେ ଦୋକାନକୁ ଯିବାକୁ ପଡ଼ିବ । ତାଙ୍କର ମନେ ପଡ଼ିଲା—ଦୋକାନର ମାଲିକ କହିଥିଲା ଯେ ଆପଣଙ୍କର ଫନ୍ଦାନ୍ତରେ ତାଙ୍କୁ ଅଡ଼ିଟର କୈମନ୍‌ଙ୍କ ସହିତ ଯାଇ ଦେଖା କରିବାକୁ ପଡ଼ିବ ।

ସିଏ ତରତର ହୋଇ ଆଗକୁ ପାଦ ପକାଇ ଯାଉଥାନ୍ତି ।

ଧବଳବର୍ଣ୍ଣର ବଡ଼ କବାଟବାଲା କଟେଜ୍‌ର ଫାଟକ ହୋଇ ଖୋଲିଯିବା ସମୟରେ ଡାହାଣ ପଟକୁ ଯାଇଥିବା ସଡ଼କଟିକୁ ଦେଖିବାକୁ ମଧ୍ୟ ସେ ଆଦୌ ଭୁଲିଯାଇ ନଥିଲେ । ସେଇବାଟେ ଅଳ୍ପଟିକେ ଆଗକୁ ଗଲେ ବାପା ତିଆରି କରି ଯାଇଥିବା ଘର ପାଲକ୍କୁଲମ୍ ପାଖରେ ଯାଇ ପହଞ୍ଚି ହେବ । ସେହି ଘରେ ଆଜିକାଲି ସିଉସୀ କୃଷ୍ଣ ଲକ୍ଷ୍ମୀଙ୍କର ପୁଅ ଗୋବିନ୍ଦନ୍ ନାୟର୍ ନିଜ ପିଲାପିଲିଙ୍କୁ ନେଇ ବେଶ୍ ଖୁସୀରେ ଦିନ କାଟୁଛି । ମାତୃସତ୍ତାକ ବ୍ୟବସ୍ଥା ଅନୁସାରେ ବାପାଙ୍କର ଭଣଜା ହିଁ ତ ସକଳ ସମ୍ପତ୍ତିର ମାଲିକ ହୋଇଥାଏ !

କିନ୍ତୁ ସେହି ପାଲକ୍କୁଲମ୍‌ରେ ଗୋଟିଏ ଭଡ଼ାଘରେ ତାଙ୍କର ସାନଭାଇ ମଧୁସୂଦନ ନାୟର୍‌ଙ୍କର ପରିବାର ମଧ୍ୟ ରହନ୍ତି । ସିଏ ଅନେକ କ୍ଳେଶରେ ବାହା ହୋଇଛନ୍ତି । ତାଙ୍କର ସାନ ସାନ ତିନୋଟି ପିଲା । ସବୁଠାରୁ ସାନ ଭାଇ ସୁକୁମାରନ୍ ମଧ୍ୟ ତାଙ୍କରି ପାଖରେ ରହେ ।

ମଧୁସୂଦନ ନାୟର୍ ତାଙ୍କଠାରୁ ଦଶବର୍ଷ ସାନ । ବଡ଼ ରାଜନୀତିକ ନେତା ସେ । ସିଏ ଛୁଆଟିଏ ଥିବା ସମୟରେ ହିଁ 'ମହାତ୍ମାଗାନ୍ଧୀଙ୍କ ଜୟ' ଧ୍ୱନି ଜଗାଇ ଝଣ୍ଡା ହାତରେ ଧରି ବୁଲୁଥିଲା । ପନ୍ଦର ବର୍ଷ ହୋଇଥିବା ସମୟରେ 'ଭାରତ ଛାଡ଼' ଆନ୍ଦୋଳନରେ ଏବଂ ସ୍ୱାଧୀନ ସରକାରଙ୍କର ସତ୍ୟାଗ୍ରହରେ ଭାଗନେଇ ସିଏ ଜେଲ୍ ମଧ୍ୟ ଯାଇଛି । ବର୍ତ୍ତମାନ ଏକ କାନ୍ତିକାରୀ ଶ୍ରମିକସଂଘର ନେତା ।

ରାଜଧାନୀକୁ ଏହି ନଗରରୁ ଉତ୍ତର ଦିଗରେ ଅବସ୍ଥିତ ଆଉ କେଉଁ ନଗରକୁ ଉଠାଇ ନେବାର ପ୍ରସ୍ତାବରେ ଏଠାରେ ବେଶ୍ ଅନେକ ଦିନ ହେଲା ରହିଥିବା ଉଚ୍ଚନ୍ୟାୟାଳୟକୁ ମଧ୍ୟ ସେହି ନଗରକୁ ଉଠାଇ ନେବାପାଇଁ ସେତେବେଳର ସରକାର ଯେଉଁ ଆଦେଶ ଦେଇଥିଲେ, ତାହାର ବିରୋଧ କରି କରାଯାଇଥିବା ଜନ-ଆନ୍ଦୋଳନକୁ ସଂଗଠିତ କରାଇ ମଧୁସୂଦନ ନାୟକ ବଡ଼ ମନ୍ତ୍ରୀ ହୋଇଯାଇଥିଲେ ।

ତା'ପରେ ଏହି ରାଜ୍ୟକୁ ଉଲ୍ଲାସ-ଯାତ୍ରୀ ବହୁସଂଖ୍ୟାରେ ଆସିଲେ, ସେଥିଲାଗି ବଡ଼ ବଡ଼ ବିମାନ ଅବତରଣ କରିବାଭଳି ଗୋଟିଏ ବଡ଼ ଉଡ଼ାଜାହାଜ ପଡ଼ିଆ ତିଆରି କରିବା ସକାଶେ ଯେତେବେଳେ ଯୋଜନା ପ୍ରସ୍ତୁତ ହେଲା, ସେତେବେଳେ ସେହି ଯୋଜନାଟିକୁ କାର୍ଯ୍ୟକାରୀ କରାଇ ନଦେବା ସକାଶେ ଉଡ଼ାଜାହାଜ ପଡ଼ିଆ ପାଖରେ ତିଆରି ହେବାକୁ ଯାଉଥିବା ପାଞ୍ଚମହଲା ସରକାରୀ କୋଠାଟିକୁ ଭାଙ୍ଗି ଦିଆଯାଉ ବୋଲି ଦାବୀ କରି ଯେଉଁ ସାହସପୂର୍ଣ୍ଣ ଆନ୍ଦୋଳନଟି ହୋଇଥିଲା, ମଧୁସୂଦନ ସେଇଟିର ବି ନେତୃତ୍ୱ ନେଇଥିଲେ । ଏହା ଫଳରେ ସିଏ ଜନସାଧାରଣଙ୍କର ନୟନର ମଣି ହୋଇ ଯାଇଥିଲେ । ତା'ପରେ ଆଉ କ'ଣ କହିବାକୁ ଥିଲା ! ଆଜି ସିଏ ହେଉଛନ୍ତି ସେଠାକାର ଏମ୍.ଏଲ୍. ଏ., ତାଙ୍କର କାମ ହେଉଛି ରାଜନୀତି······ । ତା'ସହିତ ତାଙ୍କର ସମ୍ବନ୍ଧଟି ବି ପ୍ରାୟ ହାଲୁକା ହୋଇ ରହିଛି । ମାଆ ମରିଯିବା ପରେ ହିଁ ସବୁକିଛି ବଦଳିଗଲା······ । ଯେତେବେଳେ ଯାଏ ମାଆ ଜୀବିତ ଥିଲେ, ସମସ୍ତଙ୍କୁ ଶୃଙ୍ଖଳା ଭିତରେ ଯୋଡ଼ି କରି ରଖିଥିଲେ ।

କଲେଜଟିକୁ ପାରି ହୋଇ ଯେଉଁଠି ରାଣୀମାନଙ୍କର ମହଲଗୁଡ଼ିକ ପରସ୍ପର ସହିତ ଠେସାଠେସି ହୋଇ ଠିଆହୋଇ ରହିଥିଲେ, ସେହି ସେଭୁନ୍ତାନ୍ନ ସଡ଼କ ଦେଇ ଅନନ୍ତନ୍ନାୟକ୍ ଯେତେବେଳେ ଅଗ୍ରସର ହେଉଥିଲେ, ସେତେବେଳେ ତାଙ୍କର ସେହି ସମୟର କଥାଟି ଆଉ ମନେପଡ଼ି ଯାଉଥିଲା, ଯେତେବେଳେ କି ସେ ଦ୍ୱିବାକରନ୍ ଜନ୍ମ ହେବା ପର୍ଯ୍ୟନ୍ତ ଗୋଟିଏ ବର୍ଷ କାଳ କାତ୍ୟାୟିନୀ ସହିତ ଆପଣାର ବାପାଙ୍କ ଘରେ ଅତିବାହିତ କରିଥିଲେ ।

କନ୍ୟାର ଘରେ ହିଁ ବିବାହ ହୋଇଥିଲା । ପ୍ରଥମେ ପଂକ୍ତିଭୋଜନ, ତା'ପରେ ବିବାହ । ବିବାହ ପରେ ଜାତିପ୍ରଥା ଅନୁସାରେ କନ୍ୟାକୁ ସାଙ୍ଗରେ ଧରି ସିଏ ବାପାଙ୍କ ଘରକୁ ଚାଲି ଆସିଲେ ।

ପ୍ରଥମ ରାତିଟିରେ···

ଅପର ରାତିରେ···

ହେଲେ, ଗୋଟିଏ ସପ୍ତାହ କାଳ ବିତି ମଧ୍ୟ ଦିନ ହୋଇଯାଇଥିଲା । ସେକଥା ଭାବିଲେ ତାଙ୍କୁ ଆଜି ମଧ୍ୟ ହସ ମାଡ଼ିଆସେ । ଶେଷରେ ଅବସ୍ଥା ଆସି ଏପରି ହେଲା ଯେ ସ୍ୱୟଂ କାତ୍ୟାୟନୀଙ୍କୁ ହିଁ ମୁହଁ ଖୋଲି କହିବାକୁ ପଡ଼ିଲା ।

"ହେଲ, ମାତ୍ର ଏମିତି କେତେଦିନ ଯାଏ ଖାଲି ଦେଖିଦେଖି ସମସ୍ତ କଟାଇ ଦେବ ବୋଲି ଭାବୁଛ ?"

ସ୍ପର୍ଶ ଦେଲେ କାଳେ ମଉଳିନ ପଡ଼ିଯିବ, ସେହି ଭୟରେ ଦୂରରୁ ହିଁ ସୌନ୍ଦର୍ଯ୍ୟର ପୂଜା କରି ଆତ୍ମତୋଷ ଲାଭ କରିବା ଲାଗି ତାଙ୍କର ସେହି ପାଗଳାମିଟି ଆଡ଼କୁ ହିଁ ତ ସିଏ ସଙ୍କେତ କରି ଦେଉଥିଲା । ସେତେବେଳେ ଯାଇ ନିଦ ଭାଙ୍ଗିଲା···

ତା'ପରେ ଯାଇ ପତିପତ୍ନୀଙ୍କ ମଧ୍ୟରେ ସାଧାରଣତଃ ଯେଉଁସବୁ ସମ୍ବନ୍ଧ ହୁଏ, ସେହିଗୁଡ଼ିକ ହେଲା···

ବାପା ବାଧ୍ୟ କରିବାରୁ ଦିନେ ରାଣୀ ଏବଂ ମହାରାଜାଙ୍କ ପାଖକୁ ମୁହଁ ଦେଖାଇବା ଲାଗି କାତ୍ୟାୟିନୀକୁ ସାଙ୍ଗରେ ନେଇ ଯାଇଥିଲେ···

ସେତେବେଳେ ମହାରାଜା ଖୁସି ହୋଇ ତା'ର ଆଙ୍ଗୁଠିରେ ମୁଦି ପିନ୍ଧାଇ ଦେଇଥିଲେ । ମହାରାଣୀ କାତ୍ୟାୟିନୀର ବେକରେ ସୁନାହାର ପିନ୍ଧାଇଦେଲେ···

ଆଉଦିନେ ତାକୁ ନେଇ ପଦ୍ମନାଭ ମନ୍ଦିରକୁ ଯାଇଥିଲେ । ହଁ, ସେଇଦିନ ତ ସିଏ ତାଙ୍କୁ ଏହି ମନୋହର ଶିଳ୍ପଟିକୁ ଦେଖାଇ ଦେଇଥିଲା । ସେହି ଜୀବନ ପ୍ରକୃତରେ କେଡ଼େ ମଧୁର ନଥିଲା !

ଅନନ୍ତନ୍ ନାୟର୍ ବାଆଁ ପାଖରେ ଥିବା ପୁରୁଣା ମହିଳା କଲେଜର ଭବନଟିକୁ ଅତିକ୍ରମ କରୁଥିଲେ । ହୁଁ ! ସ୍ୱପ୍ନରେ ଏବଂ ଜାଗ୍ରତ ଅବସ୍ଥାରେ ଯାହାସବୁ ଆଖିରେ ଏପରି ଭାବରେ ପୂରିକରି ରହିଥିଲା, ସେଗୁଡ଼ାକ ପୁଣି ଶେଷରେ କେଡ଼େବଡ଼ ଆଘାତ ଦେଇ ଚାଲି ନଗଲା ! ଏହି କଥାଟି ଭାବି ତାଙ୍କର ମନ ବିସ୍ମୟରେ ପୂର୍ଣ୍ଣ ହୋଇ ଉଠିଲା !

ରାତିର ପ୍ରତୀକ୍ଷାରେ ଅତିବାହିତ କରିଥିବା ସେହି ଦିନଗୁଡ଼ିକ···

ଅଫିସ୍‌ରେ, ବାହାରେ ନିରନ୍ତର ସ୍ମରଣ କରୁଥିବା ସେହି ଉଜ୍ଜ୍ୱଳ ଉଠିଥିବା ଭାବ ଗୁଡ଼ିକର ଉଦ୍‌ବେଗରେ ଭାସି ଭାସି ଚାଲିଯିବା···

ଏହିପରି ଅବାଧଗତି ହୋଇ ଯେଉଁ ପାଟଡ଼ା ଝରଣାଟି ବହି ଚାଲିଯାଉଥିଲା, ତାହାର ବନ୍ଧରେ ଫାଟ ପଡ଼ିଆସୁଥିଲେ ମଧ୍ୟ ତଥାପି ତାହାକୁ କୌଣସି ପ୍ରକାରେ ଅଳ୍ପବହୁତ ଅଟକାଇ ରଖୁଥିବା ଆଉ ଗୋଟିଏ ବନ୍ଧ ମଧ୍ୟ ଯେତେବେଳେ ଧସିକି ଆସିଲା···

ହଁ ! ଅନେକ ଦୌଡ଼ାଧାପଡ଼ କରିବା ପରେ ସାରା ସହର ଖୋଜି ଖୋଜି ଭଉଣୀ କଲ୍ୟାଣୀ ପାଇଁ ପତିରୂପେ ବରଣ ହୋଇ ଆସିଥିବା ସେହି ବିଦ୍ୱାନ୍ ପୁରୁଷ ବଡ଼ ଅକସ୍ମାତ୍ ଭାବରେ ମୃତ୍ୟୁର ସମ୍ମୁଖୀନ ହେଲେ ଏବଂ ତାହାର ଧକ୍କା···

ଆପଣାର ପରମ୍ପରାଟି ଅନୁସାରେ ବଡ଼ ବିଭବର ସହିତ କଲ୍ୟାଣୀର ବିବାହ କରିବାର ଧୂମ୍‌ରେ ଯେଉଁସବୁ ଋଣ କରିବାକୁ ପଡ଼ିଥିଲା; ତାହାର ବାଧା···

ପୁନର୍ବାର ବିବାହ କରିବାଲାଗି କେତେ କଅଣ କହିବା ପରେ ମଧ୍ୟ ତାକୁ ନ ମାନି ବୈଧବ୍ୟର ବେଶ ଗ୍ରହଣ କରି ଘରେ ବସିଥିବା ଝିଅକୁ ଦେଖୁଥିବାର ସେହି ଦୁର୍ଭାଗ୍ୟ······

ବାହାରକୁ ପ୍ରକଟ ନ କରୁଥିଲେ ମଧ୍ୟ ଅନ୍ତର ତଳେ ଲଭି ଆସୁଥିବା ଅଙ୍ଗାର ମୁଣ୍ଡା ପରି ଜଳି ଜଳି ନାୟରିଣ ପିଲାଙ୍କର ଘରୁ ବାହାର ଆସିବାର ଦୁଃଖ···

ସବୁଠାରୁ ସାନପୁଅ ସୁକୁମାରନ୍ ବାର ବାର ମୃଗୀ ରୋଗରେ ମୂର୍ଚ୍ଛିତ ହୋଇ ଛଟପଟ ହେବାର କରୁଣ ଦୃଶ୍ୟ······

ଏହି ସବୁଯାକ କଥାର ଉପରକୁ ଗୋବିନ୍ଦନ୍ ନାୟର୍ ଦ୍ୱାରା ବାପାଙ୍କର ସମସ୍ତ ସମ୍ପତ୍ତି ଉପରେ ଅଧିକାର ପାଇବାଲାଗି ମକଦ୍ଦମା ଦାୟର୍ କରାହେବା ଏବଂ ସେଥିରେ ଜିତି ବି ଯିବା । ଏହି ସବୁଯାକ ମିଶି ବାପାଙ୍କର ମାନମର୍ଯ୍ୟାଦା, ସାମାଜିକ ଗୌରବ, ସ୍ୱାଭିମାନ ସବୁକିଛିକୁ ଆଘାତ ଦେଇ ଭୂତଳଶାୟୀ କରିଦେଲା । ତା'ସହିତ, ତାଙ୍କ ନିଜ ବିବାହ ସମୟରେ, ନିଜ ପରିବାରର ପ୍ରତିଷ୍ଠାକୁ ବଜାୟ ରଖିବା ସକାଶେ, ଝିଅ ଘରେ ବିବାହ ହେଉଥିଲେ ମଧ୍ୟ, ଆବଦଶେରି ଆୟର୍ କନ୍ୟାଧନର ପରିରୂପେ ଦେଇଥିବା ସମସ୍ତ ଧନକୁ ଶେଷ କରି ଆହୁରି ଅଧିକ କରଜ କରିବା ··· । ସିଏ ନିଜେ ଯେଉଁ ବେତନ ପାଉଥିଲେ, ସେତକ ତ ଘରଖର୍ଚ୍ଚକୁ ମଧ୍ୟ ଅଣ୍ଟୁ ନଥିଲା ।

ସବୁ ଏକାଠି କରି ପରିବାରର ଅବସ୍ଥା କ୍ରମେ ସେହି ଉବାଟି ପରି ହୋଇଗଲା, ଯେଉଁଥିରେ କି ଏକଦା ହେଙ୍ଗୁ ରଖା ଯାଇଥିଲା, ମାତ୍ର ବର୍ତ୍ତମାନ କେବଳ ହେଙ୍ଗୁର ବାସନା ହିଁ ବାକି ରହିଗଲା ଏବଂ ପରିଶେଷରେ ଏହି ସବୁଯାକ ଦୁଃଖରେ ତିଳ ତିଳ ହୋଇ ଦଗ୍ଧ ହୋଇ ସିଏ ଶେଷକୁ ଚାଲି ବି ଗଲେ । ସମ୍ପତ୍ତିରୁ ଯେଉଁ ଘର ଓ ବଗିଚା ବାକି ରହିଥିଲା, ସେତକ ମଧ୍ୟ ଗୋବର୍ଦ୍ଧନ ନାୟର୍‌ର ହାତକୁ ଚାଲିଗଲା ।

ଘର ଛାଡ଼ି ସମସ୍ତେ ଚାଲିଯିବା ବ୍ୟତୀତ ଆଉ ଅନ୍ୟ ଗତି କ'ଣ ଥିଲା ? ଭାଗ୍ୟକୁ କଲ୍ୟାଣୀର ସ୍ୱାମୀଙ୍କର କିଛି ସମ୍ପତ୍ତି ଥିଲା । କଲ୍ୟାଣୀ ବିଳମ୍ବେ ଶାଳରେ ଆପଣାର ସେହି ଘରଟିରେ ରହୁଥିଲା । ପ୍ରଥମେ ଅନ୍ୟ ଉପାୟ ନଦେଖି ସମସ୍ତେ ଯାଇ ସେଇଠି ରହିଲେ ।

କିନ୍ତୁ ମାଆ କହିଲେ ଯେ ସମସ୍ତେ ସବୁଦିନ ପାଇଁ ସେଇଠି ଯାଇ ରହିଯିବାଟା ମୋଟେ ଠିକ୍ ହେବନାହିଁ । କାତ୍ୟାୟନୀ ଓ ପ୍ରଭାକରନ୍‌କୁ ସାଙ୍ଗରେ ନେଇ ଫେରୁନ୍ଦାର୍ନ୍ଧିରେ ଥିବା ଇନ୍ଦୌକ୍‌କଲ୍ ମୁହାଣଟି ପାର ହୋଇଯିବା ପରେ ପଡ଼ିଥିବା ଗଳିଟିରେ ଅଳପ ଭଡ଼ାରେ ଗୋଟିଏ ଘର ନେଇ ସେ ସେଇଠାକୁ ଚାଲି ଆସିଲେ । ବର୍ତ୍ତମାନ ମଧ୍ୟ ସେ ସେହିଠାରେ ରହୁଛନ୍ତି ।

କଠୋରତା ଏବଂ ରୁକ୍ଷତା ଲାଗି ବିଖ୍ୟାତ ବାପାଙ୍କ ସହିତ ସଂସାର କରି ମାଆଙ୍କର ତିରିଶ ବର୍ଷ କଟିଥିଲା । ଏପରି ଗୋଟିଏ ମାଆଠାରେ କ'ଣ ଦେହ ରୋଗର ଆଉଦୌ କୌଣସି ଅଭାବ ଥିଲା ? ତା'ସହିତ ପୁଣି ଅସମାହିତ ଓ ଅତୃପ୍ତି କେତେ କେତେ ଚିନ୍ତା ...... । ଏଣେ ଯିଏ ନୂଆ ଘରକୁ ଚାଲିଆସିବା ପରେ, ଭଉଣୀ କଲ୍ୟାଣୀ ଘରେ ରହୁଥିବା ଅବସ୍ଥାରେ ମଧ୍ୟ ତାଙ୍କର ଶରୀର ଓ ମନ ଦୁଇଟି ଯାକ ଭାଙ୍ଗି ପଡ଼ିଥିଲା । ସେଠାରେ ହିଁ ମାଆଙ୍କର କାଳ ହୋଇଗଲା, ଠିକ୍ ଯେଉଁଠି ବାପାଙ୍କର କାଳ ହୋଇଥିଲା । ପାଲକ୍କରକ୍ କଟେଜରେ ଥିବା ପାରମ୍ପରିକ ଘରଟିରେ ତ ବାପାଙ୍କର କାଳ-ହୋଇଥିଲା, ତେଣୁ ସେଇଠି ବଗିଚାର ଗୋଟିଏ କୋଣରେ ହିଁ ଦାହକ୍ରିୟାଟି ମଧ୍ୟ ସମ୍ପନ୍ନ କରାଯାଇଥିଲା । ଏହିପରି ଭାବରେ ଯିଏ କୁଟୁମ୍ବର ପୁରୁଣା କର୍ତ୍ତାମାନଙ୍କ ସହିତ ସମ୍ମିଳିତ ହୋଇ ରହିପାରିଲେ । ମାତ୍ର ସେହି ଘରଟିକୁ ଛାଡ଼ି ବାହାରକୁ ଚାଲିଆସିବା ପରେ ଯାଇ ମାଆଙ୍କର କାଳ ହୋଇଥିବାରୁ ମାଆଙ୍କୁ ଆଉ ସେହି ଭାଗ୍ୟଟି ମିଳି ପାରିଲା ନାହିଁ । ଶ୍ମଶାନ ଭୂମି ହିଁ ତାଙ୍କର ଶରଣ ସ୍ଥାନ ହେଲା । ହୁଁ ! ପାରମ୍ପରିକ ନିବାସଟିରେ ମଲେ କ'ଣ ପ୍ରକୃତରେ ପୁଣ୍ୟ ମିଳେ ! ସେଠି ତ ବାପାଙ୍କ ଅସ୍ଥି ମୃତ୍ତିରେ ଆଜିକାଲି ଦୀପଟିଏ ଜଳାଇବାକୁ ମଧ୍ୟ ଆଉ କେହି ରହିଲେ ନାହିଁ । ଯେଉଁ ନଡ଼ିଆ ଗଛଟି ଲଗା ହୋଇଥିଲା, ସେଇଟି ମଧ୍ୟ ଶୁଖିଗଲାଣି ।

ଏହିପରି ଭାବରେ, ଏଠାକୁ ଆସି ଜୀବନ ଏକାକୀ ହୋଇଗଲା । ବରଂ ଏକର ପ୍ରଭାକରନ୍ ହିଁ ପତିପତ୍ନୀଙ୍କର ସରସ ସଂଳାପର ଏକମାତ୍ର ସାକ୍ଷୀ ହୋଇ ରହିଥିଲା । ତେବେ ଆଉ ଚିନ୍ତା କରିବାର କ'ଣ ଥିଲା ?

ଏତେ ଏକାକୀ ଯେ ଅଟକାଇବାକୁ ଅଥବା ନିୟନ୍ତ୍ରଣରେ ରଖିବାକୁ ମଧ୍ୟ ଆଉ କୌଣସି ବଡ଼ ମଣିଷ ବି ନଥିଲେ ......

କେବେ କାହାରିକୁ ଡରିବାକୁ ପଡ଼ିଲା ନାହିଁ ......

ରାତି ଆଉ ଦିନ ସବୁତେଅବା ଏକାଭଳି ହୋଇଗଲେ ......

ଯୌବନର ଉଦ୍ଦାମ ଅନୁଭୂତିଗୁଡ଼ିକ ସମ୍ମୁଖକୁ ଅନାଇ ସେଗୁଡ଼ିକ ଉପରେ ଦୃଷ୍ଟିପାତ କରିବା ମାତ୍ରକେ ହିଁ ସେସବୁ ସତେଅବା ଆଗ୍ନେୟଗିରି ପରି ଜଳି ଉଠୁଥିଲେ । ନା—ଯେତେବେଳେ ଅନ୍ତର ମଧ୍ୟରେ ସେଗୁଡ଼ିକର ପ୍ରତିବିମ୍ବ ଯାଇ ପଡ଼ୁଥିଲା, ସେତେବେଳେ ଏପରି ଏକ ପୈଶାଚିକ ପାଗଲାମି ଆସୁଥିଲା ଯେ...... ।

ଯେକୌଣସି ପ୍ରକାରରେ ହେଉ ପଛକେ, ପ୍ରତିଦ୍ୱନ୍ଦୀକୁ ହରାଇ ଦେବାକୁହିଁ ପଡ଼ିବ, —ଏହିଭଳି ଗୋଟାଏ ଅଦ୍ଭୁତ ଉଦ୍‌ବେଗ । ଏହି ଦୁଇଟିଯାକ ଛେଳିଙ୍କ ମଧ୍ୟରୁ ହିଁ ......

ଏକ......

ଦୁଇ......

ତିନି......

ସେହି ସମୟକି ଅବିଶ୍ରାନ୍ତ ଚାଲିଛି ।

କିଏ ହାରିଲେ ? କିଏ ଜିତିଲା ? କେହି ନୁହନ୍ତି । କ'ଣ ପଛକୁ ହଟି ଚାଲିଗଲା କି ?

ତେବେ ଆଉଥରେ ଆଗକୁ ଆସି ପୂର୍ଣ୍ଣ ବଳରେ ଆକ୍ରମଣ କରିବାକୁ ପଡ଼ିବ··· ଦ୍ୱନ୍ଦ୍ୱ—ଯୁଦ୍ଧ...... ।

ହୁଁ ! ସୌନ୍ଦର୍ଯ୍ୟ, ଆରାଧନା, ପୂଜା, ଦେବତା, ପବିତ୍ରତା, ଇଏ, ସିଏ—ଏହି ଅନ୍ତରାତ୍ମା ଭିତରେ ଜୁଆହୋଇ ରହିଥିବା ଆପଣାର ସକଳ ପ୍ରକାରର ମୋହକ ଓ କାବ୍ୟମୟ ଅନୁଭୂତି··· ବିଶିଷ୍ଟ ବିଶିଷ୍ଟ ଅନୁଭୂତିର କେତେ କଳ୍ପନା···ସେସବୁ କୁଆଡ଼େ ଅଦୃଶ୍ୟ ହୋଇଗଲେ ...... ?

ଗୋଟିଏ ବାସନା......

କେବଳ ବାସନା......

ଦେହରେ ମୁଣ୍ଡଠାରୁ ଆରମ୍ଭ କରି ପାଦର ତଳପାଯାଏ, ଶିରା ପ୍ରଶିରାରେ ଫେଣ ଉଡ଼ାଇ ପ୍ରବାହିତ ହୋଇ ଉଚ୍ଛୁଳି ଉଠୁଥିବା ଓ ସିଧା ଏକାନ୍ତ ହୋଇ ଅନୁଭୂତ ହେଉଥିବା ଭୋଗର ସୁଖାନୁଭୂତି ......

କେବଳ ଲଇଟି ଲଗି ହିଁ ଆଉ କୋଉଠି ସ୍ଥାନ ରହିଲା......

ଏଠି, ଏହି ଗଳିକୁ ଆସିବାର ଛଅମାସ ହୋଇଗଲା......

ଛେପରେ କଫ ବାହାର ଆସୁଛି, ସେଥିରେ ପୁଣି ନାଲି ରେଖାମାନ ରହୁଛି···

ହୃତ୍‌ପିଣ୍ଡରେ ବେଦନା······

ଅବିଶ୍ରାନ୍ତ ଜ୍ୱରରେ କାଶ······

ନିଶ୍ୱାସରେ ଅସ୍ୱସ୍ତି······

ରାତିରେ ଜର······

ଉଆସରେ ଥିବା ଡାକ୍ତରଖାନାକୁ ଯାଇ ଡାକ୍ତର କେଣବନ୍ ନାସ୍ୱର୍‌ଙ୍କୁ ଦେଖାଇଲେ । ପୂର୍ବ ପରୀକ୍ଷା କରିସାରି ସେ ପରିହାସରେ କହିଲେ,, "ଅନଲ୍ଡନ୍ ନାସ୍ୱର୍ ! ତୁମକୁ ଟି. ବି. ହୋଇଯାଇଛି । ବର୍ତ୍ତମାନ ଆରମ୍ଭ ହେଉଛି । ଏଇଠି ତାକୁ ଭଲ ନ କରିବ ତ ଜୀବନ ପ୍ରତି ବିପଦ ରହୁଛି ।

## ଦଶ

ପେରୁଲ୍ରାନ୍ଦି ଗଳି ଶାନ୍ତ ହୋଇ ରହିଥିଲା······

ଦୁଇ ପଟରେ ଧନୀମାନଙ୍କର ଯେଉଁ ପୁରୁଣା ନିବାସମାନ ଥିଲା, ସେଠି ଏବେ ଅଧିକାଂଶ ଘରେ ତାଲା ଲଗାହୋଇ ରହିଛି । କେତେକ ଭବନରେ ସରକାରୀ ଦପ୍ତରର ପଟାଗୁଡ଼ାକ ଲଟକୁଛି ।

ଏକାନ୍ତ ରାସ୍ତା । ଶଙ୍ଖମୁଖ ସମୁଦ୍ରତଟର ଏଠାରୁ ଗୋଟିଏ ମାଇଲ ବି ଦୂର ହେବ ନାହିଁ । ସମୁଦ୍ରରୁ ଢେଉଗୁଡ଼ିକର ଗର୍ଜନ ବେଶ୍ ଶୁଣାଯାଏ । ଧୀରେ ଧୀରେ ଆଗକୁ ପାଦ ପକାଇ ଅନନ୍ତନ୍ ନାୟର୍ ଆପଣାର ହୃଦୟରେ ଏପରି ଏକ ତରବାରି ଶବ୍ଦକୁ ଅନୁଭବ କରୁଥିଲେ, ଯାହା କେବଳ ତାଙ୍କୁହିଁ ଶୁଣାଯାଉଥିଲା ।

ଟି. ବି. ସାନଟୋରିଅମ୍ ଯିବାଲାଗି ସିଏ ଆଦୌ ସମ୍ମତ ନଥିଲେ; ତେଣୁ ଘରେ ହିଁ ସମୁଚିତ ପ୍ରକାରେ ତାଙ୍କର ଚିକିତ୍ସା ଆରମ୍ଭ ହେଲା । ମାତ୍ର ଟି. ବି. ହେବା ପର୍ଯ୍ୟନ୍ତ ଯେଉଁ ଦାମ୍ପତ୍ୟ ଜୀବନ ଏତେ କୋଳାହଳରେ ଚାଲୁଥିଲା, ତାହାର ପୁଣି କି ଦଶା ହେଲା ? ତା'ପରେ ଡାକ୍ତରଙ୍କର ପରାମର୍ଶ ଅନୁସାରେ ଜୋର୍ କରି ଆପଣାର ଭାବନା ଓ ଇଚ୍ଛାଗୁଡ଼ିକ ଦବାଇ ରଖି ଶ୍ରଦ୍ଧା ଓ ନିଷ୍ଠାର ସହିତ ବ୍ୟତୀତ କରାଯାଇଥିବା ସେହି ଜୀବନଟି ପୁଣି କଭଳି ଜୀବନ ବି ଥିଲା ?

ପ୍ରଥମରୁ ହିଁ ଯେଉଁ ଦେହ ସୁଖର ଭୋଗ ଖୁବ୍ ମିଳିଥିଲା, ସିଏ କ'ଣ ଏତେ ସହଜରେ ତାଙ୍କୁ ଛାଡ଼ି ଚାଲିଯିବ ?

କ'ଣ ସେତିକି ?

ତାଙ୍କ ପାଇଁ ନିଷେଧ ହୋଇ ରହିଛି, ରୋଗ ହେତୁ··· ।

ତାକୁ······ ।

କ'ଣ ତା'ର ମଧ୍ୟ କିଛି କର୍ତ୍ତବ୍ୟ ନଥିଲା··· ?

ଦାୟିତ୍ୱ ନଥିଲା··· ?

ଦାମ୍ପତ୍ୟ-ଜୀବନକୁ କ'ଣ ସର୍ବଦା କୌଣସି ଅବକାଶ ନଥାଇ ଚାଲୁଥିବା କେବଳ ଏକ ତୁଚ୍ଛା ଦ୍ୱନ୍ଦ୍ୱ-ଯୁଦ୍ଧ ବୋଲି କୁହାଯିବ ?

ସେଥିରେ କ'ଣ ପ୍ରକୃତରେ ଆଉ ଅନ୍ୟ କଥା କିଛି ହେଲେ ନାହିଁ ?

ପରସ୍ପର ମଧ୍ୟରେ ଜଣକର ଅନ୍ୟ ଜଣକ ଲାଗି ତ୍ୟାଗ, ସହିଷ୍ଣୁତାଭାବ,—ଏସବୁ ଲାଗି କ'ଣ ସେଥିରେ କୌଣସି ସ୍ଥାନ ନାହିଁ ?

ଏହି ବିଷୟରେ ସିଏ ପ୍ରକୃତରେ କାତ୍ୟାୟିନୀଙ୍କୁ କୌଣସି ଦୋଷ ଦେଇ ପାରିବେ କି ?

ତା'ଠାରେ କ'ଣ ଏକମାତ୍ର ବୁଝିବା ଶକ୍ତି ନଥିଲା, ଯେପରିକି ସିଏ ଜାଣିପାରିବ, ତାଙ୍କୁ କଉଳି ଗୋଟିଏ ରୋଗ ହୋଇଛି, କାହିଁକି ତାଙ୍କୁ ଏ ରୋଗଟି ହୋଇଛି ?

ଥିଲା !—ଯେତିକି ଆବଶ୍ୟକ, ତା'ଠାରୁ ବୁଝିବା ଶକ୍ତି ଉହୁଥିଲା ।

ଏଥିଲାଗି ତାଙ୍କ ପାଇଁ ସେହି ରାତିଗୁଡ଼ିକ ପ୍ରକୃତରେ ନର୍କ ଯନ୍ତ୍ରଣାରେ ହିଁ ପରିଣତ ହୋଇଯାଇଥିଲା ।

ସମୟ ଅନୁସାରେ ଔଷଧ ପ୍ରସ୍ତୁତ···

ପୁଷ୍ଟିକାରକ ଭୋଜନ ପ୍ରସ୍ତୁତ···

ସିଏ ତ ଶୁଦ୍ଧ ନିରାମିଷାଶୀ ଥିଲେ, ତଥାପି ତାଙ୍କ ସକାଶେ ସୁପ୍ ଆଉ ଅଣ୍ଡା ତରକାରୀ ପ୍ରଭୃତି ତିଆରି କରିବା ମଧ୍ୟ ଶିଖିଯାଇଥିଲେ ।

ମାତ୍ର ତାଙ୍କୁ ତ ଗୋଟିଏ ରୋଗ ହୋଇଥିଲା । ଜୀବନକୁ ବିପଦ ଥିଲା···

ବିପଦ ଥିଲା···ସେଇଟିକୁ ସେ ଆଦୌ ଅମାନ୍ୟ କରି ନଥିଲେ···

ମାତ୍ର ସିଏ ଯେ ଆଉ କୌଣସି ପ୍ରକାର ଶୃଙ୍ଗାର କଲେନାହିଁ, ସେହି କଥାଟିକୁ ଆଉ କେତେଦିନ ଯାଏ ସହ୍ୟ କରି ହୋଇଥାନ୍ତା ··· କିନ୍ତୁ ଶୃଙ୍ଗାର କାହା ଲାଗି ? ତା'ର ପିନ୍ଧା ସାଧାରଣ ପରିଚ୍ଛଦଗୁଡ଼ିକ—ଅକାରଣରେ ତାଙ୍କର ହୃଦୟକୁ ଆହୁରି ଅଧିକ ଉଦ୍‌ବେଳିତ କରି ଦେଇଥାନ୍ତା··· ।

ଆଖିରେ ନୂଆ ଦୀପ୍ତି । ହଁ, ଆଖିଗୁଡ଼ିକର ନୀଳ ଗଭୀରତା ମଧ୍ୟରେ ସର୍ବଦା ଜମାଟ ବାନ୍ଧି ଦେଖାଯାଉଥିବା ସେହି କରୁଣା ଭାବଟି କେଡ଼େ ମୋହକ ନଥିଲା···

ଦେଖିବା ମାତ୍ରକେ ହିଁ ତାଙ୍କର ସକଳ ଭାବନାରେ ଅଡ଼୍‌ଆ ହୋଇ ଗଣ୍ଠି ପଡ଼ି-ଯାଉଥିଲା—ଏପରି କରୁଣା । ଭ୍ରମ ହେଉଥିଲା ଯେ ସିଏ ଏଣିକି କିବ ହୋଇଯିବେ ।

ମାତ୍ର···

ତାହା ତାଙ୍କର ସୁସ୍ଥ ଜୀବନ ଓ ଆୟୁକୁ ବଳ ଦେବାପାଇଁ ହିଁ ଉଦ୍ଦିଷ୍ଟ ଥିଲା !

ସିଏ ପ୍ରକୃତରେ କେତେ ଦୂରକୁ ଦୂରକୁ ଚାଲିଯିବାରେ ଲାଗିଛି ।

କେବଳ ଏତିକି ନୁହେଁ, ଅନେକ ଚେଷ୍ଟା କରି ସିଏ ଏକଥା ମଧ୍ୟ ଜାଣିପାରିଲେ ଯେ କାତ୍ୟାୟିନୀ ତା' ନିଜର ସ୍ୱାସ୍ଥ୍ୟ ବିଷୟରେ ମଧ୍ୟ ଚିନ୍ତା କରୁଥିଲା । ସିଏ ଯାହା ହେଉ

ପଡ଼ୁଛନ୍ତି, ଟି. ବି. ଗୋଟିଏ ସଂକ୍ରାମକ ରୋଗ । ତେଣୁ ନିଜକୁ ତଥା ନିଜର ପିଲାଟିକୁ ବଞ୍ଚାଇ ରଖିବା ଲାଗି ତାହାର ଆତ୍ମ ରକ୍ଷା ପ୍ରଚେଷ୍ଟା ଦାୟିତ୍ୱ ଭାବଟିକୁ କପଟ ଖରାପ ବୋଲି କୁହାଯାଇ ପାରିବ ?

କିନ୍ତୁ···ଏହି ଯନ୍ତ୍ରଣାକୁ ଆଉ କେତେ ଯୁଗ ପର୍ଯ୍ୟନ୍ତ ସହିବାକୁ ପଡ଼ିବ ? ଔଷଧ ପୁଷ୍ଟିକର ଆହାର ଆଦି ଅବଶ୍ୟ ସବୁକିଛି ଆଶ୍ୱାସନା ଦେବାକୁ ଆରମ୍ଭ ମଧ୍ୟ କରିଥିଲେ···

ଦିନେ ରାତିରେ ପ୍ରଭାକରଙ୍କୁ ନିଜ ପାଖରେ ଶୁଆଇ ଦେଇ କାତ୍ୟାୟିନୀ ଏପାଖକୁ ମୁହଁ ବୁଲାଇ ଗଡ଼ ପଡ଼ ହେଉଥିବା ସମୟରେ ତାର ଭାବନାଗୁଡ଼ିକ ଧୀରେ ଧୀରେ ଫଣା ବିସ୍ତାର କରିବାକୁ ଲାଗିଲେ । କିନ୍ତୁ ବୁଦ୍ଧି ମଧ୍ୟ ସମ୍ପୂର୍ଣ୍ଣ ଭାବରେ ଶୋଇ ପଡ଼ି ନଥିଲା, କାରଣ ମଝିରେ ମଝିରେ କାଶର ଶବ୍ଦ ବାସ୍ତବକ ସ୍ଥିତିଟିକୁ ଆଣି ସୂଚାଇ ଦେଇ ଯାଉଥିଲା ।

"ଆରେ··· ! କାତ୍ୟାୟିନୀ··· !"

ଜବାବ ନାହିଁ । ସିଏ ବର୍ତ୍ତମାନ କଦାପି ଶୋଇ ପଡ଼ିନଥିବ ।

ଏତେ ଶୀଘ୍ର ସିଏ କଦାପି ଶୋଇପାରିବ ନାହିଁ—ଇଏ ପୁଣି କ'ଣ ତାଙ୍କୁ ଜଣାନାହିଁ ?

"କାତ୍ୟାୟିନୀ···"

"କ'ଣ··· ?"

"ଏ ଆଡ଼କୁ ଆସ···"

କୌଣସି ଉତ୍ତର ନାହିଁ ।

"ମୁଁ ପରା ତୁମକୁ ଡାକୁଛି···ମୁଁ କ'ଣ ତୁମକୁ କାମୁଡ଼ି ପକାଇବି ।···ମୋର ପ୍ରିୟତମା କାର୍ତ୍ତୀ···ଟିକିଏ ଏଣେ ଆସ···ଟିକିଏ ଦୟା କରି ଆସ···ତୁମକୁ ମୋର ଗୋଟିଏ କଥା କହିବାର ଅଛି··· ।

ସିଏ ମୋ' ଆଡ଼କୁ ମୁହଁ କରି ଶୋଇପଡ଼ିଥିଲା ।

"କେବଳ କଥାପଦେ ତ କହିବି··· ?"

ସିଏ କ'ଣ ମୋତେ ଚହ୍ନି ପାରୁନାହିଁ—?

"ମୁଁ ଯେତେବେଳେ ତୁମକୁ ଡାକୁଛି··· ?"

କଣ୍ଠ ସ୍ୱରରେ ସମ୍ଭବତଃ ଟିକିଏ ରୋଷ ବି ରହିଥିଲା ।

କାତ୍ୟାୟିନୀ ଉଠିକରି ଆସିଲା ।

ସିଏ ଦେଖିବାକୁ ଠିକ୍ ଗୋଟିଏ ସ୍ୱପ୍ନ ସୁନ୍ଦରୀ ପରି ମନେ ହେଉଥିଲ । ସେଇ କୁନ୍ତକ···ତା'ର ହାତ ଦୁଇଟିକୁ ମୋର ହାତ ମଧ୍ୟରେ ନେଇ ନେଇ ମୋ' ଆଖି ଛଳଛଳ କରି ଆସିଲା । ସଙ୍ଗେ ସଙ୍ଗେ ସିଏ ବି କାନ୍ଦି ପକାଇଲା । "ମୋ କାନ୍ଦିବାର କାରଣ ତାକୁ ଭଲଭାବରେ ଜଣାଥିଲା ।

ତା'ର କାନ୍ଦିବାର କାରଣକୁ ମଧ୍ୟ ମୁଁ ବୁଝି ପାରୁଥିଲ ।

ପାହାଡ଼ ପରି ଆହାର ବଡ଼ା ହେଉଛୁ, ତେବେ ବି ଭେକକୁ ଶାନ୍ତ କରିପାରୁ ନାହିଁ—ଏତେଦୂର କଠୋର···

ଇଏ କ'ଣ ଆଉ ଗଛମୂଳରେ ଧରିଥିବା ପଣସ ହୋଇଛୁ ଯେ ସବୁ ଇଛାକୁ ଏକାବେଲକେ ଶୂନ୍ୟ ହୋଇଯିବ ?

ତନ୍ଦ୍ରା ଦୂର ହୋଇଗଲା···ଧୀରେ ଧୀରେ···

ସିଏ ପୁଣି ଅଟକାଇ ରଖିଲା···

ନିଜ ଭେକକୁ ମେଣ୍ଟାଇବା ଅପେକ୍ଷା ତା' ଭେକକୁ ମେଣ୍ଟାଇବାର ଅଧିକ ପ୍ରୟୋଜନ ରହୁଛୁ—ଏହିଭଳି ଏକ ସଂବେଦନାମୟ ପାଗଲାମି···

କିଛି ସମୟ ପରେ···

ପୁଣି ସେଇ ପୁରୁଣା ଅଭ୍ୟାସ ଗୁଡ଼ାକ··· ।

ସିଏ ମଧ୍ୟ ସତେଅବା ସେଇ ଯନ୍ତ୍ରଟି ପରି ହୋଇଗଲା, ଯେଉଁଥିରେ କିଏ ଆସି କ୍ଳିକ୍ ଦେଇ ସେଇଟିକୁ ଚଲାଇ ଦେଇଯାଇଛୁ । ଦେଖିବାକୁ ସିନା ଏତେ ସିଧାସିଧା; ମାତ୍ର ତା'ଭିତରେ ଏପରି ରାକ୍ଷସ ପରି ବଳ ଓ ପିଶାଚ ପରି ପାଗଲାମି କୋଉଠୁ ଆସି ପହଞ୍ଚିଯାଏ କେଜାଣି··· ।

ସିଏ କ'ଣ ସହି ପାରିଲେ··· ?

କ'ଣ ତାଙ୍କୁ ବି ହାରିବାକୁ ପଡ଼ିବ ?

ନିଃଶ୍ୱାସ ବନ୍ଦ ହୋଇ ଯିବାପରି ଅବସ୍ଥା···

ଖର ନିଶ୍ୱାସ ବହୁଥିବାର ଏହି ବ୍ରହ୍ମାନନ୍ଦ-କ୍ଷଣଟିରେ ତାଙ୍କର ପ୍ରାଣପକ୍ଷୀଟି ଉଡ଼ି, ବାହାରିଗଲେ ମଧ୍ୟ ତାହା କେତେ ମଧୁର ନହେବ—ଏପରି ଗୋଟାଏ ଛଟପଟ ହେବାର ଅବସ୍ଥା···

ତା'ସାଙ୍ଗକୁ ଗୋଟାଏ ନିଶା···

କାନପାଖରେ ନାଗସାପର ଫୁଁ ଫୁଁ ଶବ୍ଦ ଶୁଣାଯାଉଛୁ ।

"କହିଲେ ବି ଶୁଣୁନା···ଯଦି ନିଜାଇ ପାରିବ, ତେବେଯିନା ନିଆଁକୁ ବଢ଼ାଇବ··· ତା ନ ହୋଇପାରିବ ତ ଛୁଇଁବା ମାତ୍ରକେ ତେଲିଁ ପଡ଼ୁଥିବା ବେମାରଟାକୁ ନେଇ ଚୁପ୍ ହୋଇ ଶୋଇ ରହିଥାଅ···"ଅସ୍ପଷ୍ଟଭାବରେ ଭରି ରହିଥିବା ଏହି କଥାଗୁଡ଼ାକ ସ୍ୱପ୍ନରେ ଶୁଣାଗଲା ପରି ଶୁଣାଯାଉଛି । ଏପରି ରୁମ···

କେତେବେଳେ ଶୋଇପଡ଼ିଲେ କେଜାଣି···

ଯେତେବେଳେ ସକାଳ ହେଲା, ସେତେବେଳେ ଆଖିର ପତା ଖୋଲି ହେଉନଥାଏ । ଦେହଟାଯାକ ଏପରି ଜ୍ୱାଳା ଜଳୁଥାଏ, ଯତେଯେପରି କିଏ ଟୋକେଇଏ ଜଳନ୍ତା ନିଆଁ ଆଣି ପକାଇଦେଇ ଯାଇଛି···

ସମସ୍ତ ଶରୀରରୁ ଗରମ ହୁଲା ବାହାରୁଥିଲା···ଡାକ୍ତର କେଶବନ୍ ଆୟର୍ ଦେଖିବା ମାତ୍ରକେ କହିଦେଲେ, "ଗୋଟିଏ ମାସ ଟି. ବି. ସାନଟୋରିଅମରେ ରହି ଚିକିତ୍ସା ନକଲେ ଆଉ ହୋଇ ପାରିବନାହିଁ ।"

ଆଉ କୌଣସି ଗତ୍ୟନ୍ତର ନଥିଲା । ସେହିଦିନ ହିଁ ତାଙ୍କୁ ନେଇ ଟି. ବି. ସାନଟୋରିଅମ୍‌ରେ ପହଞ୍ଚାଇ ଦିଆଗଲା ।

ଗୀତରେ ଆସୁଥିବା ଜର କମିବାକୁ ପନ୍ଦରଦିନ ଲାଗିଛି ।

କାତ୍ୟାୟିନୀ ତାଙ୍କ ସହିତ ସାନଟୋରିଅମ୍‌ରେ ନରହୁ, ସେଇ ନିଜେ ଭଲ କରି ବୁଝି ତାକୁ ସେକଥା କହି ଦେଇଥିଲେ । କେବଳ ରୋଗୀମାନଙ୍କୁ ଛାଡ଼ିଦେଲେ ସେଠାରେ ଅନ୍ୟ କାହାରିକୁ ରହିବାଲାଗି ଅନୁମତି ମିଳୁନଥିଲା,—ଏହି ନିୟମଟି ହେତୁ ମଧ୍ୟ ଭାରି ସୁବିଧା ହୋଇଗଲା । କାତ୍ୟାୟିନୀ ପ୍ରଭାକରନଙ୍କୁ ନେଇ ଘରେ ରହିଲା । ମାଆ ମରିଯିବା ପରେ, ମାଆଙ୍କର ଜଣେ ସମ୍ପର୍କୀୟ ଭଉଣୀ ଏବେ କଲ୍ୟାଣୀର ଘରକୁ ଆସୁଛନ୍ତି । ସିଏ ନିତି ସକାଳସନ୍ଧ୍ୟାରେ ଆସି ଦେଖିଯାଆନ୍ତି ।

ସବୁ ବନ୍ଧୁବାନ୍ଧବ, ଭଉଣୀ କଲ୍ୟାଣୀ, ସାନଭାଇ ମଧୁସୂଦନନ ନାୟର ଏବଂ ସୁକୁମାରନ୍ ନାୟର୍—ସମସ୍ତେ ବି ଆସି ଦେଖି ଯାଇଛନ୍ତି···

କାତ୍ୟାୟିନୀ ମଧ୍ୟ ଅନେକ ସମୟରେ ଆସି ଦେଖିଯାଏ ।

ଏହିପରି ଭାବରେ ସିଏ ଏକା ଏକା ଟି. ବି. ସାନଟୋରିଅମ୍‌ରେ ପଡ଼ିରହିଲେ । ସେହି ସମୟରେ କେତେକେତେ ବିଷୟ ସମ୍ବନ୍ଧରେ ସିଏ ଗମ୍ଭୀର ଭାବରେ ଚିନ୍ତା କରି ଦେଖିବା ସମ୍ଭବ ହୋଇ ପାରିଲା···

ଏ ଜୀବନଟା କ'ଣ ଖାଲି ଏହି ଯୌନସମ୍ପର୍କ ବ୍ୟତୀତ ଆଉ କିଛି ନୁହେଁ ?

ଏଇଟିକୁ ଛାଡ଼ିଦେଲେ ଜୀବନରେ କ'ଣ ଆଉର ଅନେକ ପ୍ରକାରର ସମସ୍ୟା ରହୁନାହିଁ ?

ସେହି ସବୁଗୁଡ଼ିକୁ ସ୍ମରଣ କରିବାରୁ ତାଙ୍କୁ ନିବୃତ୍ତ କରି ରଖିବାକୁ ଆଉ କେଉଁଠି କି ଶକ୍ତି ରହିଥିଲା ?

ଏହିପରି ନାନା ମାନସିକ ବିବଶତା ମଧ୍ୟରେ ଟି. ବି. ସାନଟୋରିଅମ୍‌ରେ ଦିନ ଦିନ କଟାଇ, କୌଣସି ପ୍ରକାରେ ରୋଗମୁକ୍ତ ହୋଇ, ସ୍ୱାସ୍ଥ୍ୟ ଫେରିପାଇ ସିଏ ଯେତେବେଳେ ଘରକୁ ଫେରିଆସିଲେ, ତାହାର କେତୋଟି ମାସ ପରେ ହିଁ ସେହି ଜଳ—ମଜ୍ଜନ ଉପଦ୍ରବଟି ଆସି ପହଞ୍ଚିଲା, ଯାହାଦ୍ୱାରା ତାଙ୍କ ଜୀବନର ଗତିଦିଗଟି ହିଁ ଏକାବେଳେ ମୋଡ଼ି ହୋଇଗଲା ।

# ଏଗାର

ଜଳ—ମଜ୍ଜନ ଉତ୍ସବ ଦିନ, ଯେଉଁ ଗଳିଟି ଦେଇ ସିଏ ବର୍ତ୍ତମାନ ଯିବାରେ ଲାଗିଛନ୍ତି, ତାହାର ଦୁଇ କଡ଼ରେ ଠେଁସାଠେଁସି ହୋଇ ରହିଥିବା ଗଗନଚୁମ୍ବୀ ବଡ଼ ବଡ଼ ଅଟ୍ଟାଳିକା ଗୁଡ଼ିକର ଦ୍ୱାରଦେଶରେ ଦୀପ-ସ୍ତମ୍ଭ, ବିଦ୍ୟୁତ୍ ଆଲୋକ, ପତାକା, ପୁଷ୍ପବିତାନ, ତୋରଣ,—ଏହିପରି କେତେ କ'ଣ ଅଳଙ୍କରଣରେ ଖୁବ ଧୁମ୍ ଲାଗି ଯାଇଥିଲା···

ରାଣୀମାନଙ୍କର ଏହି ପ୍ରାସାଦ ଗୁଡ଼ିକର ଦ୍ୱାରଦେଶରେ ସଜ୍ଜିତ ମେଜଟି ମଧ୍ୟ ପଡ଼ି ରହିଥିଲା ଏବଂ ସେହି ମେଜଟି ଉପରେ ମହାରାଜାଙ୍କର ବିଶାଳ ଚିତ୍ରଟିକୁ ରଖା-ଯାଉଥିଲା । ଚିତ୍ରଟିକୁ ପୁଷ୍ପହାରରେ ମଧ୍ୟ ସଜାଇ ଦିଆଯାଉଥିଲା । ତାହାର ସମ୍ମୁଖରେ ଦୀପମାଳାର ଉଜ୍ଜ୍ୱଳ ଆଲୁଅରେ ଆର୍ଦ୍ର ହୋଇ ଠିଆ ହୋଇଥିବା ଯୌବନପୂର୍ଣ୍ଣା ରାଣୀମାନଙ୍କର ସେହି ଦୃଶ୍ୟଟିକୁ ଦେଖିଲେ ଆଖି ପ୍ରକୃତରେ ଏକାବେଳକେ ପୂର୍ଣ୍ଣ ହୋଇ ଯାଉଥିଲା······

ଏହି ଗଳି ଭିତରେ ସମୁଦ୍ରରୁ ଅଣାଯାଇଥିବା ଧଳା ରଙ୍ଗର ଓ ଚିକ୍କଣ ଝିନିପରି ବାଲିର ଗୋଟିଏ ପରସ୍ତ ପକାଇ ଦିଆଯାଉଥିଲା ଏବଂ ସେହି ବାଲି ଖରାରେ ଖୁବ ମନମୋହକ ହୋଇ ଚକ୍‌ମକ୍ ହେବାରେ ଲାଗିଥିଲା ।

ବାଲୁକଡ଼କୁ ପୋଲ ଉପରେ ଯିବା ପୂର୍ବରୁ ଡାହାଣପଟକୁ ବୁଲି କରି ଚାଲି ଯାଇଥିବା ଇଜୈକକ୍‌ଲ ମୁହାଣ ଉପରକୁ ଯାଇ ଅନନ୍ତନ୍ ନମ୍ବର୍ ସେଇଠି ଠିଆ-ହୋଇ ରହିଲେ ।

କାତ୍ୟାୟିନୀ ସହିତ ଏଠାରେ ରହିବାକୁ ଆରମ୍ଭ କରିବା ପୂର୍ବରୁ ଯେଉଁ ପ୍ରଥମ ଜଳ···ମଜ୍ଜନ ଉତ୍ସବଟି ପଡ଼ିଥିଲା, ସେତେବେଳେ ସିଏ ଏଠାରେ ନଥିଲେ । ସିଏ ସେତେବେଳେ ଟି. ବି. ସାନଟୋରିଅମ୍‌ରେ ଯାଇ ପଡ଼ିଥିଲେ···

ମାତ୍ର ସାନଟୋରିଅମ୍‌ରୁ ଫେରିଆସିବା ପରେ ଯେଉଁ ଉତ୍ସବଟି ଆସିଲା, ସେଦିନ । ସେତେବେଳେ ମଧ୍ୟ ତାଙ୍କର ରୋଗଟି ପୁରାପୁରି ଯେ ଭଲ ହୋଇଯାଇଛି, ସେ କଥା ପ୍ରକୃତରେ କୁହାଯାଇ ପାରନ୍ତା ନାହିଁ । ତଥାପି, ମହାରାଜାଙ୍କର ଦତ୍ତ ଧନରେ ହିଁ ତ ତାଙ୍କର ଓ ପରିବାରର ଜୀବିକାନିର୍ବାହ ହୋଇପାରୁଛି । ସେହିକଥା ଭାବି ସିଏ ନିଜ ପଇସାରେ ମୁହାଣ ଉପରେ ମହାରାଜାଙ୍କର ଚିତ୍ର ଓ ଦୀପ ଆଦି ସଜାଇଦେଲେ ଓ କାତ୍ୟାୟିନୀ ଏବଂ ସ୍ୱୟଂ ସେଇଠାରେ ହାତଯୋଡ଼ି ଠିଆ ହୋଇ ରହିଲେ । ତାଙ୍କ କାଖରେ କାଖ ହୋଇଥିବା ପ୍ରଭାକରନ୍ ତା'ର କୋମଳ ହାତ ଦୁଇଟି ବଢ଼ାଇ ବଢ଼ାଇ ହାତୀ ଆଉ ଘୋଡ଼ାଗୁଡ଼ିକ ଆଡ଼କୁ ସଙ୍କେତ କରୁ କରୁ ଆଶ୍ଚର୍ଯ୍ୟ ହୋଇ ଯାଉଥିବା ଦେଖିବାରେ ଲାଗିଥିଲା ।

ସେଠିକବେଳେ ଗଳିର ଦୁଇ ପାଖରେ ଘୋଡ଼ସବାରର ଧାଡ଼ି ରାଜାଙ୍କୁ ସମ୍ମାନ ଦେଖାଇ ଯେତେବେଳେ ପଛକୁ ପଛକୁ ଘୁଞ୍ଚି ଆସିବାରେ ଲାଗିଥିଲେ, ସେତେବେଳେ ମହାରାଜା ଅଣ୍ଟାରେ ଧୋତି ପିନ୍ଧି ହାତରେ ଖୋଳରୁ କଢ଼ା ହୋଇଥିବା ତରବାରିଟିଏ ଧରି ଏବଂ ମସ୍ତକରେ ଜାଲ୍ଟୁକ୍ଲମାନ ରତ୍ନଜଡ଼ିତ ସବୁଜ ଟୋପି ଧାରଣ କରି ରାସ୍ତାର ଠିକ୍ ମଝିରେ ଗମ୍ଭୀର ଗତିରେ ପାଦ ପକାଇ ଅଗ୍ରସର ହେଉଥିଲେ ।

ପଛରେ ପରିଜନମାନେ······

ବଡ଼ ବଡ଼ ସରକାରୀ ଅଫିସର୍‌ମାନେ କେବଳ ଅଣ୍ଟାପର୍ଯ୍ୟନ୍ତ ଧୋତି ଗୁଡ଼ାଇ ହୋଇ, ଖାଲି ଗୁଡିଟା ଉପରେ ହାତକୁ ବେଢ଼ାଇ, ପଞ୍ଚପୁଚ୍ଛଗୁଡ଼ିକୁ ତଳ ଆଡ଼କୁ କରି ସମ୍ମାନ ଦେଖାଇ ପାଦ ମିଳାଇ ଚାଲିବାରେ ଲାଗିଥିଲେ । ବେକରେ ମୋତିର ହାର ଓ ଅଣ୍ଟାରେ ପଶମୀ ବସ୍ତ୍ର ପରିଧାନ କରି ସେମାନଙ୍କ ସହିତ ଯାଉଥିବା ତହସିଲଦାର ବନ୍ଦମନ୍ ତମ୍ବି'ର ଶାଗୁଣା ପରି ଆଖିଦିଓଟି ଭୁରନ୍ତ ଚଲମାରି ଆସି କାତ୍ୟାୟିନୀ ଉପରେ ପଡ଼ିଲା ଓ ଫଞ୍ଚା ମାରିଦେଇ ଚାଲିଗଲା ।

ସଙ୍ଗେ ସଙ୍ଗେ ମୋ'ଆଡ଼କୁ ଓ ତାକୁ ପାଳି କରି ବାରବାର ଏପରି ଦେଖିବାକୁ ଲାଗିଲା, ଯେପରି ଦୁଇଜଣଯାକଙ୍କୁ ଗିଳି ପକାଇବ······

ଏ କଥା ଦେଖିପାରି ମୁଁ ଯେତେବେଳେ ହଠାତ୍ ମୁହଁ ବୁଲାଇ କାତ୍ୟାୟିନୀକୁ ଅନାଇ ଦେଖିଲି, ସେତେବେଳେ······

ହଠାତ୍ ମୋ'ମନର ଗୋଟାଏ ମାୟାଜାଲ୍······ଜରିପକା ଧଡ଼ିର ଧଳା ଲୁଗା, ଉପରିଭାଗର ପରିଧାନ ଏବଂ ଡାଳଗଛର ଫଲଗୁଚ୍ଛ ପରି ବାଳ ଉପରେ ମଲ୍ଲୀର ମାଳା ଧାରଣ କରିଥିବା, ମୁକ୍ତାସମାନ ଦନ୍ତପଂକ୍ତିକୁ ଦେଖାଇ ଖିଲ୍ ଖିଲ ହୋଇ ହସୁଥିବା ଏହି ମୋହିନୀଟି ପୁଣି କିଏ ?

ଏହା ସହିତ ମୋ'ର କି ସମ୍ପର୍କ ?

ଇଏ କ'ଣ ମୋର ପତ୍ନୀ ? ନାଇଁ, ଇଏ ଅନ୍ୟ କେହି ଅନ୍ୟ ସ୍ତ୍ରୀ ।

କେଜାଣି କାହିଁକି, ସେହି ମୁହୂର୍ତ୍ତରେ ହିଁ ମୋ'ର ମନରେ ହଠାତ୍ ଏପରି ଗୋଟିଏ ପରଭାବ କୁହୁଳି ଉଠିଲା ଓ ପୁଣି ଅଦୃଶ୍ୟ ହୋଇଗଲା । ଏପରି ହେବାର ଯେ କ'ଣ କାରଣ ଥିଲା, ସେକଥା ବର୍ତ୍ତମାନ ମଧ୍ୟ ସେହିପରି ଅସ୍ପଷ୍ଟ ହୋଇରହିଛି ।

ହୁଁ ! ଯାହା ମନ ତାହା ହେଉ ପଛକେ, ଅନ୍ତତଃ ଏତିକି ତ ଅବଶ୍ୟ ସତ୍ୟ ଯେ ସେହି ଯେଉଁଦିନ ଠାରୁ ବନ୍ଦମନ୍ ତମ୍ବି କାତ୍ୟାୟିନୀକୁ ଯେଉଁ ଏଭଳି ଭାବରେ

ଦେଖିଲି, ସେହିଦିନ ଠାରୁ ହିଁ ଭାଗ୍ୟ ମୋ' ସହିତ ନିଷ୍ଠୁର ଖେଳ ଖେଳିବାକୁ ଆରମ୍ଭ କଲା ।

ଅନନ୍ତନ୍ ନାୟର୍ ସେତେବେଳକୁ ଆପଣା ଘରର ଅଗଣାରେ ଆସି ପହଞ୍ଚି ସାରି-ଥିଲେ । ବାହାରର ଫାଟକ ଖୋଲିଥିଲା ।

ତାଙ୍କ ମନରେ କେତେକେତେ ପ୍ରକାରର ସ୍ମୃତିଗୁଡ଼ାକର ଅଡ଼ୁଆ......

ବାରଣ୍ଡା ଉପରକୁ ଉଠିଯାଇ ସିଏ ଯେମିତି ସେଠାରେ ପଡ଼ିଥିବା ଆରାମ ଚଉକିଟି ଉପରେ ଶରୀରଟିକୁ ନେଇ ଲୁଆଁଇ ଦେଲେ, ସେତେବେଳେ ରୋଗର ଯନ୍ତ୍ରଣାଟି ସହିତ, ଅନେକ ଦିନରୁ ଅଭ୍ୟାସ ନଥାଇ ସେଦିନ ଏତେ ଚଞ୍ଚଳ ଉଠି ଏତେଗୁଡ଼ାଏ ବାଟ ଚାଲି-ଆସିବା ଫଳରେ ଉତ୍ପନ୍ନ ହୋଇଥିବା କ୍ଲାନ୍ତି ଓ ଅବସନ୍ନ ଭାବଟି ଆସି ତାଙ୍କୁ ଏକାବେଳେକେ ଆଟୋବାର ପକାଇଲେ । ମନକୁ ମନ ଆଖି ବନ୍ଦ ହୋଇଆସିଲା ।

ଘରଭିତରୁ କେତେ ଲୋକଙ୍କର ପାଟିତୁଣ୍ଡ ଶୁଣାଯାଉଥିଲା । ବୋଧହୁଏ ମାଧବୀ କୁଟ୍ଟୀ ଆଉ ପ୍ରଭାକରନ୍ ଭିତରେ କୌଣସି ବିଷୟରେ କ'ଣ ତର୍କବିତର୍କ ଚାଲିଛି । ଭାଇ-ଭଉଣୀଙ୍କ ଭିତରେ ସଦାସର୍ବଦା ବିବାଦ......ଦୁହିଁଙ୍କ ଭିତରୁ କାହାରି ହେଲେ କାହାର କଥାକୁ ମାନିନେବାର ଆଦୌ ଅଭ୍ୟାସ ନାହିଁ......

ସିଏ ଘରକୁ ଆସିଲେଣି ବୋଲି ସେମାନେ ବୋଧହୁଏ ଜାଣିନାହାନ୍ତି । ସେମାନଙ୍କ କଥାରେ ମଧ୍ୟ ତାଙ୍କ ନାଆଁଟି ଆସି ପଡ଼ିସିବାର ଦେଖି ଅନନ୍ତନ୍ ନାୟର୍ଙ୍କର ଆଖିଦୁଇଟି ଯଦିଓ ବନ୍ଦ ରହିଥିଲା, ମାତ୍ର କାନ ଦୁଇଟା ଟେଙ୍ଗାହୋଇ ଠିଆ ହୋଇଗଲେ···

"ଭାଇ, ତୁମେ ଯାହା ଇଚ୍ଛା ତାହା କହିପାର, କିନ୍ତୁ ତୁମେ ଏପରି ନିର୍ଲଜ୍ଜ ଆଉ ମାନସମ୍ମାନହୀନ ବୋଲି ମୁଁ କେବେହେଲେ ଭାବି ନଥିଲି । ଏହି ପନ୍ଦରବର୍ଷ କାଳ ବାପା ଆମପାଇଁ କ'ଣ କମ୍ କଷ୍ଟ ପାଇଲେଣି......ତାଙ୍କ ପ୍ରତି ତୁମେ କ'ଣ ଏହିପରି ଭାବରେ ଆପଣାର ପ୍ରତ୍ୟୁପକାର ଦେଖାଉଛ ?......

"ମାଧବୀ କୁଟ୍ଟୀ ! ଲୋକେ ବେଳେବେଳେ କହନ୍ତି, 'ବଳଦ ବାଛୁରୀ ଜନ୍ମକରିଛି ତ ପଘା ଖୋଜି ନେଇଆସ ।' ତୁ ମଧ୍ୟ ଠିକ୍ ସେହିପରି କଥା କହୁଛୁ । ତୁ ପ୍ରକୃତରେ ଗୋଟାଏ ମୂର୍ଖ ଝିଅ ପରି କଥା କହୁଛୁ । ଏତେ ପାଠ ପଢ଼ି ମଧ୍ୟ ତୋ'ର ଏତେଟିକିଏ ବୁଦ୍ଧି ବି ହୋଇନାହିଁ ? ତୁ ତ ଆସି ମୋ' ଉପରେ ଏମିତି ବରଷି ଯାଉଛୁ, କିନ୍ତୁ ଏସବୁ କଥା ତୋତେ କିଏ କହିଲା କହିଲୁ...... ?"

"ପଚରି ସରିସିବାରୁ ଛେଳି ବୋବେଇ ଉଠିଲା ଲୋ ମାଆ— ! ତେବେ ତୁମେ କ'ଣ ଏକଥା କହିବାକୁ ଚାହୁଁଛ ଯେ ତୁମେ ମାଆ ସହିତ ସାକ୍ଷାତ କରିବାକୁ ପ୍ରକୃତରେ ଯାଇନାହିଁ ?"

ମାଧବୀ କୁଟ୍ଟୀର କଣ୍ଠସ୍ୱରରେ ଉପହାସ ଓ ଆକ୍ରୋଶ ଝଲକି ଉଠୁଥିଲା । ଦୁହେଁ କେତେ ସମୟ ପର୍ଯ୍ୟନ୍ତ ନୀରବ ରହିଲେ । କୌଣସି ଉତ୍ତର ବି ଶୁଣିବାକୁ ମିଳିଲା ନାହିଁ ।

"ହୁଁ ! ଏତେବେଳକୁ କାହିଁକି ଚୁପ୍‌ହୋଇ ରହିଯାଉଛ ? ଏଇ କେତେଦିନ ହେଲା ତୁମକୁ ତ ଦେଖିବାମାତ୍ରେ ହିଁ ଜଣାପଡ଼ିଯାଉଛି ଯେ······କ'ଣ ମିଛରେ କହନ୍ତି ଯେ ଗାଆଁ-ପିଲାଙ୍କୁ ଯାଇ ଦେଖିଲେ ଗାଆଁରେ ଦୁର୍ଭିକ୍ଷ ପଡ଼ିଛି ବୋଲି ନିଶ୍ଚୟ ଜଣା-ପଡ଼ିଯିବ ?"

"ଏମିତ ବଢ଼ାଇ ବଢ଼ାଇ ଆଉ କଥା ବାହାର କରନା······। ମୁଁ କ'ଣ ତତେ କେବେହେଲେ ମିଛକଥା କହିବ ? ଯଦି ଗଲି, ତେବେ ବର୍ତ୍ତମାନ ତୋତେ ସେଥିରୁ କ'ଣ ମିଳିବ ? କହ କ'ଣ ମିଳିବ······ ?"

ଅନନ୍ତନ୍ ନାମ୍ବିର୍‌ଙ୍କର ଗ୍ରୀବା ଭିତରେ ସତେଯେପରି କ'ଣ ଗୋଟାଏ ଥିଲି ହଠାତ୍ ମୋଡ଼ି ହୋଇଗଲା ।

ଯାହା ଶୁଣୁଛି, ସେକଥା କ'ଣ ପ୍ରକୃତରେ ସତ ?

"ମୁଁ ବି ତ ତୁମକୁ ସେଇ କଥାଟି ପଚାରୁଥିଲି······ମାଆ ପାଖରେ ତ କେତେ କ'ଣ ଧନଦୌଲତ ଗଚ୍ଛିତ ହୋଇରହିଛି । ସେଠିକି ଗଲେ ତୁମକୁ ୫ାଚ ପାଞ୍ଚ ବହୁତ ଟଙ୍କା ମିଳିଯିବ । ହୁଁ ! ଯିଏ ନଦୀ କାନ୍ଥି ପାଣି ପିଉଛି, ସବୁ ଗୃହଳ ଭାତ ଦେଖିଲେ ସିଏ କ'ଣ ତାକୁ ଛାଡ଼ିଦେଇ ଚାଲିଆସିବ ? କିନ୍ତୁ ଭାଇ, ମୁଁ ତୁମକୁ ଗୋଟିଏ କଥା କହିବ······, ବାପାଙ୍କ ସହିତ ଏହାଠାରୁ ବଳି ତୁମେ ଆଉ କୌଣସି ଦ୍ରୋହ କଦାପି କରିପାରିବ ନାହିଁ, ବୁଝିଲ ।"

ପ୍ରଭାକରନ୍‌ର କଣ୍ଠସ୍ୱର ରୋଷରେ ଆହୁରି ବଡ଼ ହୋଇଗଲା । "ଆରେ ଦାଃ ରେ······ ! ସିଏ ଆମକୁ ଜନ୍ମ ଦେଇଛି, ସେହି ମାଆକୁ ଯାଇ ଦେଖିଆସିଲି । ସେଥିରେ ପୁଣି ଦ୍ରୋହ କିପରି ହୋଇଗଲା, ସେକଥା ତୁ ପଛକୁ ବଲେ ଜାଣିବୁ ।"

"ହଁ, ହଁ, ତୁମେ ଠିକ୍ କଥା ହିଁ ପଚାରୁଛ । ପନ୍ଦରବର୍ଷ ତଳେ ତା'ଆଗରେ ଦୟା ହେଲନାହିଁ ଯେ ସିଏ ତୁମକୁ ଆଉ ମୋତେ ଛାଡ଼ି ଚାଲିଗଲା ! ଆଉ ତୁମେ ଯେ ପୁଣି ତାହାର ପାଖକୁ ଯାଇ ପୁଣି ସେଠି ମାଆର ସମ୍ବନ୍ଧ ଯୋଡ଼ିବାକୁ ମନ କରୁଛ, ସେଥିରେ ତୁମକୁ ଲଜ୍ଜା ହେଉନାହିଁ······ ?"

କ୍ଷିପ୍ର ଭାବରେ ବାହାର ଆସିଥିବା ମାଧବୀର ଏହି ପ୍ରଶ୍ନଟି ମଧ୍ୟରେ ଯେପରି ତାଙ୍କ ନିଜ ଭିତରେ ହିଁ କୁହୁଳି କରି ରହିଥିବା ଆକ୍ରୋଶଟିର ତୀକ୍ଷ୍ଣ ଧ୍ୱନିଟି ମୁକ୍ତରିତ ହୋଇ ଉଠୁଥିଲା—ଅନନ୍ତନ୍‌ନାମ୍ବିର୍ ସେହିପରି ଅନୁଭବ କରିବାକୁ ଲାଗିଲେ ।

ତାଙ୍କର ସମସ୍ତ ଶରୀରରୁ ଗୋଟାଏ ଝାଳ ବୋହିଗଲା ।

"ମୋ'ର ଯାହା ଖୁସୀ ମୁଁ ତାହା କରିବି । ତୁ ତୋ'ନିଜ କଥାକୁ ଦେଖ !"

ଭିତରକୁ ଚାଲି ଯାଉଥିବା ପାଦର ଧମଧମ ଶବ୍ଦ ଶୁଣାଗଲା···ବାଥ୍‌ରୁମ୍‌ର କବାଟ ଖୋଲି ପୁଣି ଧଡ଼ାସ୍ କରି ବନ୍ଦ କରିଦେବାର ଶବ୍ଦ······ ।

କେତେ ମିନିଟ୍ ପରେ ତାଙ୍କ ନିଜ ପାଖରେ ମଧ୍ୟ ମୃଦୁଳ ଚରଣର ଧ୍ୱନି···

ବେଶ୍ କେତେ ସମୟ ଲାଗି ନୀରବତା······ ।

ଖାଲି ଦୁଃଖଗୁଡ଼ାକରେ ହିଁ ପୂର୍ଣ୍ଣ ହୋଇ ରହିଥିବା ଏହି ଜୀବନରେ ଆପଣାର ଏକମାତ୍ର ଆଶାଲତା ମଧ୍ୟ କାତ୍ୟାୟିନୀ ଆଜିକୁ ଜଳିବାକୁ ଯାଉଛି ତ···

ତେବେ ଏଥିରେ ମଧ୍ୟ କ'ଣ ସେହି ତାଙ୍କର ପରାଜୟ··· ?

ନାହିଁ ନାହିଁ···ସେପରି କଦାପି ହେବା ଉଚିତ୍ ନୁହେଁ···

ପୂର୍ବରୁ ଯାହାକିଛି ହୋଇଯାଇଛି, ଯଦି ଏହି ମନ ସେଇଟିକୁ ସହ୍ୟ କରିପାରିଲା, ତେବେ କେବଳ ଏହି ଗୋଟିଏ ଆଶାର ଭରସାରେ ହିଁ ତ ସିଏ ତାହା କରିପାରିଛି । ବର୍ତ୍ତମାନ ସେହି ଗୋଟିକ ଆଶା ବି ଯଦି ଏହିପରି ଭାବରେ କ୍ଷୀଣ ହୋଇଆସିବ ତ ଏଇଟିକୁ କାଟି ଆଉ ବଞ୍ଚିପାରିବାର କୌଣସି ପ୍ରଶ୍ନହିଁ ନଥିବ··· ।

"ବାପା, ଆପଣ କ'ଣ ଅନେକ ବେଳୁ ଫେରିଆସିଲେଣି ?"

ସତେଯେପରି ସେ ଆପଣାର ମନକୁ ମନହିଁ କହୁଛି,—ମାଧବୀ ସେହିପରି ଏଭଳି ଆସ୍ତେ କରି ପ୍ରଶ୍ନଟି ପଚାରିଲା; ସେହି ସ୍ୱରରେ ଯେଉଁ ଅଶ୍ରୁତି ସୂଚକ ଅନ୍ତର୍ଗତ ଅର୍ଥଟି ରହିଥିଲା, ଅନନ୍ତନ୍ ନାୟର୍ ସେଇଟିକୁ ଅତ୍ୟନ୍ତ ସହଜରେ ବୁଝିପାରୁଥିଲେ ।

ପତା ଖୋଲିବାକୁ ଆଉ ଇଚ୍ଛା ବି ହେଲାନାହିଁ । ସିଏ ଠିକ୍ ସେଇପରି ପଡ଼ିରହିଲେ । ଏହି ପାପୀ ପ୍ରାଣଟା ଯଦି ଏହିପରି ଭାବରେ ହିଁ ବାହାରି ଯାଇପାରନ୍ତା, ତେବେ ଏ ଦେହକୁ···ଆଉ ମନକୁ···ପ୍ରକୃତରେ କି ଆପଣାର ଶାନ୍ତି ନମିଳନ୍ତା ! ସାରା ଜୀବନରେ ଯେଉଁ ଶାନ୍ତି ମିଳିପାରିନାହିଁ, ତାହାକୁ ମୃତ୍ୟୁ ଭିତରେ ଯାଇ ଖୋଜିବାରେ ଗୋଟାଏ ପ୍ରକାର ସୁବିଧା ହିଁ ରହିଛି··· ।

"ବାପା, କ'ଣ ଶୋଇପଡ଼ିଲ କି ··· ?"

ଏହି ପ୍ରଶ୍ନଟି ଭିତରେ ବି ଏକ ଆଶ୍ୱାସନାପୂର୍ଣ୍ଣ ସ୍ୱର ବେଶ୍ ଶୁଣାଯାଉଥିଲା ।

"ବାସ୍ତବିକ ମାଧବୀ, ତୋ' ଭିତରେ ଯେଉଁ ଆତ୍ମ-ଅଭିମାନ ଆଉ ତେଜ ରହିଛି, ପୁରୁଷ ହୋଇ ଜନ୍ମ ହୋଇଥିବା ତୋ' ଭାଇ ଭିତରେ ମଧ୍ୟ ତାହା ନାହିଁ···

ଯେତେବେଳେ ସିଏ ଆମ ସମସ୍ତଙ୍କୁ ଛାଡ଼ି ଏଠାରୁ ଗ୍ଳଲଗଲା, ସେତେବେଳେ ତୋ' ଭାଇ ତୋ'ଠାରୁ ମଧ୍ଯ ଅନ୍ତତଃ ପାଞ୍ଚବର୍ଷ ବଡ଼ ଥିଲା, ସେତେବେଳେ ତାକୁ ଦଶବର୍ଷ ହୋଇଥିଲା । ତୋ'ଠାରୁ ଅଧିକ ହେଉ ବ ହୋଇଯାଇଥିଲା । ସେପରି ହୋଇଥିଲେ ମଧ୍ଯ ତା'ଭିତରେ କୌଣସି ମାନ ବା ଅଭିମାନ କିଛି ନାହିଁ··· ।" ଅନନ୍ତନ୍ ନାୟର୍ ମନେମନେ ଏହିପରି ଭାବରେ କହିପକାଇଲେ । ହୁଏତ ତାଙ୍କୁ ପୁଣି ନିଦ ଲାଗିଯାଇଥିଲା । କିଛି ସମୟ ପରେ, "ବାପା, କେତେବେଳୁ ସାଢ଼େ ନଅଟା ବାଜିଗଲାଣି । ଆଜି କ'ଣ ତୁମେ ଦୋକାନକୁ ଯିବନାହିଁ କି ? ଉଠି କଫି ପିଇନା କାହିଁକି···" କହି ମାଧବୀ ତାଙ୍କୁ ଆଉ ହଲାଇ ଦେଲା ଏବଂ ତା'ପରେ ଯାଇ ସିଏ ଝଟ୍ କରି ଆଖି ଖୋଲିଦେଲେ ।

ବାରଣ୍ଡା ଉପରେ ସିଏ ଯେଉଁଠାରେ ବସିଥିଲେ, ସେପର୍ଯ୍ୟନ୍ତ ଖରା ଆସି-ଯାଇଥିଲା । ଅଫିସ୍ ଯିବାଲାଗି ପ୍ରସ୍ତୁତ ହୋଇ ମାଧବୀ ଲୁଗା ପିନ୍ଧି ଠିଆ ହୋଇଛି ।

ଏପରି ଗୋଟାଏ ଭ୍ରମ ହେଲା ଯେ କାର୍ତ୍ୟାୟିନୀ ହିଁ ଆଗରେ ଆସି ଠିଆ ହୋଇଛି । ହଁ···ମାଧବୀ ଦେଖିବାକୁ ଅନେକ ପରିମାଣରେ ତା'ର ମା'ଆ ପରି । ତା'ର ଶରୀରଟି ଯାହା କାର୍ତ୍ୟାୟିନୀର ଶରୀରଠାରୁ ଟିକିଏ ପତଳା ।

ପ୍ରଭାକରନ୍‌ନାୟର୍ କୁଆଡ଼େ ଅଛି କେଜାଣି ?

ସିଏ କଫି ପିଉଛନ୍ତି, ମାଧବୀ ପଚାରିଲା, "ହୁଁ ! ବାପାଙ୍କୁ ମୁଁ କେତେଥର କହି-ସାରିଲିଣି, କିନ୍ତୁ ସିଏ କ'ଣ ଶୁଣୁଛନ୍ତି ? ତାଙ୍କର କ'ଣ ଗୋଟାଏ ନା ଦୁଇଟା ରୋଗ ? ତା'ପରେ ପୁଣି ଔଷଧ ପତ୍ର ବ ଠିକ୍ କରି ଖାଇବେ ନାହିଁ । ଏଭଳି ଅବସ୍ଥାରେ ଯଦି ସିଏ ଅନ୍ଧାର ଥାଇ ଉଠି ଗାଧୋଇବାକୁ ଯିବେ, ତେବେ ତାଙ୍କ ସ୍ୱାସ୍ଥ୍ୟର କି ଅବସ୍ଥା ହେବ କହନ୍ତୁ······ ? ଅଭ୍ୟାସ ନଥାଇ ଆଜି ଆପଣ ସକାଳୁ କିପରି ମନ୍ଦିରକୁ ଗଲେ କହିଲେ ?"

ସତେ ଯେପରି ତାଙ୍କର ଅଭିଭାବକ, ସିଏ ସେହିପରି ପଚାରୁଥାଏ । ସେକଥା ଶୁଣି ଅନନ୍ତନ୍ ନାୟର୍ ଅସତର୍କ ହୋଇ ହସି ଉଠିଲେ ।

"ଝିଅ, ଆଜି ଏହି ପାପୀ ଏହି ସଂସାରରେ ଜନ୍ମ ହୋଇଥିବାର ପଚାଶବର୍ଷ ପୂରିଗଲା······ ।"

"ଓ-ହୋ ! ଆଜି ବାପାଙ୍କର ଜନ୍ମଦିନ । ଆପଣ ଆଗରୁ କାହିଁକି କହିନେ ନାହିଁ ? 'ହାପ୍‌ପିବର୍ଥଡେ଼ ଟୁ ୟୁ' !"

ତା'ସ୍ୱରରେ ରହିଥିବା ପିଲାଳିଆ ସ୍ୱରଟି ଯେ ତାଙ୍କର ବିରକ୍ତିକୁ ଦୂର କରି ଦେବାକୁ ହିଁ ଉଦ୍ଦିଷ୍ଟ ହୋଇ ରହିଥିଲା,—ସେ କଥା ଅନନ୍ତନ୍ ନାୟର୍ ଅତ୍ୟନ୍ତ ସ୍ପଷ୍ଟ

ଭାବରେ ବୁଝିପାରିଲେ । "ଆଇ, ଶୁଣିଲଣି, ଆଜି ବାପାଙ୍କର ଜନ୍ମଦିନ । ଆମେ ଆଜି ଜନ୍ମଦିନ ପାଳନ କରିବା ନା ? କେବଳ କିଛି ଟଙ୍କା କରି ଆଣିବାକୁ ପଡ଼ିବ । ଆଉ ବୁଟର ପାୟସ ତିଆରି କରିବାକୁ ପଡ଼ିବ ।" ସିଏ ଯେତେ ନାହିଁ କଲେ ମଧ୍ୟ ମାଧବୀ ଯାଇ କାମାକ୍ଷୀଙ୍କ ପାଖରେ ଏହି କଥାଟି କହିଦେଲା ।

ସାନଭାଇ ମଧୁସୂଦନ ଯେପର୍ଯ୍ୟନ୍ତ ବଡ଼ ହୋଇନଥିଲା, ସେତେଦିନ ଯାଏ ଭଉଣୀ କଲ୍ୟାଣୀ ସାଙ୍ଗରେ ରହିବାଲାଗି ଯେଉଁ କାମାକ୍ଷୀ ତାଙ୍କ ଘରକୁ ଯାଉଥିଲେ, ବର୍ତ୍ତମାନ ସେ ଏଠାରେ କାତ୍ୟାୟିନୀ ଏଠାରୁ ଚାଲିଯିବା ପରେ ପିଲାମାନଙ୍କର ଦେଖା ଶୁଣା କରିବାଲାଗି ଆସି ରହିଯାଇଛନ୍ତି । ତାଙ୍କ ବୟସ ପ୍ରାୟ ଷାଠିଏ ବର୍ଷ ହେବ । ବେଙ୍କୋ ଅମ୍ବୁଲମ୍‌ରେ ଥିବା ଲଟେରୀ ବଜାରରେ ମାଧବୀ ଗୋଟିଏ ନନ୍‌ଗେଜେଟେଡ୍‌ ଅଫିସର୍ ରୂପେ କାର୍ଯ୍ୟ କରୁଛି । ତେଣୁ ସିଏ ଆପଣାର ଅଫିସ୍‌କୁ ଚାଲିଯାଏ ଓ ତା'ପରେ କାମାକ୍ଷୀ ରନ୍ଧାବଢ଼ା କରିଦିଅନ୍ତି ଏବଂ ମଧ୍ୟାହ୍ନ ଭୋଜନ ନେଇଯାଉଥିବା ପିଲାଟିର ହାତରେ ମାଧବୀର ଅଫିସ୍‌କୁ ଆଉ ଅନନ୍ତନ୍‌ ନାୟର୍‌ଙ୍କର ଦୋକାନକୁ ଖାଇବା ପଠାଇ ଦିଅନ୍ତି । ପ୍ରଭାକରନ୍‌ ଗତ ତିନିମାସ ହେଲା କୌଣସି କାମ କରିନାହିଁ, ତେଣୁ ସିଏ ସୁବିଧା ଅନୁସାରେ ଘରକୁ ଆସି ଖାଇବା ଖାଇଯାଏ ଏବଂ ଚାକିରି ସନ୍ଧାନରେ ବୁଲିବାରେ ଲାଗିଥାଏ ।

"ହୁଁ ! ମୋଟେ ତ ପଚିଶବର୍ଷ ହେଲା, ମାତ୍ର ଚେହେରାକୁ ଅନାଇ ଦେଖିଲେ ପନ୍ଦରବର୍ଷ ଅଧିକ ପରି ମନେ ହେଉଛି,"—କାମାକ୍ଷୀ ଦୀର୍ଘଶ୍ୱାସ ପକାଇ କହିଲେ, ପୁଣି ଧୀର କଣ୍ଠରେ, "ତିନି ତିନିମାସ ହେଲା ମୁଦି ଦୋକାନରେ କାଳି ପଡ଼ିଛି । ତେଣୁ ବର୍ତ୍ତମାନ ପଇସା ନ ନେଇ ଟଙ୍କା ମାଗିଯିବ ତ ସିଏ ଦେବ କି ନାହିଁ କେଜାଣି ?"—ଅନନ୍ତନ୍‌-ନାୟର୍ ମଧ୍ୟ ସେହି କଥାଟିକୁ ଶୁଣିପାରିଲେ ।

"ହୁଁ ! ସେଥିରେ ଭାବିବାକୁ କିଛି ନାହିଁ । ଏଥର ପହିଲାକୁ ଦରମା ମିଳିବା ସଙ୍ଗେ ସଙ୍ଗେ ଆଗ ଦୋକାନବାକି ପରିଶୋଧ କରିଦେବ, ତୁମେ ତାକୁ ସେକଥା କହି-ଦେବ । ତେବେ ସେ ଟଙ୍କା ଦେଇଦେବ । ପାୟସ ତିଆରି କରି ବାପାଙ୍କ ପାଇଁ ପଠାଇ-ଦେବ । ମୋ'ପାଇଁ ଅଫିସ୍‌କୁ ପଠାଇବ ନାହିଁ । କାରଣ ଯଦି ସମସ୍ତଙ୍କୁ ମାଲୁମ ହୋଇ-ଯିବ ତେବେ ସବୁଯାକ ସାଙ୍ଗ ମିଶି ଚାହାପାର୍ଟି ଦିଅ, ଚକୋଲେଟ୍‌ ମଗାଅ ବୋଲି କହି ମୋତେ ଆଉ ବସାଇ ଉଠାଇ ଦେବେନାହିଁ ।"

ଅନନ୍ତନ୍‌ ନାୟର୍‌ଙ୍କର ଛାତି ଭିତରେ ଚକ୍ଷୁ ଭିତରର ନିଆଁ ପରି କେଜାଣି କ'ଣ ସବୁ ଧୂ' ଧୂ' ହୋଇ ଜଳିବାକୁ ଲାଗିଲା ।

ଦୋକାନ ଯିବାକୁ ସ୍ୱାର ଡେରି ହୋଇଗଲା । ସତ୍ୟବାନ ପରି ଧଳା କୁର୍ତ୍ତା ଓ ଗୃଞ୍ଜାହାତ ଲମ୍ବର ମଲମଲ ଖଦ, ଆଉ ହାତରେ ଛତା—ଅନନ୍ତନ୍ ନାସ୍ୱର୍ ସଡ଼କ ଉପରକୁ ବାହାରି ଆସିଲେ ।

ବର୍ତ୍ତମାନ ଆଉ ଶାଲୌ ବଜାରଯାଏ ପାଦରେ ଚାଲିଯାଇ ହେବନାହିଁ । ତେଣୁ ସିଟି ବସ୍‌ରେ ଯିବା ହିଁ ଉଚିତ ହେବ । ସ୍ୱାମ୍ୟକୁ ସେ ଇନ୍‌ଜେକ୍ଟିକାଲ୍ ମୁହାଣରେ ଥିବା ବସ୍‌ଷ୍ଟପ୍ ପର୍ଯ୍ୟନ୍ତ ଯେମିତ ଆସିଛନ୍ତି, ସେମିତ ଗୋଟିଏ ମିନଟ୍ ପରେ ହିଁ ବସ୍ ଆସି ପହଞ୍ଚିଗଲା । କୁସ୍ତି ଲଢ଼ି ଯେକୌଣସି ପ୍ରକାରେ ସେ ବସ୍ ଉପରକୁ ଉଠିଗଲେ ।

କଲେଜ ଆଉ ଅଫିସ୍ ଯିବାର ସମୟ । ବସ୍‌ରେ ଘୋର ଭିଡ଼, କଣ୍ଡକ୍ଟର୍‌କୁ ପଇସା ଦେଇ ଟିକେଟ୍ ନେଇ ସେ ପକେଟରେ ରଖିଦେଲେ । ବସ୍‌ର ଛାତରେ ଲମ୍ବା ହୋଇ ପଡ଼ିଥିବା କାଠକୁ ଧରି ବସ୍ ଭିତରେ ସର୍କସର ଅଭ୍ୟାସ କରୁଥିବା ଲୋକମାନଙ୍କ ଭିତରେ ବର୍ତ୍ତମାନ ସିଏ ବି ସାମିଲ୍ ହୋଇଗଲେ ।

ବସ୍ ଭିତରେ ଗୃରୁଆଡ଼େ ଝାଳର ଗନ୍ଧ······

ବସ୍ ଚାଲିବାରୁ ବାହାରର ପରିଷ୍କାର ହାଉଆ ଭିତରକୁ ଆସିଲା ଓ ତେଣୁ ଟିକିଏ ଆଶ୍ୱସ୍ତି ମିଳିପାରିଲା ।

ପଡ଼ୁଆରେ କଚେରୀର ବସ୍‌ଷ୍ଟପରୁ ବସ୍‌ରେ ଚଢ଼ିଥିବା ଜଣେ ବ୍ୟକ୍ତି "ରହ··· ରହ···ସେଠିଯାଇ ଭିଡ଼ କରିବ ତ ପୁଣି କପର ଚଳିବ······ଆଗକୁ ଯାଇ ଦେଖ··· ଏତେ ଜାଗା ଖାଲି ପଡ଼ିଛୁ ଯେ ବଲ ବି ଖେଳିହେବ । ଚାଲ, ଆଗକୁ ଚାଲ, ଆଗକୁ ଚାଲ !" କହି ସିପାହୀର ପାଟିରେ ସମସ୍ତଙ୍କୁ ଗାଳିଦେଇ ଆଗରୁ ମାଟିର ଗେଣ୍ଡ୍ରାପରି ଝୁନ୍ଦାଝୁନ୍ଦି ହୋଇ ଆଗକୁ ଘୁଞ୍ଚିବାଲାଗି ଆଉ କୌଣସି ବାଟ ନଥିବାଯୋଗୁଁ ଏଡ଼େଏଡ଼େ ଆଖି କରି ଅନାଇ ଠିଆ ହୋଇଥିବା ଲୋକମାନଙ୍କୁ ଠେଲି ଠେଲି ଭିତରକୁ ଚାଲିଯାଉଥିଲା······

ଛଅବାଗରୁ ଛନ୍ଦାଗ ଅଂଶ ରୂପାର ତାରପରି ଧଳା ହୋଇଯାଇଥିଲେ ମଧ୍ୟ, ବଢ଼ିଆ ମୋଡ଼ାରେ ମୋଡ଼ା ହୋଇଥିବା ବଡ଼ ବଡ଼ ନିଶ, ଦେହ ଉପରେ ଯୋଉଠି ସେଠି ଦେଖାଯାଉଥିବା ଗାତୁଆ ଗାତୁଆ ଦାଗ, ନାଲି ପଥରର କୁଣ୍ଡଳ, କପାଳ ଉପରେ ଚନ୍ଦନର ବିଶାଳ ବିନ୍ଦୁ, କାନରେ ଖୋସା ହୋଇଥିବା ଓ ଦୀପପରି ଆନ୍ଦ୍ରକୁ ଅନାଇ ରହିଥିବା କନିଅରଫୁଲ,—ସେହି ଲୋକଟିର ଏପରି ଚେହେରାଟିଏ ଦେଖି ଦେଖି ସହଯାତ୍ରୀମାନେ ତା'ର କଥା ଶୁଣି ନ ଶୁଣିଲାପରି ହୋଇ ନିଜ ନିଜ ଭିତରେ ଫୁସ୍‌ଫାସ୍

କଥାବାର୍ତ୍ତା କରି ଆପଣାର ରାଗକୁ ଶାନ୍ତ କରି ନେଉଥିଲେ,—ଅନନ୍ତନ୍ ନାୟର୍‌ଙ୍କର ଧ୍ୟାନ ସେହିଆଡ଼କୁ ମଧ୍ୟ ଆକର୍ଷିତ ହୋଇଗଲା ।

ସେହି ବ୍ୟକ୍ତି ଜଣକ ପ୍ରକୃତରେ କିଏ ହୋଇଥିବେ, ହଠାତ୍ ଅନନ୍ତନ୍ ନାୟର୍‌ଙ୍କୁ ତାହାର ସ୍ମରଣ ହୋଇଗଲା ।

"ହେଡ୍ କନ୍‌ଷ୍ଟେବଲ୍‌କୁ ବାସୁ ପିଲଇ ନା······ ?"

ଅନନ୍ତନ୍ ନାୟର୍‌ଙ୍କର ଓଠ ଉପରୁ ଆପଣାଛାଏଁ ଏହିସବୁ ଶବ୍ଦ ବାହାରି ଆସୁ ଆସୁ ସିଏ ମଧ୍ୟ ସ୍ୱାଙ୍କୁ ଦେଖି ନେଇଥିଲେ ।

"ଆ—ହା ! ଅନନ୍ତନ୍ ନାୟର୍······କେତେ ଦିନରୁ ଭାବୁଥିଲି ତୁମ ଘରକୁ ଆସି ଗୋଟାଏ ବିଷୟରେ ତୁମ ସହିତ କିଛି କଥାବାର୍ତ୍ତା କରିବି । ଯୋଉ ଲଟାଟିକୁ ମୁଁ ଖୋଜୁଥିଲି, ସେଇଟି ନିଜେ ଆସି ଗୋଡ଼ରେ ଛନ୍ଦି ହୋଇଗଲା,"······କହି ଧକ୍‌କା ଦେଇ ଲୋକମାନଙ୍କୁ ହଟାଇ, ପାଖରେ ଠିଆ ହୋଇଥିବା ବ୍ୟକ୍ତିମାନଙ୍କର ଭ୍ରୂକୁଞ୍ଚନକୁ କୌଣସି ଦୃଷ୍ଟି ନଦେଇ ଏବଂ ସେମାନଙ୍କର ସମସ୍ତଙ୍କର ଗୋଡ଼ର ଆଙ୍ଗୁଠିଗୁଡ଼ାକୁ ମାଡ଼ି ଚକଟି ସିଏ ଆସି ଅନନ୍ତନ୍ ନାୟର୍‌ଙ୍କ ପାଖରେ ଠିଆ ହେଲେ ।

ବାସୁ ପିଲଇ ପ୍ରଥମେ ପୋଲିସ୍ ବିଭାଗରେ ସିପାହୀ ଥିଲେ । ଧୀରେ ଧୀରେ ହେଡ୍ କନ୍‌ଷ୍ଟେବଲ୍ ହୋଇ ବର୍ତ୍ତମାନ ପେନ୍‌ସନ୍ ପାଇଲେଣି । ସେତେବେଳକୁ ବସ୍ ହୁଅସାର୍ ଟପି ଉତ୍ତର ଦିଗକୁ ଯାଉଥିବା ବାଟରେ ଯିବାକୁ ଲାଗିଥାଏ । ବାସୁ ପିଲଇ ବଡ଼ ପାଟି କରି ଅନନ୍ତନ୍ ନାୟର୍‌ଙ୍କ ସହିତ କଥା କହୁଥିଲେ ।

"ତୁମେ କିଛି ଶୁଣିଛ ନା ନାହିଁ ଅନନ୍ତନ୍ ନାୟର୍······ ? ନିଜ ଝିଅକୁ ତୁମେ ଟିକିଏ ଅନ୍ଧାରରେ ରଖିବ······ । ଆମେ ତରବାଟ୍ଟୁ (୧) ନାୟର୍ କୁଳର ନା ନାହିଁ ? ଜଣେ ନାୟର୍ ଝିଅର ଶ୍ରେଷ୍ଠ କୁଳର ଜଣେ ପୁଅ ସହିତ ଏତେ ଘନିଷ୍ଠତା ରହିବା ମୋଟେ ଭଲ ଦିଶୁନାହିଁ, ବୁଝିଲ ?"

ଇଲବ ଜାତର ଲୋକଙ୍କୁ ସବର୍ଣ୍ଣମାନେ ଶ୍ରେଷ୍ଠଜାତି ବୋଲି କହନ୍ତି, ସେହି କଥା ଶୁଣି ଅନନ୍ତନ୍ ନାୟର୍‌ଙ୍କୁ କେତେକ ପରିମାଣରେ ସେହିପରି ଲାଗିଲା । ବସ୍‌ରେ ବସିଥିବା କେତେକ ଯାତ୍ରୀଙ୍କର ମୁହଁ ଏକଥା ଶୁଣି ରଙ୍ଗାପଡ଼ି ଯାଉଥିଲେ ମଧ୍ୟ ସେଥିପ୍ରତି ଆଦୌ କୌଣସି ଭ୍ରୂକ୍ଷେପ ନକରି ବାସୁ ପିଲଇ ମହା ଆବେଗରେ କହି ଚାଲିଥାନ୍ତି :

---

(୧) ନାୟର୍‌ଜାତର କୁଳୀନ ବଂଶମାନଙ୍କୁ 'ତରବାଟ୍' କୁହାଯାଏ । ଏହିସବୁ ବଂଶର ନାୟର୍ 'ତରବାଟ୍ଟୁ ନାୟର୍' ହୁଅନ୍ତି ଓ ସମସ୍ତେ ସେମାନଙ୍କୁ କୁଳୀନ ବୋଲି ମାନନ୍ତି ।

"ଟାଉନ୍‌ରେ ସେଇ ଟୋକା ମୋ' ଘର ପାଖରେ ହିଁ ରହେ । 'ସମନ୍ତ୍ରପୁଷ୍ଟି' ଦୈନିକ ଖବରକାଗଜରେ ସିଏ କୌଣସି ଗୃକଣ ବ କରୁଛ । ନାଆଁ ହେଉଛ ଧର୍ମ-ପାଳନ୍‌...... । ତା'ର ପୂର୍ବପୁରୁଷ ଶେମ୍‌ପଲନ୍ନି ନାରାୟଣ ଗୁରୁଙ୍କର ସମାଧିର ଆଖ ପାଖରେ କୋଉଠି ରହୁଥିଲେ । ତୁମ ଝିଅକୁ ମୁଁ ସେହ ଟୋକା ସାଙ୍ଗରେ ଥରେ ଦୁଇଥର ଦେଖିଲିଣି । ଦେଖିବାକ୍ଷଣି ମୁଁ ଜାଣିନେଲି ଯେ ସିଏ ହେଉଛ ନାମ୍ବୁର୍ ଘରର ଝିଅ । ମାତ୍ର ଝିଅଟିର ବାପ କିଏ, ସେକଥା ମୋତେ ଜଣା ନଥିଲା । ପଚରା ଉଚରା କଲାବାରେ ଶେଷକୁ ଜଣାପଡ଼ିଲା ଯେ ସିଏ ହେଉଛ ତୁମ ଝିଅ । ହୁଁ......କିଏ ଜାଣିଛ କୋଉଠି ମନ କୋଉଠି ହୁଏତ କ'ଣ ମନ କ'ଣ ହେବାରେ ଲାଗିଛ ।......ଜଲୁ, ତୁମେ ଶୁଣିରଖ ଅନନ୍ତନ୍ ନାମ୍ବୁର୍......ବିଖ୍ୟାତ ପାଲକ୍କୁ ଳଂଗରେ ଭଗବତୀ ପିଲଙ୍କ କୁଟୁମ୍ବରେ ଏଭଳି ଚରିତ୍ରହୀନତା ଆଦୌ ହେବା ଉଚିତ ନୁହେଁ, ବୁଝିଲ । ମୁଁ ତୁମକୁ କହି ରଖୁଛି । ତୁମେ ଆପଣା ଝିଅକୁ ଶାସନରେ ରଖ । ଏସବୁ ଖବର ତୁମକୁ ରଖିବାକୁ ହିଁ ପଡ଼ିବ...... ।"

ଅନନ୍ତନ୍ ନାମ୍ବୁର୍‌ଙ୍କ ଦେହରୁ ଝାଳ ବୋହିଗଲା । ଏଇଟା କେଡ଼େ ଅସଭ୍ୟ ଲୋକ ଯେ ଇସାରା ଦେଲେ ମଧ୍ୟ ବୁଝିବାକୁ ଶକ୍ତି ନାହିଁ । ଏଇଟା କ'ଣ ଏହି ବୟସରେ ସମସ୍ତଙ୍କ ଆଗରେ ଏଡ଼େବଡ଼ ପାଟି କରି କହିବା କଥା ?

ହୁଁ ! ଏଇ ପନ୍ଦରବର୍ଷ କାଳ ମୁଁ ଏହାଠାରୁ ବି ବଳି କେତେକେତେ ଅପମାନ ସହି ତଥାପି ବଞ୍ଚି ରହିଛି ··· ।

ହେଲେ ବି···

ମାଧବୀ କୁଟ୍ଟି···

ସତରେ କ'ଣ ଏପରି ହୋଇଛି ? ···

ସିଏ ଯେ ଏଭଳି ଭାବରେ ବଢ଼ିଦେଇ ଯାଉଛି, ସେଗୁଡ଼ାକୁ ବିଶ୍ୱାସ କରି ମୁଁ କ'ଣ ମୋ' ଝିଅ ଉପରେ ସନ୍ଦେହ କରିବି ? ସତରେ କ'ଣ ସେସବୁ କଥା ଘଟିଛି ? ଆଜି ବି ମାତ୍ର କେତେସମୟ ପୂର୍ବେ ସେ ପ୍ରଭାକରନ୍ ନାମ୍ବୁର୍ ସହିତ ନିଜ ବାପର ପକ୍ଷ ନେଇ ଓକିଲତି ବି କରୁଥିଲା ।

ସେଭଳି ଝିଅ କ'ଣ···?

ହୁଏତ ହୋଇଥିବ···ହୁଏତ ହୋଇଥିବ···ସେହିଭଳି ହୋଇଥିଲେ ମଧ୍ୟ ସେଥିରେ ଅପରାଧ ବା କ'ଣ ହୋଇଗଲା ?

ନିଜ କୁଟୁମ୍ବରେ ଜନ୍ମିଥିବା ମୋ' ନିଜ ଜାତିର ଲୋକମାନେ ମୋ'ଲାଗି କ'ଣ ସବୁ ଉପକାର କଲେ ଯେ···

ମୋ'ର ତାଙ୍କର ଉପକାର ଦରକାର ନାହିଁ—ଏସବୁ ଅତ୍ୟାଚାର···।

ପୁଣି, ଠିକ ମାଧବୀ ଜଣେ ଇଳାବ ଜାତିର ଯୁବକକୁ ଭଲ ପାଉଥିଲା ସେଥିରେ କୋଉଠି କ'ଣ ଖରାପିଗଲା କା ବୁଡ଼ିଗଲା···।

ଛି···ଛି···ଏପରି ହେବା କ'ଣ କେବେହେଲେ ସମ୍ଭବ···? ସିଏ ଯାହା ହୋଇଥାଉ ପଛକେ, ମୁଁ 'ତରବାଟଂଛ୍' ନାୟର୍ କୁଳରେ ଜନ୍ମ ହୋଇଛି । କେତେବର୍ଷ ତଳେ ଯେଉଁ ଇଳବ ପରିର ସ୍ତ୍ରୀ ନିଜର ଛାତି ଲୁଚାଇ ରଖିବାର ବି ଅଧିକାର ନଥିଲା, ସେହି ସ୍ତ୍ରୀ ଲାଗି ନଡ଼ିଆଗଛରେ ଚଢ଼ି ତାଡ଼ି ବାହାର କରୁଥିବା ସେହି ଇଳାବ କୁଳରେ ଜଣେ ଯୁବକ ହିଁ ଠିକ୍ ମାନିବ । ସିଏ କ'ଣ କେବେହେଲେ ମୋ' ଝିଅର ଉପଯୁକ୍ତ ହୋଇ ପାରିବ ?

ବସ୍ ଯାଇ ପୂର୍ବ ଫାଟକର ବସ୍-ଷ୍ଟପ୍‌ରେ ଝୁଲାଇଲାପରି ଠିଆ ହୋଇଗଲା । ଅନନ୍ତନ୍ ନାୟର୍‌ଙ୍କର ମୁଣ୍ଡ ବୁଲାଇଗଲା ପରି ଲାଗୁଥିଲା, ତଥାପି ନିଜକୁ ସମ୍ଭାଳି ନେଇ ସେ ବସ୍‌ରୁ ଓହ୍ଲାଇ ପଡ଼ିଲେ ଓ ଶାଲୈ ବଜାର ଆଡ଼କୁ ଯିବାକୁ ଲାଗିଲେ ।

ଝାଳରେ ଗୋଟାସୁଦ୍ଧା ଗାଧୋଇଲା ପରି ହୋଇ ସିଏ ଦୋକାନରେ ଯାଇ ପହଞ୍ଚିବା ମାତ୍ରକେ ହିଁ ଭୈରବନ୍ ପିଲାଇଙ୍କର ଏହି ପରିହାସପୂର୍ଣ୍ଣ ପ୍ରଶ୍ନ, "କିଏ ଅନନ୍ତନ୍ ନାୟର୍···ନିଦ ଭାଙ୍ଗୁ ଭାଙ୍ଗୁ ଆଜି ଡେରି ହୋଇଗଲା ପରା ?" କୋଳାହଳ କରି ତାଙ୍କର ସ୍ୱାଗତ କରିବାକୁ ଲାଗିଲା ।

ଦୋକାନର ସ୍ୱକର ବାକର ଫେଁ କରି ହସି ଉଠିଲେ ।

"ନାହିଁ ସାର୍ ନାହିଁ, ନାହିଁ ଆଜ୍ଞା । ଆଜି ଭୋରରୁ ଟିକିଏ ମନ୍ଦିରଆଡ଼େ ଚାଲି ଯାଇଥିଲି । ସେଇଥିପାଇଁ ଡେରି ହୋଇଗଲା ।" ଅପରାଧୀ କଣ୍ଠରେ ଉତ୍ତର ଦେଇ ଅନନ୍ତନ୍ ନାୟର୍ ଦୋକାନ ମାଲିକଙ୍କର ବାଆଁ ପାଖରେ ଥିବା ଆପଣାର ଆସନଟିରେ ଯାଇ ବସିଲେ । ଅଫିସ୍‌ରେ କାମ କରି କରି ଏହି 'ସାର୍' ଶବ୍ଦଟା ହିଁ 'ଆଜ୍ଞା' ଶବ୍ଦଟା ବଦଳରେ ସବୁବେଳେ ତାଙ୍କ ମୁହଁରୁ ବାହାରି ଆସେ ଓ ତାଙ୍କୁ ବଡ଼ ମୁସ୍କିଲ୍‌ରେ ଆଣି ପକାଇଦିଏ ।

## ତେର

ବଜାର ପଙ୍ଖାରୁ ପବନ ଝାଲବୁନ୍ଦାକୁ ଶୁଖାଇ ଦେଉଥିଲା । ଦୋକାନରେ କଣାକଣାର କୋଳାହଳ···ତା'ସାଙ୍ଗକୁ ପାଖରେ ଥିବା ଦୋକାନଟିର କଣ୍ଢେଇ ନାଲି ଫୁଲର ହାର ବେକରେ ପକାଇ ଗୋଟାଏ କାଗଜ ପତାର ଝଣ୍ଡା ହାତରେ ଧରି 'ଇନ୍‌କଲାବ୍ ଜିନ୍ଦାବାଦ୍' ଧ୍ୱନି ଦେଉଥିବା କେହିଜଣେ ଲୋକ, ତାହାରି ଶବ୍ଦ ।

ଭୈରବନ୍ ପିଲାଇଙ୍କର ଏହି ଦୋକାନରେ ମୋଟା କାରବାର ହେଉଥିଲା, ଖୁଚୁରା କାରବାର ମଧ୍ୟ ହେଉଥିଲା । ଏହି ବଜାରର ଗୋଟିଏ ବଡ଼ ଦୋକାନ, ଜଣାଶୁଣା ପୁରୁଣା ଦୋକାନ···। କିନ୍ତୁ ଅନନ୍ତନ୍ ନାୟର୍ ସବୁଦା ଭୈରବନ୍ ପିଲାଇଙ୍କୁ ଏକଥା କହିବାର ଶୁଣିଛନ୍ତି ଯେ ଯେଉଁଦିନଠାରୁ ବ୍ୟବସାୟର କାରବାର ହାତରୁ ଗଲାଣି, ସେହି ଦିନଠାରୁ ଏହି ଦୋକାନର ସବୁଯାକ ଦୌଲତ ମଧ୍ୟ ଗଲାଣି ।

ଭୈରବନ୍ ପିଲାଇଙ୍କଠାରେ ଜଣେ ଦୋକାନ-ମାଲିକର ସବୁଯାକ ଗୁଣ ସୁଶୋଭିତ ହୋଇ ରହିଥିଲା, ଚନ୍ଦାମୁଣ୍ଡ, ବଡ଼ ପେଟ, ବହୁମୂତ୍ର ରୋଗ—ଇତ୍ୟାଦି ଇତ୍ୟାଦି ଲକ୍ଷଣ—କେବଳ ଏହି ଗୋଟିଏ ଅନ୍ତର ରହିଥିଲା ଯେ ତାଙ୍କର ବୋଧହୁଏ ଗାନ୍ଧିଜୀଙ୍କ ମାର୍ଗରେ ମଧ୍ୟ କିଞ୍ଚିତ୍ ବିଶ୍ୱାସ ଥିଲା । ସେଥିଲାଗି ତାଙ୍କୁ ଖଦଡ଼ ଛଡ଼ା ଆଉ କୌଣସି କପଡ଼ା ପିନ୍ଧିଥିବାର କେବେ ଦେଖାଯାଉ ନଥିଲା ।

ଏହାଛଡ଼ା, ସେ ବି. ଏ. ଡିଗ୍ରୀ ପାସ୍ କରିଥିବାରୁ ନଗରର ଚ୍ୟାମ୍ବର୍ ଅଫ୍ କମର୍ସ୍‌ର ସଭାପତି ମଧ୍ୟ ଥିଲେ ଏବଂ ନଗରର ପ୍ରଧାନ ପ୍ରଧାନ ସମିତି—ଯଥା ଜନସେବା ସଂଘ, କେନାଲ୍ କ୍ଲବ୍, ରୋଟାରି କ୍ଲବ୍, ଥିଓସୋଫିକାଲ୍ ଲାୟନ୍‌ସ୍‌କ୍ଲବ୍ ସେ ସାଇଟି ପ୍ରଭୃତି ସଂସ୍ଥାରେ ସିଏ ମୁଖ୍ୟ ପଦମାନ ଗ୍ରହଣ କରିଥିବା ସଦସ୍ୟ ହୋଇ ରହିଥିଲେ । ଏହି କଥାଟି ବିଷୟରେ ତାଙ୍କର ଭାରି ଗର୍ବ ଥିଲା, ତେଣୁ ନଗରର ପ୍ରମୁଖ ନାଗରିକମାନଙ୍କ ମଧ୍ୟରୁ ଏପରି ଜଣେ କେହି ନଥିଲେ, ସିଏ କି ତାଙ୍କ ସହିତ ପରିଚୟ ରଖି ନଥିଲା ।

ଅନନ୍ତନ୍ ନାୟର୍‌ଙ୍କୁ ଜଣା ଥିଲା ଯେ ଏସବୁ ବ୍ୟତୀତ ଭୈରବନ୍ ପିଲାଇ ଆଉ କେତୋଟି ବିଦ୍ୟାସ୍ପ ମହିମାର ବି ଆଧାର ହୋଇ ରହିଥିଲେ । ତାମିଲନାଡ଼ୁରୁ ପି. କେ. ଅଲକାମ୍ବଲ୍ କନକଲକ୍ଷ୍ମୀ ଏବଂ ସ୍ୱର୍ଗୀୟ ଖ୍ୟାତନାମା ସିନେମା ଅଭିନେତା ନାଗପ୍ପା ଭାଗବତର ଓ ନଟରାଜ ଭାଗବତର ଆଦି ବିଖ୍ୟାତ ସଂଗୀତଜ୍ଞ ଏହି ସହରକୁ ସର୍ବପ୍ରଥମେ ଭୈରବନ୍ ପିଲାଇଙ୍କ ଘରେ ହିଁ ପ୍ରତ୍ୟେକ ବର୍ଷ ପାଳିତ ହେଉଥିବା ନବରାତ୍ରି ଉତ୍ସବରେ ଗୀତ ଗାଇବାଲାଗି ଆସିଥିଲେ । ସେତେବେଳେ ତମ୍ପନୁର୍‌ଠାରେ ଅବସ୍ଥିତ ସ୍ୱାଙ୍କର ବାସଭବନରେ ସହୃଦୟ ଶ୍ରୋତାମାନଙ୍କର ଯେଉଁ ଭିଡ଼ର ସମାଗମ ହେଉଥିଲା, ସେ

କଥାକି ପ୍ରକୃତରେ ଦେଖିବା ଯୋଗ୍ୟ ହିଁ ଥିଲା । ମହାରାଜାଙ୍କ ସମୟରେ ନବରାତ୍ରର ସବାଶେଷ ପୂଜା ଦିନ ମହାରାଜ ସାତୋଟି ଘୋଡ଼ା ଯୋଗ୍ୟ ହୋଇଥିବା ରଥରେ ଆରୂଢ଼ ହୋଇ, ଗଜ-ତୁରଗ-ପଦାତି ସେନାର ଗହଣରେ ଯେତେବେଳେ ଏହି ମାର୍ଗ ଦେଇ ବାହାରି ଯାଉଥିଲେ, ସେତେବେଳେ ସେଠାରେ ସ୍ୱାଙ୍କର ଦୋକାନରେ ଅଜସ୍ର ଅର୍ଥବ୍ୟୟ କରି ଅଦ୍ଭୁତ ଓ ବିପୁଳ ଅଳଙ୍କରଣ କରା ଯାଉଥିଲା । ସେଇଟି ଦେଖିବାକୁ ବଡ଼ ମନୋହର ହେଉଥିଲା ।

ଆପଣାର ବ୍ୟକ୍ତିଗତ ଯେତେ ଯାହା ଚିନ୍ତା ବା ହରକତ ଥାଉ ପଛକେ, ଦୋକାନ ଭିତରକୁ ଆସି ଅନନ୍ତନ୍ ନାୟର୍ ଯେବେ ଆପଣା ଜାଗାଟି ଉପରେ ଆସି ବସି ଯାଉଥିଲେ ଏବଂ ଥରେ ବହିଖାତା ଗୁଡ଼ିକ ମଧ୍ୟରେ ବୁଡ଼ି ଯାଉଥିଲେ, ତେବେ ତାଙ୍କର ତାଙ୍କର ସବୁ ଚିନ୍ତା ଉଭେଇ ଯାଉଥିଲା । ଏହିପରି ଭାବରେ ଅଳିଆ ମଳିଆ ଓ ଅଡ଼ୁଆ ହୋଇ ପଡ଼ିଥିବା ହିସାବକିତାବ ସେ···।

ସେଲ୍ ଟ୍ୟାକ୍ସ୍, ଇନ୍‌କମ୍ ଟ୍ୟାକ୍ସ୍ ଅଫିସ୍‌ମାନଙ୍କରୁ ଯେତେବେଳେ କୌଣସି ସମନ ଆସି ପହଞ୍ଚୁଥିଲା, ତେବେ ହିସାବପତ୍ରକୁ ଠିକ୍ କରି ବହିଖାତା ନେଇ ସେଠାକୁ ଯିବା ଓ ସେଠାରେ ଥିବା ଅଫିସର୍ ମାନଙ୍କ ଆଖିରେ ଧୂଳି ଦେଇ ନିଜକୁ ତଥା ନିଜର ଖାମିନ୍ଦଙ୍କୁ ବିପଦରୁ ପାର କରାଇ ପୁଣି କୁଶଳରେ ଫେରି ଆସିବାର ଦାୟିତ୍ୱଟି ଅନନ୍ତନ୍ ନାୟର୍‌ଙ୍କ ଉପରେ ହିଁ ରହିଥିଲା । ତେଣୁ ଶହକୁ ଉଠାଇ ଛଅରେ ଆଉ ଛଅକୁ ଉଠାଇ ଶହରେ ପକାଇବାର ସର୍କସ୍-ବ୍ୟାୟାମ୍ ଏବଂ ଧପ୍‌ପାବାଜି କରିବାର ଧନ୍ଦାଟି ଯାହାକୁ ଭଲ ଭାବରେ ଜଣାଥିବ, କେବଳ ସେଇ ଭୈରବନ୍ ପିଲ୍ଲାଇଙ୍କର ଦୋକାନରେ ଚିରସ୍ଥାୟୀ ହୋଇ ରହି ପାରିବ । ସେହି କାରଣରୁ ହିଁ ଏହି ଦୋକାନକୁ ହିସାବକିତାବର କାମରେ ନିଯୁକ୍ତ ହୋଇ ଆସୁଥିବା ବ୍ୟକ୍ତିମାନେ ଆପଣାର ସାଧାରଣ ବେତନରୁ ମଧ୍ୟ ବାକି ରହି ଯାଇଥିବା ଦ୍ରାପ୍ୟଟିକୁ ନନେଇ ଯେକୌଣସି ପ୍ରକାରେ ପ୍ରାଣରକ୍ଷା କରି କୌଣସି ସୂଚନା ନଦେଇ କୁଆଡ଼େ ଚମ୍ପଟ କରୁଥିଲେ । ସମ୍ଭବତଃ ସେଇଥି ସକାଶେ ହିଁ ଅନନ୍ତନ୍ ନାୟର୍‌ଙ୍କୁ ଏହି ଚାକିରିଟି ବଡ଼ ସହଜରେ ମିଳି ଯାଇଥିଲା । ଜିନିଷପତ୍ରର ତାଲିକାର ପୁର୍‌ଦାକୁ ଟଙ୍ଗାଇ ସେହି ଅନୁସାରେ ଜିନିଷପତ୍ର ମହଜୁଦ ରଖିବାର କାମରେ ଲାଗିଥିବା ଦୋକାନର କର୍ମଚାରୀମାନଙ୍କର ଦଉଡ଼ଧାପଡ଼, ଗରାହାକମାନଙ୍କର ପକେଟରୁ ଗଦୀ ଉପରେ ବସିଥିବା ମାଲିକଙ୍କର ଚଉକାଠିର ଫାଟ ଭିତରକୁ ଉଡ଼ି ଉଡ଼ି ଚାଲି ଯାଉଥିବା ନୋଟ୍ ଗୁଡ଼ିକର ଖସଖସ ଆବାଜ, ଡାଲପତ୍ର ଚଟେଇ ଆଉ କିରାସିନ ପଟାର ବାକ୍ସ ମାନଙ୍କରେ ବନ୍ଧା ହୋଇଥିବା ଜିନିଷଗୁଡ଼ାକୁ ବାହାରେ ଠିଆ ହୋଇଥିବା ଠେଲାଗାଡ଼ି ଗୁଡ଼ିକ ଉପରେ ନେଇ ରଖୁଥିବା ମଜୁରିଆମାନଙ୍କର ଗରାହାକମାନଙ୍କର ଘରଯାଏ ଠେଲାଗୁଡ଼ିକୁ ଟାଣିନେଇ ପହଞ୍ଚାଇବାର ସତ୍ୱରତା, କେବେକେବେ ମହଣ ମହଣ

ଲଙ୍କାମରଚ ପଶିଥିବା ବସ୍ତ୍ରାଗୁଡ଼ିକର ଗନ୍ଧକୁ ହଜମ କରି ନପାରି ଆସୁଥିବା ଗ୍ରାହକ ମାନଙ୍କର ଅଶ୍ରୁପୂର୍ଣ୍ଣ ଲୋଚନରେ ଥୂ' ଥୂ' କରି ଛେପ ପକାଉ ଥିବାର ଶବ୍ଦ···ଜନସ୍ରୋତ ବୋହୁବାଲାଗି ଦୋକାନର ବାହାରେ ଠିଆ ହୋଇଥିବା ପିଲମାନଙ୍କର ଝଣ୍ଟି ଗଳାରେ ଗୀତ ଗାଇ ତାଳ ବଜାଉଥିବାର ନାଦଚମତ୍କାର,-ଏହି ସବୁକଥାର ସହିତ ଅବା ଏକ ସ୍ୱପ୍ନଲୀଳା ଲାଗି ରହିଥାଏ । ବାହ୍ୟ ଇନ୍ଦ୍ରିୟ ଗୁଡ଼ିକରୁ ଏଗୁଡ଼ିନା ବାମ ବାହାରି ଯାଉଥିଲ, ମାତ୍ର ମସ୍ତିଷ୍କ ଭିତରେ ଲୁଚ୍ଛା ସଂଖ୍ୟାଗୁଡ଼ାକ ଧାଡ଼ି ବାନ୍ଧି ପରିକ୍ରମା କରିବାରେ ଲାଗିଥିଲେ···।

ହଠାତ୍ ଟ୍ରିଙ୍ଗ୍···ଟ୍ରିଙ୍ଗ୍ କରି ଟେଲିଫୋନ୍‌ର ଘଣ୍ଟି ବାଜି ଉଠୁଥାଏ । ମାଲିକ ଫୋନ୍‌କୁ ହାତରେ ଉଠାଇ ଆଣୁଥାନ୍ତି,—"ହାଲୋ···ୟେସ୍···ଭୈରବନ ପିଲ୍ଲଇ···"

"··· ··· ··· ···"

"ନମସ୍ତେ ଜୀ···"

"··· ··· ··· ···"

"ଓ—ହୋ···!···ଏପରି କଥା···। କେତେ ଦରକାର ?"

"··· ··· ··· ···"

ଗୋଟାଏ ବୋଟ୍ ?"

"··· ··· ··· ···"

"ଦଶ ହଜାର ? ଆଚ୍ଛା ହଉ··· ମୁଁ ସାଙ୍ଗେସାଙ୍ଗେ ବ୍ୟାଙ୍କ୍‌ରେ ଜମା କରି ଦେଉଛୁ··· ।"

ସିଏ ଟେଲିଫୋନ୍ ରଖି ଦେଉଛନ୍ତି । ତା'ପରେ ଦୋକାନର ପ୍ରଧାନ କର୍ମଚାରୀ କୁମାରକୁ ଡାକି, "କୁମାର ! ଶୀଘ୍ର ମହାବଳ ପ୍ରସାଦଙ୍କ ପାଖକୁ ଯାଇ ଦଶହଜାର ଟଙ୍କା ଯୋଗାଡ଼ କରି ନେଇ ଆ···ନ' ହେଲେ···ଆଚ୍ଛା, ରହ···ମୁଁ ପଚାରି ବୁଝୁଛି···"

ପୁଣି ଟେଲିଫୋନ୍ ଡାଏଲ୍ କରୁଛନ୍ତି ।

"ହଁ···ହାଲୋ···ଭୈରବନ୍ ପିଲ୍ଲଇ···ପ୍ରାଇଭେଟ୍ ସେକ୍ରେଟେରି ଅଛନ୍ତି କି ? ···ଗୁଡ୍ ମର୍ନିଙ୍ଗ୍···ଗୁଡ୍‌ମର୍ନିଙ୍ଗ୍···କିଛି ପଇସା ଦରକାର ସାର୍···ଖୁବ୍ ଜରୁରୀ ଦରକାର ଅଛି । ଦଶ ହଜାର···ଆଚ୍ଛା ଆଠ ହଜାର ସକାଳ ହେଉ ପଛକେ···କ'ଣ କହିଲେ, ପାଞ୍ଚ ହଜାର···? ଆଚ୍ଛା ହେଉ···ଡାଫ୍ଟ ତ ?···ଆଚ୍ଛା···ଆଚ୍ଛା ମୁଁ କୁମାରକୁ

ଯାଙ୍କେ ଯାଙ୍କେ ପଠାଇ ଦେଉଛୁ···ଆପଣ ଉଆର କରି ରଖିଥାନ୍ତୁ···ଯେପରି ବ୍ୟାଙ୍କ୍‌ର ଟାଇମ୍ ଗତ ହୋଇ ନଯାଏ···ଆଚ୍ଛା···ଆଚ୍ଛା···ମେନି ମେନି ଥ୍ୟାଙ୍କ୍‌ସ୍···" ଫୋନ୍ ରଖି ଦେଉଥାନ୍ତି ।

"ତେବେ ପାଞ୍ଚ ହଜାରର ବ୍ୟବସ୍ଥା ହୋଇଗଲା···।" ଆପଣା ମନକୁ ଫୁଟୁ ଫୁଟୁ ହେଉ ହେଉ ଆପଣାର ଚନ୍ଦା ମୁଣ୍ଡଟି ଉପରେ ଖୁସୀ ହୋଇ ହାତ ବୁଲଉ ବୁଲଉ ପୁଣି କ'ଣ ଭାବି ସେ ଆଉଥରେ ଡାଏଲ୍ କରିବାରେ ଲଗି ଯାଉଛନ୍ତି···

"ହଁ···କିଏ କହୁଛନ୍ତି···ଉଇମେନ୍‌ସ୍ ହଷ୍ଟେଲ୍ ନା ? ଓ୍ୱାର୍ଡେନ୍ ରମାଦେବୀ ଅଛନ୍ତି···?···ହଁ···ନମସ୍କାର···ଭୈରବ ପିଲଇ···ହି···ହି···ହି···ହି··· ! ···ହଁ···ହଁ ଏଇ ଦୋକାନରୁ···ତେବେ···ପାଞ୍ଚହଜାର ଟଙ୍କା ଜରୁରି ଦରକାର···ଆଚ୍ଛା···ଆଚ୍ଛା । କୁମାରକୁ ପଠାଇ ଦେଉଛୁ···ଚେକ୍ ତ ?···ଆଚ୍ଛା···ଆଚ୍ଛା···ବହୁତ ବହୁତ ଧନ୍ୟବାଦ···"

ଫୋନ୍ ରଖିଦେବା ବେଳକୁ ତାଙ୍କର ମୁଖମଣ୍ଡଳରେ ଅପାର ସନ୍ତୋଷ ଦେଖା ଯାଉଥିଲା । କୁମାର···ରାଜଉଆସକୁ ଯାଇ ସେକ୍ରେଟେରୀଙ୍କ ସହିତ ଦେଖା କର । ସିଏ ପାଞ୍ଚ ହଜାରର ଏକ ପରମାଣ ଦେବେ···ଉଇମେନ୍‌ସ୍ ହଷ୍ଟେଲ୍‌ର ଓ୍ୱାର୍ଡେନ ରମାଦେବୀ ପାଞ୍ଚହଜାରର ଚେକ୍‌ଟିଏ ଦେବେ···ବ୍ୟାଙ୍କ୍‌ର ସମୟ ହୋଇଯିବା ଆଗରୁ ହିଁ ତୁମେ ସେତକ ନେଇ ଆମ ବ୍ୟାଙ୍କ୍‌ରେ ଜମା କରିଦେବ । ମାଲ୍‌ର ଡ଼େମେରେଜ୍ ମୋଟେ ଲଗିବା ଉଚିତ ନୁହେଁ···ଏତକ କହି ସିଏ ତାକୁ ତତ୍‌କ୍ଷଣାତ୍ ପଠାଇ ଦେଉଛନ୍ତି । ସାଇକେଲ ଉପରେ ଚଢ଼ି କୁମାର ଛୁଟି ଯାଉଛି ।

ପୁଣି ଅନନ୍ତନ୍ ନାମ୍ବୁର୍‌ଙ୍କୁ କହିଲେ, "ଶୁଣୁଛ ଅନନ୍ତନ୍ ନାମ୍ବୁର୍···ଖାତାରେ ରାଜଉଆସର ପାଞ୍ଚହଜାରର ଓ ଉଇମେନ୍‌ସ୍ ହଷ୍ଟେଲ୍‌ର ପାଞ୍ଚହଜାରର ଜମା ଲେଖିଦେବ···ହୁଁ···କିଏ ଜାଣିଛି···ଏଇ ସବୁଯାକ ବାକୀ ଟଙ୍କା କେବେ ସରିକି ପରିଶୋଧ ହେବ । କୋଉ ମାସରେ ପାଞ୍ଚହଜାର ଦେଇଦେଲେ ତ ପୁଣି ଖାତାରେ ଦଶହଜାର ଲେଖାହେବା ପର୍ଯ୍ୟନ୍ତ ଆଉ ନିଃଶ୍ୱାସଟିଏ ନେବାକୁ ହିଁ ଫୁରସତ ନାହିଁ ।···ହୁଁ ମହାରାଜାଙ୍କ ନଅରରେ ମଧ୍ୟ ଦୁର୍ଭିକ୍ଷ ହାହାକାର ପଡ଼ୁଛି··· ।

ଅନନ୍ତନ୍‌ନାମ୍ବୁର୍ ଖାତାରେ ପୃଷ୍ଠା ଲେଉଟାଇ ତାଙ୍କର କଥା ଅନୁସାରେ ପରମାଣ ଗୁଡ଼ିକୁ ଲେଖି ଦେଉଛନ୍ତି ।

ହୁଁ !···ରାଜଉଆସକୁ ବି ଖୁଚୁରା ଜିନିଷ ଯୋଗାଇ ଦେବାର କାମଟି ଏଇ କରନ୍ତି । ଅନନ୍ତନ୍‌ନାମ୍ବୁର୍ ଯେତେବେଳେ ନଅରରେ କାର୍ଯ୍ୟ କରୁଥିଲେ, ସେତେବେଳୁଁ

ହିଁ ଏମାନଙ୍କ ସନ୍ତୁଷ୍ଟ ତାଙ୍କର ଯୌବନ ରହିଥିବାରୁ ଯେତେବେଳେ ସେଠାରୁ ତଡ଼ା ଖାଇଲେ, ସେତେବେଳେ ଏଠି ଦୋକାନରେ ଗୃହର ପାଇଲେ··· ।

ପ୍ରଭାକରନ୍ ନାୟର୍‌ର ଗୃହ କେବେ ଫିଟିବ ସେ କଥା କିଏ ଜାଣିଛି ? ବର୍ତ୍ତମାନ ଖାଲି ମାଧବୀର ଦରମାଟି ଯାହା ରହିଛି । ତା' ମାଙ୍କୁ, ଯେତେବେଳେ ସେ ସ୍ୱୟଂ ଗୃହରୁ ତଡ଼ାଖାଇ ଆସିଲେ, ସେତେବେଳେ ମଧ୍ୟ ତାଙ୍କୁ କନ୍ଦନ ବେକାର ବସି ରହିବାକୁ ପଡ଼ିଥିଲା । ସେତେବେଳେ ଏଠାରୁ ସେଠାରୁ ଟ୍ରେଣ୍ଟ ବଡ଼ କରଜ ମଧ୍ୟ ହୋଇଗଲା ।

ମହାରାଜାଙ୍କର ନଅରରେ ତିନିବର୍ଷ କାମ କରି ଯାଇଥିଲେ ମଧ୍ୟ କେବଳ ତାଙ୍କୁ ହିଁ କାହିଁକି କିଛିହେଲେ ମିଳି ପାରିଲାନାହିଁ···? ସେଠୁ ତ କିଏ କେତେ ନା କେତେ କମାଇନେଇ ପାରିଲେ— । ସଂସାରରେ କ'ଣ ଏପରି କେହି ମଣିଷ ଅଛନ୍ତି ଯିଏକି ଗୁଡ଼ହାଣ୍ଡିରେ ହାତ ପଶିଗଲେ ତାକୁ ଗୃହି ନନେବ ?

ମାତ୍ର ତାଙ୍କର ସ୍ୱଭାବରେ କହିବାକୁ ଗଲେ, ତାଙ୍କୁ କେବଳ ଦରମାଟିକୁ ଛାଡ଼ି ଆଉ କ'ଣ ମିଳିଲା ? ତଥାପି, କ'ଣ ଏକଥା କୁହାଯାଇ ପାରିବ ଯେ ସେଠାରେ ବୁଝିକି କରି ତାଙ୍କୁ ସେଠାରୁ କିଛିହେଲେ ମିଳିଲା ନାହିଁ ।

ମାସକୁ ମାସ ସେଠାରୁ ଯେଉଁ 'ବେତନ ମିଳୁଥିଲା, ସେଇଥିରେ ପ୍ରଭାକରନ୍ ନାୟର୍‌ରକୁ ଇଣ୍ଟର୍‌ମିଡ଼ିଏଟ୍ ପାଠ ପଢ଼ାଇ ପାରିବା ସମ୍ଭବ ହେଲା, ମାଧବୀ ମଧ୍ୟ ବି. ଏ. ପାସ୍ କଲା । ମାତ୍ର ସେଇଥିରେ କ'ଣ ପରିବାର ପ୍ରତି ରହିଥିବା ତାଙ୍କର ସମସ୍ତ ଦାୟିତ୍ୱ ଶେଷ ହୋଇଗଲା । ପ୍ରଭାକରନ୍ ନାୟର୍‌କୁ କୌଣସିଠିହେଲେ ଖଣ୍ଡେ ଗୃହରେ ନେଇ ଲଗାଇଦେବା ଉଚିତ । ସିଏ ପୁଣି ଏବେ କାତ୍ୟାୟିନୀ ପାଖକୁ ବି ଯିବାକୁ ଆରମ୍ଭ କଲାଣି ···ନର୍ଲଜ୍ଜ··· ।

ମାଧବୀକୁ କୋଡ଼ିଏ ବର୍ଷ ହୋଇଗଲାଣି । ତା'ର ବିବାହ କରିଦେବାକୁ ହେବ । ଭଉଣୀ କଲ୍ୟାଣୀର ପୁଅ ଭାସ୍କରନ୍ ନାୟର୍ କଥା ମନେ ପକାଇ ଆଜି ମଧ୍ୟ ମନ ଭିତରେ ନାୟର୍ ଟିକିଏ ଲୋଭ ହେଉଛି । ସମ୍ପର୍କ ରହିଥିବାରୁ ସେଥିଲାଗି ତା'ର ଅଧିକାର ମଧ୍ୟ ରହିଛି··· । ହୁଁ ଆଜି ସକାଳେ କଲ୍ୟାଣୀ ଯାହାସବୁ କହିଲା, ସେସବୁ ଶୁଣିବାପରେ ମନେହେଉଛି ଯେ ଭାସ୍କରନ୍ ନାୟର୍ ବାହା ହେବାପାଇଁ ହୁଏତ ରାଜି ବି ହେବନାହିଁ ।

ଏଭଳି ପରିସ୍ଥିତିରେ, ସେଇ ଅଭଗା କନ୍‌ଷ୍ଟେବଲ୍ ବାସୁ ପିଲାଇ ମଧ୍ୟ ବସ୍‌କୁ ଆସି କେଡ଼େ ଅନାୟାସରେ ଗୋଟାଏ ବଜ୍ରର ପାହାଡ଼ ଉଠାଇ ଉପରେ ପକାଇଦେଇ ଗଲା ।

ଦୋକାନ ଆଗରେ ହଠାତ୍ ଗୋଟିଏ ମଟରକାର୍ ଆସି ଠିଆହେଲା । ପଛ କବାଟ ଦେଇ କେହି କାର୍‌ରୁ ଓହ୍ଲାଇଗଲା ଏବଂ ତା'ପରେ କବାଟଟା ଖଟ୍ କରି ବନ୍ଦ ହୋଇଗଲା ।

"କିଏ ? ମହାଦେବ ଆୟର୍...? ଆସନ୍ତୁ...ବିରାଜମାନ ହୁଅନ୍ତୁ...ଦୀର୍ଘ ଅନେକ ଦିନ ହେଲା ଦେଖା ହୋଇ ନଥିଲା..." ମାଲିକ ତତ୍‌କ୍ଷଣାତ୍ ତାଙ୍କର ସ୍ୱାଗତ କଲେ । ମହାଦେବ ଆୟର୍ ଖୁବ କ୍ଲାନ୍ତ ହୋଇ ପଡ଼ିଥିଲେ ଓ ଦୋକାନ ଭିତରକୁ ଆସି ମାଲିକଙ୍କର ପାଖକୁ ପଡ଼ିଥିବା ଚଉକିଟି ଉପରେ ବସି ପଡ଼ିଲେ ।

ଅନନ୍ତନ୍ ନାୟର୍ ମୁଣ୍ଡ ଟେକି ମହାଦେବ ଆୟର୍‌ଙ୍କୁ ଦେଖିଲେ । ତାଙ୍କ ସହିତ ତାଙ୍କର ଆଗରୁ ଚିହ୍ନା ଅଛି ନା ! ଟାଙ୍ଗରା ମୁଣ୍ଡ, ଗାଲ ଉପରେ ବଡ଼ ହୋଇ ଗୋଟାଏ କଳା ଜାଇ, ଯେପରି ଠିକ୍ ସେଇଠି କିଏ ଗୋଟାଏ ଲୁହାକଣ୍ଟା ବାଡ଼େଇ ଦେଇ ଯାଇଛି ।... ପାନ ଖାଇଖାଇ ନାଲି ପଡ଼ି ଯାଇଥିବା ଓଠ, ବାଆଁ ଆଡ଼କୁ ଟିକିଏ ଟେରେଇ ହୋଇ ରହିଥିବା ଆଖି, ରେଶମ କୁର୍ତ୍ତାର ସେପାଖରୁ ବେକ ଉପରେ ଦେଖା ଯାଉଥିବା ସୁନା ଚେନ୍ ଓ ହାତରେ ଚଷମାର ଖୋଳ ।—

ସିଏ ମଧ୍ୟ ଅନନ୍ତନ୍ ନାୟର୍‌ଙ୍କୁ ଦେଖିଲେ ।

"ହୁଁ...କିଏ ଅନନ୍ତନ୍ ନାୟର୍ ! ଆଜିକାଲି ତୁମେ ଏଇଠି କାମ କରୁଛ ?" ତାଙ୍କର ଏହି ପ୍ରଶ୍ନଟିର ଜବାବ ଦେଇ ଅନନ୍ତନ୍ ନାୟର୍ ବଡ଼ ଭଦ୍ର ଭାବରେ କହିଲେ, "ହଁ ସାର୍ ! "

ମାଲିକ କଫି ପାଇଁ ଅର୍ଡର୍ ଦେଲେ ।

## ଚଉଦ

ପ୍ରତିଦିନର ଖାତା ଏବଂ ଷ୍ଟାକ୍‌ବୁକ୍‌ରୁ ଲେଜର୍ ବହିରେ ହିସାବଗୁଡ଼ାକୁ ଉଠାଉ ଉଠାଉ ଅନନ୍ତନ୍ ନାୟର୍‌ଙ୍କ ମନରେ ବର୍ତ୍ତମାନ ମହାଦେବ ନାୟର୍ ଆସି ଏକ୍ଦମ୍ ଜାଗାଟିଏ ମାଡ଼ି ବସିଲେ । ଏକଦା ମହାଦେବ ନାୟର୍ ଦେୱସ୍ୱାନ୍ ପେଶ୍‌କାର୍ ମଧ୍ୟ ଥିଲେ ଏବଂ ବଡ଼ ଷ୍ଟାଇଲରେ ଜୀବନ ଅତିବାହିତ କରୁଥିଲେ ।

ମାଲିକ ଭୈରବନ୍ ପିଲାଇଙ୍କଠାରୁ ମଧ୍ୟ ଇଏ ଆହୁରି ଦଶ ବର୍ଷ ବଡ଼ ହେବ । ହଁ, ସ୍ୱଙ୍କୁ ବର୍ତ୍ତମାନ ଅତି କମ୍‌ରେ ସତୁରି ବର୍ଷ ବୟସ ହୋଇ ସାରିବଣି । ସିଏ ଯାହା ହୋଇଥାଉ ପଛକେ, ରିଟାୟାର୍ ହୋଇସିବା ପରେ ବିଷଦାନ୍ତ ବାହାର କରି ଦିଆ ଯାଇଥିବା ଗୋଟାଏ ସାପ ଛଡ଼ା ଜଣେ ମଣିଷ ପ୍ରକୃତରେ ଆଉ କ'ଣ ହୋଇ ରହେ ?···

ତାଙ୍କ ଜୀବନରେ ସିଏ କେତେ ନ କମାଇଛନ୍ତି ! ଘରେ ଖାଇବାକୁ କିଛି ନଥିଲା, ମନ୍ଦିରର ଭୋଜନାଳୟରୁ ମିଳୁଥିବା ଭୋଜନ, ମନ୍ଦିରରେ ମକୁଶିଲାଗି ସେଇଠାରୁ ମିଳୁଥିବା ଭାତ, ରାସ୍ତାର ଆଲୁଅ···ଏଗୁଡ଼ିକର ସାହାଯ୍ୟ ନେଇ ଆପଣାର ପ୍ରତିଭାକୁ ହିଁ ଏକମାତ୍ର ପୁଞ୍ଜି ରୂପେ ଖଟାଇ ପହୁଣ୍ତି ପହୁଣ୍ତି ଅଗ୍ରସର ହୋଇ ସେ ଦେୱସ୍ୱାନ ପେଶ୍‌କାର୍ ପଦଯାଏ ଯାଇ ପହଞ୍ଚି ପାରିଥିଲେ । ସେଇଟା କ'ଣ ସାଧାରଣ ମାମୁଲି କଥା ହୋଇଛି ?

କିନ୍ତୁ ବାହାର ଜୀବନରେ ତାଙ୍କୁ ଯେଉଁ ସଫଳତା ମିଳିଲା, ସେହି ସଫଳତା ତାଙ୍କୁ ଘରୁଆ ଜୀବନରେ ଆଦୌ ମିଳି ନଥିଲା—ଏହି କଥାଟିକୁ ଏହି ସହର ଭିତରେ ସମସ୍ତେ ଜାଣିଛନ୍ତି ···।

ତାଙ୍କର ଦୁଇଟି ପିଲା ଜନ୍ମ ହେବା ପର୍ଯ୍ୟନ୍ତ ତାଙ୍କର ଯେଉଁ ସ୍ତ୍ରୀ ଠିକ୍ ଜଣେ ସାଧାରଣ ସ୍ତ୍ରୀଲୋକଙ୍କ ପରି ଥିଲା, ତୃତୀୟ ପିଲାଟି ଜନ୍ମ ହେବା ପରେ ହିଁ ସିଏ ଏପରି ହୋଇଗଲା ଯେ ସବୁବେଳେ ଗୋଟାଏ ପ୍ରକାର ମୌନ ଭିତରେ ହିଁ ବୁଡ଼ିକରି ରହିଲା । ଥିବ ଥିବ ହସି ପକାଇବ, ପୁଣି କାନ୍ଦି ପକାଉଥିବ । କେତେ କୁଆଡ଼େ ଚିକିତ୍ସା କରାଗଲା, କିନ୍ତୁ କୌଣସି ଲାଭ ହେଲା ନାହିଁ । ପୁଣି ତା' ଉପରେ ତାମସାଟାକୁ ଆହୁରି ବଢ଼ାଇଦେଲା ପରି ସେହି ଚିତ୍ତବିକ୍ଷେପର ଅବସ୍ଥାରେ ଚତୁର୍ଥ ପିଲାଟିର ଜନ୍ମ ହେଲା···। ଏବେ ମଧ୍ୟ ଲୋକେ କହନ୍ତି ଯେ ସିଏ ଘର ଭିତରେ ଖାଲି ଏପାଖ ସେପାଖ ବୁଲିବାରେ ହିଁ ଲାଗିଥାଏ । କାହାଉପରେ କୌଣସି ଉପଦ୍ରବ କରେନାହିଁ । ଘରର ଯାବତୀୟ କାମ କରିଦେବା ସକାଶେ ରଖାଯାଇଥିବା ଚାକରାଣୀ ପୋନ୍ନମ୍ମା ପ୍ରକୃତରେ ବଡ଼ ପାରିବାର ପିଲା···। ଆଜି ମଧ୍ୟ ସେଇ ତାଙ୍କ ଘରେ ସବୁପ୍ରକାରର କାମକୁ ସମ୍ଭାଳି ନେଉଛି ।

ତାଙ୍କର ବଡ଼ପୁଅଟିର ମସ୍ତିଷ୍କ ମଧ୍ୟ ତା' ମାଆର ମସ୍ତିଷ୍କ ପରି ସେହିଭଳି ଅବିକଶିତ ଅବସ୍ଥାରେ ରହିଗଲା—ଏବଂ ସିଏ ବୟସରେ ବଡ଼ ହେବା ସଙ୍ଗେ ସଙ୍ଗେ ଏହି ସତ୍ୟଟି ଜଣା ପଡ଼ିଲା। ପତ୍ନୀବେଳେ ସେମିତ ଚୁପ୍‌ଚାପ୍ !···ଘରକୁ ସିଏ ଆସୁନା ନାହିଁକ—ସେତେବେଳକୁ ହିସ। ସମସ୍ତ ଅନୁସାରେ ଖାଇବାଟା ଉଚିତ ପ୍ରକାରେ ମିଳି ଯାଉଥିବା ଉଚିତ, ବାସ୍ ସେତିକ ହେଲେ ହେଲା। ତାର ଶରୀର ଯେତିକ ବଢ଼ିଲା, ସେହି ଅନୁସାରେ ବୁଦ୍ଧିର ବିକାଶ ହୋଇ ପାରିଲାନାହିଁ।

କଫି ଆସିଗଲା। ନୀରବରେ କଫି ପିଇ ମହାଦେବ ଆୟର୍ ପାନ ଖାଇଲେ।

ଦୋକାନର ଭିଡ଼ଗୋଳ ବେଶ୍ କିଛି ପରିମାଣରେ କମ୍ ହୋଇ ଆସିଲା। ବର୍ତ୍ତମାନ ଏହାପରେ ସନ୍ଧ୍ୟାବେଳକୁ ଯାଇ ପୁଣି ଗହଳି ବଢ଼ିବ। ଦୋକାନ ମାଲିକଙ୍କର ପାଖରେ ବସି ହିସାବ କରିବାରେ ମଗ୍ନ ରହି ଅନନ୍ତନ୍ ନାୟରଙ୍କ କାନରେ ମାଲିକ ଆଉ ମହାଦେବ ଆୟରଙ୍କ ଭିତରେ ହେଉଥିବା କଥାବାର୍ତ୍ତା ଗୁଡ଼ିକ ସ୍ପଷ୍ଟ ଭାବରେ ଆସି ବାଜୁଥିଲା। ସେମାନଙ୍କର କଥାବାର୍ତ୍ତାର ଢଙ୍ଗଟିରୁ ଅନନ୍ତନ୍ ନାୟର୍ ବେଶ୍ ବୁଝି ପାରୁଥିଲେ ଯେ ସେମାନେ ହେଉଛନ୍ତି ବ୍ୟକ୍ତିଗତ ବନ୍ଧୁ।

"ଆପଣ ଅନେକ ଦିନ ହେଲା ଏଠିକି ଆସିନଥିଲେ···ପୁଅଝିଅ ମାନଙ୍କଠାରୁ ନିୟମିତ ଚିଠିପତ୍ର ପାଆନ୍ତି ତ···?"

"ହୁଁ—ହଁ—ଝିଅପାଖରୁ ହିଁ ଆସେ··· । ରାମଭଦ୍ରନ୍ କେଉଁଠାରେ ଅଛି, ମୋତେ ସେହି ଖବରଟି ମଧ୍ୟ ଜଣାନାହିଁ।"···

ମହାଦେବ ଆୟରଙ୍କର କଣ୍ଠସ୍ୱର ବଡ଼ ଅସ୍ପଷ୍ଟ ହୋଇ ଆସିଲା। ସ୍ତ୍ରୀଙ୍କର ଦ୍ୱିତୀୟ ସନ୍ତାନଟି ହେଉଛି ଝିଅ, ସିଏକି ଇଂଲଣ୍ଡରେ ଏମ୍. ଏ. ପାସ୍ କରିଛି। ତା'ର ସ୍ୱାମୀ ବିଜନେସ୍ ମ୍ୟାନେଜ୍‌ମେଣ୍ଟ୍‌ରେ ଡକ୍ଟରେଟ୍ ବା ଆଉ ଗୋଟାଏ କ'ଣ ଉପାଧି ଆଣିବ ବୋଲି ଆମେରିକା ଯେ ଗଲା, ସେହିଠାରେ ହିଁ କୌଣସି ଚାକିରି ଜୁଟିଯିବାରୁ ସିଏ ଆପଣାର ସ୍ତ୍ରୀକୁ ମଧ୍ୟ ସେଇଠାକୁ ଡାକି ନେଇଗଲା। ଶୁଣିବା କଥା, ବର୍ତ୍ତମାନ ଝିଅକୁ ମଧ୍ୟ ସେଠାରେ କୌଣସି ଚାକିରି ମିଳି ଗଲାଣି, ସେମାନଙ୍କର ନିଜର ଘର ଅଛି, ଦୁଇଟିକଟା ମଟର ଗାଡ଼ି; କୁବେରନାଗରୀର ସବୁପ୍ରକାର ସୁବିଧା ସହିତ ସେମାନେ ସେଠାରେ ଖୁବ ଆନନ୍ଦରେ ଅଛନ୍ତି।

ସ୍ୱାଙ୍କର ତା'ପଛ ପୁଅଟି ଅର୍ଥାତ୍ ରାମଭଦ୍ରନ୍ ବିଷୟରେ କିଛି ନଜାଣିଥିବା ମଣିଷ ହୁଏତ ଏହି ସହରରେ କେହି ଜଣେ ହେଲେ ନଥିବେ । ସାର୍ବଜନୀନ ନିର୍ମାଣ ବିଭାଗରେ ସିଏ ଇଞ୍ଜିନିଅର୍ ହୋଇ ରହିଥିବା ସମୟରେ କୌଣସି ଏକ ବଡ଼ ଭ୍ରଷ୍ଟାଚାରର ଘଟଣାରେ ତାଙ୍କୁ ଅଭିଯୁକ୍ତ କରାଯାଇ ଚାକିରୀରୁ ସସ୍ପେଣ୍ଡ୍ କରି ଦିଆଯାଇ ଥିଲା । ମାତ୍ର ସହର ଭିତରେ ଗୋଟିଏ କ୍ଲବ୍ ଥିଲା, ଯାହାକୁ କି ଲୋକମାନେ "ପାମର ଜନତାର ଶିରଚ୍ଛେଦକାରୀ କ୍ଲବ୍" ବୋଲି କହୁଥିଲେ; ସିଏ ସେହି କ୍ଲବ୍‌ର ଜଣେ ସଭ୍ୟ ଥିଲା । ଯେଉଁମାନଙ୍କର ମାସିକ ବେତନ ଚାରିଅଙ୍କରୁ ଆଦୌ କମ୍ ହୁଏନାହିଁ, ସେହିଭଳି ବଡ଼ ବଡ଼ ହାକିମମାନେ ହିଁ ସେହି କ୍ଲବ୍‌ରେ ଯାଇ ସଭ୍ୟ ହୁଅନ୍ତି । ସେହି କ୍ଲବ୍‌ଟିରେ ପ୍ରକୃତରେ ଯେ କ'ଣ ସବୁ ହୁଏ,—ସେସବୁ ବିଷୟ ବର୍ତ୍ତମାନ ମଧ୍ୟ ଏକ ଗୂଢ଼ରହସ୍ୟ ହୋଇ ରହିଛି । ମାତ୍ର କେତେକ ବିଶ୍ୱାସଯୋଗ୍ୟ ସୂତ୍ରର ଖବର ଅନୁସାରେ ଅନୁମାନ କରାଯାଏ ଯେ, ଆପଣାର ପ୍ରାଣ ଦେଇ ମଧ୍ୟ ଜଣେ ଆତ୍ମୀୟଜଣଙ୍କୁ ସାହାଯ୍ୟ କରିବ, ମୁଣ୍ଡରେ ହାତ ରଖି ଏକଥା ପ୍ରତିଜ୍ଞା କରି ସାରିବାପରେ ଯାଇ କୌଣସି ଲୋକ ସେଠାରେ ସଭ୍ୟ ହେବାଲାଗି ଉପଯୁକ୍ତ ବୋଲି ବିବେଚିତ ହୁଏ । ଯେତେବେଳେ ରାଜ୍ୟରେ ନିଶାନିବାରଣ ଚାଲୁଥିଲା, ସେତେବେଳେ କ୍ଲବ୍ ଭିତରେ ସବୁପ୍ରକାରର ଖାଲି ବିଲାତୀ ମାଲ ବୋହିବାରେ ଲାଗିଥିଲା—କେହି କେହି ବ୍ୟକ୍ତି ଏପରି କହୁଥିବାର ମଧ୍ୟ ଅନେକେ ନାୟର୍ ଶୁଣିଛନ୍ତି ।

ରାମଭଦ୍ରର ଲାଞ୍ଚ ନେବା ମକଦ୍ଦମାରେ ସାରା ସହର ସଚେତଅବା ଦୋହଲି ଯାଇଥିଲା । ସାକ୍ଷୀ, ପ୍ରମାଣ, ଗୁହା ସବୁ ତା ବିରୁଦ୍ଧରେ ଥିଲେ । ଚାରିଆଡ଼େ ଖବର ବ୍ୟାପି ଯାଇଥିଲା ଯେ ଇଏ ଏପରି ଗୋଟିଏ ମକଦ୍ଦମା, ଯେଉଁଥିରେ କି ଲକ୍ଷଲକ୍ଷ ଟଙ୍କା ଏପାଖସେପାଖ ହୋଇଯାଇଛି ଏବଂ ସେମାନଙ୍କୁ ସରଜମିନ୍ ଗିରଫ କରାଯାଇଛି । ତଳ ଅଦାଲତ, ଉପର ଅଦାଲତ, ସ୍ପେଶିଆଲ୍ ବେଞ୍ଚ···କେଜାଣି କେତେକ କେଉଁଠି ଯାଇ ସେହି ମକଦ୍ଦମା ଚାଲିଲା, କେତେକ ଗଣ୍ଡଗୋଳ ହେଲା । ଶେଷକୁ, 'ଯଥେଷ୍ଟ ସାକ୍ଷ୍ୟପ୍ରମାଣ ମିଳିଲାନାହିଁ' ବୋଲି କହି ଅଭିଯୁକ୍ତ ବ୍ୟକ୍ତିକୁ ବାଧ୍ୟତାମୂଳକ ପେନ୍‌ସନ୍ ଦେଇ କାର୍ଯ୍ୟରୁ ହଟାଇ ଦେବାକୁ ହିଁ ଆଦେଶ ହେଲା ଏବଂ ତା'ପରେ ସବୁ ମାମଲା ଶାନ୍ତ ହୋଇଗଲା । ଲୋକସାଧାରଣ ଏହି ଅପେକ୍ଷାଟି କରି ବୋକା ବନିବାରେ ଲାଗିଥିଲେ ଯେ ସରକାରଙ୍କୁ ଧୋକା ଦେଇଥିବା ଅପରାଧରେ ଦୋଷୀଙ୍କୁ ଅତକମ୍‌ରେ ପାଞ୍ଚବର୍ଷ ଜେଲ୍ ଭୋଗିବାକୁ ହିଁ ପଡ଼ିବ । ଏହି ଭୟରେ ଯେ, ଯଦି ଖୋଲଖୋଲି ନ୍ୟାୟବିଚାରରେ କୌଣସି ଅଭାବ ରହିଗଲା ବୋଲି କୁହାଯାଇ ତାହାକୁ ଅଦାଲତର ଅପମାନ ବୋଲି ବିଚାର କରାଯିବ, ଲୋକମାନେ ପରସ୍ପର ମଧ୍ୟରେ ଫୁସ୍‌ଫାସ୍ ମଧ୍ୟ ହେଲେ ଯେ ଅପରାଧୀ ରାମଭଦ୍ରନ୍ 'ଶିରଚ୍ଛେଦକାରୀ କ୍ଲବ୍'ର ଜଣେ ସଭ୍ୟ ଏବଂ ଏହି ମକଦ୍ଦମାର ବିଚାରକରି ରାୟଦେଇଥିବା

ବାସୁଦେବନ୍ ମନ୍ମଥନ୍ ମେନନ୍ ମଧ୍ୟ ସେହି କ୍ଲବ୍‌ର ଆଉ ଜଣେ ସଭ୍ୟ, ଏବଂ ସେହି କାରଣରୁ ହିଁ ରାମଭଦ୍ରନ୍ ଖସିଯାଇପାରିଲା । ପରସ୍ପର ମଧ୍ୟରେ ଅସଲ ରହସ୍ୟ ବିଷୟରେ ମତର ଆଦାନପ୍ରଦାନ କରି ଲୋକମାନେ ଏହିପରି ଭାବରେ ହିଁ ଆପଣା ମନର ଭାରଟିକୁ ହାଲୁକା କରି ନେଇଥା'ନ୍ତି । ଏହି କଥା'ଟି ପ୍ରକୃତରେ କେତେଦୂର ସତ୍ୟ,—ଏବିଷୟରେ ଅନନ୍ତନ୍ ନାୟର୍‌ଙ୍କ ମନ ଭିତରେ ଆଜିମଧ୍ୟ ଅତୁଆ ରହିଛି । ଶୁଣା ଯାଇଥାଏ ଯେ ରାମଭଦ୍ରନ୍ ତା'ପରେ କୌଣସି ଏକ ଅଜ୍ଞାତ ସ୍ଥାନକୁ ଯାଇ ସେଇଠି ସପରିବାର ରହିବାକୁ ଲାଗିଲା ଏବଂ ବର୍ତ୍ତମାନ ମଧ୍ୟ ବଡ଼ ଆରାମ ସହିତ ଅବସର-ଜୀବନ ଅତିବାହିତ କରୁଛି ।

"କଥା କ'ଣ ? ···ଆଜି ବହୁତ ଥକି ଯାଇଥିଲା ପରି ଦେଖା ଯାଉଛନ୍ତି··· । କଥା କ'ଣ···?" ଦୋକାନର ମାଲିକ ଭୈରବନ୍ ପିଲାଇ ଯେତେବେଳେ ମହାଦେବନ୍ ଆୟର୍‌ଙ୍କୁ ଏହି ପ୍ରଶ୍ନଟି ପଚାରିଲେ, ସେତେବେଳେ ଅନନ୍ତନ୍ ନାୟର୍‌ଙ୍କ ମନ ଭିତରେ ଚିନ୍ତାର କେତେକେତେ ଧାରା ଛୁଟିସିବାକୁ ଲାଗିଲା ।

"ଆରେ ଭୈରବନ୍ ପିଲାଇ, ତୁମେ ନବୁଝି ଏପରି ଗୋଟିଏ ପ୍ରଶ୍ନ କରୁଛ ନା ···ମୋ'ରି ମୁହଁରୁ ହିଁ ମୋର ଦୁଃଖକାହାଣୀକୁ ଶୁଣିବାଲାଗି ଇଚ୍ଛା କରୁଛ ?" "ଛି··· ଛି··· ଇଏ ପୁଣି ଆପଣ କିଭଳି କଥା କହୁଛନ୍ତି; କଥା କ'ଣ···ଟିକିଏ ପରିଷ୍କାର କରି କହନ୍ତୁ ନା ?"

ମାଲିକଙ୍କର କଣ୍ଠସ୍ୱରରୁ ଅପାର କୌତୂହଳ ପ୍ରକଟ ହେଉଥାଏ । କେତେ ସମୟ ପର୍ଯ୍ୟନ୍ତ ନୀରବତା ହିଁ ବିରାଜି ରହିଲା । ତା'ପରେ ମହାଦେବ ଆୟର୍ ଉଠି କରି ବାରଣ୍ଡାକୁ ଗଲେ ଏବଂ ସେଠାରେ ଠିଆ-ଠିଆ ମୁହଁରୁ ପାନ ବାହାର କରିପକାଇଲେ । ପିକ ତା'ପରେ ସୁରେଇରୁ ପାଣି ନେଇ କୁଳି କରି ଚଉକିରେ ଆସି ବସିଲେ । ତା'ପରେ ଧୀର ସ୍ୱରରେ କହିବାକୁ ଲାଗିଲେ, "ଗୀତା ଘରୁ କୁଆଡ଼େ ଚାଲି ଯାଇଥିଲା । କାଲି ଜଣେ ଖ୍ରୀଷ୍ଟିଆନ୍ ସାଙ୍ଗରେ ସିଭିଲ୍ ମ୍ୟାରେଜ୍ କରିନେଇଛି ।"

"କାହିଁକି ?"

ଅନନ୍ତନ୍‌ନାୟର୍‌ଙ୍କର ମନଟା ବି ଅକସ୍ମାତ୍ ଚମକି ଉଠି ଥରେ ଉଦ୍ରେକିତ ହୋଇଉଠିଲା, ପୁଣି ଶାନ୍ତ ହୋଇଗଲା । ମହାଦେବ ଆୟର୍‌ଙ୍କର ଝିଅ ଗୀତା ଏମ୍.ଏସ୍.ସି. ପାସ୍ କରି ଏଇଠି ଆପଣାର ବାପାଙ୍କ ପାଖରେ ରହି ପି. ଏଚ୍. ଡ଼ି. ସକାଶେ ଗବେଷଣା କରୁଛି—ଏକଥା ତାଙ୍କୁ ପୂର୍ବରୁ ଜଣାଥିଲା···ସେଇ ଗୀତା ?

"ଏକଥା କ'ଣ ପ୍ରକୃତରେ ସତ ?"

କିଛି ସମୟ ଲାଗି ଦୁହେଁ ଚୁପ୍ ରହିଲେ । ସେତେବେଳେ ସଡ଼କରେ ଦଉଡ଼ି ଚାଲି ଯାଉଥିବା ମଟରଗାଡ଼ି ଗୁଡ଼ିକର ହର୍ନ୍ ହିଁ କେବଳ ଶୁଣା ଯାଉଥିଲା ।

"ଆପଣ ଯାହା କହୁଛନ୍ତି, କ'ଣ ସତ କଥା ?"

"ଆରେ, ମୋ' ନିଜ ଝିଅ ବିଷୟରେ ମୁଁ କ'ଣ ଆଉ ମିଛ କହିବି ?"···

ପୁଣି ନୀରବତା

ଆପଣ ଥାନାକୁ ଯାଇ ରିପୋର୍ଟ୍ ଲେଖାଇ ଅସିନାହାନ୍ତି ? ମୋକଦ୍ଦମା ଦାୟର୍ କରିନାହାନ୍ତି ?"

ମହାଦେବନାୟକ୍ ଫିକା ହସଟିଏ ହସିଲେ ।

"ଆରେ, ତୁମେ କ'ଣ ଏକାଳର ମଣିଷ ନୁହଁ ନା କା'ଣ ? ଝିଅ କ'ଣ ନାବାଳକ ହୋଇଛି ଯେ ମୁଁ ଏସବୁ କରିବି ? ତା'ର ତ ସେଥିରେ ପୂର୍ଣ୍ଣ ସ୍ୱୀକୃତ ରହିଛି । ସିଏ ଆପଣାର ବିବାହ ଆପେ କରିନେଲା ବୋଲି କ'ଣ ଆମେ ଯାଇ ମଝିରେ ଠିଆ ହେବାକୁ ଯିବା ?"

"ପୁଅଟି କିଏ କହିଲେ ?"

"କହିଲି ନା ଜାଣ ଖ୍ରୀଷ୍ଟିଆନ୍ ଲୋକ,—ଗୀତାଙ୍କ କଲେଜରେ ହିଁ ଲେକ୍‌ଚରର୍, ତା'ଘର ହେଉଛି 'ବଲସ୍ପୁରୁରେ' । ନାଆଁଟା ମଧ୍ୟ ଗୋଟାଏ କ'ଣ ଲେଖି-ଥିଲି···

ହଁ,—ଆଡଲେସିଅସ୍ । ···"

"ହଁ, ସିଭିଲ୍‌ମ୍ୟାରେଜ୍ ପର୍ଯ୍ୟନ୍ତ କଥା ଗଲାଣି ତ ଆଗରୁ ଅବଶ୍ୟ ସମ୍ବନ୍ଧ ରହିଥିବ । ଆପଣ କିଛି ଜାଣି ପାରିଲେନାହିଁ ?"···

"ମୁଁ କେମିତି ଜାଣନ୍ତି । ଘରେ ତ ଦୁଇ ବୁଢ଼ାବୁଢ଼ୀ ପାଗଳ ଲୋକ । ମୋ' ନିଜ ସ୍ୱାସ୍ଥ୍ୟ ମଧ୍ୟ ଆଉ ଆଗପରି ମୋଟେ ଭଲ ରହୁନାହିଁ । ସେଇ ପୋନ୍ନମ୍ମା ଅଛି, ସେଇଥିଲାଗି ବଞ୍ଚି ରହିଛୁ । ଇଏ ଗୀତା ତ କଲେଜ, ଲାଇବ୍ରେରୀ, ଏଠି, ସେଠି, ବୁଲିବାରେ ଲାଗିଥାଏ ···ହିଁ— ସିଏ ଯେ ଏତେ ବାଟରେ ଯାଇ ପହଞ୍ଚିବ— କିଏ ସେକଥା ଭାବିଥିଲା ?"

"ତଥାପି, କାଲି ଏହି ଖବରଟି ପାଇବାରେ ଆପଣ କିଛି ହେଲେ କଲେ ନାହିଁ ?

"ସେ ସବୁ ଅନେକ କଥା । ପଅଣ୍ଟେଦନ ଢ଼ଙ୍ଗରେ, ସମସ୍ତେ ଶୋଇଗଲା ପରେ ସିଏ ଶାଢ଼ୀ, ଗହଣାପତ୍ର ସବୁକିଛି ସାଙ୍ଗରେ ନେଇ ଘରୁ ଚାଲିଗଲା । ସିଏ ଯେ ଶୋଇବାକୁ ଯାଇନାହିଁ, ଏକଥା ପୋଲିସ୍ମାନେ ହିଁ ସମସ୍ତଙ୍କ ଆଗରୁ ଜାଣି ପାରିଲେ । ସିଏ ମୋତେ ଆସି କହିଲା—ମୁଁ ଭାରି ଭୀତ ହୋଇପଡ଼ିଲି ଏବଂ ସଙ୍ଗେ ସଙ୍ଗେ ପୋଲିସ୍କୁ ଖବର ଦେଲି ଯେ ଶୀତା ଘରେ କୋଉଠି ନାହିଁ । ଶେଷରେ ପଚରା ଉଚରା କରିବାରେ ମୋତେ ସବୁ ଖବର ମିଳିଗଲା । ସେହି ଦୁଇଜଣଙ୍କୁ ପଅଣ୍ଟେଦନ ନିଜ ଘରେ ଜାଗାଦେଇ ସିଭିଲ୍ ମ୍ୟାରେଜ୍ କରାଇଥିବା ବ୍ୟକ୍ତି ପୁଣି ଆଉ କେହି ନୁହନ୍ତି, ସିଏ ହେଉଛନ୍ତି ଆମ ଏମ୍.- ଏଲ୍. ଏ. ମଧୁସୂଦନ୍ ନାୟର୍ ଏକଥା କଥା କ'ଣ ମିଛ ଯେ ମୁଖିଆ ଯଦି ଚୋରି କରି କିଛି ହେଲେ ଖାଇବାକୁ ଆରମ୍ଭ କରିବ, ତେବେ ଚାକର ସବୁଯାକ ନେଇ ପଳାଇବ । ଅନନ୍ତନ୍‌ନାୟର୍ ଚମକି ଉଠିଲେ ।

"କ'ଣ ହେଲା ?···ଆମ ଅନନ୍ତନ୍‌ନାୟର୍‌ର ଭାଇ ମଧୁସୂଦନନ୍···?" ତାଟକା ହୋଇ ଭୈରବନ୍ ପିଲାଇ ଏକଥା ଯେମିତି ପଚାରିଲେ, ସେତେବେଳେ ମହାଦେବ ଆୟର୍ ଥରେକରେ ଜବ ବ ଦେଇ କହିଲେ, "ହଁ ।"

"ହଇହେ ବାବୁ ଅନନ୍ତନ୍‌ନାୟର୍ ମହାଦେବ ଆୟର୍ ଯାହାସବୁ କହିଲେ, ସେକଥା ଶୁଣିଲ ତ ?"

ସେତେବେଳେ ମହାଦେବ ଆୟର୍ ଦୋକାନରେ ନଥିଲେ । ଅଳ୍ପ ସମୟ ପୂର୍ବେ ସିଏ ଦେଇଯାଇଥିବା ତାଲିକାଟି ଅନୁସାରେ ଜିନିଷପତ୍ର ବନ୍ଧାଗଲ ଓ ଡ୍ରାଇଭର୍ ସେ ସବୁକୁ ନେଇ ଗାଡ଼ିରେ ରଖିଦେଲ ତ ମହାଦେବ ଆୟର୍ ଦୀର୍ଘଶ୍ୱାସ ପକାଇ କହିଲେ, —"ଗୋଟିଏ ଝିଅ ଯାଇ ଆମେରିକାରେ ରହିଲା । ବ୍ରହ୍ମଦ୍ରନ୍ ଉପରେ ମଧ୍ୟ ବର୍ତ୍ତମାନ କୌଣସି ଭରସା ନାହିଁ । ସିଏ ମୋ' ଘୁଇରେ ଯଦି ନିଆଁ ଟିକିଏ ଦେବାକୁ ବି ଅସି ପହଞ୍ଚି ଯାଏ, ତେବେ ତାହାହିଁ କେଡ଼େ ବଡ଼ ଭାଗ୍ୟ ହେବ । ପତ୍ନୀ ଆଉ ବଡ ପୁଅ ବିଷୟରେ ତ କିଛି ନପଚାରିବା ହିଁ ଭଲ । ହୁଁ ! ମୁଁ ଭାବିଥିଲି, ଗୀତାର ବିବାହଟିକୁ ମୁଁ ଏହି ନଗର ଭିତରେ କୋଉଠି କରାଇଦେଇ ପାରିବି ତ ତାକୁ ମୁଁ ଆପଣାର ଘରେ ରଖିନେଇ ପାରିବି, ଯାହା ଫଳରେ କି ମୋ' ସାଙ୍ଗରେ ରହିବା ପାଇଁ ଜଣେ କେହି ଅବଶ୍ୟ ରହିବ । କିନ୍ତୁ ସେ କଥାଟି ମଧ୍ୟ ବର୍ତ୍ତମାନ ଏଭଳି ଅନ୍ୟପ୍ରକାର ହୋଇଗଲ । ପୁଣି ଏ ବୁଢ଼ା କାଳରେ ଅଦାଲତ ଆଉ କଚେରୀ ଏଠି ସେଠି ଧାଇଁ ବୁଲିବା ମୋ' ପକ୍ଷରେ ଆଉ ମୋଟେ ସମ୍ଭବ ହେଉନାହିଁ । ମାତ୍ର ମୁଁ ଗୀତାକୁ କହି ଦେଇଛି ଯେ ମୋ' ପିଣ୍ଡରେ ଯେପର୍ଯ୍ୟନ୍ତ ପ୍ରାଣ ରହିଛି, ସେପର୍ଯ୍ୟନ୍ତ ସିଏ ମୋ'ଘରେ କେବେହେଲେ ପାଦ ପକାଇବ ନାହିଁ ।" —କହି ମହାଦେବ ଆୟର୍ ସେଠୁ ଉଠି ବାହାରିଲେ ତ ଅନନ୍ତନ୍-ନାୟର୍‌ଙ୍କର ମନ ଭିତରେ ଭିତରେ ତାଙ୍କ ଲାଗି କଡ଼ କଡ଼ ହୋଇ ଉଠିଲା ।

"କିଓ ଅନନ୍ତନ୍‌ନାୟର୍, ତୁମ ଭାଇ ଯାହାସବୁ କରିଛନ୍ତି, ଶୁଣିଲ ତ ?"

ଭୈରବନ୍ ପିଲାଇ ଯେତେବେଳେ ଦ୍ୱିତୀୟ ଥର ପାଇଁ ସେହି ପ୍ରଶ୍ନଟିକୁ ପଚାରିଲେ, ସେତେବେଳେ ଅନନ୍ତନ୍‌ନାୟର୍ ଉପରକୁ ମୁଣ୍ଡ ଟେକିଲେ ।

"ଶୁଣିଲି ଆଜ୍ଞା । କିନ୍ତୁ ସେଥିଲାଗି ମୁଁ କ'ଣ କରିବି ?···" ସିଏ କେବଳ ଏତିକିମାତ୍ର ଉତ୍ତର ଦେଇ ପାରିଲେ ।

"ହଁ, ହଁ, ସତକଥା । ଆପଣ ଆଉ କ'ଣ କରିବେ । ହୁଁ ! କୌଣସି ବ୍ୟକ୍ତି ଏଭଳି ଅସି ଗୋଟିଏ ଝିଅକୁ ଘରୁ ଘୋଡ଼ କଢ଼ାଇ ନେଇଯିବ ଓ ତା' ସହିତ ସିଭିଲ୍ ମ୍ୟାରେଜ୍ କରିବ ତ ସେ ବିଷୟରେ କିଏ କପରି କ'ଣ ଜାଣିପାରିବ ?"

କଥାଟି ଅନନ୍ତନନ୍ଦନ ପୁରଙ୍କୁ ଆଘାତ ପର ମନେହେଲା । ଇଏ କ'ଣ ତାଙ୍କ ପରିବାର ବିଷୟରେ ସବୁ କିଛି ଜାଣିଛନ୍ତି ନା କ'ଣ ?

କେଜାଣି କାହିଁକି, ଅଳ୍ପସମୟ ପୂର୍ବରୁ ହେଡ଼୍ କନ୍‌ଷ୍ଟେବଲ୍ ବାସୁଦେବ ପିଲାଇଠାରୁ ସିଏ ଯେଉଁ କଥା ଶୁଣିଥିଲେ, ସେଇଟି ତାଙ୍କର ମନେ ପଡ଼ିଗଲା ।

ମାଧବୀ ମଧ୍ୟ କ'ଣ ଏଭଳି କାମ କରିବାକୁ ସାହସ କରିବ ? ଯଦି ପ୍ରକୃତରେ କରି ବସିବ, ତେବେ ?

ମହାଦେବ ଆୟର୍‌ଙ୍କୁ ସେଠାକୁ ଆସି ଯାଉଥିବାର ଦେଖି ସାମନା ଦୋକାନରେ ଥିବା ନାରାୟଣସ୍ୱାମୀ ରେଡ୍ଡିଆର୍‌ଙ୍କର ପୁତ୍ର ବିଜୟ ରଙ୍ଗନ୍ (ସିଏ ହେଉଛନ୍ତି ଜୁନିଅର୍ ଚ୍ୟାମ୍ବର ଅଫ୍ କମର୍ସ୍‌ର ସେକ୍ରେଟେରୀ) ଆସି ପହଞ୍ଚି ଗଲେ ଓ ପଚାରିବାକୁ ଲାଗିଲେ, "ଆପଣ ମଧ୍ୟ ଏଭଳି କଥା କହୁଛନ୍ତି ·· ? ସମସ୍ତେ ତ କହୁଛନ୍ତି ଯେ ଜାତିଭେଦର କାରଣ ଉଠିଯିବା ଉଚିତ୍, ଧର୍ମଗତ ଭେଦ ଉଠିଯିବା ଉଚିତ, ଏହିପରି ଏଇଟା ସେଇଟା କେତେ କ'ଣ କହୁଛନ୍ତି । ···ମାତ୍ର ଯଦି କେଉଁଠି ଏପରି ଗୋଟିଏ ଘଟଣା ଘଟିଯାଉଛି ତ ସମସ୍ତେ ଆସି ଏହିପରି ଭାବରେ ଗୁଡିରେ ହାତ ପିଟିବା ଆରମ୍ଭ କରି ଦେଉଛନ୍ତି, ଯତେ ଯେପରି ଯାହା ଆଦୌ ହେବାର ନଥିଲା, ତାହାହିଁ ପ୍ରକୃତରେ ଘଟିଯାଇଛି । ମୁଁ କେବଳ ଏତିକି ପଚାରୁଛି ଯେ ଏହି ବିବାହରେ କୋଉଠି କ'ଣ ମାରି ହୋଇଗଲା ବା ବିପଦ ଆସି ପହଞ୍ଚିଲା ?"

ଏକଥା ଶୁଣି ମାଲିକଙ୍କ ମନରେ ରାଗ ହୋଇଗଲା ।

"ହଁ, ହଁ, ତୁମେ ସବୁ ଏକଥା ଅବଶ୍ୟ କହିବ···ମାତ୍ର ତୁମର ବାପା କଦାପି ଏପରି କହିବେନାହିଁ, କାରଣ ତାଙ୍କଘରେ ବି ଝିଅଟିଏ ରହିଛି . ଅର୍ଥାତ୍ ତୁମର ଗୋଟିଏ ବୟସ୍ଥ ଭଉଣୀ ଅଛି । ଏତିକି ବୁଝିବା ଦରକାର । " ମାଲିକ ବଡ଼ ଅର୍ଥପୂର୍ଣ୍ଣ ଭାବରେ ଏକଥା କହିଲେ ।

ଏହି କଥା ଶୁଣି ବିଜୟ ରଙ୍ଗନ୍‌ର ମୁହଁ ଫିକା ପଡ଼ିଯିବ ବୋଲି ଭାବି ଅନନ୍ତନ୍ ନାୟର୍ ମୁହୂର୍ତ୍ତେକ ତାଙ୍କ ଆଡ଼କୁ ଅନାଇଲେ ।

"ମୋ'ର ବି ଭଉଣୀ ଅଛି ସେ କଥା ଠିକ୍··· । ଯଦି ସିଏ ନିଜର ଖୁସୀରେ କୌଣସି ଚମାର ଜାତିର ବ୍ୟକ୍ତି ସହିତ ବିବାହ କରିନିଏ, ତେବେ ମୁଁ ସେଥିରେ ଅନାବଶ୍ୟକ ଭାବରେ ଆସି ଆଦୌ କୌଣସି ଆପତ୍ତି ବା ହସ୍ତକ୍ଷେପ ଯେ କରିବନାହିଁ, ଆପଣ ଜାଣିରଖନ୍ତୁ, ଏପରି ଗୋଟିଏ ବିବାହ ହୋଇଗଲେ ଆକାଶ ଭାଙ୍ଗି ଆମଉପରେ କଦାପି ଭୁସୁଡ଼ି ପଡ଼ିବନାହିଁ ।"

ତାଙ୍କ ମୁହଁରୁ ଏପରି ଏକ ଉତ୍ତର ଶୁଣି ଅନନ୍ତନ୍ ନାୟର୍ ଅତ୍ୟନ୍ତ ବିସ୍ମିତ ହୋଇଗଲେ ।

"ହଁ, ହଁ, ତୁମେସବୁ ବର୍ତ୍ତମାନ ପିଲା ହୋଇଛ । ତେଣୁ ତୁମମାନଙ୍କ ମୁହଁରୁ ଏପରି ସାହସୋକ୍ତିମାନ ଅବଶ୍ୟ ବାହାରିବ । ଯଦି ପ୍ରକୃତରେ ସେହିପରି କୌଣସି ଘଟଣା ଘଟେ, ତେବେଯାଇ ସବୁକଥା ମାଲୁମ ହୋଇଯିବ । ସେତେବେଳେ ଦି' ଆଖିରୁ ରକ୍ତଲୁହ ବାହାରିବ··· ।" ଏତିକି କହି ଭୈରବନ୍ ପିଲଇ ସେହି ବିବାଦଟିକୁ ସମାପ୍ତ କରିଦେଲେ । କିଛିସମୟ ପରେ ଅନନ୍ତନ ନାୟର୍ ଗୃହ।ପିଇବେ ବୋଲି ବାହାରକୁ ଯିବାକୁ ବାହାରିଲେ ତ ବିଜୟରଙ୍ଗନ୍ ତାଙ୍କୁ ନିଜ ଦୋକାନକୁ ଡାକି କରି କହିଲେ, "ସମସ୍ତେ କହୁଛନ୍ତି ଯେ ଆଲୋସିଅସ୍ ଏବଂ ଗୀତା ଭିତରେ ଗତ ବେଶ୍ କେତେଦିନ ହେଲା ପ୍ରେମସମ୍ପର୍କ ରହିଥିଲା । କାଲି ତାରିଖରେ ସିଭିଲ୍ ମ୍ୟାରେଜ କରିପାରିବ! ସକାଶେ ସେମାନେ ମାସକ ଆଗରୁ ରେଜେଷ୍ଟ୍ରୀ ଅଫିସ୍‌କୁ ଯାଇଥିଲେ ଓ ନିଜନିଜର ନାମ ଖାତାରେ ଲେଖାଇ ଆସିଥିଲେ, ପ୍ରଥମରୁ ସ୍ଥିର ହୋଇଥିବା ଗୋଟିଏ ଯୋଜନା ଅନୁସାରେ ପଅରଦିନ ରାତିରେ ଗୀତା ଘରଛାଡ଼ି ଆସିଥିଲା । ହୋଟେଲ୍‌ରେ ରହିବାର ବ୍ୟବସ୍ଥା ବି ହୋଇଥିଲା, ମାତ୍ର ସେହିଦିନ ରାତିରେ ହିଁ ମହାଦେବ ଆୟର୍ ପୋଲିସ୍‌କୁ ଖବର ଦେଇ ଦେଇଥିଲେ । ତା'ଛଡ଼ା ଏଠାକାର ସାଧାରଣ ଲୋକେ ମଧ୍ୟ ମହାଦେବ ଆୟର୍‌ଙ୍କର ସମର୍ଥନ କରିବେ ବୋଲି ଜଣା ପଡ଼ୁଥିଲା । ଯିଏ ଯାହାକିଛି ହେଉ ପଛକେ ଆଲୋସିଅସ୍ ହେଉଚ୍ଛ ଖ୍ରୀଷ୍ଟିଆନ୍ ସମ୍ପ୍ରଦାୟର ଲୋକ । କୌଣସି ଖ୍ରୀଷ୍ଟିଆନ୍ ବ୍ୟକ୍ତି ଜଣେ ସବର୍ଣ୍ଣ ଘରର ଝିଅ ସହିତ କିପରି ବିବାହ କରି ପାରିବ ? ତେଣୁ ହୋଟେଲ୍‌ରେ ଭାରି ଗୋଳମାଳ ଆରମ୍ଭ ହୋଇଗଲା । ଆଉ କୌଣସି ରାସ୍ତା ହିଁ ନଥିଲା; ତେଣୁ ଆଲୋସିଅସ୍ ଓ ଗୀତା ଆପଣଙ୍କ ଭାଇ ମଧୁସୂଦନନ୍‌ଙ୍କ ଘରେ ଯାଇ ପହଞ୍ଚିଲେ । ଯିଏ ହେଉଛନ୍ତି ଏହି ସହରର ଏମ୍.ଏଲ୍.ଏ. । ତାଙ୍କର ମଧ୍ୟ ତ କିଛି କର୍ତ୍ତବ୍ୟ ରହିଛି ! ଏହା ବ୍ୟତୀତ, ଯିଏ ଯେ ନିର୍ବାଚନରେ ଜୟଲାଭ କରି ପାରିଲେ, ନିମ୍ନ ଜାତିର ଲୋକଙ୍କ ମଧ୍ୟରୁ ହଜାରେ ଭୋଟ ପାଇବା ମଧ୍ୟ ତାହାର ଏକ ମୁଖ୍ୟ କାରଣ ଥିଲା— ଆପଣଙ୍କୁ ଏକଥା ନିଶ୍ଚୟ ଜଣାଥିବ । ଆଉ ମୁଁ ଏବିଷୟରେ ଆଉ ଅଧିକ କ'ଣ କହିବି ? ଶେଷରେ ସେଦିନ ରାତିରେ ମିନିଷ୍ଟର୍ ପ୍ରରଯାଏ କଥା ଗଲା । ବିଚରା ମଧୁସୂଦନନ୍ ଅନେକ ଦଉଡ଼ଧାପଡ଼ କରି ପୁରା ମାମଲାଟିକୁ ଠିକ୍ କରିଦେଲା । କାଲି, ପ୍ରଥମରୁ ହିଁ ସ୍ଥିରୀକୃତ ଯୋଜନାଟି ଅନୁସାରେ ରେଜେଷ୍ଟ୍ରୀ ଅଫିସ୍‌ରେ ବିବାହ ମଧ୍ୟ ଲିପିବଦ୍ଧ ହୋଇଗଲା··· । ବର୍ତ୍ତମାନ ଗୀତା ସେଇଠି ଆଲୋସିଅସ୍ ସାଙ୍ଗରେ ତାଙ୍କର ଘରେ ହିଁ ଅଛି··· ।"

ଅନନ୍ତନ୍ ନାୟର୍ ଦୋକାନରେ ଆପଣା ଜାଗାଟିକୁ ଲେଉଟି ଆସିଲେ । କହିବାକୁ ହେବ ଯେ ଅନ୍ତତଃ କିଛିସମୟ ଲାଗି ସିଏ ଆପଣାର ସମସ୍ତ ଦୁଶ୍ଚିନ୍ତାକୁ ଏକା-ବେଳେକେ ଭୁଲି ଯାଇଥିଲେ ।

ସେ ଆଲେସିଅସ୍... ?

ହଁ, ମନେ ପଡ଼ିଲା ସିଏ କିଏ । ମଧୁସୂଦନନ୍ ନାୟର୍‌ର ନିର୍ବାଚନ-ପ୍ରଚାର ବେଳେ ଘର ଘରକୁ ଯାଇ ଭୋଟ୍ ମାଗିବା ଏବଂ ସାଧାରଣ ସଭାମାନଙ୍କରେ ସମସ୍ତଙ୍କର ଆଗରେ ରହି ଭାଷଣବର୍ଷା କରିବା ଆଦି ସବୁପ୍ରକାର କାମକୁ ସେହି ଟୋକା ଭାରି ଫୁର୍ତ୍ତି ସହିତ କରି ପାରୁଥିଲା ।

ବର୍ତ୍ତମାନ ଯାଇ ଅନନ୍ତନ୍ ନାୟର୍‌ଙ୍କର ସେସବୁ କଥା ମନେପଡ଼ିଲା । ଏତେ ଏତେ ଖ୍ୟାତି ପାଇବା ପୂର୍ବରୁ ମଧୁସୂଦନନ୍ ନାୟର୍ ତ କେବଳ ଜଣେ ସାଧାରଣ କର୍ମୀ ହୋଇ ରହିଥିଲା ।

ବଲିପତ୍ତୁର୍‌ରୈର ସମୁଦ୍ରଘାଟରେ କେଉଟ କୋଳିଆଙ୍କର ପଲ୍ଲି ମଝିରେ ଆଲେ-ସିଅସ୍‌ର ଜଣେ କୁଟୁମ୍ବ-ସମ୍ବନ୍ଧ ରହିଥିବା ଭଉଣୀର ଗୋଟିଏ ଭାରି ବଡ଼ ବଙ୍ଗଳା ଥିଲା । ସେହି ଝିଅଟିର ସ୍ୱାମୀ ସିଙ୍ଗାପୁର୍‌ରେ ବେପାର କରୁଥିଲା ଏବଂ ଦୁଇ ତିନୋଟି କାରଖାନାର ମାଲିକ ମଧ୍ୟ ଥିଲା । ସିଏ ବର୍ଷେ ଦୁଇବର୍ଷରେ ଥରେ ଅଧେ ଏଠାକୁ ମଧ୍ୟ ଆସି ଯାଉଥିଲା । ସମସ୍ତେ କହୁଥିଲେ ଯେ ସିଙ୍ଗାପୁରରେ ଗୋଟିଏ ଚୀନା ସ୍ତ୍ରୀ ତା'ପାଖରେ ରହୁଥିଲା । ଏସବୁ କେତେଦୂର ସତ, ସେକଥା କିଏ ଜାଣିଛି ? ଯେତେବେଳେ ସେହି ଝିଅଟିର ସ୍ୱାମୀ ଏଠାକୁ ଆସୁଥିଲା, ସେତେବେଳେ ମଧୁସୂଦନନ୍ ନାୟର୍ ମଧ୍ୟ ଘରର ଜଣେ ଲୋକ ପରି ସେଠାରେ ଯାଇ ରହୁଥିଲା । ଯେତେବେଳେ ତା'ର ସ୍ୱାମୀ ଏଠାରେ ରହୁନଥିଲା, ସେତେବେଳେ ସେହି ସମ୍ପର୍କରେ ଆହୁରି ଅଧିକ ନିକଟତା ବି ଆସିଗଲା ।...

ସିଏ ଶୁଣିଥିଲେ ଯେ ସେହି ଝିଅଟି ଦେଖିବାକୁ ହୃଷ୍ଟପୁଷ୍ଟ ଓ ଆକର୍ଷକ ବୋଧ ହେଉଥିଲା...

ଆଉ ଅଧିକ କ'ଣ କହିବା ? ଶେଷରେ ଅନେକ ଚେଷ୍ଟା କରି ଅନନ୍ତନ୍ ନାୟର୍ ମଧୁସୂଦନନ୍‌କୁ ସେହି ଝିଅର ଘରୁ ଯାଇ ନେଇଆସିଲେ । କିନ୍ତୁ ମଧୁସୂଦନନ୍ ଭାରି ଚତୁର । ସେହି ଝିଅ ବେଶ୍ କିଛି ଟଙ୍କା ଦେଇ ଅଶ୍ରୁପୂର୍ଣ୍ଣ ଲୋଚନରେ ତାକୁ ବିଦାୟ ଦେଇଥିଲା ।

ନିର୍ବାଚନ ସମୟରେ ଏହି ଆଲେସିଅସ୍ ଓ ସେହି ଝିଅଟି ଘର ଘର ଯାଇ ମଧୁସୂଦନନ୍ ପାଇଁ ଭୋଟ୍ ମାଗିଥିଲେ । ବଲିପତ୍ତୁରୈ ପାଟର ହଜାର ହଜାର ଲୋକଙ୍କର ଭୋଟ୍ ମିଳି ପାରିବାରୁ ହିଁ ଖୁବ୍ ପ୍ରତିଯୋଗିତା ସତ୍ତ୍ୱେ ମଧୁସୂଦନନ୍ ନାୟର୍ ଭୋଟ୍‌ରେ ବଡ଼ ସହଜରେ ଜିତିଗଲା । ଏକଥା ସମସ୍ତଙ୍କୁ ଜଣାଅଛି... ।

ଅନନ୍ତନ୍ ନାୟର୍‌ଙ୍କର ମନରେ କୁହୁଡ଼ି ପରି କେଜାଣି କେତେକେତେ କଥା ଉଦ୍‌ଭୂତ ହୋଇ ଆସିଲା...

ସେହି ଝିଅଟି ବୟସ୍କରେ ସିଏ ଆଉ କ ଅଭିଯୋଗ କରିବେ··· ?

ସେହି ଝିଅ ଆଉ କାତ୍ୟାୟିନୀ ମଧ୍ୟରେ ଫରକ ବା ଆଉ କ'ଣ ଅଛି··· ?

ଏହି ପ୍ରକାରର କେତେ ଅଡୁଆରେ ଭର୍ତ୍ତି ହୋଇ ରହିଥିବା ନାନା ପ୍ରଶ୍ନର ତରଙ୍ଗ ଲହରୀ··· ।

ଯେତେବେଳେ ଜୀବନରେ ଗାଡ଼ିଟି ଲାଇନ୍ ଉପରୁ ଖସିପଡ଼େ, ସେତେବେଳେ ଏହିଭଳି ଦୁଃଖ ଓ ଆରମ୍ଭକାଳୀନ ନାନା ଦୁର୍ଘଟଣା ଯେ ନିଶ୍ଚୟ ହେବ, ସେଥିରେ ଆଉ କ ସନ୍ଦେହ ଅଛି ? ବୁଦ୍ଧି ଆସି କହେ ଯେ ମଣିଷକୁ ସେସବୁ ଭୋଗିବାକୁ ହିଁ ପଡ଼ିବ, ତଥାପି ହୃଦୟ ସେସବୁକୁ ଆଦୌ ସ୍ୱୀକାର କରେ ନାହିଁ ଏବଂ ଉତ୍ପୀଡ଼ିତ ହୋଇଉଠେ । କାହିଁକି··· ?

ତାଙ୍କ ଜୀବନରେ କେତେ କେତେ ମହାସଙ୍କଟର ପରିସ୍ଥିତି ଦିନ ପରେ ଦିନ ଗୋଟିକପରେ ଗୋଟିଏ କରି ଉତ୍ପନ୍ନ ନହୋଇଛି । ଗାଡ଼ିରେ ଯୋଚି ହୋଇଥିବା ବଳଦକୁ ପାଞ୍ଚଣର ପାହାର ଖାଇ ମରିବାକୁ ହିଁ ପଡ଼ିବା—ଏହି ଯେଉଁ ପ୍ରବାଦଟିକୁ ତାଙ୍କ ପିତାମାତା ଅନେକ ସମୟରେ ଶୁଣାଉଥିଲେ, ଅନନ୍ତନ୍ ନାୟରଙ୍କର ସେଇଟି ମନେ ପଡ଼ିଗଲା । ମାତ୍ର ଗାଡ଼ିରେ ଯୋଚିହେବା ବ୍ୟତୀତ ଆଉ ଅନ୍ୟ ଗତି ବା କ'ଣ ରହିଥିଲା ? ଗାଡ଼ିରେ ଯୋଚିହେବାଟା କ'ଣ ପ୍ରକୃତରେ ଏତେ ସହଜରେ ହୋଇଯାଏ ? ଦର୍ଶନର କଥା କହିବା ତ ଖୁବ ସହଜ .. । କାତ୍ୟାୟିନୀ ବୟସ୍କରେ ପଛେ କହିବା, ମାଧବୀର କଥା ଖୁବ୍ ବର୍ତ୍ତମାନ ଡର ମାଡ଼ିବାକୁ ଆରମ୍ଭ କଲାଣି । ହେଡ୍ କନ୍‌ଷ୍ଟେବଲ୍ ଯାହା କହିଲା, ସେକଥା କ'ଣ ସତ ? ଯେତେବେଳେ ଏହିସବୁ ଘଟଣାରୁ ନିଜ ଉପରେ ବୋଝ ବାଟ ଗ୍ରହିବାକୁ ପଡ଼େ, ସେତେବେଳେ ହେଉଥିରୁ ହିଁ ତ ଦୁଃଖ ଆସି ଉପସ୍ଥିତ ହୁଏ । ମୁଣ୍ଡବ୍ୟଥା ଆଉ ଜ୍ୱର ସିଏ ଭୋଗେ, ସେଇ ସିନା ତା'ର କଷ୍ଟକୁ ଜାଣିପାରେ... ।

ହେ ରାମନ୍ ପିଲାଇ... । କାଲି ଇନ୍‌କମ୍ ଟ୍ୟାକ୍‌ସର ହିସାବ ଦେବାକୁ ପଡ଼ିବ ।... ହିସାବସବୁ ଠିକ୍ କରି ରଖିଥାଅ । "ମାଲିକ ଭୈରବନ୍ ପିଲାଇ ସେହି ଦୋକାନରେ କାମ କରୁଥିବା ଆଉଜଣେ କର୍ମଚାରୀଙ୍କୁ ଉଦ୍ଦେଶ୍ୟ କରି ଏକଥା କହିଲେ ଏବଂ ତା'ପରେ ପୁଣି ଅନନ୍ତନ୍ ନାୟରଙ୍କୁ କହିଲେ, "ଅନନ୍ତନ୍ ନାୟର, ସବୁକିଛି ଠିକ୍ କରି ତୁମେ ହିଁ ଏହାକୁ ଇନ୍‌କମ୍ ଟ୍ୟାକ୍‌ସ ଅଫିସକୁ ନେଇଯିବ । "ଏତକ ଶୁଣିବାପରେ ଯାଇ ଅନନ୍ତନ୍ ନାୟରଙ୍କର ଏଆଡ଼କୁ ଚେତା ଆସିଲା ।

"ହଁ, ଆଜ୍ଞା !"......

ଟିଫିନ୍ ଖୋଲିବା ମାତ୍ରକେ ସେଥିରୁ ଦହିବଡ଼ା, ତରକାରି ଆଉ କ୍ଷୀରର ବାସନା ଘୁରିଆଡ଼ୁ ଖେଦିଗଲା । ତାଙ୍କର ଜଳ୍ପଦନକିଟି ଖୁଡ଼ୀ ଆଉଦୌ ହାଲୁକା ଭାବରେ ଛାଡ଼ି ଦେଇନାହାନ୍ତି ।

ପ୍ରତିଦିନର ସେହି ଗହମରୁଟିଆଣ ଖାଇବାରୁ ଅନ୍ତତଃ ଆଜି ଗୋଟାଏ ଦିନ ତ ମାଧବୀ ତାଙ୍କୁ ଛୁଟି ଦେଇ ପାରିଥାନ୍ତା ! ସାତ ଆଠ ବର୍ଷ ତଳେ ଯେତେବେଳେ ତାଙ୍କର ତଣ୍ଟି ଶୁଖିଶୁଖି ଗଲା, ଭାରି ଶୋଷ ଲାଗିଲା ଓ ପେଟରେ ଭାରି ପରିାସ ଲାଗିଲା, ଏହିସବୁ ରୋଗ ଲକ୍ଷଣ ଦେଖି ଓ ମାଧବୀ ଦ୍ୱାରା ବାଧ ହୋଇ ସିଏ କେଶବନ୍ ନାୟର୍ ଡାକ୍ତର ପାଖକୁ ଯାଇ ଦେହପରୀକ୍ଷା କରିଥିଲେ ଏବଂ ସେତେବେଳେ ଡାକ୍ତର ତାଙ୍କୁ କହିଥିଲେ, 'ସୁଗାର୍ ତିନ ପର୍ସେଣ୍ଟ୍ ହୋଇ ଗଲାଣି—ଏଣିକି ସାବଧାନ ହୋଇ ରହିବ··· । ଭାତ ଖାଇବା କମ୍ କରିଦେବ । ପ୍ରତିଦିନ ଇନସୁଲିନ୍ ଇଞ୍ଜେକ୍ସନ୍ ନେବ । ଟି. ବି. ଆଉ ଡାଇବେଟିସ ମଧ୍ୟରେ ଭାରି ଘନିଷ୍ଠ ସମ୍ବନ୍ଧ ରହିଛି ... । ବର୍ତ୍ତମାନ ତ ଇନ୍‌ସୁଲିନ୍ ବନ୍ଦ ହୋଇ ଯାଇଛି... । ମାଧବୀ ମଧ୍ୟ ତାଙ୍କୁ ବାଧ କରି କରି ବଡ଼ ହରକତରେ ଆଣି ପକାଇଲା । ସିଏ ବାର ଜୀବନଟା ଯଦି କାହିଁକି ଆଗରୁ ବି ଚାଲିଯାଇ ପାରିବ, ତେବେ ତଦ୍ଦ୍ୱାରା ନିଷ୍କୃତି ହିଁ ମିଳିବ... । କିନ୍ତୁ ଅଟାରୁଟିଆଣ ଜିନିଷ ଖାଇବାଲାଗି ମନା କରିବା ଆଉ କୌଣସି ପ୍ରକାରେ ସମ୍ଭବ ହେଲାନାହିଁ ।

ଖାଇବା ସମୟରେ ଅନନ୍ତନ୍ ନାୟରଙ୍କୁ ଈଷତ୍ ହସ ବି ମାଡ଼ିଲା । ହିଁ, ଏଠି ମୁଁ ଲାଭ ଆଉ କ୍ଷତିର କ'ଣସବୁ ହିସାବ ଆଉ ସଂଖ୍ୟାଗୁଡ଼ାକୁ ଲେଖିବାରେ ଲାଗିଛି, ସେ କଥା ମୁଁ ନିଜେ ମଧ୍ୟ ଜାଣିନାହିଁ । କିନ୍ତୁ ମୋ' ଜୀବନରେ ଏହିପରି ପଚିଶଟା ବରଷ କଟିଗଲା... । ଏଥିରେ ଲାଭ କ'ଣ ହେଲା, କ୍ଷତି ବା କ'ଣ ହେଲା; ଗୋଟାଏ ବାଲାନ୍ସ ଶୀଟ୍ ତିଆରି କଲେ ସେଥିରୁ ବଳକା ପ୍ରକୃତରେ କେତେ ବାହାରିବ ?

କାହା କଥା ଚିନ୍ତା କରି ସେ ଆଶ୍ୱସ୍ତ ହେବେ ?

ବାପା...

ମାଆ...

ପିଉସୀ...

ଭଉଣୀ ଓ ଭାଇ...

ସ୍ତ୍ରୀ ଆଉ ପିଲାମାନେ...

ପୂର୍ବେ ତାଙ୍କୁ ଅନ୍ନ ଯୋଗାଇ ଦେଉଥିବା ମହାରାଜା ଓ ବର୍ତ୍ତମାନ ରୁଟି ଯୋଗାଇ ଦେଉଥିବା ଭୈରବନ୍ ପିଲ୍ଲଇ...

ଶତ୍ରୁ ଆଉ ମିତ୍ର...

ସମସ୍ତଙ୍କୁ ଜାଣିଲେ, ପୁଣି ସମସ୍ତଙ୍କୁ ଭୁଲିଗଲେ । ବର୍ତ୍ତମାନ ଜାଣୁଥିବା ଲୋକମାନେ...

ଏହିପରି ଭାବରେ ଅନନ୍ତନ୍ ନାୟରଙ୍କର ଚିନ୍ତନ—ବୃତ୍ତଟି ବଢ଼ି ବଢ଼ି ପୁଣି ଗୋଟିଏ ବିନ୍ଦୁରେ ସଂକେନ୍ଦ୍ରିତ ହୋଇ ରହିଗଲା···

ସେହିବିନ୍ଦୁଟି...

"ଅନନ୍ତନ୍ ନାୟର ! ..କ'ଣ ଖାଇ ବସିଛ କି... ?'

ଚଉକୀ ପାଖରେ ବସିଥିବା ମାଲିକଙ୍କର ଦ୍ୱିତୀୟ ପୁଅ ସୁବ୍ରହ୍ମଣ୍ୟମ୍ ପିଲଇ ତାଙ୍କୁ ପ୍ରଶ୍ନ କରୁଥିଲା ।

"ହଁ, ମୁଁ ସାଙ୍ଗେ ସାଙ୍ଗେ ଆସୁଛି !" କହି ଅନନ୍ତନ୍ ନାୟର୍ ତରତର ହୋଇ ଖାଇବାତକ ଗିଳିଦେଇ ପରି ଶେଷ କରିଦେବାକୁ ଚେଷ୍ଟା କଲେ । ।

ମାଲିକ ଖାଇବା ସକାଶେ ଘରକୁ ଚାଲି ଯାଇଛନ୍ତି । ଖାଇସାରି ସିଏ ପୁଣି ଯାଇ ଚାରିଟା ବେଳକୁ ଦୋକାନକୁ ଆସିବେ । ସେତେବେଳଯାଏ ସୁବ୍ରହ୍ମଣ୍ୟମ୍ ପିଲାଇ ଦୋକାନରେ ରହିବ ।

ଏଇ ସୁବ୍ରହ୍ମଣ୍ୟମ୍ ପିଲଇର ବୟସ ପ୍ରଭାକରନ୍ ର ବୟସର ହିଁ ସମାନ ହେବ । ତା' ସହିତ ଇଏ ବି ହାଇସ୍କୁଲ ପରୀକ୍ଷା ପର୍ଯ୍ୟନ୍ତ ଓ୍ୱିନ୍ନିସ୍କୁର୍‌ରେ ଥିବା ଶ୍ରୀ ଭରଣି ମହାରାଜା ସ୍କୁଲରେ ପଢୁଥିଲା । ପଢ଼ିବା ସମୟରେ ଦୁହେଁ ଯାକ ଭାରି ସାଙ୍ଗ ହୋଇ-ଥିଲେ, ମାତ୍ର ଯେଉଁ ଦିନଠାରୁ ପ୍ରଭାକରନ୍ ନାୟରକୁ କୁଲିଲ୍ଲୁରରେ ଥିବା ଇଞ୍ଜିନିଅରିଙ୍ଗ୍ କଲେଜରେ ସ୍ଥାନ ମିଳିଲା ଓ ସିଏ ସେଠାରେ ନାମ ଲେଖାଇଲା, ସେହିଦିନ ଠାରୁ ଇଏ ତା'ପାଖରେ ଆପଣାର ପରିଚୟଟିକୁ ବି ଆଉ ପ୍ରକାଶ କରିବାକୁ ଇଚ୍ଛା କରୁନାହିଁ । ଅନନ୍ତନ ନାୟରଙ୍କର ମନେ ପଡ଼ିଲା—ପ୍ରଭାକରନ ନାୟର୍ ଥରେ ଦ'ଥର ତାଙ୍କୁ ଏକଥା ମଧ୍ୟ କହିଥିଲା ଯେ ଯେତେବେଳେ ସେ ତା'ସହିତ ସ୍ୱୟଂ ଯାଇ ଦେଖା କରିବାକୁ ଇଚ୍ଛା କରିଥିଲା, ସେତେବେଳେ ଇଏ କୌଣସି ଜବାବ ନ ଦେଇ ଚୁପ୍ ହୋଇ ଚାଲିଗଲା ।

ହୁଁ···ଈର୍ଷା ଆଉ ନିର୍ବୋଧତା – ଏଗୁଡ଼ିକ ଲାଗି ଆଉ କି ଔଷଧ ଅଛି !" ଏହି ପ୍ରବାଦଟି ତାଙ୍କର ମନଭିତରେ ଗୁଞ୍ଜିତ ହୋଇ ଉଠିଲା ।

ବର୍ତ୍ତମାନ .. ! ଇଞ୍ଜିନିଅରଙ୍କ ପାସ୍ କରିବାର ଉନିବର୍ଷ ହୋଇଗଲା— ପ୍ରଭାକରନ୍ ତ ଗୋଟାସୁଦ୍ଧା ନିହାଲ୍ କରି ରଖିଦେଲା ·· । ହଠାତ୍, ଆଜି ସକାଳେ ହୋଇଥିବା ପ୍ରଭାକରନ୍ ଓ ମାଧବୀ ମଧ୍ୟରେ ବିବାଦଟି ତାଙ୍କର ମନେ ପଡ଼ିଗଲା ଓ ତାଙ୍କର ମନଟାକୁ କିଏ ଯେପରି କଚୁରି ଦେବାକୁ ଲାଗିଲା ।

ହାତ ଧୋଇ କାନରେ ପଡ଼ିଥିବା ଗାମୁଛାରେ ପୋଛୁ ଯେତେବେଳେ ସେ ବାହାରକୁ ଆସିଲେ , ସେତେବେଳେ ଦେଖିଲେ ଯେ ସୁବ୍ରହ୍ମଣ୍ୟମ୍ ପିଲାଇ ପାଖରେ କିଏ ଆଉଜଣେ ବ୍ୟକ୍ତି ବି ବସିଛି ।

ସୁବ୍ରହ୍ମଣ୍ୟମ୍ ପିଲାଇ ଅନନ୍ତନ ନାୟର୍‌ଙ୍କୁ ଆପଣାର ପାଖକୁ ଡାକି ଆସ୍ତେ ଆସ୍ତେ, ଯେପରିକି ଆଉ କେହି ଶୁଣି ନପାରିବେ, କହିଲା, "ଶୁଣନ୍ତୁ ! ତହସିଲଦାର, ଫୁଡ଼୍ ଇନସ୍‌ପେକ୍ଟର ପ୍ରଭୃତି କେତେକଣ ଅଫିସର ବର୍ତ୍ତମାନ ଅଧଘଣ୍ଟା ଭିତରେ ଆମ ଫ୍ୟାକ୍ଟରୀକୁ ତଦାରଖ କରିବାକୁ ଆସିବେ । କେହି ଆମ ନାଆଁରେ ଯାଇ ଅଭିଯୋଗ କରିଛି··· । ବାପା ଏଇ ବର୍ତ୍ତମାନ ମୋତେ ଘରୁ ଟେଲିଫୋନ କରି କହିଲେ । ଆପଣ ସଙ୍ଗେ ସଙ୍ଗେ ଫ୍ୟାକ୍ଟରୀକୁ ଯାଆନ୍ତୁ ଓ ପଚିଶିବସ୍ତା ଚିନିକୁ ଚୁଲୀରେ ଚଢ଼ାଇ ଦେବାକୁ କହନ୍ତୁ । ବର୍ତ୍ତମାନ ଏଠି ଦୋକାନରେ କେହି ନାହାନ୍ତି । ବାପା ତ ଆଉଟିକିଏ ପରେ ଆସି ପହଞ୍ଚିବେ । ସିଏ ଆସିଗଲେ ମୁଁ ବି ସଙ୍ଗେ ସଙ୍ଗେ ସେଠାକୁ ଯାଉଛି । ବର୍ତ୍ତମାନ ଆପଣ ଯାଆନ୍ତୁ···

ଦୋକାନକୁ ଲାଗି ପଛପଟକୁ ଯେଉଁ ଚକୋଲେଟ୍ ଫ୍ୟାକ୍ଟରୀ ଥିଲା, ସେଇଟି ମଧ୍ୟ ସେହିମାନଙ୍କର ଥିଲା । ଚିନିର କଣ୍ଟ୍ରୋଲ୍ ହୋଇଯିବା ପରେ ମଧ୍ୟ ବଡ ବଡ଼ ଥାନରୁ ସୁପାରିଶ୍ ଆଣିବା ଫଳରେ ଚକୋଲେଟ୍ ତିଆରି କରିବା ସକାଶେ ତାଙ୍କୁ ଉନିଶହ ବସ୍ତା ଚିନି—କଣ୍ଟ୍ରୋଲ୍ ଦରରେ ମିଳିବାର କୋଟା ଉପଲବ୍‌ଧ ହୋଇ ଯାଇଥିଲା ।

"ଚକୋଲେଟ୍—ଫକୋଲେଟ୍ କିଛୁ ତିଆରି ନକରି ମଧ୍ୟ ତୋ' ବାପ ପଚିଶି ବସ୍ତା ଖାଲି ବିକିଦେବ ତ ବଡ଼ ସହଜରେ ହଜାରଟଙ୍କା ତା'ର ସିନ୍ଦୁକ ଭିତରକୁ ସେମିତି ଆସିଯିବ···।" ଏହିପରି ଭାବି ଅନନ୍ତନ୍ ନାୟର୍ ଦଉଡ଼ି କରି ଫ୍ୟାକ୍ଟରୀରେ ଯାଇ ପହଞ୍ଚିଲେ ଏବଂ ମାଲିକଙ୍କର ଦୁଇଟିଯାକ ଆଦେଶକୁ ସେଠି କର୍ମଚାରୀ ମାନଙ୍କୁ ଶୁଣାଇଦେଲେ ।

ବାତାବରଣରେ ଭାରି ଉତ୍ତେଜନା ଖେଳିଗଲା ।

କେତେ ସମୟ ପରେ ଅଫିସର୍‌ମାନଙ୍କର ଗୋଟାଏ ଦଳ ଆସି ଧଡ଼ପଡ଼ ପହଞ୍ଚିଗଲେ ଓ ସେମାନଙ୍କ ସହିତ ଇଏତ୍ ହାସ୍ୟ ହସି ସ୍ୱୟଂ ମାଲିକ ମଧ୍ୟ ଆସୁଥିଲେ ।

"ସାର୍ ।...ଠିକ୍ ଠିକ୍ ଗଣି କରି ଦେଖି ନିଅନ୍ତୁ । ଏଠି ପରିଶବସ୍ତା ଚିନି ଚୁଲ୍ଲୀ ଉପରେ ଫୁଟୁଛି । ଏହା ପୁଣି ଏପରି ଚିନି ଯେ ଯଦି ଏହାକୁ ପାଣିରେ ବତୁରାଇ ବାହାର ନ କରିବ, ତେବେ ମୋଟେ ଠିକ୍ କାମ ଦେବନାହିଁ । ଏଠାରେ ଆଉ ପରିଶବସ୍ତାକୁ ପାଣିରେ ବତୁରାଇ ରଖାଯାଇଛି । ବାକି ଯାହା ମହଜୁଦ ଅଛି ଆପଣମାନେ ଗଣି ନିଅନ୍ତୁ...ଦୁଇଶହ ବସ୍ତାରୁ...।

ସବୁ କରେକ୍ଟ୍...। ଡ୍ରିଙ୍କ୍ସ୍, ମିଠେଇ ଓ ସିଗାରେଟ ଆସି ପହଞ୍ଚିଲା ।

ଆଖପାଖରେ ଥିବା ଦୋକାନର ଲୋକେ ଫ୍ୟାକ୍ଟରୀରେ କ'ଣ ସବୁ ହେଉଛି ଦେଖିବାଲାଗି ରୁଣ୍ଡ ହୋଇ ଯାଇଥିଲେ ।

"ଭେରି ସରି । ଆପଣ ସବୁ ବିଲକୁଲ୍ ଠିକ୍ ଠିକ୍ ହିସାବ ରଖିଛନ୍ତି, ତେବେ ବି ଲୋକମାନେ ଯାଇ ଅଭିଯୋଗ କରୁଥିଲେ । କଥା କ'ଣ ମିଷ୍ଟର୍ ଭୈରବନ୍ ପିଲ୍ଲଇ...। ଆଖପାଖରେ ଥିବା ଦୋକାନଦାର ମାନଙ୍କ ଭିତରୁ କେହି ଆପଣଙ୍କର ଶତ୍ରୁ ଅଛନ୍ତି ନା କ'ଣ ?"—ତହସିଲଦାର ଏହି ପ୍ରଶ୍ନଟି ପଚାରିଲେ ।

ମାଲିକ ଦୁଗ୍ଧପରି ହସଟିଏ ହସି କହିଲେ," ଆଜ୍ଞା ।... ଯାହା ପିଠିରେ କୁଜ ଅଛି, ସିଏ ପୁଣି ନଇଁବାକୁ ଡରିବ କାହିଁକି ? ବ୍ୟବସାୟରେ ଲୋକସାନ ହେଲେ ମଧ୍ୟ ମୁଁ କୌଣସି ଚିନ୍ତା କରିବ ନାହିଁ । ମାତ୍ର କାରବାର ଠିକ୍ ରହିଥିବା ଦରକାର । ଭଗବାନଙ୍କ କୃପାରୁ ମୁଁ ଆଜିଯାଏ ସେତିକି କଥାକୁ ରକ୍ଷା କରି ଆସିଛି । ହଁ, ଶତ୍ରୁମାନେ ବି ତ ଆପଣାର କାମ କରୁଛନ୍ତି ।...ସାର୍, ଆଜିକାଲି ସମସ୍ତ ଯେପରି ହୋଇଛି, ଆପଣ କହିଲେ ଭଲଲୋକ ମାନଙ୍କର କେଉଁଠି ଭଲ ବିବେଚ ନ ହେଉଛି...? ଯେକୌଣସି କ୍ଷେତ୍ର ହେଉ ପଛକେ, ଯଦି ସେଠାରେ କାହାର କିଛି ଉନ୍ନତି ହେଲା, ତେବେ ସେକଥା ଦେଖି ପୁରୁଣା ଧୂରନ୍ଧରମାନଙ୍କର ମୁଣ୍ଡ ବୁଲିଇ ଯାଉଛି । ସେମାନେ ସତେଯେପରି କେତେ ଭଲଲୋକ ହୋଇ ଆସୁଛନ୍ତି ଓ ପଛରୁ ଥାଇ ଅଣ୍ଟି କାଟୁଛନ୍ତି । ସିଏ ଏହିଭଳି ଲୋକଙ୍କୁ ଭସ୍ମ କରିବାରେ ଲାଗିଥିବ, ତେବେ ସିଏ ଆଉ କିପରି ବଞ୍ଚିରହି ପାରିବ ଆଜ୍ଞା...?"

"ଆପଣଙ୍କର କହିବା ବିଲକୁଲ୍ କରେକ୍ଟ୍ ।"

ମାଲିକ ତଥାପି ଛାଡିଲେନାହିଁ । ଆହୁରି ଜୋର୍ ଦେଇ କହିଲେ, "ଛୁଙ୍କିଲେ ଯୋଉଠି ନାକଟା ହିଁ ଛିଣ୍ଡି ପଳାଏ, ଆମର ସେପରି ନାକ ଦରକାର ନାହିଁ, ଆଜ୍ଞା...।" ସମସ୍ତେ ଦୋକାନକୁ ଆସିଲେ । ସେମାନଙ୍କ ସହିତ ଅନନ୍ତନ୍ ନାୟର୍ ବି ଆସିଲେ ।

"ଇଏସବୁ କାହାର କାମ ହୋଇଥିବ, ସେକଥା ମୋତେ ଜଣାଅଛି ଆଜ୍ଞା । ଏଠୁ ଦୁଇଟା ଦୋକାନ ଛାଡ଼ି, ତୃତୀୟ ଦୋକାନରେ ଚୋଉ ସେମସ୍ତ ପିଲ୍ଲଇ ଅଛନ୍ତି ନା !

ତାଙ୍କୁ ଆପଣ ଜାଣିଛନ୍ତି ? ହଁ, ସିଏ ମଧ୍ୟ ଆପଣା ଜାତିର । ଇଏ ସବୁ ତାଙ୍କର କର୍ମମତି ଆଜ୍ଞା । ଗତ ମାସରେ ତାଙ୍କର ନୂଆ ଫ୍ୟାକ୍ଟରିଟିର ଉଦ୍ଘାଟନ ହେବାରେ ଜଣା ପଡ଼ିଲା ଯେ ତାଙ୍କୁ କୋଟାରେ ଯେଉଁ ପରିମାଣ ବସ୍ତ୍ର ଟଙ୍କା ମିଳିଥିଲା, ତାହା କଳା ବଜାରରେ ବାହାରକୁ ଚାଲି ଯାଇଥିଲା । ଆପଣମାନେ ହିଁ ଜାଣିପାରି ତାଙ୍କୁ ସର୍ଜ୍ କରିଥିଲେ, ଆପଣଙ୍କର ମନେଥିବ । ସିଏ ବୁଝିଲେ ଯେ ମୁଁହିଁ ହେଉଛି ତା'ର କାରଣ । ମାତ୍ର ଆମର ଏଠାରେ ସେପରି ଗୋଳମାଳିଆ କାମ କେବେହେଲେ ହୁଏ ନାହିଁ ଆଜ୍ଞା ।" – ମାଲିକ କହିଲେ । ଭୁଣ୍ଡ ହୋଇଥିବା ଲୋକମାନେ ଚାଲିଗଲେ, ଅଳ୍ପ ସମୟ ପରେ ବାତାବରଣ ପୂର୍ବପରି ହିଁ ହୋଇଗଲା । ବର୍ତ୍ତମାନ ଦୋକାନରେ ମଧ୍ୟ ସାଧାରଣ କାରବାର ହିଁ ଥିଲା । ମଝିରେ ମଝିରେ ପାଖରେ ଥିବା ଦୋକାନରୁ ଧ୍ୱନିମାନ ଶୁଣା ଯାଉଥିଲା ।

ଟେଲିଫୋନ୍ ଟିଣ୍ ଟିଣ୍ ବାଜି ଉଠିଲା ।

କିଛିସମୟ ଲାଗି ମାଲିକ ଟେଲିଫୋନ୍‌ରେ କ'ଣ ସବୁ କଥାବାର୍ତ୍ତା କଲେ । ତା'ପରେ ଅନନ୍ତନ୍ ନାୟର୍‌ଙ୍କ ଆଡ଼କୁ ଅନାଇ କହିଲେ, "ବାବୁ ଅନନ୍ତନ୍ ନାୟର୍ ! କାଲି ଇନ୍‌କମ୍ ଟ୍ୟାକ୍ସର ହିସାବ ଦେଖାଇବାକୁ ପଡ଼ିବ ନା ? ଅଡ଼ିଟର୍ କାମନ୍ ସବୁଯାକ ହିସାବକିତାବ ଧରି ତାଙ୍କ ଅଫିସ୍‌କୁ ସିବାଲାଗି କହୁଛନ୍ତି । ଖାତାବହି ସାଙ୍ଗରେ ଧରି ଆପଣ ସେଇଠାକୁ ଚାଲିସିବେ··· । ଆମଘରେ ମଧ୍ୟ ଗୋଟାଏ ବହି ପଡ଼ିଛି । ମୁଁ ଟେଲି-ଫୋନ୍ କରି ସ୍ତ୍ରୀଙ୍କୁ ସେକଥା କହି ଦେଉଛି । ସେଠୁ ସେହି ଖାତାଟିକୁ ମଧ୍ୟ ସାଙ୍ଗରେ ନେଇସିବେ ··· ।"

ଚାରିଟା ବାଜୁଛି । ତାଙ୍କୁ ଆଉ ଖରା ସେତେବେଶୀ କାଟୁ ନ ଥିଲା । ଖାତାବହି ସବୁ ସଜାଇ ପୁଡ଼ାଟିଏ ବାନ୍ଧି ସେ ହାତରେ ଧରିଲେ ଏବଂ ହାତରେ ଛତା ଧରି ଦୋକାନ ଉପରୁ ତଳକୁ ଓହ୍ଲାଇ ପଡ଼ିଲେ ।

ଘୋର କ୍ଳାନ୍ତ – ଜିଭ ଶୁଖି ଯାଉଛି । ପାଚୁ ପିଲ୍ଲାଇର ଚାହା ଦୋକାନକୁ ଯାଇ ସିଏ ଟଙ୍କା ଦେଇ ଗୋଟିଏ କପ୍ କଡ଼ା ଚାହା ପିଇଲେ । ପାଖରେ ଥିବା ପାନଦୋକାନରୁ ପାନ ନେଲେ ଏବଂ ଧୀରେଧୀରେ ଖାମିନ୍ଦଙ୍କ ଘରଆଡ଼କୁ ଅଗ୍ରସର ହେଲେ ।

ସହରଟା ଯାକରେ ସବାଆଗ ବସିଥିବା ସ୍ୱଜସ ଗୌରବ ମୁକ୍ତ ବଜାର ଏଇ ଗୋଟିଏ । ପରେ ପଲର୍ତ୍ତ୍ୱଗାଡ଼, ବୃନ୍ଦନ୍ ଶନ୍ଦେ କାଣ୍ଣନ୍ ମେଣ୍ଟ ପ୍ରଭୃତି ନୂଆ ନୂଆ ବଜାର ମଧ୍ୟ ଜନ୍ମଲାଭ କରିଛନ୍ତି ସତ, ମାତ୍ର ଏହି ପୁରୁଣା ଶାଲେ ବଜାରଟିର ମହତ୍ତ୍ୱ ସେଥିଲାଗି ଆଦୌ କୌଣସି ଗୁଣରେ କମ୍ ହୋଇ ଯାଇନାହିଁ । ଏହାର କାରଣ କ'ଣ ?

ଶମ୍ଭୁକ୍କଡେ ଗଳିରେ ଲରିଗୁଡ଼ିକରେ ଲଦାହୋଇ ଆସୁଥିବା ପରିବାପତ୍ର ଓ ସମୁଦ୍ରୀ କଦଳୀ, ସଖପଡ ମନ୍ଦିରମାର୍ଗ ଆଡୁ ଆସି ପହଞ୍ଚୁଥିବା ନବଧାନ୍ୟ, ଫୁଲର

ଦୋକାନ ଗୁଡ଼ିକରେ ସଦ୍ୟୋବିକଶିତ ପୁଷ୍ପ—ଏହି ସବୁଯାକ ମିଶି ସେଠାରେ ଯେଉଁ ମିଶ୍ରିତ ଗନ୍ଧଟିକୁ ଚତୁର୍ଦ୍ଦିଗରେ ଖେଳାଇ ଦେଉଥିଲେ, ତା' ସହିତ "ମୁଁ ବି ରହିଛି" ବୋଲି କହି ଭଣଭଣ ହୋଇ ଉଠୁଥିବା ନର୍ଦ୍ଦମାର ଦୁର୍ଗନ୍ଧ ମଧ୍ୟ ମହଜୁଦ ରହିଥିଲା ।

ଏଥି ସହିତ ଜନଅପନ୍ତ କଣି ନେଇଯିବାକୁ, ସାଇକେଲ ଚଢ଼ି, ପାଦରେ ଚାଲି ଓ ସ୍କୁଟର୍‌ରେ ବସି ଯାଉଥିବା ଲୋକମାନେ । ଯାତାୟାତ କରିବାର ଅନ୍ୟ ନାନା ସାଧନ ରହିଥିଲେ ମଧ୍ୟ ଚାଲିକରି ଯିବାକୁ ବାଧ୍ୟ ହେଉଥିବା ଲୋକମାନେ । ସେହି କମ୍ ଚଉଡ଼ା ସଡ଼କଟିକୁ ଘେରି ଉଲୋଉଡ଼ମା ପିଲ୍‌କ ପ୍ୟାଲେସ୍‌ର ଆଗକୁ ଧାଡ଼ି ବାନ୍ଧି ଠିଆ ହୋଇଥିବା ନ ଆ ନୂ ଆ ମଟରଗାଡ଼ି ସୂର୍ଯ୍ୟକିରଣ ପଡ଼ି ଚକ୍‌ଚକ୍ ଦେଖା ଯାଉଥାଏ ।

ଗାଡ଼ିଗୁଡ଼ିକର ମଝିରେଥିବା ଫାଙ୍କଗୁଡ଼ିକର ମଧ୍ୟଦେଇ ଅନାଇଲେ ଅନନ୍ତନ୍ ନାୟର୍‌ଙ୍କ ଆଖିକୁ ଦୋକାନଟି ବେଶ୍ ଦୃଷ୍ଟିଗୋଚର ହୋଇ ଯାଉଛି । ତାଙ୍କର ଆଖିକୁ ସିଏ ସେହି ଦୋକାନଟି ଉପରେ ନେଇ ବୁଲାଇ ଆଣୁଛନ୍ତି ।

ସିଏ ହଠାତ୍ ଚମକି ପଡ଼ିଲେ ।

ଦୋକାନଟି ଭିତରେ ଯେଉଁଠି ସ୍ତ୍ରୀ ପୁରୁଷ ଏକାଠି ହୋଇ ଦେଖା ଯାଉଛନ୍ତି, ସେଠାରୁ ଝଣ୍ଡେଦୂର ଭିଡ଼ ଗୋଟିଏ ଜାଗାରେ ଅଲଗା ଖୁନ୍ଦହୋଇ ଛିଡ଼ା ହୋଇ ଆପଣା ଆପଣା ଭିତରେ ହସି ହସି କଥାବାର୍ତ୍ତା ହେଉଥିବା ଓ କପଡ଼ାଗୁଡ଼ିକୁ ଦେଖୁଥିବା ଦୁଇଜଣଙ୍କ ମଧ୍ୟରେ ପ୍ରଭାକରନ୍ ମଧ୍ୟ ଅଛି ।

ଦ୍ୱିତୀୟ ଜଣକ···?

ଅନନ୍ତନ୍ ନାୟର୍‌ଙ୍କର ଗୋଡ଼ଦୁଇଟା ଅଧିକ ଆଗକୁ ଯିବାଲାଗି ସତେଯେପରି ମୋଟେ ରାଜି ହେଉ ନଥିଲେ । ସଡ଼କରୁ ଦେଖା ଯାଉଥିବା ସେହି ମୁଣ୍ଡେ ଉଚର ଦର୍ପଣ ଉପରେ ସେହି ଯୁବତୀର ପ୍ରତିବିମ୍ବଟିକୁ ସିଏ ଭଲ କରି ଦେଖିବାକୁ ଲାଗିଲେ ।

ତାଙ୍କର ଖିଆଲ ହୋଇଗଲା···ଇଏତ···ଇଏ ତ···

ଆପଣା ପାଖରେ ରଖା ହୋଇଥିବା ଗାଡ଼ିଟିର ନମ୍ବରପ୍ଲେଟ୍ ପାଖରେ ନାଲି ଅକ୍ଷର ଗୁଡ଼ିଏ ରହିଥିବା ଯେଉଁ ସାନ ପଟାଟି ଥିଲା, ସେଥିରୁ ଜଣା ଯାଉଥିଲା ଯେ ସେଇଟି ହେଉଛି ସରକାରୀ ଗାଡ଼ି ।

ତଥାପି ସିଏ ସେଠି ଅଟକି ରହିଲେନାହିଁ । ତରତର କରି ପାହୁଣ୍ଡ ପକାଇ ଚାଲିବାକୁ ଲାଗିଲେ । ସତେଅବା ଏପରି ଏକ ପାଗଳାମି ତାଙ୍କୁ କବଳିତ କରି ପକାଇ-ବାରେ ଲାଗିଥିଲା ଯେ ସେହି ଦୁଇଜଣଙ୍କର ନଜର ତାଙ୍କ ଉପରେ ପଡ଼ିବା ପୂର୍ବରୁ ହିଁ ତାଙ୍କୁ ସେଠାରୁ ଅନ୍ତର୍ଦ୍ଧାନ ହୋଇଯିବାକୁ ପଡ଼ିବ ।

ଏକଥା ସିଏ କେବେହେଲେ ଭାବି ପାରି ନଥିଲେ ଯେ ପ୍ରଭାକରନ୍ ସ୍ୱାଭିତରେ ଏତେଦୂର ଅଗ୍ରସର ହୋଇଯାଇଥିବ ।

ସକାଳେ ମାଧବୀ ତାଙ୍କୁ ଜେରା କରିବାରେ ଲଗିଥାଏ । ସେହି କଥାଟିକୁ ସିଏ ନିଜ ଆଖିରେ ହିଁ କେତେକ୍ଷଣ ପୂର୍ବରୁ ସିଲ୍କ ଦୋକାନରେ ହେଉଥିବାର ଦେଖିଛନ୍ତି । ସେଇଥିରୁ ତାଙ୍କର ମନ ମଧ୍ୟ ବେଶ୍ ଦେଖିବାକୁ ସମର୍ଥ ହୋଇଛି ଯେ କେତୋଟି କଥା କ୍ରମଶଃ ବେଶ୍ ସ୍ପଷ୍ଟ ହୋଇ ଆସୁଛି । ସ୍ପଷ୍ଟହୋଇ ନ ଆସୁଥାଉ ପଛକେ, ମାତ୍ର ଏକଥାଟି ନିଶ୍ଚୟ ଭାବିବାକୁ ହେବ ଯେ, କାତ୍ୟାୟିନୀ ଦ୍ୱାରା ତାଙ୍କର ସବୁଯାକ ଇଜ୍ଜତ୍ ମାଟିରେ ମିଶିଯାଇଛି ବୋଲି ସିଏ ଯେଉଁ ଧାରଣାକରି ସାରିଥିଲେ, ସେହି ଧାରଣାଟି ପ୍ରକୃତରେ ଅତ୍ୟନ୍ତ ଭୁଲ ଧାରଣା । ଇଜ୍ଜତ୍ ତ ତଥାପି କିଛି ବାକି ରହିଥିଲା; ଯେତେବେଳେ ସେଇଟିକୁ ମଧ୍ୟ ନଷ୍ଟ କରିଦେବା ଆରମ୍ଭ ହୋଇଗଲାଣି, ସେତେବେଳେ ଯାଇ ସେକଥା ଜଣାପଡ଼ୁଛି ।

ମଟରଗାଡ଼ିର ହର୍ନ ବାଜିବାରେ ଲଗିଛି । ସଡ଼କଉପରେ କେଜାଣି କେତେ ଲୋକ କେତେ କେତେ କଥା କଥାବାର୍ତ୍ତା ହୋଇ ଚାଲି ଯାଉଛନ୍ତି । ହାତ ଉପରେ ଖାତା ବହିର ପୃଷ୍ଠାକଣ୍ଟିଙ୍କ ସତେଅବା ଗୋଟିଏ ମୁର୍ଦ୍ଦାର ପରି ଭାରି ଲାଗିଲାଣି । ଆଜି ସ୍ୱାମିଙ୍କ ଘରଟା ହଠାତ୍ ଏତେଦୁରାଏ ଦୂର ହୋଇଗଲା କାହିଁକି ?···ମୋଟେ ବୁଝିହେଉ ନାହିଁ ।

ତମଲମ୍ ରାଣୀଙ୍କର ଝିଅ, ଏହି ଲୀଳା କୁମାରୀଟି ସହିତ ପ୍ରଭାକରନ୍ ନାୟର୍‌ର ପରିଚୟ ବା ହେଲା କିପରି ..? ଧରିଲେବି ଏମିତି ଥିଲା ଯେ··· ତେଲୁଗୁ ଡ଼ାଲପରି ହୋଇ ରହିଗଲା ।

ଲୋକେ କହନ୍ତି ଯେ ଏକଦା ସିଏ କାହାଘରେ ଝାଡ଼ୁ ଲଗାଉଥିଲା ଓ ତା'ପରେ ତମଲମ୍ ରାଣୀ ହୋଇଗଲା । କ'ଣ ଏସବୁ ସତକଥା ?

ବାପା ଥିଲାବେଳେ କହୁଥିଲେ, "ଆରେ ଯଦି ପିଠା ଖାଇବ ତେବେ ବାକି ଗୁଡ଼ାକୁ ଗଣିବାକୁ ଯିବ କାହିଁକି"—ଏହି କଥାଟିକୁ ବାରବାର ମନେ ପକାଇ ସିଏ ନିଜେ ଆପଣା ମନଟିକୁ ଦବାଇ ରଖିବାଲାଗି ପ୍ରକୃତରେ କେତେପରିଶ୍ରମ କରି ନାହାନ୍ତି···।

ତେବେ ?···

ଆଖିରେ ଦେଖିଥିବା କଥା କ'ଣ ମିଛ ହୋଇଯିବ··· ?

କାନରେ ଶୁଣିଥିବା କଥା ମିଛ ହୋଇଯିବ··· ?

ସବୁକଥା ପଚାରିବା ବି ମିଛ ହୋଇଯିବ...?

ସବୁ କ'ଣ ଖାଲି ମିଛ ଆଉ ମିଛ ହିଁ ହୋଇଯିବ ?

କ'ଣ ସାରା ପୃଥିବୀଟା ଯାକ ମିଛ ହୋଇଯିବ ·· ?

କୌଣସି ଏକ ମନ୍ତ୍ରି ତଳେ ପଡ଼ି ଅଙ୍କୁରିତ ହୋଇ ଉଠିବ ଏବଂ ତଦ୍ଦ୍ୱାରା ଆପଣାର ଅଧିକାର ଆଉ ମର୍ଯ୍ୟାଦା ଯେପରି କୌଣସି ପ୍ରକାରେ ଉପେକ୍ଷିତ ହୋଇ ନ ପଡ଼ିବ, ଏହି କଥାଟିକୁ ଭାବିଭାବି ପ୍ରଧାନ ବୃକ୍ଷଟିକୁ ହିଁ ଏକମାତ୍ର ବୃକ୍ଷ ରୂପେ ଠିଆ କରି ରଖିବାର ଗୋଟିଏ ସମସ୍ତ ...

ମାତ୍ର ସ୍ୱୟଂ ବୃକ୍ଷ ହିଁ ଏକଥା କରି ବସିବ ତ... ?

ଯୌବନର ଖେଳ, ମନାକଲେ ମଧ

ଦବାଇ ଦିଆଯାଇଥିବା ଯୌବନର ଉଚ୍ଛୁଳି ଉଠୁଥିବା ଜଙ୍ଗଲି ବନ୍ୟା ନା ।

କପା ପାଖକୁ କଦାପି ରଡ଼ନିଆଁକୁ ଏକାକୀ ଯିବାଲାଗି ଦିଆ ଯାଏ ନାହିଁ...

ଏପରି ହେଲେମଧ ତଥାପି କୌଣସି ଦିନ...

ସିଏ ହେଉଛି ଏକାଠି ଜମାହୋଇ ସଢ଼ୁଥିବା ଅଳିଆଗଦା ଭିତରେ ଦବିକରି ରହିଥିବା ଓ ସଢ଼ିପଚି ଯାଇଥିବା ଗୋଟିଏ ଝିଇ ସମାନ ।

ତଥାପି ଅଗ୍ନିକଣା ନୁହେଁ ତ ଆଉ କ'ଣ... ?

ସେଇ ଅଗ୍ନିରେ ଯାଇ ପଡ଼ିଥିବା ଖଟଉପରର ଗଦାର ଶିମିଳିତୂଳା...

କାଳେ କେହି ସେକଥାକୁ ଜାଣିପକାଇବ, ତା ପୂର୍ବରୁ ନିଆଁକୁ ତୂଳାରୁ ଏବଂ ତୂଳାକୁ ନିଆଁରୁ ଅଲଗାକରି କାଢ଼ିଦିଆଯାଇଥାଏ ।

ତଥାପି

କେତେକ ଲୋକ କହନ୍ତି, ନୀଳାକୁମାରୀର ମୁହଁ ଉପରେ କ'ଣ କୌଣସି ସ୍ୱାଜସ ତେଜ ରହିଛି କି... ?

# ସତର

ଖାମିନ୍ଦଙ୍କର ବଙ୍ଗଳାର ଅଗଣାରେ ଗୋଟିଏ ଦୁଇଟା ମଟରଗାଡ଼ି ଥୁଆ ହୋଇଛି ।

ବାହାର ଫାଟକଟିକୁ ପାରହୋଇ ଅନନ୍ତନ୍ ନାୟର୍ ଯେମିତ ଭିତରକୁ ଯାଇଛନ୍ତି, ସେମିତ କୁକୁର ଗୁଡ଼ାକ ଭୁକ ଉଠିଲେ, ମାତ୍ର ତେବେ ସୁଦ୍ଧା ଭିତରୁ କେହି ବାହାରକୁ ଆସିଲେ ନାହିଁ ।

ଦୋକାନରେ ରାମନ୍ ପିଲଇଠାରୁ ଅନନ୍ତନ୍ ନାୟର୍ ଶୁଣିଥିଲେ ଯେ ଦ୍ୱିତୀୟ ମହାଯୁଦ୍ଧ ସମୟରେ କାଳେ ଏହି ସହରକୁ ମଧ୍ୟ ଯୁଦ୍ଧ ଆସିଯିବ, ସେହି ଡରରେ ଖାମିନ୍ଦ ପ୍ରଥମରୁ ହିଁ ସାବଧାନ ହୋଇ ଯାଇଥିଲେ ଏବଂ ଆପଣାର ସ୍ତ୍ରୀ ଓ ପିଲାମାନଙ୍କୁ କଡ଼ୁକରୈରେ ଥିବା ତାଙ୍କ ଶ୍ୱଶୁରଘରକୁ ପଠାଇ ଦେଇଥିଲେ । ପରେ କେବଳ ଆପଣାର ପିଲାମାନଙ୍କୁ ହିଁ ସେ ସେଠାରୁ ଲେଉଟାଇ ଆଣିଥିଲେ । ସେହି ବାପଘରେ ହିଁ ତାଙ୍କ ସ୍ତ୍ରୀ ଟାଇଫଏଡ୍‌ରେ ପଡ଼ିଲେ ଓ ସେଇଥିରେ ତାଙ୍କର ଦେହବାସାନ ଘଟିଥିଲା ।

କେତେସମୟ ପରେ ଘର ଭିତରୁ ଜଣେ ସ୍ତ୍ରୀ ବାହାରକୁ ଆସିଲା । ଖାମିନ୍ଦଙ୍କର ବଡ଼ପୁଅ ଗୋପାଳ ପିଲଇଙ୍କର ଘରଣୀ ପରି ମନେ ହେଉଥିଲା । ସାନପୁଅ ସୁବ୍ରହ୍ମଣ୍ୟମ୍ ପିଲଇର ତ ବର୍ତ୍ତମାନ ବିବାହ ବି ହୋଇନାହିଁ... ।

ଭାରି ସୁଲକ୍ଷଣମୂର୍ତ୍ତି । ବୟସ ତିରିଶି ବରଷରୁ ବେଶୀ ହୋଇଥିବ ବୋଲି ମୋଟେ ମନେ ହେଉନାହିଁ । କପାଳ ଉପରେ ସିନ୍ଦୁରର ଏଡ଼େବଡ଼ ଗୋଟିଏ ଟୋପା ଝଟକି ଉଠୁଛି । ଆଖି ଦୁଇଟିରୁ ଯେପରି କୌଣସି ଶୋକ-ଭାବ ଫୁଟି ବାହାରୁଛି

"ହଁ, କିଏ ସେ ..?"

"ନା-—ବିଶେଷ କିଛି ନାହିଁ ଖାମିନ୍ଦ କହିଲେ ଯେ ଏଠାରେ କୌଣସି ହିସାବ ବନ୍ଦ ରହିଯାଇଛି ।"

"ହଁ, ହଁ, ସିଏ ଟେଲିଫୋନ୍ କରି କହିଥିଲେ । ମୁଁ ସଙ୍ଗେ ସଙ୍ଗେ ଆଣି ଦେଉଛି··· ।"

ଅନନ୍ତନ୍ ନାୟର୍ ଗୋଟିଏ ପାଖକୁ ଘୁଞ୍ଚି ଠିଆହେଲେ ··

ପ୍ରଥମେ ସିଏ ଆସିଲା, ସିଏ ହେଉଛି କେଶବନ୍ ତମ୍ପି...ତହସିଲଦାର ବାମନ୍ ତମ୍ପିର ସାନଭାଇ କୌଣସି ମିନିଷ୍ଟରଙ୍କର ସେକ୍ରେଟେରୀ ହୋଇ ରହିଛି ପରା... ?

ତା'ର ଆଖିଦୁଇଟା ଲାଲ୍ ଦେଖାଯାଉଛି । ତା' ପଛରେ ଗୋପାଳ ପିଲାଇ ଦୋହଲି ଦୋହଲି ଟଳଟଳ ହୋଇ ଆସୁଛି ..

ଆଉ ବ କେତେଲୋକ ଆସୁଛନ୍ତି । ଅନନ୍ତମ ନାୟର୍ ସେମାନଙ୍କୁ ଚହ୍ନି ପାରିଲେ ନାହିଁ ।

"ହଁ,ଗୋପାଳ ପିଲାଇ ! କୌଣସି କଥାପାଇଁ ମଧ୍ୟ ଡ଼ରିବାର କିଛି ପ୍ରୟୋଜନ ନାହିଁ…ମୁଁ ସବୁ ଦେଖି ଠିକ୍ କରିନେବି । ତା'ହେଲେ ମୁଁ ଯାଉଛି… ?" କହି ଗୋପାଳ ପିଲାଇର ପିଠିକୁ ଥାପୁଡ଼ାଇଦେଇ କେଶବନ୍ ତମ୍ପି ଆଉ ସେହି ବୃଦ୍ଧାସ୍ତ୍ରୀ ଜଣକ ଦୁହେଁ ଟଳ ଟଳ ବାହାରକୁ ଚାଲି ଯାଉଛନ୍ତି । ଗୋପାଳ ପିଲାଇର ଗୋଡ଼ଗୁଡ଼ାକ ସତେଯେପରି ମାଟି ଉପରେ ହିଁ ପଡ଼ୁନଥିଲା, ସିଏ ସେହିପରି ଭାବରେ କୌଣସିମତେ ବାହାର ଫାଟକ ପର୍ଯ୍ୟନ୍ତ ଯାଇ ସେମାନଙ୍କୁ ବିଦାୟ ନେଇ ସେଠାରୁ ପୁଣି ଫେରିଆସୁଛନ୍ତି ।

ସର୍ କରି ଦୁଇଟିଯାକ ମୋଟରଗାଡ଼ି ଚାଲିଗଲେ ।

ଫେରିଆସିବା ବାଟରେ ଗୋପାଳ ପିଲାଇ ଅନନ୍ତନ୍‌ନାୟର୍‌ଙ୍କୁ ଦେଖିପାରିଲେ । ଗର୍ଜନ କରି "କିଏ ସେ" ବୋଲି ପଚାରୁଛନ୍ତି । "ଏଠି କ'ଣ କାମ ଅଛି ? ଏଠି ଆସି କାହିଁକି ଠିଆ ହୋଇଛ ?" ତାଙ୍କର ଜିଭଟା ମଧ୍ୟ ଲାଗି ଯାଉଥିଲା ପରି ମନେ ହେଉଛି ।

"ନାଇଁ, କିଛି ନାହିଁ । ଇନ୍‌କମ୍‌ଟ୍ୟାକ୍‌ସ ହିସାବର କୌଣସି ବନ୍ଧି ଘରେ ରହି ଯାଇଛି । ସେଇଟିକୁ ନେଇ ଅଡ଼ିଟର୍‌ଙ୍କୁ ଦେଖାଇବା ଲାଗି ଖାମିନ୍ଦ କହିଛନ୍ତି । …ମୁଁ ସେଇଥିପାଇଁ ଠିଆ ହୋଇଛି… ।" ଅନନ୍ତନ୍‌ନାୟର୍ କଥାଗୁଡ଼ିକୁ ଶେଷ କରିବା ପୂର୍ବରୁ ହିଁ ଗୋପାଳ ପିଲାଇଙ୍କର ପତ୍ନୀ ବହିଟି ଘରଭିତରୁ ଆଣି ତାଙ୍କୁ ଦେଇ ଦେଉଛି ।

ବହିଟିକୁ ନେଇ ବାହାର ଫାଟକ ଆଡ଼କୁ ଯାଉଯାଉ ଅନନ୍ତନ୍‌ନାୟର୍ ମୁହଁ ବୁଲାଇ ଏକଥା ନ ଦେଖି ରହି ପାରିଲେ ନାହିଁ ଯେ ଗୋପାଳ ପିଲାଇ କ'ଣସବୁ କରୁଛି ଓ ତା' ପିଠି ଉପରେ ତା'ର ପତ୍ନୀ ହାତ ବୁଲାଇ ଦେବାରେ ଲାଗିଛି ।

ଲଣ୍ଡନ ମହକୁମାରେ ତା'ର ବଡ଼ ବ୍ୟାଙ୍କ ହିଁ, ସେଇ ଅଫିସ୍‌ରେ, ଯେଉଁଠି ମାଧବୀ କାମ କରୁଛି । … ହାତମୁଠାରେ ମୁଠାଏ ଦରମା, ଘରଭର୍ତ୍ତି ସମ୍ପତ୍ତି…ଆଖି ପୁରାଇ ଦେଖିଲି ଭଲ ପତ୍ନୀ, ବର୍ତ୍ତମାନ ପିଲାପିଲି କିଛି ହୋଇନାହାନ୍ତି…ମାତ୍ର ସେଥିଲାଗି ତାଙ୍କର କୌଣସି ବିଶେଷ ଚିନ୍ତା ନାହିଁ । ବର୍ତ୍ତମାନ ତ ଦୁହିଙ୍କର ବୟସ ଅଛି .. ।

ତେବେ ସବୁ ଥାଇ ସିଏ ପୁଣି କାହିଁକି ଏସବୁ ଅଡ଼ୁଆ ଭିତରେ ଆସି ପଶିଛି ? କେତେ ଲୋକ ତା' ବିଷୟରେ କେତେ ନା କେତେ କଥା କହନ୍ତି—ମାଧବୀ ମଧ୍ୟ ସେହି ବିଷୟରେ ତାଙ୍କ ଆଗରେ ଯାଇ କହିଛି … ।

ବାହାରର ଅନ୍ୟ ରାଜ୍ୟ ଗୁଡ଼ିକରେ ଲଟେରୀର ଏଜେଣ୍ଟ୍‌ମାନଙ୍କୁ ନିଯୁକ୍ତ କରିବା ବିଷୟରେ ସ୍ୱାଙ୍କଉପରେ ଦୁର୍ନୀତିର କୌଣସି ଅଭିଯୋଗ ହୋଇଥିଲି । ତା' ସାଙ୍ଗକୁ ଏଇ ଲୋକଟା ବଡ଼ ଇମ୍ମୋରାଲ୍ ମଧ୍ୟ । ଅଫିସରେ ସ୍ୱା'ସହିତ କାମ କରୁଥିବା ସ୍ତ୍ରୀଲୋକମାନଙ୍କ ସହିତ ସାନସାନ ଖୁଜୁରୁଜୁ ବି···

ଶୁଣାଯାଏ ଯେ ଏହିସବୁ କାରଣରୁ ତା'ର ପଦୋନ୍ନତି ବି ଅଟକି ଯାଇଛି···।

ହୁଁ...କିଏ ଏବେ ଜାଣିଛି କିଏ କିପରି ମଣିଷ, କୋଉ ପେଡ଼ୀରେ କି ସାପ ରହିଛି···କିଏ ଜାଣିଛି । କଥାଟା ତ ଏପରି ଗମ୍ଭୀର ହୋଇ ସାରଲଣି ଯେ କେଶବନ୍‌ ଡମ୍ପିକୁ ଘରକୁ ଡାକି ବିଲାତି ମାଲ ପିଆଇବାକୁ ପଡ଼ୁଛି··· । ହୁଁ, ହୁଁ—ତମ୍ପି ତ କହିକରି ଗଲା ଯେ ବର୍ତ୍ତମାନ ଆଉ ଡରିବାର କୌଣସି କାରଣ ନାହିଁ···କେଶବନ୍ ଡମ୍ପି କ'ଣ କୌଣସି ମାମୁଲି ସିଏ ସିଏ ବ୍ୟକ୍ତି ହୋଇଛି ?

ତାଙ୍କର ପାଗଲାମି ତାଙ୍କୁ ପୁରା ଦମ୍‌ରେ ଏପରି ଜୋର୍‌ରେ ଚଳାଇବାକୁ ଲଗିଲା ଯେ ଅନନ୍ତନ୍‌ନାୟର୍ ସଡ଼କ ଉପରେ ହୋ' ହୋ' ହେଉଥିବା ଗଞ୍ଜେଇ-ବେପାରି କୃଷ୍ଣନ୍‌କୁ ଅତିକ୍ରମ କରି ଅଡ଼ଟର କେମନ୍‌ଙ୍କ ଅଫିସ ଆଡ଼କୁ ପାହୁଣ୍ଡ ପକାଇ ଚାଲିଯିବାକୁ ଲଗିଲେ ।

ସେ ଯେତେବେଳେ ରାଜପ୍ରାସାଦର କାର୍ଯ୍ୟାଳୟରେ ଚାକିରି କରୁଥିଲେ, ସେତେବେଳେ ବିଭିନ୍ନ କାର୍ଯ୍ୟରେ ଅନେକ ସମୟରେ ସେଠାକୁ ଆସୁଥିବା କେଶବନ୍ ଡମ୍ପିଙ୍କୁ ସେ ସେଠାରେ କେତେଥର ଦେଖିଛନ୍ତି... । ମାତ୍ର ଏଥିରେ କୌଣସି ସନ୍ଦେହ ନାହିଁ ଯେ ସିଏ ଆଦୌ ଜଣେ ସିଏ ସିଏ ସାଧାରଣ ବ୍ୟକ୍ତି ନୁହନ୍ତି । ଫୋନ୍‌ମୁଡରେ ଅବସ୍ଥିତ ଗୋଟିଏ ଗୃହାବଗିଚାକୁ ମହାରାଜାଙ୍କଠାରୁ ସିଏ କେତେ ଶସ୍ତା ଦାମ୍‌ରେ ତାଙ୍କ ଶ୍ୱଶୁରଙ୍କୁ ଆଣି ଦିଆଇ ଦେଇଥିଲେ । ତାଙ୍କ ଶ୍ୱଶୁର ଅଚ୍ୟୁତ ପୋଦୁର୍ୱାଲ୍ ମଧ୍ୟ ସେପରି ଦେଖିବାକୁ ଗଲେ ଆଦୌ ଜଣେ କ୍ଷୁଦ୍ର ବ୍ୟକ୍ତି ନୁହନ୍ତି । ସିଏ ତ ସ୍ୱାଙ୍କଠାରୁ ବଳି ଆହୁରି ବଡ଼ ମଣିଷ··· । ଶାଲୈ ବଜାରର ବିଖ୍ୟାତ ଅଳଙ୍କାର—ଦୋକାନର ମାଲିକ ପି. ଏମ୍. ପି. ଚେଟିଟ୍‌ଆରଙ୍କୁ କେଶବନ୍ ଡମ୍ପି ସେହି ବଗିଚାଟିକୁ ଏକଲକ୍ଷରୁ ଅଧିକ ଟଙ୍କା ଲାଭରେ ପୁଣି ବିକ୍ରୀ କରାଇଦେଲେ ତ ପୋଦୁର୍ୱାଲ୍ ଚେଟିଟ୍‌ଆର୍‌ଙ୍କ ପାଖକୁ ଗୋପନରେ ଯାଇ ପଚାରିଲେ—"ଏଇ କାରବାରଟିରେ ମୋ' ଜ୍ୱାଇଁକୁ ମଝିରେ କେତେ ପର୍ଯ୍ୟନ୍ତ ଲାଭ ହାତରେ ପଡ଼ିଥିବ ?" ଏକଥା ବି ସମସ୍ତେ କହନ୍ତି ଯେ ଚେଟିଟ୍‌ଆର୍ ମଧ୍ୟ ଏପରି ସେପରି ମାମୁଲି ମଣିଷ ନୁହନ୍ତି । ଶ୍ୱଶୁର ଆସି ତାଙ୍କୁ ଯାହା ପଚାରିଲେ, ସେଇଟିକୁ ନେଇ ସିଏ ଜ୍ୱାଇଁଙ୍କ କାନରେ ମଧ୍ୟ ପକାଇବାକୁ ଆଦୌ ଭୁଲିଯାଇ ନଥିଲେ । ଅବଶ୍ୟ ସେକଥାଟି ଶୁଣି ଆଉ କିଛିହେଲେ କରି ନଥିଲେ । ସିଏ ସିଧା ନିଜର ସ୍ତ୍ରୀ'ଙ୍କ ପାଖକୁ ଆସିଲେ ଓ ହୁକୁମ ଦେଲେ—"ତୁମ ବାପା ଦେଇଥିବା ସବୁଯାକ ଗହଣା ମୋତେ କାଢ଼ିଦିଅ...ହୁଁ,

ଶୀଘ୍ର କାଢ଼ି ଦିଅ···" ! ଭୟରେ ଥର ଥର ସ୍ତ୍ରୀ ଦେହରୁ ସବୁଯାକ ଗହଣା ବାହାର କରିଦେଲେ । କେଶବନ୍ ତମ୍ପି ତା'ପରେ ତାଙ୍କ ଶ୍ୱଶୁରଙ୍କ ପାଖକୁ ଗଲେ, ସବୁଯାକ ବାସନ କୁସନ ଏକାଠି ବାନ୍ଧି ତାଙ୍କ ଘରକୁ ପଠାଇଦେଲେ ଏବଂ ଶ୍ୱଶୁରଙ୍କ ଆଗରେ ଯାଇ ଠିଆହୋଇ କହିଲେ, "ପୋଦୁଓ୍ୱାଲ୍ ବାବୁ, ତୁମର ଝିଅ ସେହିଘରେ ଅଛି ବୋଲି ଭାବି ତୁମେ ଆଉ କଦାପି ସେହି ଘରର ଦୁଆର ମାଡ଼ିବନାହିଁ ବାସ୍ ! " ଏତିକି କହି ରାଗରେ ତମତମ ହୋଇ ଗହଣାଗୁଡ଼ାକୁ ଉଠାଇ ତାଙ୍କ ମୁହଁ ଉପରକୁ ପକାଇଦେଲେ ଓ ସେଠୁ ଚାଲିଆସିଲେ ।

ସେହିଦିନଠାରୁ ଆଜି ପର୍ଯ୍ୟନ୍ତ ପୋଦୁଓ୍ୱାଲ୍ କେବେହେଲେ ତାଙ୍କ ଝିଅ ଘରକୁ ଆସିନାହାନ୍ତି, ତାଙ୍କ ଝିଅ ମଧ୍ୟ ଆଉ ବାପଘର ଯାଇନାହିଁ ।

ଅନନ୍ତନ୍‌ନାୟର୍‌ଙ୍କୁ ଏକଥା ମଧ୍ୟ ଆଦୌ ଅଗୋଚର ନାହିଁ ଯେ ସରକାର ଭିତରେ କେଶବନ୍ ତମ୍ପିଙ୍କର ଯେଉଁ କ୍ଷମତା ଆଉ ଖାତିର ରହିଛି, ତାହାର କାରଣ ହେଉଛି ତାଙ୍କର ଅପାର ସାହସ ଏବଂ ସାମର୍ଥ୍ୟ । ସିଏ ଯେକୌଣସି କାମକୁ ମଧ୍ୟ ସାହସ ନହରାଇ ଆଗ ବାହାରି ପଡ଼ନ୍ତି··· ।

ତାଙ୍କଭଳି ବ୍ୟକ୍ତି ଯଦି ଇଚ୍ଛା କରିବେ, ତେବେ ଗୋପାଳ ପିଲ୍ଲାଇଙ୍କର ଯାହା-କିଛି କ୍ଷମତା ରହିଥିଲେ ମଧ୍ୟ ତାହାକୁ ବଡ଼ ସହଜରେ ମେଣ୍ଟାଇଦେଇ ପାରିବେ । ଅନନ୍ତନ୍ ନାୟର୍ ଭାବିବାକୁ ଆରମ୍ଭ କଲେ । ଭାବିବାରେ ହିଁ ଲାଗିଲେ ।

ଅଡ଼ିଟର୍ କେମନ୍ ଚେକ୍‌କାଡ଼ୁ ଶାସ୍ତ୍ରୀନ୍‌ଙ୍କ ମନ୍ଦିର କଡ଼ରେ ହିଁ ଆପଣାର ଅଫିସ୍ ଖୋଲିଥିଲେ । ସିଏ ଅନନ୍ତନ୍‌ନାୟର୍‌ଙ୍କର ହିଁ ପ୍ରତୀକ୍ଷା କରୁଥିଲେ ।

ହିସାବର ବହିଟି ଉପରେ କେମନ୍ ଭାରି ସାବଧାନ ହୋଇ କେତେ ସମୟ ପର୍ଯ୍ୟନ୍ତ ଦୃଷ୍ଟି ପକାଇନେଲେ । ପୁଣି ଆପଣାର ଗୁମାସ୍ତାଙ୍କୁ ଡାକି ପ୍ରଧାନ ପ୍ରଧାନ ବିବରଣୀ ଗୁଡ଼ିକୁ ଟିପିନେବାକୁ କହିଲେ ।

ଅନନ୍ତନ୍‌ନାୟର୍··· । ନିଜ କନ୍ୟା ନାମରେ ଦେଢ଼ଲକ୍ଷ ଟଙ୍କା ଦେଇ ଭୈରବନ୍‌ପିଲ୍ଲାଇ ପିରାଓ୍ୱିଲମ୍ବଲମ୍‌ର ଯେଉଁ କୋଠାଟି କିଣିଛନ୍ତି, ସେଇଟି ହିଁ ଅଡୁଆରେ ପକାଉଛି··· । ହିଁ, ହିଁ, ଯାହା ହେବ ଦେଖାଯିବ । କାଲି ସକାଳେ ତ ଯାଇ ହିସାବ କରିବାକୁ ପଡ଼ିବ—ଆପଣ କାଲି ସକାଳେ ଆସିବେ । ଏ ବହି ଏଇଠି ଥାଉ । ମୁଁ ଆଉ-ସବୁ ବହିକୁ ଦେଖି ସାରିଛି, ଆପଣ ସେଗୁଡ଼ିକୁ ନେଇଯାଆନ୍ତୁ । ଆଚ୍ଛା, ମୁଁ ଭୈରବନ୍ ପିଲ୍ଲାଇଙ୍କ ସହିତ ଟେଲିଫୋନ୍‌ରେ କଥାବାର୍ତ୍ତା କରିନେବି ।

ଯେତେବେଳେ ସେ ଟେଲିଫୋନ୍ ଧରି ଭୈରବନ୍ ପିଲାଇଙ୍କ ସହିତ କଥା-ବାର୍ତ୍ତା କଲେ, ସେତେବେଳେ ଅନନ୍ତନ୍ ନାୟର୍ ଅଡିଟର୍‌ଙ୍କ ଅଫିସ୍‌ରୁ ବହିଖାତା ସବୁ ଉଠାଇ ବାହାରକୁ ଆସିଲେ ।

ଖାମିନ୍ଦଙ୍କର ଗୋଟିଏ ବୋଲି ଝିଅ—ସ୍ୱର୍ଣ୍ଣକେଶୱରୀ । ସିଏ 'ରେବତୀ ଶୁଭଦନ ମହାରାଜା ମହିଳା ଏବଂ ଶିଶୁମାନଙ୍କର ଡାକ୍ତରଖାନା'ରେ ଡାକ୍ତର, ତାଙ୍କ ସ୍ୱାମୀ ମେଡ଼ିକାଲ୍ କଲେଜରେ ପ୍ରଫେସର୍ । ଦୁହେଁଯାକ ସେଇ ମେଡ଼ିକାଲ୍ କଲେଜର କ୍ୱାର୍ଟର୍ସ୍‌ରେ ହିଁ ରହନ୍ତି । ହାତ ଭଲ ଥିବାରୁ ସହରରେ ଦୁଇ ଜଣ ଯାକଙ୍କର ଖୁବ୍ ପ୍ରତିଷ୍ଠା ।

ଖାମିନ୍ଦଙ୍କର ଶୁଭ-ଆଶୀର୍ବାଦ ସହିତ ସେମାନଙ୍କର ପ୍ରେମ ବିବାହ ସମ୍ପନ୍ନ ହୋଇଥିଲା ।

ସେ ଦୁହିଁଙ୍କୁ ଅନନ୍ତନ୍ ନାୟର୍ ଥରେ ଅଧେ ଦୋକାନକୁ ଆସିବାର ଦେଖିଛନ୍ତି । ଦୁହେଁ ଦୁହିଁଙ୍କର ଲାଗି,···ଅହଙ୍କାର ଅଥବା ଧନଗର୍ବ ନଥିବା ବିନମ୍ର ବ୍ୟବହାର··· । ଖାମିନ୍ଦ ଝିଅ ସ୍ୱର୍ଣ୍ଣକେଶୱରୀଙ୍କୁ ଖୁବ୍ ଭଲ ପାଉଥିଲେ । ସିଏ ହୁଏତ ପରେ ଭାବରେ କେବେ କୌଣସି ନର୍ସିଙ୍ଗ୍ ହୋମ୍ ଚଳାଇବାକୁ ଇଚ୍ଛା କରିବ । ସେତେବେଳେ ଏଇଟି କାମରେ ଆସିବ ବୋଲି ଭାବି ଭୈରବନ୍ ପିଲାଇ ପିର୍‌ଓ୍ୱଚମ୍ବଲମ୍‌ର କୋଠାଟିକୁ ଝିଅ ନାମରେ କିଣିଥିଲେ ।

ହିଁ, ଅଡିଟର୍ କେମିତି ଭାରି ଚତୁର ବ୍ୟକ୍ତି । ଯେକୌଣସି ପ୍ରକାରେ ସମ୍ଭାଳି ନେଇ ପାରିବେ । ପୁଣି ଖାମିନ୍ଦ ଇନ୍‌କମ୍ ଟ୍ୟାକ୍ସ ଅଫିସର୍ ଇନ୍ଦୁଚୁଡ଼ନ୍‌ଙ୍କୁ ତ ମଧ୍ୟ ଜାଣିଛନ୍ତି ।

ହଠାତ୍ ଅନନ୍ତନ୍ ନାୟର୍‌ଙ୍କୁ ଭାରି ଆଶ୍ଚର୍ଯ୍ୟ ଲାଗିଲା । ସେତେବେଳେ ଯାଏ ସିଏ କାହିଁକି ଖାମିନ୍ଦଙ୍କ ବିଷୟରେ ଚିନ୍ତା କରିବାରେ ଲାଗିଥିଲେ ? ଆଜି ଯାହାସବୁ ଦେଖିଲେ ଓ ଶୁଣିଲେ,—ତାଙ୍କ ନିଜ ଜୀବନରେ ମଧ୍ୟ ତ ଅନେକ ସମସ୍ୟା ରହିଛି ଯାହାକି ତାଙ୍କୁ ପ୍ରତ୍ୟକ୍ଷ ଭାବରେ ଚିନ୍ତାଗ୍ରସ୍ତ କରି ରଖିଛି,—ଏଭଳି ପରିସ୍ଥିତିରେ ଏପରି କିପରି ସମ୍ଭବ ହେଲା ?

କ'ଣ ଏହାକୁ ହିଁ ତାଙ୍କର ବିଜୟ ବୋଲି କୁହାଯିବ ?

ଏଇଥିପାଇଁ ତ ତାଙ୍କର ଆପଣା ଜୀବନରେ କେତେ କେତେ ବଡ଼ ଧକ୍‌କା ଆସି ପହଞ୍ଚିଥିଲେ ମଧ୍ୟ ସିଏ ଜୀବିତ ରହି ପାରିଛନ୍ତି । ଅନନ୍ତନ୍ ନାୟର୍ ଆପଣା ମନକୁ ମନ ପଚାରୁଥିଲେ, ଅନ୍ୟମାନଙ୍କର ଚିନ୍ତାରେ ମନ ଭିତରଟା ଯଦି ଏହିପରି ଭର୍ତ୍ତି ହୋଇ

ରହିଥିବ, ଓ ନିଜର କୌଣସି ଚିନ୍ତା ଲାଗି ଯଦି ଆଉ ସ୍ଥାନ ନଥିବ,—ତେବେ ଏହିଭଳି ଏକ ସ୍ଥିତ ଜୀବନରେ କେତେଦୂର କାମ ଦେଇ ପାରିବ ?

କେଶବନ୍ ତମ୍ପିଙ୍କ ସମ୍ବନ୍ଧରେ ମଧ୍ୟ, କେତେ ସମସ୍ତ ପୂର୍ବେ ଆପଣାର ମନକୁ ସିଏ ସେପରି କ'ଣ ମନ କ'ଣ ଭାବିବାଲାଗି ମଧ୍ୟ ବାଧ୍ୟ କଲେ, ସେଇଟା ମଧ୍ୟ କ'ଣ ପ୍ରକୃତରେ ଏହି ତରହି ଲାଗି ଘଟିଲା ଯେ କେଶବନ୍ ତମ୍ପିଙ୍କର ବଡ଼ଭାଇ ବିକ୍ରମନ୍ ତମ୍ପିଙ୍କର କୌଣସି ସ୍ମରଣ ତାଙ୍କର ମନକୁ ମୋଟେ ଆସିବନାହିଁ ?

ବିକ୍ରମନ୍ ତମ୍ପି... ।

ଅନନ୍ତନ୍ ନାମ୍ବିଆର୍ଙ୍କୁ କେଜାଣି ଭାରି କେମିତିଆ ଲାଗିବାକୁ ଆରମ୍ଭ କଲା । ତାଙ୍କ ଜୀବନରେ ଏକ ଉନ୍ମୂଳ ତୋଫାନ ଉଠାଇ ଦେଇଥିବା ବିକ୍ରମନ୍ ତମ୍ପି,—ତାଙ୍କୁ କ'ଣ ସିଏ ଏଡ଼େ ସହଜରେ ମନଭିତରୁ ବାହାର କରି ଫିଙ୍ଗିଦେଇ ପାରିବେ ?

ତାଙ୍କର ମୁଣ୍ଡ ବୁଲାଇଗଲା । ନିଃଶ୍ୱାସଟା ଗରଗର ହୋଇ ଅଟକିଗଲା ପରି ଲାଗିଲା । ଗ୍ରୀବାରେ ଯନ୍ତ୍ରଣା ହେଲା, ତଣ୍ଡି ବି ଶୁଖିଗଲା ଓ ଝାଳ ବୋହିସିବାକୁ ଲାଗିଲା······

ଆଉ ଆଗକୁ ଯିବାକୁ ବାହାରିଲେ ସେ ନିଶ୍ଚୟ ତଳେ ପଡ଼ିଯିବେ,—

ତାଙ୍କୁ ଏତେବେଶୀ ହାଲିଆ ଲାଗୁଥିଲା ।

ଏହିପରି ଭାବରେ ହିଁ କେତେବେଳେ ପ୍ରାଣଟା ବାହାରିଗଲେ ହୁଏତ ଶାନ୍ତି ମିଳିବ··· । କିନ୍ତୁ ତାହା ବର୍ତ୍ତମାନ ନୁହେଁ, ବର୍ତ୍ତମାନ କ'ଣ ତାଙ୍କୁ ଅଭିଶାପରୁ ମୁକ୍ତି ମିଳିସିବ ?

ସାତେ ଘଣ୍ଟା ବାକି ଯିବଣି ?

ଆଗରେ ଭୈକ୍କଡ଼ୁ ଶାସ୍ତାନ୍ଙ୍କର ମନ୍ଦିର ଦେଖାଗଲା । ହିସାବର ବହିଗୁଡ଼ାକୁ ସିଏ ମନ୍ଦିରର ବାହାର ଗୃହଣୀଟି ଉପରେ ନେଇ ରଖିଦେଲେ ଏବଂ ମନ୍ଦିରର ଦ୍ୱାର-ଦେଶରେ ଠିଆହୋଇ ନମସ୍କାର କରୁ କରୁ ଲୋକଙ୍କ ଭିତରେ ଠିଆ ହୋଇ ହାତ ଦୁଇଟିକୁ ଯୋଡ଼ିଲେ । ଆଖିଡ଼ୋଳା ଧିର କରି ଆପଣାର ମନକୁ ଏକାଗ୍ର କରିବାକୁ ଚେଷ୍ଟା କଲେ ।

ଯେତେବେଳେ ଆଖି ଫିଟାଇଲେ, ସେତେବେଳେ ଦେଖିଲେ ଯେ ତାଙ୍କ ସହିତ ଠିଆ ହୋଇଥିବା ଲୋକମାନଙ୍କ ମଧ୍ୟରୁ ଗୁରିଜଣ ବ୍ୟକ୍ତିବିଶିଷ୍ଟ ଗୋଟିଏ ପରିବାର ମନ୍ଦିର ଭିତରକୁ ଚାଲି ଯାଉଛନ୍ତି ।

ପରିବାର-ନିୟୋଜନର ବିଜ୍ଞାପନର ଚିତ୍ରଗୁଡ଼ିକରେ ସାଧାରଣତଃ ଯେଉଁ ଦୃଶ୍ୟଟି ଦେଖିବାକୁ ମିଳିଥାନ୍ତା, ଠିକ୍ ସେହିପରି ଗୋଟିଏ ଦୃଶ୍ୟ—ମଝିରେ ଅଧା ବୟସର ପତି, ତାଙ୍କର ସ୍ତ୍ରୀ, ଦୁଇପାଖରୁ ପତିଙ୍କର ହାତ ଧରିଥିବା ଗୋଟିଏ ପୁଅ ଓ ପତ୍ନୀର ହାତ ଧରିଥିବା ଆଉ ଗୋଟିଏ ପୁଅ ।

ମହିଳାଙ୍କର ପରିଧାନଟି ତଳୁ ତାଙ୍କ ପିଠିର ମାଂସଳ ଭାଗଟି ଦୃଷ୍ଟିଗୋଚର ହେଉଥିଲା । ତାଙ୍କୁ ଦେଖି ଅନନ୍ତନ୍ ନାମ୍ବିର୍‌ଙ୍କର ପ୍ରାସାଦର ଗୋଶାଳାରେ ଥିବା ହୃଷ୍ଟପୁଷ୍ଟ କପିଳା ଗାଈଟି କାହିଁକି ମନେ ପଡ଼ିଗଲା କେଜାଣି ?

ହଠାତ୍ ମନେହେଲା ଇଏ ତ ··· କାତ୍ୟାୟିନୀ ।

କୌଣସି ସନ୍ଦେହ ନାହିଁ—କାତ୍ୟାୟିନୀ ଏବଂ ବିକ୍ରମନ୍ତମ୍ପି ··· ପିଲା ଦୁଇଟି ତାଙ୍କର ପୁଅହିଁ ହୋଇଥିବେ ······

ଅନନ୍ତନ୍ ନାମ୍ବିର୍ ପୁଣି ଆଖିଦୁଇଟି ବନ୍ଦ କରିଦେଲେ ।

"ହେ ଭଗବାନ ହରି—ହର—ସୁତ ।"

"ମୋ' ମନ କେତେଦୂର ପରିପକ୍ୱ ହୋଇ ପାରିଛି ନା ନାହିଁ, ତୁମେ କ'ଣ ମୋ'ଠାରୁ ସେହି ପରୀକ୍ଷା ନେଉଛ ?"

ଗୁଡ଼ି ଭିତରେ ଏପରି ଏକ ବୋଝ ଯାହା ସହି ହେଉନାହିଁ···କାଳିଜାଟା ଉଠୁଥିବା ଓ ପଡ଼ୁଥିବାର ଶବ୍ଦଟା ମଧ୍ୟ କାନକୁ ଶୁଣାଯାଉଛି ··· । ଏଇଠି ପାଖରେ କଣ୍ଣେଟ୍‌ରୁ ମୁକ୍ତିରେ ସିଏ ରହୁଛି । ନିଜର ସ୍ୱାମୀ ଓ ପିଲାଙ୍କ ସହିତ ମନ୍ଦିର ଦର୍ଶନ କରି ଆସିଛି ।

ଅନନ୍ତନ୍ ନାମ୍ବିର୍‌ଙ୍କର ଇନ୍ଦ୍ରିୟଗୁଡ଼ିକ ବିଚଳିତ ହୋଇ ପଡ଼ିଲେ । ଅପ୍ରତ୍ୟାଶିତ ଦୃଶ୍ୟ—ସିଏ କ'ଣ ତାଙ୍କୁ ଦେଖି ନେଇଥିବ··· ? ଦେଖିକରି ମଧ୍ୟ ନ ଦେଖିଲା ପରି ହେଉଛି ନା ମୋତେ ଦେଖି ପାରିନାହିଁ ?

ଏହି ପନ୍ଦରଟା ବର୍ଷ ତା' ମୁହଁକୁ କପରି ଏକ ସୁ ଦୃଶ୍ୟ କାନ୍ତି ଏବଂ ପୁଷ୍ଟି ଆଣି ଦେଇଯାଇଛି ······ ।

ଆଉ ମନକୁ ...... ?

ବଟମନ୍ ତମ୍ବିର ମୁଣ୍ଡ ଚନ୍ଦା ହେବାକୁ ଆରମ୍ଭ କଲଣି । ବଟମନ୍ ତମ୍ବି ତାଙ୍କ ନିଜଠାରୁ ଅତି କମ୍‌ରେ ପାଞ୍ଚ ବର୍ଷ ବଡ଼ ହେବେ । ଆଗରୁ ତ ଏହି ସମ୍ବାଦଟି ମିଳିଥି ଯାଇଥିଲା ଯେ ତାଙ୍କର ଦୁଇଟି ପିଲା ଅଛନ୍ତି ।

କାତ୍ୟାୟିନୀ ତାଙ୍କ ଘରୁ ଚାଲିଯିବା ପରେ ସିଏ ତାକୁ ଏହି ଦ୍ୱିତୀୟଥର ପାଇଁ ଦେଖିଲେ । ଏହା ପୂର୍ବରୁ ଥରେ, ଯେତେବେଳେ ସିଏ ଘରୁ ଯିବାର ପାଞ୍ଚବର୍ଷ ହୋଇଥିଲା,—ଠିକ୍ ଏହିପରି ଭାବରେ ବଡ଼ ଅକସ୍ମାତ୍ ଭାବରେ ହିଁ ଭେଟ ହୋଇଥିଲା ।

ସିଏ ମନେମନେ ସଙ୍କଳ୍ପ କରି ନେଇଥିଲେ ଯେ ଯାହାହେଉ ପଛକେ, ମରିବା ପର୍ଯ୍ୟନ୍ତ ସିଏ ଆଉ ତାକୁ କେବେହେଲେ ଭେଟିବେ ନାହିଁ । ମାତ୍ର, ସେହି ସଙ୍କଳ୍ପଟିକୁ ପାଳନ କରୁ କରୁ ହଠାତ୍ ଏହି ଘଟଣା ··· । ଏହି ସହରରେ ବାସ କରୁଥିବା କାତ୍ୟାୟିନୀ ସହିତ ଏହିପରି କେବଳ ଦୁଇଟି ଥର ଭେଟ ହୋଇ ପାରିଛି । ଏଇଟି ହିଁ ତ ଆଶ୍ଚର୍ଯ୍ୟ କଥା । ସହରଟା କେଡ଼େ ସାର୍ବଜନୀନ ସ୍ଥାନ; ଏଠି ସଡ଼କ ଅଛି,—ତଥାପି ଏହି ବିଷୟରେ ଭଗବାନ୍ ତାଙ୍କର ଖୁବ୍ ସହାୟତା କରିଛନ୍ତି ।

ସେତେବେଳେ ମଧ୍ୟ ଠିକ୍ ଏହିପରି ହୋଇଥିଲା । ଆଗରୁ ଜାଣିଶୁଣି କିଛି-ହେଲେ ଘଟି ନଥିଲା । ସେତେବେଳେ ବର୍ତ୍ତମାନ ତୁଳନାରେ ଛାତିର ଧଡ଼ପଡ଼ ହେବା କିଛି ଅଧିକ ତେଜ ଥିଲା । ବର୍ତ୍ତମାନ ତ ମୁହଁରୁ ଆଉ ଝାଳ ବୁହେନାହିଁ । ମାତ୍ର ସେତେବେଳେ ମୁହଁଟା ସାରା ଝାଳରେ ଓଦାହୋଇ ଯାଉଥିଲା । ସେହି ପ୍ରଥମ ଭେଟଟି ପରେହିଁ ଏହି ଦୁଇଟି ପିଲା ଜନ୍ମ ହୋଇଥିବେ ।

କିନ୍ତୁ······

ଏହା ମଧ୍ୟରେ ତା'ର କୌଣସି ଭାବ—ପରିବର୍ତ୍ତନ ହୋଇଛି ବୋଲି ମୁଁ ଆଦୌ ଅନୁଭବ କରି ପାରୁନାହିଁ । ବା, ଯଦି କୌଣସି ଭାବ—ପରିବର୍ତ୍ତନ ହୋଇ ଯାଇଥିବ, ତେବେ କ'ଣ ସିଏ ତାକୁ ପ୍ରକଟ କରିବାକୁ ଇଚ୍ଛା କରିବ ?

ତଥାପି ତା' ହୃଦୟ ପ୍ରକୃତରେ ବଡ଼ କଠୋର । ନହେଲେ ସିଏ ତାଙ୍କୁ ଓ ପିଲମାନଙ୍କୁ ଛାଡ଼ିଦେଇ କ'ଣ କେବେହେଲେ ଛାଡ଼ି ଚାଲି ଯାଇଥାନ୍ତା ?

"କିଓ ଅନନ୍ତନ୍ ନାୟର୍ ! ଆଜି ଆଡେ କେମିତି ଚାଲି ଆସିଲେ ? ଏଇଆଡ଼େ ଆସିବାର ଅଭ୍ୟାସ ଆପଣଙ୍କର ଥିଲବୋଲି ତ କେବେ ଦେଖିନାହିଁ .. ?"

ଚମକି ପଡ଼ି ସିଏ ମୁହଁ ବୁଲାଇ ଅନାଇଦେଲେ ତ ଦେଖିଲେ ଯେ ହାତର ଆଙ୍ଗୁଠିମାନଙ୍କ ଦ୍ୱାରା ମୁଦିମାନଙ୍କର ହୀରାମାନଙ୍କୁ ଚମକାଇ ହାତ ଯୋଡ଼ି ପଲନିସ୍ୱାମିର

ଚେଟ୍ଟିଆର୍ ଭଗବାନଙ୍କର ଦର୍ଶନ କରିବାକୁ ଯାଇ ଗମ୍ଭୀର ଭାବରେ ଠିଆ ହୋଇ ରହିଛନ୍ତି । ଶାଲୈର ପ୍ରସିଦ୍ଧ ଗହଣା ବେପାରୀ ସି. ଏମ୍. ପି. ଚେଟ୍ଟିଆର୍‌ଙ୍କର ପୁରୁଷ ।

"ନାହିଁ, କିଛି ନାହିଁ । ଏଣେ ଅଡ଼ିଟର୍ କେମନ୍‌ଙ୍କ ପାଖକୁ ଦୋକାନ ବିଷୟରେ କଥାବାର୍ତ୍ତା ହେବାକୁ ଆସିଥିଲି । ତାଙ୍କ ସହିତ କଥାବାର୍ତ୍ତା ହୋଇ ସାରିଲିଣି । ଲେଉଟିବା ବେଳକୁ ଶାସ୍ତାନ୍‌ଙ୍କର ଦର୍ଶନ କରିବାଲାଗି ଏଠି ଟିକିଏ ଅଟକିଗଲି ।"

"ଆଚ୍ଛା, ଭଲ ହେଲା । ମୁଁ କ୍ଲବ୍ ଯାଉଛି, ଆପଣ ମୋ' ସାଙ୍ଗରେ ଆସିବେ କି ? ଓ୍ୱାଲ୍ଟ୍‌ଟାକ୍ସ ମୁହାଣ ପାଖରେ ମୁଁ ଆପଣଙ୍କୁ ଓହ୍ଲାଇ ଦେବି । ଏଠି ଭାରି ହଇରାଣ ହେବାକୁ ପଡ଼ିବ । ଏଠାରେ ଠିଆ ହୋଇ ରହିବେତ ଆପଣଙ୍କୁ ବସ୍ ବି ମିଳିବ ନାହିଁ ।" କ୍ଲାନ୍ତି ଏବଂ ମନର ବ୍ୟାକୁଳତା ହେତୁ ଅନନ୍ତନ୍ ନାୟର ତାଙ୍କର ପ୍ରସ୍ତାବରେ ସମ୍ମତ ହୋଇଗଲେ । ଗାଡ଼ିର ଷ୍ଟିଅରିଙ୍ଗ୍‌କୁ ଧରି ପଳନିସ୍ୱାମି ଚେଟ୍ଟିଆର୍ ଗାଡ଼ି ଭିତରେ ବସିଥିଲେ । ତାଙ୍କର ବାଆଁ ପାଖକୁ ହିସାବର ବହିଗୁଡ଼ିକ ସମେତ ଅନନ୍ତନ୍ ନାୟର୍ ଯାଇ ବସିଗଲେ । ଯେଉଁ ଧଳାରଙ୍ଗର ଗାଡ଼ିଟି କଡ଼କୁ ଠିଆ ହୋଇଥିଲା, ସେଇଟିକୁ ଦେଖି ତାଙ୍କ ଆଖି ଭିତରେ ସେ ସହେଉଥିବା ଏକ ଜ୍ୱାଲା ଅନୁଭବ କରିବାକୁ ଲାଗିଲେ ।

ଏଇଟା ବିକ୍ରମନ୍ ତମ୍ପିଙ୍କର ଗାଡ଼ିନା ? ପଳନିସ୍ୱାମି ଚେଟ୍ଟିଆର୍‌ଙ୍କର ଧ୍ୟାନ ମଧ୍ୟ ସେହି ଆଡ଼କୁ ଯାଇଥିବ । ସିଏ ଯେପରି ଭାବରେ ଗମ୍ଭୀର ହୋଇ ଅନନ୍ତନ୍ ନାୟର୍‌ଙ୍କର ମୁହଁ ଆଡ଼କୁ ଅନାଇଲେ, ସେଥିରୁ ତାଙ୍କୁ ନିଶ୍ଚୟ ସବୁ କିଛି ଜ୍ଞାତ ହୋଇଯାଇଛି ବୋଲି ଜଣାପଡ଼ୁଛି ।

ନିଜ ପ୍ୟାଣ୍ଟ ପକେଟ୍‌ରୁ ସିଗାରେଟ୍ ଲାଇଟର୍ ବାହାର କରି ସେ ସିଗାରେଟ୍ ଲଗାଇଲେ । ଗୀଅର ମୋଡ଼ି ଦେଇ ଗାଡ଼ି ଷ୍ଟାର୍ଟ କଲେ ।

ନିଶ୍ଚୟ କୌଣସି ଦାମିକା ସିଗାରେଟ୍ ହୋଇଥିବ । ଗାଡ଼ିସାରା ବାସନାରେ ମହକି ଉଠୁଥିଲା ।

"ଅନନ୍ତନ୍ ନାୟର୍…ସିଗାରେଟ୍ … ?

"ନାହିଁ, ଥାଉ… "

ଗାଡ଼ି ଥାନାପାଖ ଛକକୁ ଆସି ବାଆଁ ପଟକୁ ବୁଲିଲା, ବର୍ତ୍ତମାନ ପି. ଡବ୍ଲ୍ୟୁ. ଡ଼ି. ବଙ୍ଗଳାରେ ମନ୍ତ୍ରୀ କେ. ଟି. ବାଲକୃଷ୍ଣନ୍‌ଙ୍କ କୋଠି ସାମନା ଦେଇ ଯାଉଛି । ବାଆଁ ପଟକୁ ଡେକ୍ଲାଡ଼୍ ପଡ଼ିଆରୁ ଥଣ୍ଡା ପବନ ବହୁଥିଲା । ଅତରର ହାଲୁକା ଗନ୍ଧଟିଏ ଗାଡ଼ି ଭିତରେ ଜମି ରହିଥିଲା ।

"ହଁ, ଏଇ ପଲନସ୍ୱାଣ୍ଡି ଚେଟ୍ଟିଆର ଏହି ସହରରେ ପ୍ରକୃତରେ କେତେ ବଡ଼ ଜଣେ ମଣିଷ ହୋଇଗଲଣି । ସ୍ୱାଁଙ୍କ ସାଙ୍ଗରେ ଏମିତି ଏକାଠି ପିବାର ସୁଯୋଗ ମିଳିଲେ ବି ଆପଣାକୁ ଗୌରବାନ୍ୱିତ ମନେ ହେଉଛି ।...ରାଜନଅରରେ କାମ କରିବା ପ୍ରସାଦରୁ ହିଁ ଏସବୁ ମିଳୁଛି ।"

ବର୍ତ୍ତମାନ ପଲନସ୍ୱାଣ୍ଡି ସହରରେ ଦୁଇଚାରିଟା ସିନେମା ଘରର ମାଲିକ । ପୁଣି କୁଲନ୍ତରରେ ତାଙ୍କର ଗୋଟିଏ ସିନେମା ଷ୍ଟୁଡ଼ିଓ ମଧ୍ୟ ରହିଛି । ସହରରେ ସିଏ ଗଲ୍ଫକ୍ଲବ୍ ଓ ଟେନିସ୍ ପ୍ରଭୃତି କ୍ଲବ୍‌ର ସଭାପତି; ସହରର ମନ୍ଦିର ଗୁଡ଼ିକରେ ଯେଉଁ ସବୁ ମେଳା ଉତ୍ସବାଦି ହୁଏ, ସିଏ ସେସବୁଡ଼ିକର ଧର୍ମକର୍ତ୍ତା । ସେ ଏହିପରି ଅନେକ ପଦରେ ରହିଛନ୍ତି...। ସ୍ୱାଁର ମୁଖଲକ୍ଷଣଟି ମଧ୍ୟ ଅବିକଳ ସେହିପରି...। ଦେଖିବାକୁ କେତେ ସୁନ୍ଦର,—ସତେଯେପରି ଗ୍ରେପା ଛଡ଼ା ଯାଇଥିବା ଆଳୁଟିଏ... ।

ଏହି ସବୁଥିରୁ ଆହୁରି ଅଧିକ ବଡ଼ କଥା ହେଉଛି...ସିଏ କବିତା ଲେଖେ ବୋଲି ବି ଶୁଣିଛି । କୌଣସି ଏକ ସାହିତ୍ୟ ପତ୍ରିକାର ସମ୍ପାଦକ ମଧ୍ୟ ହୋଇଛି... ।

ଏହି ସହରରେ ସ୍ୱାଁର ଯେଉଁ ପ୍ରଭାବ ରହିଛି, ଏ ସବୁଯାକ କ'ଣ ତା'ର ପଇସା ସକାଶେ ହିଁ ରହିଛି ?

ସ୍ୱାଁଙ୍କର ବଡ଼ବାପି ପି. ଏମ୍. ପି. ଚେଟ୍ଟିଆର୍‌ଙ୍କ ବିଷୟରେ ବି କ'ଣ କହିବା ? ଲୋକେ କହନ୍ତି ଯେ ହୀରା ଆଉ ମୋତିକୁ ପରୀକ୍ଷା କରି ଦେଖିବାର ଲୋକ ତାଙ୍କଠାରୁ ବଳି ଏହି ସହରରେ କେହି ନାହିଁ । ଅନନ୍ତନ୍ ନାମ୍ବୁର୍ ଜଣେ ମଧ୍ୟ କେତେଥର ଦେଖିଛନ୍ତି ଯେ ରାଜାଙ୍କ ନଅରରୁ ମଧ୍ୟ କେତେଥର ବହୁମୂଲ୍ୟ ହୀରାମାଣିକ୍ୟ ପ୍ରଭୃତିର ମୂଲ୍ୟ କରିବା ସକାଶେ ଗାଡ଼ି ପଠାଇ ତାଙ୍କୁ ସେଠାକୁ ଡକାଇ ମଧ୍ୟ ନିଆ ଯାଉଥିଲା ।

ହଁ, ଶାଲୈରେ ସିଏ କେବଳ ନାମକୁ ମାତ୍ର ଦୋକାନଟିଏ ରଖିଛନ୍ତି । ସେଠି ଗଦୀ ଉପରେ ପେଟଟିକୁ ବାହାର କରି ବସି ରହିଥାନ୍ତି । ପେଟ ଉପରେ ହାତ ବୁଲାଇ ତାଙ୍କୁ ଏପରି କହୁଥିବାର ସେହି ବାଟ ଦେଇ ଯାଉଥିବା ସବୁ ଲୋକେ ନିଶ୍ଚୟ ଶୁଣିଥିବେ ଯେ "ଆରେ ଭାଇ ! ଏ ମାଟି ତ ଏମିତି ଯେ ଏଠାରେ ଯେ ଅସଲ ହୀରା ହିଁ ଉତ୍ପନ୍ନ ହୁଏ...ଏପରି କୌଣସି ହୀରା ନାହିଁ ବା ଇନ୍ଦ୍ରନୀଳ ନାହିଁ, ଯାହାକି ମାଟିରୁ ନ ବାହାରିଛି । ହଁ, ଆଜିକାଲି ଆଉ କିଏ ଏତେ ପରିଶ୍ରମ କରି ସେସବୁଡ଼ାକୁ ଖୋଳି ବାହାର କରୁଛି ? ଥରେ ଅରର୍ତ୍ତି (ନଦୀ) କୂଳରେ (ସେଠାରେ ବହୁତ ହୀରା ମିଳେ ବୋଲି ଲୋକେ କହନ୍ତି) ଗୋଟିଏ ବୃଦ୍ଧୀ ସକାଳୁ ଉଠି ନଈକୁ ହାତମୁହଁ ଧୋଇବାକୁ ଗଲା ଯେ ସେଠାରେ ତାକୁ ପଥରଟିଏ ମିଳିଲା—ପିଲାଏ ଖେଳୁଥିବା ଗୁଳିଟି ପରି ଆକାର ହେବ, ଝଟେ ବଡ଼ କାଚ

ପର ଚକ୍‌ଚକ୍‌ କରୁଥାଏ । ହଁ, ଏଇଟି ଯାହା ହୋଇଥାଉ ପଛକେ, ଶାଲୈର ଚେଟ୍ଟିଆରଙ୍କ ହାତରେ ସ୍ୱାକୁ ନେଇ ଦେଇଦେବ । ହୁଏତ ମୋତେ ବ କଛ ମିଳଯିବ—ଏପର ଭାବି ସେହ ଗ୍ରୁଷୀ ସେଇଟିକୁ ଉଠାଇ ଆଣିଲ ଓ ଲୁଗ୍ରଇ କର ତାଙ୍କ ପାଖକୁ ନେଇ ଆସିଲ । ଯଦ ଆଉ କେହ ଦେଖି ପକାଇବ ଓ ଯାଇ ସରକାରଙ୍କୁ ଖବର ଦେଇଦେବ, ତେବେ ହାତରେ ବାଜ ମଧ୍ୟ ତଥାପି ଆଉ ମୁହଁ ପର୍ଯ୍ୟନ୍ତ ଆସି ପାରବ ନାହିଁ··· ।"

ଚେଟ୍ଟିଆର୍‌ ସେହ ପଥରଟିକୁ ବୁଲାଇ ବୁଲାଇ ଦେଖିଲେ, "ତୁ କ'ଣ ପାଗଳ ହେଲୁ ନା କ'ଣ ? ଏ କାଚଖଣ୍ଡେ ତୋତେ କୋଉଠାରୁ ମିଳଲ କହଲୁ··· ? ବାସ୍‌, ସେଠାରୁ ଉଠାଇ ଆଣି ସକାଳୁ ସକାଳୁ ପାଦରେ ଗ୍ରଲ ଗ୍ରଲ ଦୋକାନ ଖୋଲୁ ନଖୋଲୁଣୁ ଆସି ଏଠାରେ ପହଞ୍ଚିଗଲୁ ! ହଁ, ଆଜିକାଲ ତ ମୋର ସବୁ କାମ ଅଚଳ ହିଁ ହୋଇଗଲଣି··· ।" ଏକଥା କହ ଚେଟ୍ଟିଆର୍‌ ସେହ ପଥରଟିକୁ ସଡ଼କ ଉପରକୁ ଫିଙ୍ଗିଦେଲେ ।

ଗ୍ରୁଷୀ ଆଉ ସହ ପାରଲନାହିଁ ।

"ଆଜ୍ଞା ! ଆପଣ ଏପର କଥା କହନ୍ତୁ ନାହିଁ । ସକାଳେ ମୁଁ ଘରେ ତୋରାଣି ବ ପିଇନାହିଁ, ସିଧା ଇଆଡ଼େ ଗ୍ରଲ ଆସିଛ । ବର୍ତ୍ତମାନ ଫେର ଯିବାପାଇଁ ମୋ' ପାଖରେ ବସ୍‌ଭଡ଼ା ପଇସା ପର୍ଯ୍ୟନ୍ତ ବ ନାହିଁ ।" ଏହପର ଭାବରେ ସେହ ଗ୍ରୁଷୀଟି କେତେ ଅଳ ଗୁହାର କରବାକୁ ଲଗିଲ ଓ ପୁଣି ପଥରଟିକୁ ରାସ୍ତାରୁ ଉଠାଇ ଆଣି ଚେଟ୍ଟିଆର୍‌ଙ୍କ ପାଖକୁ ଆସି ଠିଆ ହୋଇ ମୁଣ୍ଡ କୁଣ୍ଡାଇଦେଲ ।

"ଆରେ ତୁ'ଟା କେଡ଼େ ଏକଜିଦଆରେ ! ହଁ ଠିକ୍‌ କଥା ! ···ଏହ କାଚ-ଖଣ୍ଡଟି ସକାଣେ ନୁହେଁ, ମାତ୍ର ତୁ ଏପର କାନ୍ଦମାଳ ଠିଆ ହୋଇଛୁ, ସେଥିଲଗି ମୁଁ ତୋତେ ମାଗଣାରେ ଏହ ପାଞ୍ଚୋଟି ଟଙ୍କା ଦେଉଛ । ଆର ଥରକୁ କୌଣସି ଭଲ ପଥର ନେଇ ଆସିବୁ··· ।" କହ ଭାରି ଅରୁଚି ଦେଖାଇ ସେ ପଥରଟିକୁ ହାତରେ ନେଲେ, ପଇସା ସିନ୍ଦୁକ ଭିତରେ ପକାଇଦେଲେ ଓ କହଲେ, "ହୋ ଗୁମାସ୍ତା, ସ୍ୱାକୁ ପାଞ୍ଚଟା ଟଙ୍କା ଦଅ ଓ ଧର୍ମକାର୍ଯ୍ୟ ଲଗି ଖରଚର ଖାତାରେ ଲେଖିରଖ ।" ବଗ୍ରୁରା ସେଇ ଗ୍ରୁଷୀଟି ପାଞ୍ଚଟଙ୍କା ନେଇ ବଦା ହୋଇଗଲ ।

ଲେକେ କହନ୍ତ ସେଇ ଖଣ୍ଡିଏ ପଥରରୁ ହିଁ ଚେଟ୍ଟିଆର୍‌ଙ୍କୁ ଦଶ କ କୋଡ଼ିଏ ହଜାର ଟଙ୍କା ମିଳଥିଲ । ଏହପର କେତେ କେତେ ଘଟଣା··· ।

ତା'ପରେ ଲକ୍ଷପତ ହେବାଲଗି ଆଉ କାହିଁକ କଷ୍ଟ ହୋଇଥାନ୍ତା ? କେଶବନ୍‌ ତମ୍ପିଙ୍କ ଶଶୁର ପୋଦୁଓ୍ୱାଲ୍‌ଙ୍କ ପାଖରୁ ଏବଂ ଖୋଦ୍‌ ମହାରାଜାଙ୍କ ପାଖରୁ ମଧ୍ୟ ସିଏ ବଡ଼

ବଡ଼ କେତୋଟି ଜାଗା ପୋନମୁଡ଼ି, ଇନ୍ଦୁରରେ ପୋନକୁନ୍ନମ୍ ପ୍ରଭୃତି ସ୍ଥାନରେ ହାତୀ ଓ ଘୋଡ଼ାର ଦାମ୍ ଦେଇ କିଣି ପକାଇଛନ୍ତି । ସନ୍ତାନ କେହି ନଥିଲେ, ତେଣୁ ଶେଷରେ ଆପଣାର ସମସ୍ତ ଜମି ଓ ସମ୍ପତ୍ତିକୁ ସେ ନିଜ ଶ୍ରେଷ୍ଠ ଭାଇର ଗୋଟିଏ ବୋଲି ପୁଅ ଏହି ଭାଲନସ୍ବାମି ଚେଟ୍ଟିଆର୍‌ଙ୍କ ନାମରେ ଲେଖିଦେଲେ ଓ ସ୍ୱୟଂ ଯାଇ ଶିବଲୋକରେ ରହିଲେ ।

ସବୁଯାକ ସମ୍ପତ୍ତି ବର୍ତ୍ତମାନ ଏଇ ଭୋଗ କରୁଛି । ମାତ୍ର ସହରରେ ସମସ୍ତଙ୍କ ସହିତ ଭଲ ବ୍ୟବହାର କରି ଜାଣିଛି, ତେଣୁ ସବୁ ଶ୍ରେଣୀର ଲୋକଙ୍କ ପାଖରେ ଲୋକପ୍ରିୟ ହୋଇପାରିଛି ।

ଗାଡ଼ି ମହିଳାକଲେଜ ପାରି ହୋଇ ଯାଉଥିଲା । "ହଁ, ଅନନ୍ତନ୍ ନାୟର୍, ଆପଣଙ୍କୁ ନଅର-କାର୍ଯ୍ୟାଳୟରେ ପୁନର୍ବାର କୌଣସି ଚାକିରି ମିଳିବାର ସମ୍ଭାବନା ରହିଛି କି ?" ପଳନିସ୍ବାମି ପଚାରିଲେ ।

"ଆଉ ମିଳିବନାହିଁ ବୋଲି ଲାଗୁଛି ।"

"ଭୈରବନ୍ ପିଲାଇ କେତେ ଦେଉଛନ୍ତି ?"

"ମାସିକ ତିରିଶହି ଟଙ୍କା । ଆର ମାସରୁ ଆଉ ପଚିଶଟଙ୍କା ବଢ଼ାଇଦେବେ ବୋଲି କହିଛନ୍ତି ।"

"ହଁ, ଭଲ କଥା ।"

ଆଗକୁ କଥା ପଡ଼ିବା ପୂର୍ବରୁ ବଲ୍ଲଓ୍ୱ କାକ୍‌ଡ଼ୁ ଜଙ୍କ୍‌ଶନ୍‌ର ବସ୍‌ଷ୍ଟପ୍ ଆସି ପହଞ୍ଚି-ଗଲା ।

ଗାଡ଼ି ଅଟକିଲା ।

"ମୁଁ ତେବେ ଏଇଠି ଓହ୍ଲାଇ ଯାଉଛି । ବହୁତ ଧନ୍ୟବାଦ ।" କୃତଜ୍ଞତା ପ୍ରକାଶ କରି ବହିଗୁଡ଼ିକୁ ହାତରେ ଧରି ଅନନ୍ତନ୍ ନାୟର୍ ଗାଡ଼ିରୁ ଓହ୍ଲାଇଗଲେ ।

ବସ୍‌ଷ୍ଟେସନ୍‌ରେ ଠିଆ ହୋଇଥିବା ସୁନ୍ଦରଶ୍ୟା ଝିଅମାନଙ୍କର ଧାଡ଼ୀଗୁଡ଼ିକ ଆଡ଼କୁ ଚାହିଁଯାଇ ଚେଟ୍ଟିଆର୍ ସିଧା ଓ୍ୱେଲ୍ଲେସ୍ଲିମୂଲମ୍ ରାସ୍ତା ଉପରେ ଗାଡ଼ୀ ନେଇ ବାହାରିଗଲେ । ହଁ, କ୍ଲବ୍‌ରେ କେଜାଣି କେତେକେତେ ସାରକା ସ୍ବାମୀଙ୍କର ପ୍ରତୀକ୍ଷା କରି ରହିଥିବେ ।

## ଉଣେଇଶ

"ପଲନସ୍ୱାମିଙ୍କ ଗାଡ଼ୀରେ ଆସି ଏଠି ଓହ୍ଲାଇବାର ସୌଭାଗ୍ୟ ଲାଭ କରିଥିବା ଏ ମହାନୁଭବ ପୁଣି କିଏ ହୋଇଥିବେ ?" ଅନନ୍ତନ୍‌ନାୟରଙ୍କର ମନେ ହେଉଥାଏ ଯେପରି ବସ୍-ଷ୍ଟେସନ୍‌ରେ ଠିଆ ହୋଇଥିବା ଲୋକମାନେ ଠିକ୍ ଏହି କଥାଟି ଭାବି ତାଙ୍କ ଆଡ଼କୁ ନିରୀକ୍ଷଣ କରି ଦେଖିବାରେ ଲାଗିଛନ୍ତି ।

ଏହି ଓ୍ୱେଲୁବକ୍କାଡ଼ୁରେ ହିଁ ଡ଼. ପି. ଆଇ. ଅଫିସ୍, ସର୍ଭେ କାର୍ଯ୍ୟାଳୟ, ଆର୍, ଡି. ଓ. ଅଫିସ, ରେଡ଼ିଓ ଷ୍ଟେସନ୍ ପ୍ରଭୃତି କେଜାଣି କେତେକେତେ ଅଫିସ୍ ରହିଛି···

ବସ୍-ଷ୍ଟପ୍ ପାଖରେ ଦଶ ଦଶଟା ବସ୍ ଆସି ରହୁଥିଲେ ମଧ୍ୟ ତଥାପି ଲୋକ ଠିଆ ହୋଇ ରହିଛନ୍ତି । ଅଧିକ ସଂଖ୍ୟାରେ ସ୍ତ୍ରୀଲୋକମାନେ ହିଁ ଅଛନ୍ତି ।

ପେଟ୍ରୋଲ୍ ପମ୍ପ୍‌ର ଡାହାଣ ପାଖକୁ ଜଣେ ଦୁ'ଜଣ ଲୋକ ଉଚ୍ଚକୁ ଉଠାଇ ରଖା ହୋଇଥିବା ଗୋଟିଏ ଗାଡ଼ିକୁ ରବରନଳୀରୁ ଫସ୍ ଫସ୍ ହୋଇ ବାହାରୁଥିବା ପାଣିରେ ଧୋଇବାରେ ଲାଗିଛନ୍ତି ।

ପାଖକୁ ଗୋଟାଏ ଲଣ୍ଡ୍ରୀର ଦୋକାନ, ସେଠାରୁ ଲଣ୍ଡ୍ରୀର ଗନ୍ଧ ଆସି ନାକ ଫଟାଇ ଦେଉଛି ।

ଏଣେ ଓ୍ୱେଲୁବକାକ୍‌ଡ଼ୁ ଜଙ୍କ୍‌ଶନ୍ ଆଡ଼କୁ ଅବସ୍ଥିତ ମହିଳା କଲେଜର 'ଓ୍ୱେଇନ୍ ଫାଟକଟି ଦେଇ ଗୋଟିଏ ଭ୍ୟାନ୍ ବାହାରକୁ ବାହାରି ଯାଉଛି । ଭ୍ୟାନ୍ ଭିତରେ ପଲେ ଝିଅ·········

କଲେଜ ପଡ଼ିଆରେ ପାଇଜାମା ଓ କୁର୍ତ୍ତା ପିନ୍ଧି ଝିଅମାନେ ଡ଼େଇଁ ଡ଼େଇଁ ବାସ୍କେଟ୍‌ବଲ୍ ଖେଳୁଛନ୍ତି । କୋଳାହଳ·········କଲେଜ ହତାର ପାଚେରି କଡ଼ରେ ଠିଆ ହୋଇଥିବା ଲମ୍ବାଆମ୍ବ ଗଛଗୁଡ଼ିକର ତଳେ ଓହଳି ହୋଇ ଆସିଥିବା ଶାଖା ମାନଙ୍କରେ ଚ଼ଢି ପାଞ୍ଚୋଟି ଝିଅ ବେଶ୍ ଆରାମରେ ଯାଇ ବସିଛନ୍ତି ଓ ଡାଳଗୁଡ଼ିକୁ ଉପର ତଳକୁ କରି ଭାରି ଖୁସିରେ ନିଜ ଭିତରେ ଗପ କରୁଛନ୍ତି ।

କଡ଼କୁ ଥିବା ଗୋଟିଏ ବଡ଼ ହୋଟେଲରୁ ବଡ଼ କର୍ଣ୍ଣକଟୁ ଧ୍ୱନିରେ ରେଡ଼ିଓରୁ ଗୀତମାନ ଅଜାଡ଼ିହୋଇ ପଡ଼ୁଛି । ହଁ, ବୋଧହୁଏ ଇଏ ନୂଆ ହୋଟେଲ୍ ଖୋଲିଛି······ ଏହା ପୂର୍ବରୁ ଏବାଟ ଦେଇ କେବେ ଗଲାବେଳେ ସିଏ ଏଇଟିକୁ ଆଦୌ ଦେଖି ନଥିଲେ । ଅନନ୍ତନ୍ ନାୟରଙ୍କର ମନେହେଲା ଯେ ସେଠାରେ ପଇସାବାକ୍ସ ପାଖରେ ବସି ଥିବା ରେଡ଼୍ଡିଆର ବି ତାଙ୍କର କେହି ପରିଚିତ ପରି ମନେହେଉଛି । ବାହାରେ "ବ୍ରାହ୍ମଣ ହୋଟେଲ" ବୋଲି ଲେଖା ହୋଇଥିବା ସାଇନ୍‌ବୋର୍ଡ଼ଟିଏ ଝୁଲୁଛି । ଏଠାରେ ନାମକୁ ମଧ୍ୟ ଖୋପେଇ କରିବାପାଇଁ ପ୍ରକୃତରେ କୌଣସି ବ୍ରାହ୍ମଣ ଅଛନ୍ତି ନା ନାହିଁ ?

ହଁ, ଏବେଯାଇ ମନେ ପଡ଼ିଲା । ଏହି ରେଷ୍ଟୁରାଣ୍ଟ୍‌କୁ ସେ ଏଥିପୂର୍ବରୁ 'ଅନ୍ନପୂର୍ଣ୍ଣା ବ୍ରାହ୍ମଣ ହୋଟେଲ'ରେ ବିଲ୍ ପଇଠ କରୁଥିବାର ଦେଖିଥିଲେ । ବାହାରେ ଲାଗିଥିବା ସାଇନ୍‌ବୋର୍ଡ଼୍‌ଟିକୁ ଛାଡ଼ିଦେଲେ ସେଇଟିକୁ ମଧ୍ୟ ତ ରେଷ୍ଟୁରାଣ୍ଟ୍ ହୋଟେଲ୍ ବୋଲି କୁହାଯିବ...... ? ହଁ, ଏହିପରି ବୋଧ ହେଉଛି ଯେ ଏହି ହୋଟେଲରେ ବର୍ତ୍ତମାନ ଏଇ ହେଉଛି ମାଲିକ । ......ଅଥବା ଏଇଟି ମଧ୍ୟ ଶାଲେଁ ବଜାରରେ ଥିବା ସେହି ହୋଟେଲ୍‌ଟିର ଗୋଟିଏ ଶାଖା ହୋଇଥିବ ।

ଯାହା ହୋଇଥାଉ ପଛକେ, ଏହି ସହରରେ ଥିବା ସବୁଯାକ ନିରାମିଷ ଭୋଜନାଳୟର ଧନ୍ଦାଟିକୁ ଏମାନେ କେଡ଼େ ଶୀଘ୍ର ଆପଣା ହାତକୁ ନେଇ ନଆସି ପାରିଲେ ! ···ମେନ୍‌ରୋଡ୍ ଉପରେ, ଶାଲେଁରେ, ମେଡ଼ିକାଲ୍ କଲେଜ ପାଖରେ, ରେଲଷ୍ଟେସନ୍‌ର ସାମନାରେ—ସହରର ସବୁଯାକ ଗଳିରେ ମାଳା ପରି ଅଛିଥିବା ସବୁଯାକ ହୋଟେଲକୁ ଗୋଟିଏ ଦିନରେ ହାତିଘୋଡ଼ାର ଦାମ୍ ଦେଇ ସେମାନେ ଖରିଦ୍ କରି ନେଲେ ଓ ଏୟାର୍ କଣ୍ଡିଶନ୍, ରେଫ୍ରିଜରେଟର୍ ଓ ବଡ଼ 'ଡାଇନିଙ୍ଗ୍ ହଲ୍' ପ୍ରଭୃତି ଅଧିକ ଆରାମ ଓ ସୁବିଧା ଦ୍ୱାରା ସେଗୁଡ଼ିକୁ ବହୁତ ଆକର୍ଷକ କରି ପଇଠ କଲେ ଏବଂ ବର୍ତ୍ତମାନ ଖୁବ ଜୋରସୋରରେ କାରବାର ଚଳାଇ ପାରୁଛନ୍ତି । ଏ ଅଦ୍ଭୁତ କୌଶଳ, —ଅନନ୍ତନ୍ ନାୟର୍ ମନେ ମନେ ପର୍ଯ୍ୟାଲୋଚନା ବାରେ ଲାଗିଥିଲେ ।

ସଡ଼କର ଡାହାଣଆଡ଼ୁ ବାଆଁ ଆଡ଼କୁ ଗୋଟିଏ ଶୋଭାଯାତ୍ରା ଯାଉଥିବାର ଦେଖାଗଲା । ହାତରେ ପତାକା ଏବଂ ପୋଷ୍ଟର ଧରି 'ଇନ୍‌କିଲାବ ଜିନ୍ଦାବାଦ' ନାଦ କରି ଲୋକମାନେ ଯାଉଥିଲେ । ହୁଁ ! ସବୁଦିନ ପରି ଆଜି ମଧ୍ୟ ପଳ୍ପ୍ୱାଡ଼୍ ପଡ଼ିଆରେ କୌଣସି ସାଧାରଣ ସଭା ହେବ... । ସମସ୍ତେ ଠିଆ ହୋଇ ଶୋଭାଯାତ୍ରା ଦେଖୁଛନ୍ତି ।

"ଦେଓ୍ୱାନ୍ ପେସ୍‌କାରଙ୍କ ଝିଅ ଜଣେ ଖ୍ରୀଷ୍ଟିଆନ୍ ସାଙ୍ଗରେ କୁଆଡ଼େ ପଳାଇ ଯାଇଛି···" କହି ଚିତ୍କାର କରି ଗୋଟିଏ ପିଲା ଖୁବ ସରଗରମ ହୋଇ ଖବରକାଗଜ ବିକୁଛି । ହୁଁ....ଯଦି ପନ୍ଦରବର୍ଷ ପୂର୍ବେ ଏହି ଖବରକାଗଜ ଥାନ୍ତା ତ, 'ନଅର-କାର୍ଯ୍ୟାଳୟର ଜଣେ ଅଫିସରଙ୍କର ଭାରିଯା ଆପଣାର ପତି ଓ ପିଲା ଛୁଆଁଙ୍କୁ ଛାଡ଼ି ତହସିଲଦାରଙ୍କ ସାଙ୍ଗରେ ପଳାଇ ଯାଇଛନ୍ତି' କହି ଗଳି ଗଳି ବୁଲି ଏତେବଡ଼ ପାଟିରେ ଚିତ୍କାର କରି ପିଲାମାନେ ତାକୁ ବିକୀ କରିଥାନ୍ତେ,—ତୁରନ୍ତ ଏହିପରି ଗୋଟିଏ ବିଷର ଅନନ୍ତନ୍ ନାୟରଙ୍କର ଛାତି ଭିତରେ କଣ୍ଟା ଫୋଡ଼ି ଦେଉଥିଲା ପରି ଲାଗିଲା ।

ବସ୍ ଆସିଗଲା । ବସ୍ ମଣିଷରେ ଭର୍ତ୍ତିହୋଇ ରହିଥିଲା । କଉ ମଧ୍ୟ କୋଉଠି କ'ଣ ହେଉଛି କେଜାଣି ? ଭିଡ଼ ଭିତରେ ଧସ୍ତାଧସ୍ତି କରି ଯେକୌଣସି ପ୍ରକାରେ ବସ୍‌କୁ ଉଠି ଅନନ୍ତନ ନାୟର୍ ମଧ୍ୟ ବାଦୁଡ଼ି ପରି ଲଟକି ଠିଆ ହୋଇ ରହିଲେ ।

ବସ୍ ଭିତରେ ମଧ୍ୟ ସ୍ତ୍ରୀମାନଙ୍କର ସଂଖ୍ୟା ପୁରୁଷଙ୍କ ସଂଖ୍ୟାଠାରୁ ଅଧିକ ଥିଲା । ଖୁବ ଗରମ ଲାଗୁଥିଲା···

ପାଉଁରୁଟି ଦୋକାନରେ ଛକଟି ପାର ହୋଇ ପାଲେସ୍ସମ୍ର ସାମନାକୁ ଉଚ୍ଚ ହୋଇ ଠିଆ ହୋଇ ରହିଥିବା ଖ୍ରୀଷ୍ଟିଆନ୍ ସ୍କୁଲ ଓ ମୁସଲମ୍ ମସ୍‌ଜିଦ୍ ଭିତରେ ଚାଲି ଯାଇଥିବା ମେନ୍‌ରୋଡ଼ରେ ବସ୍ ଚାଲିବାକୁ ଲାଗିଲା ।

ବସ୍ ଆସି ଟାଉନ୍‌ହଲ୍ ପାଖ ଛକରେ ଅଟକିଲା । ଗରମ ହେତୁ ବସ୍ ଭିତରେ ଥିବା ଭିଡ଼ର ଧନଚଉଠ ଖୁବ ସତେଅବା ତରଳ ଗଳପର ମନେ ହେଉଥାଏ । ବର୍ତ୍ତମାନ ପୁଣି ସେକ୍ରେଟେରିଏଟ୍ ବସଷ୍ଟପ୍‌ରୁ ସରକାରୀ କର୍ମଚାରୀମାନଙ୍କର ଭିଡ଼ ବି ଆସି ପହଞ୍ଚିବ ।

ଅନନ୍ତନ୍ ନାୟର୍ ଆରାମରେ ବସିପଡ଼ିଲେ । ଟାଉନ୍‌ହଲରେ କୌଣସି ନୂତନ ନାଟକର ଉଦ୍‌ଘାଟନ ହେଉଛି । ସେଥିଲାଗି ବି ଖାସ୍ ଭିଡ଼ ।

"କିଏ, ଅନନ୍ତନ୍ ନାୟର୍ ?"

ଚାଲିପଡ଼ି ଦେଖିଲା ବେଳକୁ ସେ ପିଷାରଡ଼ିଙ୍କୁ ଦେଖିଲେ । ସିଏ ବି ଆସି ତାଙ୍କ ପାଖରେ ବସିଲେ ।

ସିଏ କିଛିଦିନ ପାଇଁ ଅନନ୍ତନ୍ ନାୟର୍‌ଙ୍କ ସହିତ ପ୍ରାସାଦ-କାର୍ଯ୍ୟାଳୟରେ କାର୍ଯ୍ୟ କରିଥିଲେ, ତା'ପରେ ରେଭିନ୍ୟୁ ବିଭାଗରେ ଚାକିରି ମିଳିବାରୁ ସେଠାରୁ ଚାଲିଗଲେ । ତାଙ୍କୁ ଦେଖି ଅନନ୍ତନ୍‌ନାୟର୍‌ଙ୍କ ମନରେ ଈର୍ଷା ଜାତହେଲା ।

"କ'ଣ ଅଫିସରୁ ଫେରୁଛନ୍ତି କି ?"

"ହଁ, କିଛି ନିଜର ପେନ୍‌ସନ କାଗଜକୁ ଉପରକୁ ପଠାଇ ଦେବାପାଇଁ···

"କ'ଣ କହିଲେ—?"

"ହଁ, ମୋର ରିଟାୟାର୍ କରିବା ଦୁଇବର୍ଷ ହୋଇଗଲାଣି···। ବର୍ତ୍ତମାନ ମଧ୍ୟ ପେନ୍‌ସନ୍ ମିଳିବା ଆରମ୍ଭ ହୋଇନାହିଁ । ଏହି ବୁଢ଼ା ଅବସ୍ଥାରେ, ମୁଁ ଯେଉଁସବୁ ଜାଗାରେ କାମ କରିଥିଲି, ସବୁଯାକ ଅଫିସ୍‌କୁ ଯାଇ ବୁଲିବୁଲି ଥକିଲିଣି···। ଆକାଉଣ୍ଟସ୍ ଅଫିସ୍, କଣ୍ଟ୍ରୋଲର୍ ଅଫିସ୍ ପ୍ରଭୃତି ସବୁ ଅଫିସ୍‌କୁ ଯାଇ ଲାଞ୍ଚ ଦେଲେ ମଧ୍ୟ ଏବେଯାଏ କିଛି ହୋଇ ପାରିନାହିଁ । ବର୍ତ୍ତମାନ ଉଙ୍ଗା ଏଇ ପାରରେ ହିଁ ରହିଛି···"

ଏକଥା ଶୁଣି ଅନନ୍ତନ୍ ନାୟର୍‌ଙ୍କ ମନରେ ଦୟା ଆସିଲା । ଏତେଦିନ ଧରି ସରକାରୀ ଚାକିରି କରି ବାର୍ଦ୍ଧକ୍ୟରେ ପୁଣି ଏହି ପୁରସ୍କାର ! ଏ ସଂସାର ଖୁବ କୃତଘ୍ନ ! ତାଙ୍କ କଣ୍ଠରୁ ଆହାବୋଲି ଶବ୍ଦଟିଏ ବାହାରିଗଲା ।

ବସ୍ ଇଉନିଭର୍ସିଟି କଲେଜ ପାଶହୋଇ ଦଉଡ଼ିବାରେ ଲାଗିଛୁ ।

"ଆଉସବୁ ଖବର କ'ଣ ?"

"ନାଇଁ, ଆଉ ବିଶେଷ ଖବର କ'ଣ ?"

ପୁଣି କେତେସମୟ ପରେ ପିଷାରଡ଼ି କଥା ଆରମ୍ଭ କଲେ, "କ'ଣ କହିବି ଅନନ୍ତନ୍ ନାୟର୍ ! ଏବେଶୁଦ୍ଧା ଜୀବନର ନାଆଟି ଗୋଟିଏ କୂଳରେ ଯାଇ ଲାଗି ପାରିଲା ନାହିଁ । ବଡ଼ ପୁଅ ଫାର୍ଷ୍ଟ ଡ଼ିଭିଜନ୍‌ରେ ବି. ଏ. ପାସ୍ କରିଛି । ଲାଞ୍ଚ ଦେଲା ପରେ ଯାଇ ଏମ୍. ଏ. ରେ ନାଆଁ ଲେଖାଇବା ସମ୍ଭବ ହେଲା,—ହୁଁ ଏମ୍. ଏ. ପାସ୍ କଲା ପରେ ବି ସେ କ'ଣ କରିବ ? ଟ୍ରାନ୍‌ସପୋର୍ଟରେ ଖଣ୍ଡେ କିରାଣୀକାମ ପାଇଁ ବର୍ତ୍ତମାନ ସୁଦ୍ଧା ଏଣୁତେଣୁ ଖର୍ଚ୍ଚରେ ପାଞ୍ଚହଜାର ଗଲାଣି ।—ତା' ତଳ ପୁଅ ଦି' ବର୍ଷ ଆଗରୁ ଏମ୍. ବି. ବି. ଏସ୍. ପାସ୍ କରି ଘରେ ବସିଛି । ବର୍ତ୍ତମାନ ସୁଦ୍ଧା କୌଣସି ଚାକିରି ମିଳିନାହିଁ ଓ ସିଏ ବି ଛତରିଙ୍କ ପରି ଏଣେତେଣେ ବୁଲୁଛି । ହଁ, ହଁ, ତୁମର ପୁଅ ବି ତ ଇଞ୍ଜିନିଅରିଙ୍ଗ୍ ପାସ୍ କରିଥିଲା । ତାକୁ କ'ଣ କୋଉଠି କିଛି ଚାକିରି ମିଳିଲାଣି ?"

"ନା..."

"ହୁଁ ! ଏମିତି ଭାବରେ ସବୁ ଚାଲିବ ତ କୋଉଠି ଏସବୁର ଶେଷ ହେବ ସେକଥା କିଏ ଜାଣିଛି ? – ମୋ'ର ଅନ୍ୟ ପୁଅମାନଙ୍କର ପାଠପଢ଼ା ଏବେମଧ୍ୟ ସରିନାହିଁ । ପାଠପଢ଼ା ସରିଲେ ସେମାନଙ୍କର ବି ଠିକ୍ ଏହି ଦଶା ହେବ । ଦେଶର ଉଦ୍ଧାର ଯେ କିପରି ହେବ, ସେକଥା ଶ୍ରୀ ପଦ୍ମନାଭସ୍ୱାମୀଙ୍କୁ ହିଁ ଜଣା ।

ଆନନ୍ତନ୍ ନାୟର୍‌ଙ୍କର ହଠାତ୍ ମନେ ପଡ଼ିଗଲା ।

"ହେଁ···ରାଜମ୍ମା, ମେଡ଼ିକାଲ୍ କଲେଜ ହଷ୍ଟେଲ୍‌ରେ ଅଛି ନା—?"

"ହଁ, ସେଇଠୁ କ'ଣ ହେଲା ?"

"ବାହାଘର—?"

"ରାଜିନାମା ହୋଇଛି, ନଅବର୍ଷ ପରେ ଯାଇ ବାହାଘର ହୋଇ ପାରିବ । ବର୍ତ୍ତମାନ ତ ମୋଟେ ଚାରିଟି ବର୍ଷ ଯାଇଛି । ଆହୁରି ପାଞ୍ଚବର୍ଷ ବାକି ଅଛି, ପୁଣି ଦେଖାଯିବ । ଏହାଭିତରେ ସିଏ ବି ବୁଢ଼ୀ ହୋଇଯିବେ, ତା'ପରେ କିଏ ବାହା ହେବ—।"

ପିଷାରଡ଼ି ଦୀର୍ଘଶ୍ୱାସ ପକାଇଲେ ।

"ହୁଁ ! - ଏସବୁ ହେଉଛି ସେହି ଘୁଣ୍ଡାର କାରାମତ"—ଅନନ୍ତନ୍ ନାମ୍ବିଆର୍ଙ୍କର ଏହି କଥାଟି ଶୁଣି ପିଲ୍ଲାଇଙ୍କ ବ୍ୟଥାପୂର୍ଣ୍ଣ ହସଟିଏ ହସିଲେ ।

ଯେତେବେଳେ ରାଜମ୍ମା କଲେଜରେ ପଢ଼ୁଥିଲା, ସେତେବେଳେ ଅଟ୍ଟକୁଲ୍ଲଙ୍ଗରର ଉମର୍ ନାମକ ଜଣେ ମୁସଲମାନ ଯୁବକ ସହିତ ରାଜମ୍ମାର ସମ୍ବନ୍ଧ ବନ୍ଦ ହୋଇ ଯାଇଥିଲା, ଏବଂ ଘରେ ସମସ୍ତଙ୍କର ସକଳ ବିରୋଧକୁ ଲଂଘନ କରି ରାଜମ୍ମା ସେହି ଯୁବକଟି ସହିତ ଚାଲିଯିବାକୁ ପ୍ରସ୍ତୁତ ହୋଇଗଲା । ମାତ୍ର ତେଣେ ଉମର୍ ଆପଣା ଧର୍ମର ଆଉଜଣେ ସ୍ତ୍ରୀ ସହିତ ନିକା ବି କରି ପକାଇଲା, ଯେଉଁଥିରେ କି ରାଜମ୍ମାର ପ୍ରାଣରେ ଘୋର ଆଘାତ ଲାଗିଲା ଏବଂ ମୁଁ ନିଅବର୍ଷ ପର୍ଯ୍ୟନ୍ତ ମୋଟେ ବାହା ହେବିନାହିଁ ବୋଲି ଏକ ଶପଥ ନେଇ ମିଏ ଯିଏ ନର୍ସ ହେବାର ଟ୍ରେନିଙ୍ଗ୍ ନେବାକୁ ଚାଲିଗଲା । ଏଗୁଡ଼ାକ ଅତି ପୁରୁଣା କଥା ଓ ଏଗୁଡ଼ାକୁ ସମସ୍ତେ ଜାଣିଛନ୍ତି ।

ସ୍ପେନ୍‌ସର୍ ଜଙ୍କ୍‌ଶନ୍ ପାରି ହୋଇ ବସ୍ ଆଗକୁ ଚାଲିଛି ।

ଧାଡ଼ି ବାନ୍ଧି କେତେ ମୋଟରଗାଡ଼ୀ ଚାଲି ଯାଉଛନ୍ତି ।

ମୂଲ୍ୟବାନ୍ ପରିଚ୍ଛଦ ଭିତରେ କେତେକେତେ ଲୋକ···।

ଏମାନେ ସବୁ ଏତେ ବ୍ୟାକୁଳ ହୋଇ କୁଆଡ଼େ ଦଉଡ଼ିଛନ୍ତି ?

କଥାବାର୍ତ୍ତା କରୁଛନ୍ତି···

ସମସ୍ତେ ହସିବାରେ ଲାଗିଛନ୍ତି···

ଏଗୁଡ଼ାକ କ'ଣ ସବୁଯାକ ଖୁବ ମୋଡ଼ ଚଲାଇ ଦିଆ ଯାଉଥିବା ଯନ୍ତ୍ରଗୁଡ଼ିକର କିମ୍ବା ବ୍ୟତୀତ ଆଉ କିଛି ନୁହେଁ ? ଏମାନଙ୍କର ସମସ୍ତଙ୍କ ହୃଦୟରେ କ'ଣ ତାଙ୍କ ନିଜ ହୃଦୟ ପରି ଗୋଟିଏ ଗୋଟିଏ ଆଗ୍ନେୟଗିରି ମଧ୍ୟ ହୁରୁ ହୁରୁ ହୋଇ ଜଳିବାରେ ଲାଗିଛି ? ଏବଂ ସେଇଟିକୁ ଲୁଚାଇ ରଖିବାକୁ ହିଁ କ'ଣ ଏସବୁ ଦାନ୍ତ ନିକୁଟିବା ଆଉ ହସିବା ଲାଗି ରହିଛି ?...

ବସ୍ ଦେଶଭକ୍ତ ପରମେଶ୍ୱରନ୍ ପିଲ୍ଲାଇ ମାର୍ଗ ଦେଇ ଗତି କରୁଛି ।

ଆକାଉଣ୍ଟାଣ୍ଟ୍ ଜେନେରାଲଙ୍କ ଅଫିସ୍‌ରୁ ଓହ୍ଲାଇ ବାହାରି ଆସୁଥିବା ଲୋକମାନଙ୍କର ଲମ୍ବା ଲମ୍ବା ଧାଡ଼ୀ··

ଡାହାଣ ପାଖରେ ଥିବା ବିଶାଳ ଭବନଟିର ଶୋ'ରୁମ୍ ଭିତରେ ବିଜୁଳି ଆଲୁଅରେ ସ୍ନାନ କରୁଥିବା ଓ ଧାଡ଼ିରେ ଥୁଆ ହୋଇଥିବା ନୂଆ ନୂଆ କେତେ ମୋଟରଗାଡ଼ି ଉଚ୍ଚଇଛ କାଚ କାନ୍ଥର ସେପାଖରୁ ଚକଚକ ଦେଖାଯାଉଛି ।

ସେକ୍ରେଟେରିଏଟ ଫାଟକ ପାଖରେ, ଯାହାର କି 'ସତ୍ୟାଗ୍ରହ ଫାଟକ' ବୋଲି ଆଉ ଗୋଟିଏ ସାର୍ଥକ ନାମକ ରହିଛି, ଲାଗି କରି ଦୁଇତିନୋଟି ତମ୍ବୁ ପଡ଼ିଛି, ଆଗରେ ପତର ଛାମୁଡ଼ିଆ ହୋଇଛି ଓ ସେଠାରେ ବିଭିନ୍ନ ପ୍ରକାରର ସତ୍ୟାଗ୍ରହୀମାନେ ପତାକା ଓ ପୋଷ୍ଟର୍ ଆଦି ହାତରେ ଧରି ଘୋର କୋଳାହଳରେ ଧ୍ୱନିମାନ ଦେବାରେ ଲାଗିଛନ୍ତି ।

ସଡ଼କ ଉପରେ ଉଚ୍ଛୁଳି ଉଠୁଥିବା ଭିଡ଼ । ଅନ୍ୟ ଯାନବାହାନମାନ ଭର୍ତ୍ତି ହୋଇ ରହିଥିବାରୁ ଗେଣ୍ଡା ପରି ରହି ରହି ଆସ୍ତେ ଆସ୍ତେ ବାଟ କାଟି ଆଗକୁ ଯିବାକୁ ଚେଷ୍ଟା କରୁଥିବା ବସ୍ । ବସ୍‌ରେ ବସି ରହିଥିବା ଅବସ୍ଥାରେ ହିଁ ଅନନ୍ତନ ନାୟର୍ ଓ ଅନ୍ୟ ଯାତ୍ରୀମାନେ ସେଠିକାର ସବୁକିଛି କଥାକୁ ବେଶ୍ ଅବଲୋକନ କରି ପାରୁଛନ୍ତି । ସବୁ ତାମସା ଦେଖି ପାରିବାର ସୁବିଧା ମହଜୁଦ ହୋଇ ରହିଛି ।

ପତାକା ଲଗା ହୋଇଥିବା ମନ୍ତ୍ରୀମାନଙ୍କର କାର୍‌ଗୁଡ଼ାକ ଯେତେବେଳେ ସେକ୍ରେଟେରିଏଟ୍ ଭିତରୁ ବାହାରି ଆସୁଥାଏ, ସେତେବେଳେ ସତ୍ୟାଗ୍ରହୀ ମାନଙ୍କର ଉତ୍ସାହ ବଢ଼ି ଯାଉଥାଏ । ଆବେଶଗୁଡ଼ାକ ସବୁପ୍ରକାର ବନ୍ଧକୁ ଭାଙ୍ଗି ଉଚ୍ଛୁଳି ପଡ଼ୁଥାଏ । ସତ୍ୟାଗ୍ରହୀମାନେ ଦଉଡ଼ିଯାଇ କାର୍‌କୁ ଅଟକାଇ ଦେଉଥାନ୍ତି, କାର୍‌ର ଝରକା ବାଟଦେଇ ବାହୁଗୁଡ଼ିକୁ ଭିତରକୁ ବଢ଼ାଇ ମନ୍ତ୍ରୀମାନଙ୍କର ଠିକ୍ ମୁହଁ ଆଗରେ ହାତମୁଠାକୁ ତଳୁ ଉପର ଆଡ଼କୁ ହଲାଇ ହଲାଇ ସେମାନେ ଗଗନଭେଦୀ ଧ୍ୱନିମାନ ଦେବାରେ ଲାଗିଥାନ୍ତି ।

ଜଣେ ପୁରୁଷ, ଜଣେ ସ୍ତ୍ରୀ ଓ ଦୁଇ ତିନୋଟି ସାନସାନ ପିଲା ସମସ୍ତେ ଏକାଠି ଗୋଟିଏ ଜାଗାରେ ଠିଆ ହୋଇ "ସୈନ୍ୟବାହିନୀରେ ସେବା କରିଥିବା ହେତୁ ପେନ୍‌ସନ୍ ଦାବୀ କରି ରାମପ୍ପଣିକର୍ ସପରିବାର ସତ୍ୟାଗ୍ରହ କରୁଥିବା ଦଶମ ଦିନ" ବୋଲି ଲେଖା ହୋଇଥିବା ପୋଷ୍ଟର୍ ଧରି ଛିଡ଼ା ହୋଇଥିବା ଗୋଟିଏ ଦଳର ଦୃଶ୍ୟ ।

"ଅନ୍ଧ-ବିଦ୍ୟାଳୟରେ ଅଧ୍ୟୟନ କରି ଉତ୍ତୀର୍ଣ୍ଣ ହୋଇଥିବା ଆମମାନଙ୍କୁ ଚାକିରି ଦିଅ"—ପୋଷ୍ଟର ଉପରେ ଲେଖା ହୋଇଥିବା ଠିକ୍ ସେହି କଥାଟିକୁ ଧ୍ୱନି ଦେଉଥିବା ପ୍ରାୟ କୋଡ଼ିଏ ସରିକି ନେତ୍ରହୀନ କଳା ଚଷମା ପିନ୍ଧିଥିବା ଯୁବକ ।

"ଗୃହକର୍ମରୁ ବାହାର କରି ଦିଆ ଯାଇଥିବା ପରିବାର-ନିୟୋଜନ ବିଭାଗର କର୍ମଚାରୀମାନଙ୍କୁ ପୁଣି ଚାକିରି ଦିଅ,"—ଚେଁ ଚେଁ କେତୋଟି ଶବ୍ଦ ଧ୍ୱନି କରିବାରେ ଲାଗିଥିଲେ । ପ୍ରାୟ ଏକାଭଳି ଦେଖା ଯାଉଥିବା ଓ ଧଳା ଶାଢ଼ୀ ଓ ଧଳା ବ୍ଲାଉଜ୍ ପିନ୍ଧିଥିବା ଶହଶହ ସୁନ୍ଦରୀ ଯୁବତୀ ଫାଟକର ଦୁଇକଡ଼େ ଧାଡ଼ି ବାନ୍ଧି ଠିଆ ହୋଇଥିଲେ ଓ ମୁଣ୍ଡ ଉପରକୁ ବାହୁମାନ ଛାଟିପିଟି ଛାଟିପିଟି ଆପଣାର ବିରୋଧ ପ୍ରକଟ କରୁଥିଲେ ।

ସବୁଯାକ ମିଶି ଖାଲି କୋଳାହଳ ହିଁ ଶୁଭୁଥାଏ ।

ଏ ସମସ୍ତଙ୍କ ଭିତରେ ବାଟ କାଟି ଗୋଟିଏ ପୋଲିସ୍ ଭ୍ୟାନ୍ ଭିତରକୁ ଯାଉଥାଏ । ସଡ଼କ ଉପରେ ଚାଲିଚାଲି ଯାଉଥିବା ଜଣେ ଲୋକ ଆଉଜଣଙ୍କୁ କହି କହି ଚାଲିଯିବାର ଶୁଣା ଯାଉଥିଲା, "ସେମାନେ ସେକ୍ରେଟେରିଏଟ୍ କର୍ମଚାରୀମାନଙ୍କୁ ଏଇଥିଲାଗି ଯୋଗାଡ଼ କରିଛନ୍ତି ଯେ ସେମାନେ ସବୁଠାରୁ ତଳଗ୍ରେଡ୍‌ରେ ରହିଥିବା କର୍ମଚାରୀମାନଙ୍କ ହାତରେ ଚାହାକଫି ମଗାଇ ପଠାଉଛନ୍ତି ।"

"କଥାଟା ଠିକ୍ । ଅନନ୍ତନ୍ ନାୟର୍, ଯୋଉ ପିଲା କାନ୍ଦି ପାରିବ, ତାହାକୁ ହିଁ ଦୁଧ ମିଳିବ । ଦେଖିଲ, ମୋ' ବୟସରେ କ'ଣ ହେଲା ! ତିରିଶିବର୍ଷ ଚାକିରି କରିବା-ପରେ ମୁଁ ଭାବିଥିଲି ଯେ ବୁଢ଼ାବେଳକୁ ମୁଁ କୋଉଠି କ'ଣଟିଏ ଦେଖି ଆଶ୍ରମରେ ଯାଇ ରହିପାରିବି, କିନ୍ତୁ ସେମାନେ କ'ଣ ମୋତେ ମୋର ପେନ୍‌ସନ୍‌ଟି ଏତେ ଜଲ୍‌ଦି ଦେଇଦେବେ ? ମୁଁ ବି ଭାବୁଛି ଯେ ମୋ' ସ୍ତ୍ରୀ ଓ ପିଲାମାନଙ୍କୁ ସାଙ୍ଗରେ ଧରି ଏଇଠି ହାତରେ ପତାକାଧରି ଆସି ବସିଯିବି," —ପିସାରଡ଼ି ହସି ହସି କହିଲେ, ଅନନ୍ତନ୍ ନାୟର୍ ମଧ୍ୟ ହସି ପକାଇଲେ ।

"ନାହିଁ, ମୁଁ ଖାଲି ସେମିତି ଥଟ୍ଟାରେ ମୋଟେ କହୁନାହିଁ··· । ମୁଁ ଆଉକୁ ଯାଅ ପଛକେ, ହାତଲୁଣ୍ଡା ନଦେବାଯାଏ କୌଣସି କାମ ହୋଇ ପାରୁନାହିଁ । ଖାଲି ଏଇ ରାଜ୍ୟରେ ନୁହେଁ, ସବୁ ରାଜ୍ୟରେ ଏଇ କଥା ହେଉଛି । ଗୋଟାଏ ଉଦାହରଣ ଦେଇ କହିବି, କନ୍ୟା କୁମାରୀ ଜିଲ୍ଲାରେ ତୋଓ୍ୱାଲୈଠାରେ ମୋ' ନାଆଁରେ କିଛି ଜମି ରହିଛି । ଏଠି ଚାଉଳରେ କିପରି ଅଭାବ ପଡୁଛି, ଆପଣ ତ ସେକଥା ଜାଣିଛନ୍ତି । ସେଠି ମୋ' ନିଜ ଜମିରେ ଆଦାୟ ହେଉଥିବା ଧାନଗଣ୍ଡାକ ଏ ଯାଏ ଆଣିବାରେ କେତେ ହରକତ ହେବାକୁ ପଡ଼ୁଛି, ଆପଣ ଜାଣନ୍ତି ? ମୋ'ର ରେଶନ କାର୍ଡ଼୍‌ଟିକୁ ତ ରଖି କରି ଦିଆଯାଇଛି, ତେଣୁ ମୁଁ ଏଠାରେ ରେଶନ୍‌ରୁ ବି ଚାଉଳ କିଣି ପାରୁନାହିଁ । ଚାଉଳ ସାଙ୍ଗକୁ ଚିନି ବି ଗଲା, କିରୋସିନ ବି ଗଲା । ମୁଁ ଆଠ ଆଠ ଥର ନାଗର କୋଇଲ୍, ତୋଓ୍ୱାଲୈ, ପୁଣି ଏଠାରେ ବଂଜବୁର ଓ କଲେକ୍ଟରେଟ୍ ସବୁ ଜାଗାକୁ ଯାଇ ଥକିଲିଣି । କିନ୍ତୁ ତଥାପି କ'ଣ କାମ ହୋଇପାରିଲା ? ତା'ପରେ ଶେଷକୁ ତୋଓ୍ୱାଲୈ-ଠାରୁ ଆରମ୍ଭ କରି ଏଠା ପର୍ଯ୍ୟନ୍ତ ଯେଉଁମାନେ ଆଖିରେ ପଡ଼ିଲେ, ସରକାରୀ ସବୁ ଆସାମୀମାନଙ୍କୁ, ତଳୁ ଚପରାସୀଠାରୁ ଆରମ୍ଭ କରି ଉପରେ ତହସିଲ୍‌ଦାର୍ ପର୍ଯ୍ୟନ୍ତ, ସେମାନଙ୍କର ଆସନଗୁଡ଼ିକ ଅନୁସାରେ ପ୍ରତ୍ୟେକ ପାଖରେ କିଛି କିଛି ଭେଟି ନେଇ ଚଢ଼ାଇବା ପରେ ଯାଇ କାମଟି ହୋଇ ପାରିଲା । ସବୁ ଖରଚକୁ ଯୋଡ଼ି ହିସାବ କଲେ ଦେଖାଯିବ ଯେ ସେହି ଧାନର ମୂଲ୍ୟଟି ଅପେକ୍ଷା ମୋତେ ହାତଲୁଣ୍ଡା ଦେବାରେ ହୁଏତ ଅଧିକ ପଇସା ଖର୍ଚ୍ଚ କରିବାକୁ ପଡୁଛି । ତଥାପି, ମୋତେ ଭଲ ଚାଉଳ ଗଣ୍ଡାଏ ଖାଇବାକୁ ମିଳିବ ବୋଲି ଭାବି ତାକୁ ସେଠୁ ନେଇ ଆସିଲି । ପୁରା ପଇସା ଦିଆହୋଇ କିଣା

ହୋଇଥିବା ନିଜ ଜମିରେ ହିଁ ଅମଳ ହୋଇଥିବା ଫସଲକୁ ଘରକୁ ଆଣିବାରେ ଯେତେ-ବେଳେ ଏତେଦୂର ହରକତ କରିବାକୁ ପଡ଼ୁଛି, ଗୁଉଲ କିଣି କରି ଆଣିବାରେ ଯେଉଁସବୁ ବିପଦ ରହୁଛି, ସେସବୁ ବିଷୟରେ ମୁଁ କ'ଣ କହି ପାରିବି ? କେଡ଼େ ଦୁର୍ଭାଗ୍ୟ କହିଲ ! ଲୋକେ ପୁଣି କହୁଛନ୍ତି ସ୍ୱତନ୍ତ୍ର ଆଉ ଏକତାମସ୍ତ ଭାରତ । କହୁଛନ୍ତି ନେଶନାଲ୍ ଇଣ୍ଟିଗ୍ରେସନ୍ ।··· ଏସବୁ କଥା କେବଳ ସେଇ ଈଶ୍ୱରଙ୍କୁ ହିଁ ଜଣାଥିବ ।"

ମାଧବଭାସ୍କରଙ୍କ 'ମୂର୍ତ୍ତିଟିକୁ ପାରି ହୋଇ ବେଲୁଭମ୍ପି ତଲ୍ଓ୍ୱାସ୍କଙ୍କ ମୂର୍ତ୍ତିଟି ଆଗରେ ସେକ୍ରେଟେରିଏଟ୍‌ର ଷ୍ଟପ୍‌ଠାରେ ବସ୍ ଅଟକିଲା ।

ହାତରେ ତରବାରି ଧରି ଗମ୍ଭୀର ମୁଖାକୃତିରେ ଠିଆ ହୋଇଥିବା ବେଲୁ-ତମ୍ପିଙ୍କ ଆଡ଼କୁ ଅନାଉ ଅନାଉ ପିଷାରଡ଼ି କହିଲେ, "ହଁ, ଏଇ ବେଲୁତମ୍ପି ଫେରିଯାଇ ଏହିସବୁ ଲୋକଙ୍କୁ ହଣ୍ଟର୍ ମାରିମାରି ସେମାନଙ୍କର ଚମ ଉତାରି ଦଅନ୍ତା କି ତେବେଯାଇ ଠିକ୍ ହୁଅନ୍ତା··· ।"

ତାପରେ ବସିବା ଥାନରୁ ଉଠି କହିଲେ, "ମୋତେ ଏଇଠି ଓହ୍ଲାଇବାକୁ ପଡ଼ିବ, ଯାଉଛି ଅନନ୍ତନ୍ ନାୟର ।" ପିଷାରଡ଼ି ବସ୍‌ରୁ ଓହ୍ଲାଇଗଲେ, ତାଙ୍କର ଘର ଏଇଠି ଜେନେରାଲ୍ ହସ୍‌ପିଟାଲ୍‌ର କଡ଼କୁ ବୋଲି ଅନନ୍ତନ୍ ନାୟର୍‌ଙ୍କର ମନେ ପଡ଼ିଗଲା ।

ନଡ଼ିଆଗଛ ଉପରେ ଟିକସ ଭଡ଼ା ହୋଇଥିଲା । ପ୍ରତ୍ୟେକ ଘରକୁ ଯାଇ ନଡ଼ିଆଗଛ ଗୁଡ଼ିକର ସଂଖ୍ୟା ଗଣି ହିସାବ କରିବାଲାଗି ନିଯୁକ୍ତ ହୋଇଥିବା ସରକାରୀ ଅଫିସର ସେତେବେଳେ ଦେଓ୍ୱାନ୍ ପଦରେ ରହିଥିବା ବେଲୁତମ୍ପି ତଲଓ୍ୱାସ୍କଙ୍କ ଘରକୁ ଯାଇଥିଲା । ଇଏ ତ ନିଜେ ଦେଓ୍ୱାନ୍, ତେଣୁ ୟାଙ୍କଉପରେ କମ୍ ଟିକସ ଲଗାଇବା କଥା ବୋଲି ଭାବି ସତକଥାକୁ ଲୁଚାଇ ଅଫିସର ଜଣକ ନଡ଼ିଆଗଛର ସଂଖ୍ୟାଟିକୁ କମ୍ କରି ଖାତାରେ ଲେଖିନେଲା । ଏକଥାଟିକୁ ଦେଓ୍ୱାନ୍ ଜାଣିବାକୁ ପାଇଲେ ବେଲୁତମ୍ପି-କାନୁନ୍‌କୁ ଅମାନ୍ୟ କରିଥିବା ସେହି ଭାରପ୍ରାପ୍ତ ଅଫିସରଙ୍କର ହାତରେ ପାଞ୍ଚୋଟିଯାକ ଆଙ୍ଗୁଠିକୁ କାଟି ଦେବାର ଆଦେଶ ଦେଲେ । ଅନନ୍ତନ୍‌ନାୟର୍ ବେଲୁତମ୍ପିଙ୍କ ମୂର୍ତ୍ତିଟି ଆଡ଼କୁ କିଛି ସମୟ ଲାଗି ସେମିତି ଅନାଇ ରହିଥାନ୍ତି । ତାଙ୍କ ଦେହ ସତେଅବା ରୋମାଞ୍ଚିତ ହୋଇ ଆସିଲା ।

ବସ୍ ପୁଣି ଭର୍ତ୍ତି ହୋଇଗଲା । ପୂର୍ଣ୍ଣ ଗର୍ଭିଣୀଟିଏପରି ତାହା ଧୀରେ ଧୀରେ ଆଗକୁ ଯିବାକୁ ଆରମ୍ଭ କଲା ।

ସଡ଼କରେ ଏତେ ଭିଡ଼ ଯେ ବସ୍ ଆଗକୁ ଯାଇ ପାରୁନଥାଏ··· · ···

ସଡ଼କର ଦୁଇପାଖରେ ଥିବା କୋଠାଗୁଡ଼ିକ, ଯେଉଁଗୁଡ଼ିକ ଆପଣାର ସରଳତା ପୂର୍ଣ୍ଣ ଆକୃତି ଦ୍ୱାରା ଏହି ସହରର ବୈଶିଷ୍ଟ୍ୟଟିକୁ ପ୍ରକଟ କରି ଆସୁଥିଲେ, ଏବେ ସେଗୁଡ଼ିକୁ ଧୀରେ ଧୀରେ ହଟାଇ ଦିଆଯିବାରେ ଲଗିଛି ଓ ସେଗୁଡ଼ିକର ସ୍ଥାନରେ ଏକାଧିକ କେତେମହଲା-ବିଶିଷ୍ଟ ବିଶାଳ କଂକ୍ରିଟ୍‌ର ସୁନ୍ଦର ଭବନ ତିଆରି କରାଯାଉଛି· ଅନନ୍ତନ୍‌ନାୟର୍ ସେହି ନିର୍ମାଣର କୋଳାହଳଗୁଡ଼ିକୁ ଶୁଣିଲେ ।

ପୁଲମୁଡ଼ୁ ବସ୍‌ଷ୍ଟପ୍ ପାରହୋଇ ବସ୍ ଯେତେବେଳେ ହିନ୍ଦୁଧର୍ମ-ଗ୍ରନ୍ଥାଳୟର ସାମନାବାଟ ଦେଇ ଯାଉଥିଲା, ସେତେବେଳେ ସେଠାରେ ଉଚ୍ଛୁଳି ଉଠୁଥିବା ନବୀନ ସଭ୍ୟତାର ରଙ୍ଗରେ ରଙ୍ଗା ହୋଇଥିବା ନରନାରୀ ମାନଙ୍କର ସମୂହଟି ଅନନ୍ତନ୍-ନାୟର୍‌ଙ୍କର ଦୃଷ୍ଟିରେ ଆସି ପଡ଼ିଲା । ଏଣେ ସମ୍ଭବତଃ କୌଣସି ଧର୍ମ ପ୍ରଚାରକଙ୍କର ବ୍ୟାଖ୍ୟାନ ହେଉଥାଏ । ଆଜିକାଲି ବୁଦ୍ଧିଜୀବୀମାନଙ୍କ ଲଗି ଅଲ୍ପ ବହୁତ ଆଧ୍ୟାତ୍ମିକତା ଗୋଟାଏ ଫେଶନ୍ ହୋଇଗଲାଣି ନା କ'ଣ ? —ଅନନ୍ତନ୍‌ନାୟର୍‌ଙ୍କର ମନରେ ଏହି ପ୍ରଶ୍ନଟି ଉତ୍‌ଥିତ ହୋଇ ଆସିଲା ।

## ଷୋଡ଼ଶ

ଓଭର୍‌ବ୍ରିଜ୍ ପାରହୋଇ ବସ୍ ପୂର୍ବ ପଟକୁ ଥିବା ପ୍ରାସାଦମୁକ୍ତ ନଗର ବସ୍-କେନ୍ଦ୍ରକୁ ଆସି ଅଟକିବା ମାତ୍ରକେ ଅନନ୍ତନ୍ ନାୟର୍ ଓହ୍ଲାଇ ପଡ଼ିଲେ । ସେତେବେଳେ ସିଏ କ୍ଳାନ୍ତ ଓ ଶିଥିଳତାରେ ସତେଅବା ଜର୍ଜର ହୋଇ ରହିଥିଲେ ।

ଧାଡ଼ିରେ ଆସି ଠିଆହୋଇ ଯାଉଥିବା ସିଟିବସ୍‌ଗୁଡ଼ିକର ଘୋରଶବ୍ଦ, ସଡ଼କ ଉପରେ ହର୍ଣ୍ଣବଜାଇ ବଜାଇ ଗଡ଼ିଯାଉଥିବା ଅନ୍ୟ ଯାନବାହନଗୁଡ଼ିକର ଆବାଜ, ପଲଓ୍ୱାଡ଼ ମଇଦାନ ଉପରୁ ମାଇକ୍ ଉପରେ ଶୁଣିବାକୁ ମିଳୁଥିବା କୌଣସି ନେତାଙ୍କର ଅଗ୍ନି ଉଦ୍‌ଗୀରଣକାରୀ ଭାଷଣର ବର୍ଷା, ଗଣେଶମନ୍ଦିରର ଘଣ୍ଟାଧ୍ୱନି, ସେଣ୍ଟ୍ରାଲ୍ ଥିଏଟର ଏବଂ ପଦ୍ମନାଭ ସିନେମାଘର ଗୁଡ଼ିକରୁ ଶୁଣା ଯାଉଥିବା ସିନେମା-ସଙ୍ଗୀତ, ପୁତ୍ତରିକ୍କଣ୍ଡମ୍ ମୈଦାନ୍‌ରେ ଚଳେହେଲେ ଥାନ ଖାଲି ନ ଛାଡ଼ି ଜନକପଟକ ମେଲାଇ ବିକି କରୁଥିବା ବେପାରୀମାନଙ୍କର ଗଣ୍ଡଗୋଳ, ଜ୍ଞାନାନନ୍ଦ ଆଶ୍ରମରୁ ପ୍ରସାରିତ କରାଯାଉଥିବା ଭଜନ, ପୂର୍ବପଟେ ଅବସ୍ଥିତ ଦୁଇଟିର ତଳ ମହଲରେ ଥିବା କୋଠରୀଟିରୁ, ମହାରାଜା ଦୁର୍ଗ-ଭିତରେ ଅଛନ୍ତି ବୋଲି ସଙ୍କେତ ଦେବା ଉଦ୍ଦେଶ୍ୟରେ ଡ଼ୁମ୍ ଡ଼ୁମ୍ ହୋଇ ବାଜୁଥିବା ନାଗରାର ଧ୍ୱନି··· ···, ଏହି ସବୁଯାକ ଶବ୍ଦ ଉପରେ ସରକାରୀ ଲଟେରୀର ଟିକେଟ୍ ବିକୁଥିବା ବ୍ୟକ୍ତିମାନଙ୍କର ସତେଅବା ମୋଟେ ନିଃଶ୍ୱାସ ନନେଇ ଇଉନିଅନ୍ ପବ୍ଲିକ୍ ସର୍ଭିସ୍ କମିଶନର ଚଉଦଟିଯାକ ଭାଷାରେ ମାଇକ୍ ଦେଇ କଥା କହୁଥିବାର ଶବ୍ଦ··· ···

ଏବଂ ଏହି ସମସ୍ତ ଚିତ୍କାର ଓ କୋଳାହଳଠାରୁ ଦୂରରେ ରହି ଦୁର୍ଗ ଭିତରେ ଥିବା ଶ୍ରୀ ପଦ୍ମନାଭସ୍ୱାମୀଙ୍କ ମନ୍ଦିରର ଶାନ୍ତିମୟ ବାତାବରଣଟିର ବିଚିତ୍ର ଦୃଶ୍ୟ······

ପୁତ୍ତରିକ୍କଣ୍ଡମ୍ ମଇଦାନଟି ପାରହୋଇ, ଶଲୈବଜାରରେ ପ୍ରବେଶ କରି ଅନନ୍ତନ୍ ନାୟର୍ ଦୋକାନ ଆଡ଼କୁ ପାଦ୍ଧୁଣ୍ଡ ପକାଇଲେ ।

ନାଥନ୍ ଆଲୁଅ, ମର୍କରି ଲ୍ୟାମ୍ପ୍, ଟିଉବ୍‌ଲାଇଟ୍, ସବୁଯାକ ଜଳି ଉଠିଲ ।

ସମୁଦ୍ର କୂଳରେ ଥିବା ଟାଇଟେନିୟମ୍ ଫ୍ୟାକ୍ଟରି, ରବର କାରଖାନା, ଥୁମ୍ବା ଲଞ୍ଚିଙ୍ଗ୍ ଷ୍ଟେସନ୍, ପେରୁର କଡ଼ୈ ଠାରେ ଥିବା ପରିବାର-ନିୟୋଜନର ସରଞ୍ଜାମ ତିଆରି କରୁଥିବା କାରଖାନା, ଏହିପରି କେତୋଟି ଉଦ୍ୟୋଗକୁ ଛାଡ଼ିଦେଲେ କେବଳ ସରକାରୀ କାର୍ଯ୍ୟାଳୟଗୁଡ଼ିକ ହିଁ ଏହି ସହରମୁଖ୍ୟ ଉଦ୍ୟୋଗକେନ୍ଦ୍ର ହୋଇରହିଥିଲ······ । ତେଣୁ ସରକାରୀ କର୍ମଚାରୀ ଏହି ବଜାର କରିବା ସମୟରେ ଏଇ ସନ୍ଧ୍ୟାବେଳେ ଯେଉଁ ଅପାର ଭିଡ଼ ଲାଗି ଯାଉଥିଲ, ସେକଥା ଆଉ କ'ଣ କହିବା······ ।

ଅନନ୍ତନ୍ ନାୟର୍‌ଙ୍କର ଧ୍ୟାନ ସଡ଼କର ଗୋଟିଏ କଡ଼ରୋଳା ପାଖରୁ ତାଙ୍କ ଆଡ଼କୁ ଚାଲିକରି ଆସୁଥିବା ଜଣେ ବ୍ୟକ୍ତି ଆଡ଼କୁ ଆକୃଷ୍ଟ ହେଲ ।

ଆଗରୁ କୋଉଠି ଦେଖାହୋଇଛୁ ନିଶ୍ଚୟ, ମାତ୍ର ସିଏ ମୁହଁଟିକୁ ଭୁଲିଯାଇଛନ୍ତି । —ବୟସ ଅଳ୍ପ, ମାତ୍ର ଦାଢ଼ି-ନିଶ, ଦୁର୍ବଳ ଆଉ ମଇଳା ଧୋତି ତାହାର ଚେହେରାଟିକୁ ସତେଅବା ବୁଢ଼ା କରି ଦେଉଥିଲେ । ସେହି ଲୋକଟିର ଦୃଷ୍ଟି ସତେଅବା ଭୟରେ ପୂର୍ଣ୍ଣ ହୋଇ ରହିଥିବାପରି ଏଣେ ତେଣେ ଦୌଡ଼ିବାରେ ଲାଗିଥିଲା । ମନେ ହେଉଥିଲା, ସିଏ ଯେପରି ଭୟଭୀତ ହୋଇ କାହାରଠାରୁ ଲୁଚି ରହିବାକୁ ଚେଷ୍ଟା କରୁଛି ।

ସେ ତାଙ୍କ ପାଖକୁ ଆସିଗଲା ।

"ମୋତେ ଆପଣ ଚିହ୍ନି ପାରୁ ନାହାନ୍ତି ?"

ସିଏ ମୋତେ ହିଁ ପ୍ରଶ୍ନଟି ପଚାରିଲା ନା········· ?

ତେବେ ଏ ଲୋକଟି କିଏ ହୋଇଥିବ ?

ତାଙ୍କୁ ଧକ୍କା ଦେଇ ଭୁସ୍‌ଭାସ୍ ହୋଇ ଚାଲି ଯାଉଥିବା ସ୍ତ୍ରୀ ଓ ପୁରୁଷମାନେ ମାଡ଼ମାଡ଼ି ଆଗକୁ ପଛକୁ ଯିବାରେ ଲାଗିଛନ୍ତି ।

"ଆପଣଙ୍କର ମନେପଡ଼ୁ ନାହିଁ···

ସିଏ ଟିକିଏ ଅପ୍ରସ୍ତୁତ ହୋଇପଡ଼ିଲେ । "ମୁଁ ଆପଣଙ୍କ ଘରକୁ ଯାଇଥିଲି । ସେଠାରେ ପ୍ରଭାକରନ୍ ନାୟରଙ୍କୁ ପାଇଲି ନାହିଁ ।"

ବିଜୁଳିପରି ହଠାତ୍ ଗୋଟାଏ ଝଲକ । "ଟମାସ···" । ଅନନ୍ତନ୍ ନାୟର୍ ଭୁଡ଼ୁଭୁଡ଼ୁ କରି କହିଲେ ।

"ହଁ, ହଁ । ଧିରି ଧିରି କଥା କହନ୍ତୁ । ମୁଁ ତ ପୋଲିସର ଦୃଷ୍ଟି ଏଡ଼ାଇ ବୁଲୁଛି । ପ୍ରଭାକରନ୍ ଘରକୁ ଫେରିଲେ ତାକୁ କହିଦେବେ ଯେ ତମ୍ବଲୁରର ରମା ଲଜ୍‌ରେ ମୁଁ ପାଞ୍ଚନମ୍ବର କୋଠରୀରେ ଅଛି ଓ ସିଏ ସେଇଠି ଆସି ମୋ ସହିତ ଦେଖା କଲେ ବଡ଼ ଉପକାର ହେବ । ମୁଁ ଏଠାରୁ କାଲି ଚାଲିଯାଉଛି । —ଆପଣ ଅନୁଗ୍ରହ କରି ତାକୁ ଏ କଥାଟି ମଧ୍ୟ କହିଦେବେ··· ।"

ଏହାର ମଧ୍ୟରେ ଦୁଇ ତିନିଜଣ ଲୋକଙ୍କୁ ଆପଣା ଆଡ଼କୁ ସତେଅବା ଚାଲି ପଡ଼ିବାର ଦେଖିବାକୁ ପାଇ ଟମାସ୍ ବିଦାୟ ନେବା ଆଗରୁ ହିଁ ସେହି ଭିଡ଼ରେ କୁଆଡ଼େ ମିଶିଗଲା ।

ଏ ପିଲାଟା କିପରି ଥିଲା··· ? ତା'ଦେହ କେଡ଼େ ସୁନ୍ଦର ଥିଲା ଓ ପୋଷାକ ପିନ୍ଧିବାର ମଧ୍ୟ କେଡ଼େ ସଉକ ଥିଲା — ।

ପ୍ରଭାକରନ୍ ନାୟର୍‌ର ଅତ୍ୟନ୍ତ ଘନିଷ୍ଠ ବନ୍ଧୁ···ତା'ସହିତ ଏହି ଟମାସ୍ ମଧ୍ୟ ଇଞ୍ଜିନିଅରିଙ୍ଗ୍ କଲେଜରେ ପଢ଼ୁଥିଲା । ପ୍ରଭାକରନ୍ ଠାରୁ ଶୁଣି ଅନନ୍ତନ୍ ନାୟର୍

ଏକଥା ମଧ୍ୟ ଜାଣିଥିଲେ ଯେ, ଯେତେବେଳେ ଟମାସ୍ ତୃତୀୟ ବର୍ଷରେ ଅଧ୍ୟୟନ କରୁଥିଲା, ସେତେବେଳେ କଲେଜର ପ୍ରିନ୍ସିପାଲ୍ ତାକୁ ଡକାଇ କହିଥିଲେ, "ଟମାସ୍, ତୁମେ ଅନ୍ୟପ୍ରକାର ଭୁଲ୍ ବି ନାହିଁ। ମୋତେ ସି. ଆର୍. ପି. ରୁ ଖବର ମିଳିଛି । କେବଳ ଖବର ହିଁ ମିଳିଛି... । ସମ୍ଭବତଃ ଭୁଲ୍ ଖବର ବି ହୋଇପାରେ । ଛାତ୍ରଟିର ନାମ ଟମାସ୍ ତେଣୁ ମୁଁ ଭାବିଲି ମୋ ତୁମଠାରୁ ହିଁ କଥାଟିର ସ୍ପଷ୍ଟୀକରଣ କରନେବି । "ଏହିପରି ଭୂମିକାଟିଏ କରିବା ପରେ ସିଏ ସିଧା ପଚାରି ବସିଲେ, "ଏଠି ନକସଲବାଡ଼ୀ ଲୋକମାନଙ୍କ ସହିତ ତୁମର କୌଣସି ସମ୍ବନ୍ଧ ଅଛି କି ?"

ଟମାସ୍ ହସିଦେଇ ଭାରି ଭଦ୍ରତା ସହିତ ତାଙ୍କୁ ପଚାରିଲା, "ଯଦି ସମ୍ବନ୍ଧ ଥାଏ, ତେବେ ସେଥିରେ କ'ଣ ଅଛି । ସାର୍, ଏହି କଲେଜରେ ପଢ଼ୁଥିବା ଛାତ୍ରମାନଙ୍କର ରାଜନୀତିକ ବିଚାରଗୁଡ଼ିକ ବାବଦରେ କ'ଣ ଆପଣ ଚିନ୍ତା କରୁଛନ୍ତି ? ମାତ୍ର ଏହି କଲେଜରେ ମୋତେ ଛାଡ଼ିକରି ମଧ୍ୟ ଆଉ କେତେଜଣ ଟମାସ୍ ଅଛନ୍ତି, ସେମାନଙ୍କୁ ସମସ୍ତଙ୍କୁ ଛାଡ଼ି ଆପଣ କେବଳ ମୋତେ ହିଁ ପଚାରୁଛନ୍ତି, ଏହାର କାରଣ ପୁଣି କ'ଣ ?"

"ଅନ୍ୟ ଟମାସ୍‌ମାନଙ୍କ ତୁଳନାରେ ତୁମେ ହିଁ ମୋତେ ଅଧିକ ବୁଦ୍ଧିମାନ୍ ଓ ତେଜସ୍ୱୀ ପରି ମନେହେଲ, ସେଇଥିପାଇଁ... ।

ତାହାର ଗୋଟିଏ ମାସ ପରେ ହିଁ ଖବର ଆସିଲା ଯେ କୌଣସି ବିଦେଶୀ ପୁସ୍ତକାଳୟର ଭ୍ୟାନ୍‌ରେ ନିଆଁ ଲଗାଇ ଦେବାର ମାମଲାରେ ଜଣେ ଅପରାଧୀ ହିସାବରେ ପୋଲିସ୍ ଟମାସ୍‌କୁ ଖୋଜିବାରେ ଲାଗିଛି । ସେଇଥିରୁ ହିଁ ଟମାସ୍‌ର ପାଠପଢ଼ା ବନ୍ଦ ହୋଇଗଲା । ତା'ପରେ ସେ କୁଆଡ଼େ ଗଲା କିଛି ପତ୍ତା ମିଳିଲା ନାହିଁ । ଅନନ୍ତନ ନାୟରଙ୍କର ମନେ ପଡ଼ିଲା ଯେ ଅଳ୍ପ କେତେମାସ ପୂର୍ବେ ଖବର କାଗଜରେ କେତେକ ପୋଲିସ୍ ଥାନା ଉପରେ ଆକ୍ରମଣ ହୋଇଥିବାର ଖବର ସହିତ ଟମାସର ଫଟୋ ମଧ୍ୟ ପ୍ରକାଶିତ ହୋଇଥିଲା । ତା'ହେଲେ ସେ ଏପର୍ଯ୍ୟନ୍ତ ପୋଲିସ୍ ହାତରେ ପଡ଼ିନାହିଁ...କେଜାଣି ତାକୁ କି କି କଷ୍ଟମାନ ଭୋଗିବାକୁ ପଡ଼ୁଥିବ ! ଯୌବନ ଅବସ୍ଥାରେ ଇଏ ମଧ୍ୟ ଗୋଟାଏ ପ୍ରକାରର ଜୀବନ ଭାବି ଭାବି ଅନନ୍ତନ୍ ନାୟର୍ ଦୋକାନ ଭିତରକୁ ଗଲେ, ସେଠି ବଡ଼ ସରଗରମ ହୋଇ କଟ ଭାଙ୍କା ଚାଲିଥିଲା ।

ଚଉକୀ ଉପରେ ଭୈରବନ୍ ପିଲଇ ବସିଥିଲେ । "ଅନନ୍ତନ୍ ନାୟର୍, ତୁମେ ଏତେଟୁଡ଼ାଏ ଡେରି କରି ପକାଇଲ ? ଅଡ଼ଟର୍ ତ କହିଲେ ଯେ ତୁମେ ଅନେକ ସମୟ ପୂର୍ବରୁ ସେଠାରୁ ଆସିଲଣି ।"

"ବସ୍ ପାଇବାକୁ ଡେରି ହୋଇଗଲା ଆଜ୍ଞା," କହି ଅନନ୍ତନ୍ ନାୟର ଯାଇ ଆପଣାର ଜାଗାଟିରେ ବସିଲେ ।

ଦୋକାନରେ ଜିନଷ କିଣିବାକୁ ଆସିଥିବା ଲୋକମାନେ ତରତର ହେବାରୁ ସ୍ୱୟଂ ଖାମିନ୍ଦ ସେହିମାନଙ୍କର ଅଡୁଆ ଭିତରେ ପଡ଼ି ଯାଇଥିଲେ । "ହଁ, ଏହି ବସ୍‌ଗୁଡ଼ାକ ବି ଖାଲି..." କହି ସେଇଠି ରହିଗଲେ ।

ଦୋକାନର କର୍ମଚାରୀମାନେ ନଟୁ ପରି ସାଇଁ ସାଇଁ ବୁଲୁଥିଲେ ।

ଅନନ୍ତନ ନାୟର ମଧ୍ୟ ଆପଣାର କାମରେ ନିମଗ୍ନ ହୋଇ ପଡ଼ିଲେ । ମଝିରେ ଜଣେ ଚାକର ହାତରେ ଚାହା ମଗାଇ ପିଇଲେ ଏବଂ ହିସାବକିତାବ କରିବାରେ ଲାଗି ରହିଥିଲେ । କାଲି ଭିତରେ ଇନ୍‌କମ୍ ଟ୍ୟାକସର ହିସାବ ଠିକ୍ କରିବାର କଥା...

ଟିପ୍‌ଟପ୍ ପୋଷାକ ପିନ୍ଧି ଚାରି ପାଞ୍ଚଜଣ ବ୍ୟକ୍ତି ଦୋକାନ ଭିତରକୁ ଆସିଲେ । ଖାମିନ୍ଦ ଖାଲି ଖାତିରରେ ସେମାନଙ୍କର ସ୍ୱାଗତ କରି ସେମାନଙ୍କୁ ଆସନ ଦେଲେ । ସେମାନେ ଦେଇଥିବା ଚାନ୍ଦାଖାତାରେ କିଛି ଲେଖି, "ଅନନ୍ତନ୍ ନାୟର, ଏମାନଙ୍କୁ ଏକ ହଜାର ଟଙ୍କାର ଗୋଟିଏ ଚେକ୍ କାଟିଦିଅ" କହି ସେମାନଙ୍କୁ ରସିଦ ଦେଲେ । ଅନନ୍ତନ୍ ନାୟର୍ ରସିଦ ଦେଖି ଚେକ୍ ତିଆରି କରିଦେଲେ ଏବଂ ବଡ଼ ଆଦର ସହକାରେ ଚେକ୍‌ଟିକୁ ମାଲିକଙ୍କ ହାତରେ ଆଣି ଦେଲେ । ମାଲିକ ସେଇଟିକୁ ନେଇ ସେଥିରେ ଦସ୍ତଖତ କଲେ ଓ ଆଗନ୍ତୁକମାନଙ୍କ ହାତକୁ ବଢ଼ାଇଦେଲେ । ସେହି ଲୋକମାନେ ଧନ୍ୟବାଦ ଦେଇ ପରବର୍ତ୍ତୀ ଆଉ ଗୋଟିଏ ଦୋକାନକୁ ଚାଲିଗଲେ ।

ଆଗ ଦୋକାନରେ ନାରାୟଣ ସ୍ୱାମୀ ରେଡ୍‌ଡିଆର ଥିରି କରି ଆସି ଖାମିନ୍ଦଙ୍କ ପାଖରେ ବସିଗଲେ ।

"ହୁଁ ! 'ସହର ଭିତରକୁ ଭିକ ମାଗିବା ଲୋକଙ୍କର ପ୍ରବେଶ ନିଷିଦ୍ଧ'—ଲେଖି କର୍ପୋରେଶନ ତରଫରୁ ଯେଉଁ ବୋର୍ଡ଼ ଲଗାଇ ଦିଆଯାଇଛି, ସେଗୁଡ଼ିକର ଆଦୌ କୌଣସି ଅଭାବ ନାହିଁ । ଆଜିକାଲି 'ଦାନଧର୍ମ କରନ୍ତୁ' ବୋଲି କହି ଚିତ୍କାର କରୁଥିବା ଭିକ ମାଗୁଥିବା ଲୋକେ ଆଉ ଦେଖିବାକୁ ମିଳୁନାହାନ୍ତି । ମାତ୍ର ଏହିପରି ଭାବରେ ବଡ଼ ଇଜ୍ଜତ୍ ସହିତ ଭିକ ମାଗି ବୁଲିବାବାଲାଙ୍କୁ ପୁଣି କିଏ ଅଟକାଇ ରଖିପାରିବ... ?"

ନାରାୟଣ ସ୍ୱାମୀ ରେଡ୍‌ଡିଆର୍‌ଙ୍କ ଠାରୁ ଆପଣାର ଦୃଷ୍ଟିକୁ ଏଣେତେଣେ ବୁଲାଉ ବୁଲାଉ ଖାମିନ୍ଦ ଆସ୍ତେ ଆସ୍ତେ କହିବାକୁ ଲାଗିଲେ ।

"ହୁଁ ! ମନ୍ଦିରରେ ପହଡ଼ ଫିଟିବାର ଉତ୍ସବ, ଲାଇବ୍ରେରୀର ବାର୍ଷିକୋତ୍ସବ, ସ୍ପୋର୍ଟସକ୍ଲବ୍ ଉଦ୍‌ଘାଟନ, ଏଇଟା, କହି ଯେଉଁମାନେ ପଇସା ଛଡ଼ାଇ ନେଇଯାଉଛନ୍ତି, ସେତକ ଆଦୌ ଯଥେଷ୍ଟ ନୁହେଁ । ବର୍ତ୍ତମାନ ଉପରୁ ଏହିପରି ଭାବରେ ପାର୍ଟି-ଫଣ୍ଡ ସକାଶେ ମାଗିବା ପାଇଁ ଆସୁଥିବା ସବୁଯାକ ପାର୍ଟିବାଲାଙ୍କୁ ଆମକୁ କେତେକେତେ ପରିମାଣରେ ଚାନ୍ଦା ଦେବାକୁ ନ ପଡ଼ୁଛି··· ? ଏହି ମହାପୁଣ୍ୟବାନ ରାଜ୍ୟରେ ତ ଅଦଳ ବଦଳ ହୋଇ ସବୁ ପାର୍ଟି ଶାସନ କ୍ଷମତାକୁ ଆସି ଯାଉଛନ୍ତି ଏବଂ କିଛି ନକିଛି ଆମ ସମସ୍ତଙ୍କୁ ଫାନ୍ଦରେ ପକାଇ ଦେଉଛନ୍ତି । ହୁଁ ! ସମସ୍ତ ଯେପରି ହୋଇଛି··· ।" ଫୁସ୍‌ଫୁସ୍ କରି କହି ରେଡ୍‌ଡ଼ିଆର ଦୀର୍ଘନିଶ୍ୱାସ ପକାଇଲେ ।

ହିଁ, ପ୍ରାୟ ଦ'ମାସ ତଳେ ଆମ ଜାତିର ଜଣେ ବୁଢ଼ୀ ଅନାଥା ହୋଇ ଏହି ବଜାରଟା ଭିତରେ ହିଁ ମରିଗଲା । ସଂଘର ପ୍ରେସିଡ଼େଣ୍ଟଙ୍କ ପାଖକୁ ଖବର ଗଲା, କିନ୍ତୁ ଏଥିଲାଗି ଦୃଷ୍ଟି ଦେବାକୁ ତାଙ୍କ ପାଖରେ ସମୟ ନଥିଲା । ଶେଷରେ କର୍ପୋରେଶନର ଗାଡ଼ି ଆସିଲା ଓ ଏକ ଅନାଥଶବ ହିସାବରେ ବୁଢ଼ୀଟିକୁ ଦୁର୍ଗ ଭିତରେ ଥିବା ଶ୍ମଶାନରେ ନେଇ ପୋଡ଼ି ଦିଆଗଲା । ସେହି ପ୍ରେସିଡେଣ୍ଟ୍ କାଲି ମନ୍ଦିରର ଉଦ୍‌ଘାଟନ, ଘୋଷଣା, କଥା—ପ୍ରବଚନ, ଏଇଟା ସେଇଟା କହି ଏକହଜାର ଟଙ୍କା ଚାନ୍ଦା ନେବାଲାଗି ଆସି ପହଞ୍ଚିଗଲେ,"—ଭୈରବନ ପିଲାଇ କହିଲେ ।

ସମସ୍ତେ ହସୁଥା'ନ୍ତି ।

ଆଗରେ ଥିବା ଦୋକାନରୁ ରେଡ୍‌ଡ଼ିଆର ପୁଅ ଶ୍ରୀକୃଷ୍ଣସଂଧନ ପିଲା ପଠାଇ ଡକାଇ ପଠାଇବାରୁ ରେଡ୍‌ଡ଼ିଆର ଅଧା ମନ ଦୁଃଖପରି ସେଠାରୁ ଉଠି ଚାଲିଗଲେ । ନାରାୟଣସ୍ୱାମୀ ରେଡ୍‌ଡ଼ିଆରଙ୍କୁ ଦୋକାନରେ ବସିବା ପାଇଁ କେବେ ବି ଭଲ ଲାଗେ ନାହିଁ । ତେଣୁ ପୁଅ ହାତରେ ହିଁ ଦୋକାନ ଛାଡ଼ିଦେଇ ସିଏ ସବୁବେଳେ ପାଖରେ ଥିବା କୌଣସି ଦୋକାନକୁ ଚାଲିଯାଆନ୍ତି ଏବଂ ସଂସାରଯାକର ସବୁଯାକ କଥାବାର୍ତ୍ତା ପକାନ୍ତି । ତାଙ୍କୁ ସେଇଥିରୁ ହିଁ ସବୁଦିନେ ଭାରି ଆନନ୍ଦ ମିଳେ ।

## ଏକୋଇଶ

ସନ୍ଧ୍ୟାପରେ ପରି ଆଜି ମଧ୍ୟ ଦୋକାନର କାମ ବଢ଼ାଇବା ବେଳକୁ ଦଶଟା ବାଜି ଯାଇଥିଲା । ଅନନ୍ତନ୍ ନାୟର ହାତରେ ଛତାଟିକୁ ଉଠାଇ ସଡ଼କ ଉପରକୁ ଓହ୍ଲାଇ ଆସିଲେ ଏବଂ ବଡ଼ କ୍ଳାନ୍ତ ଓ ଶିଥିଳତା ସହିତ ଆଗକୁ ପଦକ୍ଷେପ ପକାଇଲେ ।

ଶ୍ରୀଧରନ୍ ନାୟରଙ୍କର ତମାଖୁ ଦୋକାନ ବି ସେତିକିବେଳେ ବନ୍ଦ ହେବାକୁ ଯାଉଥିଲା । ଶ୍ରୀଧରନ୍ ନାୟରଙ୍କ ପାଖକୁ ଠିଆ ହୋଇଥିବା କେଷ୍ଟଲଙ୍କ ନାଡ଼ାର୍ ଯେମିତି ଅନନ୍ତନ୍ ନାୟରଙ୍କୁ ଦେଖିପାରିଲେ, ସେମିତି ଆପଣାର ଖାମିନ୍ଦଙ୍କୁ "ଆଜ୍ଞା, ମୁଁ ତେବେ ଯାଉଛି"··· ବୋଲି କହି ବିଦାୟ ନେଲେ ଏବଂ ଅନନ୍ତନ୍ ନାୟରଙ୍କ ପାଖକୁ ଆସିଲେ । କେଷ୍ଟଲଙ୍କ ନାଡ଼ାର ସେହି ତମାଖୁ ଦୋକାନଟିରେ ହିଁ କାମ କରୁଥିଲେ ।

"ଦୋକାନକାମ ବଢ଼ାଇବାରେ କ'ଣ ଏତେଗୁଡ଼ାଏ ଡେରି ହୋଇଗଲା ?"—କେହି ଜଣେ ଆଉଜଣଙ୍କୁ ସଂବେଦନା ଜଣାଇ ପଚାରିଲେ ଓ ଦୂରେଇଁଯାଇ ପୂର୍ବଦିଗରେ ଥିବା କାଳୀ ଆଡ଼କୁ ଧୀରେ ଧୀରେ ପଦକ୍ଷେପ ପକାଇଲେ, ଯେଉଁଆଡ଼େ ପଦ୍ମନାଭସ୍ୱାମୀଙ୍କ ମନ୍ଦିରର ଗୋପପୁରର ଦୀପଗୁଡ଼ିକ ଆଲୋକ ପ୍ରତିଫଳିତ କରିବାରେ ଲାଗିଥିଲା ।

ପାନ ଓ ଚାହାର ଦୋକାନଗୁଡ଼ିକୁ ଛାଡ଼ି ପ୍ରାୟ ଆଉ ସବୁଯାକ ଦୋକାନ ବନ୍ଦ ହୋଇସାରିଥିଲେ । ଯେଉଁଗୁଡ଼ିକ ବନ୍ଦ ହୋଇ ନଥିଲେ, ସେଗୁଡ଼ିକରୁ ବି 'ଫଟ୍ ଫଟ୍' ଶବ୍ଦ ଉତ୍ପନ୍ନ କରୁଥିବା ପଟାଗୁଡ଼ିକ ପଡ଼ିସିବାରେ ଲାଗିଥିଲା ଏବଂ 'କର୍, କର୍' କରି ଶଟର୍‌ଗୁଡ଼ାକ ମଧ୍ୟ ଉପରୁ ତଳକୁ ଟାଣିହୋଇ ଆସୁଥିଲେ ।

ବର୍ତ୍ତମାନ ବଜାରରେ ଯାନବାହାନର ଯିବାଆସିବା ଓ ଲୋକମାନଙ୍କର ଭିଡ଼ କମ୍ ହୋଇଯାଇଥିଲା । ଦୋକାନଗୁଡ଼ିକରୁ ଦେଶାନ୍ତରିତ କରି ଦିଆଯାଉଥିବା ପୁରୁଣା ତାଳପତ୍ର ଦିଆର କେତେ କେତେ ପେଟି, ମାଟି ବାସନ, ରଦ୍ଦି କାଗଜ ଏବଂ ଶେଷ ନିଶ୍ୱାସ ପକାଉଥିବା ସନ୍ତପ୍ତ ମୂଷିକ, ମାଛି ଓ ମଶାମାନେ ସବୁଯାକ ମିଶି ସଡ଼କଟିକୁ ଭର୍ତ୍ତି କରି ରଖିଥିଲେ ।

ଘାଆ ହୋଇଯାଇଥିବା ଦୁଇତିନିଟା କୁକୁର ବଡ଼ ସାବଧାନତା ସହିତ ନର୍ଦ୍ଦମାଗୁଡ଼ିକର ଗନ୍ଧ ଶୁଂଘିବାରେ ଲାଗିଥିଲେ ।

ଅନନ୍ତନ୍ ନାୟର୍ ଏତେ ବେଶି କ୍ଳାନ୍ତ ହୋଇ ପଡ଼ିଥିଲେ ଯେ କଥାବାର୍ତ୍ତା କରିବାକୁ ତାଙ୍କର ଆଉ କୌଣସି ଇଚ୍ଛା ହିଁ ନଥିଲା । କେଷ୍ଟଲଙ୍କ ନାଡ଼ାର ମଧ୍ୟ ସେତିକି କ୍ଳାନ୍ତ ହୋଇପଡ଼ିଥିଲା ପରି ଦେଖାଯାଉଥିଲେ ।

"ନାୟର ! ବର୍ତ୍ତମାନ ତ ଘରେ ପହଞ୍ଚିଲେ ଯାଇ କିଛିହେଲେ ମିଳିବ । ଚାଲ, ଗୋଟିଏ ଗୋଟିଏ ପିଆଲା ସୁଣ୍ଠିଦିଆ କଫି ପିଇବା ।" ନାଡ଼ାରଙ୍କର ସେହି

ନିମନ୍ତ୍ରଣକୁ ଅସ୍ୱୀକାର କରିବାଲାଗି ମଧ୍ୟ ତାଙ୍କର ଶକ୍ତି ନଥିଲା । ଶାଳେ ବଜାରରୁ ବାଆଁ-ଆଡ଼କୁ ବୁଲି ପଡ଼ିଲେ ଯେଉଁ ଷ୍ଟ୍ରେଟ ଗଳିଟି ଅଛି ସେଠାରେ ପାମ୍ପଡ଼ ଓ ବଡ଼ ବିକ୍ରୀ ହେଉଥିବା ପପ୍‌ପୁ ପିଲ୍ଲଇଙ୍କ ଦୋକାନରେ ଅନନ୍ତନ୍ ନାୟର୍ ତାଙ୍କ ସାଙ୍ଗରେ ଯାଇ ପହଞ୍ଚିଲେ ।

ପପ୍‌ପୁ ପିଲ୍ଲଇଙ୍କର ସେହି ଦୋକାନଟି, ଖାଇବାଇବାରେ ତାନ୍ତ୍ରିକୁ ବଡ଼ ସୁଖ-ଦାୟକ ଏବଂ ମଡ଼ ମଡ଼ ସ୍ୱାଦିଷ୍ଟ ପାମ୍ପଡ଼ ସକାଶେ ଏବଂ ହାତୀ ମାର୍କା ସ୍ପେସିଆଲ୍ କଫି ସକାଶେ, ଯାହାକୁ କି ସୁଣ୍ଠି, ଗୋଲମରୁଡ଼ ଓ କଳା ତୁଳସୀ ପ୍ରଭୃତି ଔଷଧି ଏବଂ ଗ୍ଲୁକୋରିକ ପଦାର୍ଥଗୁଡ଼ିକୁ ଏକାଠି ପକାଇ ତିଆରି କରା ଯାଉଥିଲା, କଫିକୁ ଆଦରରେ ସମସ୍ତେ ମିକ୍ସର କଟ୍‌ଟନ୍ ମଧ୍ୟ କହୁଥିଲେ), ବଡ଼ ବିଖ୍ୟାତ ଥିଲା । ଖାଇବାଇବା ଲୋକେ ଓ ପିଇବା ଲୋକେ 'ଭାରି ବଢ଼ିଆ' ବୋଲି କହି ପରସ୍ପରର ସମ୍ମୁଖରେ ତାହାର କୀର୍ତ୍ତିଗାନ କରୁଥିଲେ । ତା' ଛଡ଼ା ଏପରି ମଧ୍ୟ ବ୍ୟବସ୍ଥା ରହିଥିଲା ଯେ ଗ୍ରାହକମାନଙ୍କ ଉପରେ ବିଶେଷ ଧ୍ୟାନ ଦେଇ ସେବା କରିବାର ନୈପୁଣ୍ୟ ପପ୍‌ପୁ ପିଲ୍ଲଇ ମଧ୍ୟରେ ଅନୁପମ ଭାବରେ ଭରି ରହିଥିଲା ।

ବଜାରରେ ସମସ୍ତେ କହୁଥିଲେ ଯେ ଏବେ ଯେଉଁ ବଙ୍ଗଳାଟିକୁ ତିଆରି କରି ସିଏ ଏକ ଶୁଭ ଦିନରେ ଦୁଧ ଗରମ କରିବାର ବିଧିଟିକୁ ପୂରଣ କରି ଗୃହପ୍ରବେଶ କଲେ, ସେହି ବଙ୍ଗଳାଟି ମଧ୍ୟ ଏହି ଦୋକାନରେ ଗୃହାରେ ହିଁ ତିଆରି ହୋଇଥିଲା ।

ଏକଥା ମଧ୍ୟ ଶୁଣା ଯାଇଥାଏ ଯେ ସିଏ ଆଜିକାଲି ମଗରଦୀପ ଜଳାଇବା, ମଣ୍ଡଳପୂଜା କରାଇବା, ଶବରିମଲୈର ଆୟ୍ୟପ୍ପନ୍ ମନ୍ଦିରର ସେବାୟତମାନଙ୍କୁ ମାଗଣା ସୁଣ୍ଠି ଓ ଚନ୍ଦନର ଜଳପାନ କରାଇବା କାର୍ଯ୍ୟରେ ମଧ୍ୟ ଅଧିକ ଉତ୍ସାହ ଦେଖାଇବାକୁ ଆରମ୍ଭ କଲେଣି ।

ପପ୍‌ପୁ ପିଲ୍ଲଇଙ୍କର ଏହି ପାମ୍ପଡ଼-ବଡ଼ ଦୋକାନରେ ଲମ୍ବା ଲମ୍ବା ଛଅଟି ଟେବୁଲ ଓ ଛଅଟି ବେଞ୍ଚ୍ ପଡ଼ିଥିଲା । ମଧ୍ୟମଣି ପରି ଶୋଭା ପାଉଥିବା ଆଗ୍ରର ଗୋଟିଏ ସାନ ଟେବୁଲ ପାଖରେ ଗୋଟିଏ ଚଉକୀ ପଡ଼ିଥିଲା । ସେହି ଚଉକିଟି ଉପରେ ଅର୍ଦ୍ଧଲଗ୍ନ ଶରୀରରେ ଢିଲକରି ବଡ଼ ବଡ଼ ପଟି ଦେହରେ ଧାରଣ କରି ପପ୍‌ପୁ ପିଲ୍ଲଇ ବିରାଜମାନ ଥିଲେ ।

ତାଙ୍କ ମୁଣ୍ଡପାଖକୁ ଗୋଟିଏ ଖୁଣ୍ଟିଆ ଷ୍ଟାଣ୍ଡ ଉପରେ ଶଟ୍‌ଟମ୍ବି ସ୍ୱାମୀଙ୍କର ଗୋଟିଏ ଚିତ୍ର, ଦାଢ଼ିଜଟା ସମେତ ପଦ୍ମାସନରେ ଧ୍ୟାନମଗ୍ନ ଭାବରେ ଉପବିଷ୍ଟ··· ତାଙ୍କ ଆଗରେ ଜଳୁଥିବା ସାନ ଦୀପଟିଏ ··· କିଛି ଫୁଲ ··· ଦୁଇଟି ଅଗରବତୀ ··· ।

ଭିତରେ ଧୂଆଁରେ କଳା ହୋଇଯାଇଥିବା ଖୋପେଇ ଘର – ଗୋଟିଏ କଣକୁ ହାତ ଧୋଇବା ସକାଶେ ପାଣିର ଟାଙ୍କି, ଏବଂ ତା'ପାଖକୁ ଅଷ୍ଟକୋଣ ହୋଇ ଅଙ୍କା ବଙ୍କା ହୋଇଯାଇଥିଲେ ମଧ୍ୟ ତଥାପି ନଜର କର୍ତ୍ତବ୍ୟ କରି ଯାଉଥିବା ଦୁଇଟିନୋଟି ଆଲୁମିନିୟମ ଡ଼ାଲ ···

ଏଇ ହେଲା ପମ୍ପୁ ପିଲଇଙ୍କର ଦୋକାନ । ଦୋକାନ ବନ୍ଦ ରଖିବାର କୌଣସି ଅଭ୍ୟାସ ହିଁ ନାହିଁ । ରାତିଯାକ କାରବାର ଚାଲିଥାଏ । ଏଥିରେ ଏତକ ବିଶେଷତ୍ୱ ରହିଥାଏ ଯେ ଛଅଟିଯାକ ବେଞ୍ଚ ଏବଂ ଛଅଟିଯାକ ଟେବୁଲ୍ ଗ୍ରାହକମାନଙ୍କଦ୍ୱାରା ସବୁବେଳେ ପୂର୍ଣ୍ଣହୋଇ ରହିଥାଏ ··· ।

"ଆରେ, କଥା କ'ଣ !···ନାସ୍ବର୍ ଆଉ ନାଡ଼ାର୍ ଏକା ସାଙ୍ଗରେ ଆସିଛନ୍ତି ଯେ ! ହୁଁ ! ଧର୍ମ ଯାହା ହୋଇଥାଉ ପଛକେ, ମଣିଷ ଠିକ୍ ରହିଲେ ହେଲା··· ।" ପମ୍ପୁ ପିଲଇ ନାରାୟଣ ଗୁରୁଙ୍କର ମଧ୍ୟ ଭାରି ଆଡ଼ମ୍ବରରେ ସ୍ୱାଗତ କଲେ ।

କିଛି ପାମ୍ପଡ଼, ଦୁଇଟିକ ପିଆଜ ଗୁଣ୍ଡି ଦିଆ କଫି ଓ ଦୁଇ ଟିନୋଟି 'ପୁଓ୍ୱନ୍' କଦଳୀ ଖାଇ ଯେତେବେଳେ ଦୁହେଁ ବାହାରକୁ ଆସିଲେ, ସେତେବେଳେ ଯାଇ ସେମାନଙ୍କ ଭିତରେ କିଛି ନୂଆ ତାକତ ଆସିଲା ଏବଂ ସତେଅବା ସେମାନଙ୍କୁ ହାତବଢ଼ାଇ କେହି ଉଠାଇ ନେଇଯାଉଥିଲା ପରି ଲାଗିଲା ।

କାନ୍ଧରେ ପଡ଼ିଥିବା ଗାମୁଛାଟିରେ ଝାଳ ପୋଛୁ ପାଖରେ ଥିବା ନାଣୁପିଲଇର ପାନ ଦୋକାନକୁ ଯାଇ ପାନ ଖାଇବେ ବୋଲି ସେମାନେ ଧୀରେ ଧୀରେ ଆଗକୁ ପାଦ ପକାଇଲେ ।

ଅନନ୍ତନ୍ ନାସ୍ବର୍ ପଚାରିଲେ, "ଆପଣ ଦୋକାନରେ ସତ୍ୟାଗ୍ରହର ଖବର କ'ଣ ?

"ସିଏ ଏତେଦୂର ବିଗିଡ଼ି ଯାଇଛି ଓ ଯେତେ ପଇସା ଲାଗୁ ପଛକେ, ବର୍ତ୍ତମାନ ମୁଁ ତାକୁ କଦାପି କାମକୁ ଫେରାଇ ଆଣିବି ନାହିଁ' ବୋଲି କହି ଖାମିନ୍ଦ ଲେବର କୋର୍ଟ ହାତରେ ମାମଲାଟିକୁ ଛାଡ଼ି ଦେଇଛନ୍ତି ଏବଂ ଅଟଳ ହୋଇ ବସିଛନ୍ତି"—ନାଡ଼ାର ଉତ୍ତର ଦେଲେ ।

"ଆଚ୍ଛା, ଏମିତି କଥା ।"

"ହଁ, ଆଜିକାଲି ତ ସବୁଠାରେ ସେଇ ଗୋଳମାଳ । ଗୋଟାଏ ମଜାକଥା ଶୁଣିବେ ? ଆଜି ମୋ' ବଡ଼ ପୁଅର ଅଫିସରେ ଗୋଟାଏ ଘେରାଉ ହେବାର ଥିଲା । ସକାଳ ନଅଟା ବେଳେ ସିଏ ନଜର ଚେୟାର ଉପରେ ଯାଇ ବସିଥିଲା ଯେ ତାକୁ ବର୍ତ୍ତମାନ ମାନ

ଅଳ୍ପସମୟ ଆଗରୁ ନଅଟାବେଳକୁ ଯାଇ ଉଠି ବାହାରକୁ ଆସିବାଲାଗି ଛୁଡ଼ି ଦିଆଗଲା—, ସିଏ ପୁଣି ଯାଇ ପୋଲିସ ଆସି ପହଞ୍ଚିବା ପରେ । ଅଳ୍ପସମୟ ପୂର୍ବେ ସିଏ ଟେଲିଫୋନ୍ କରି ମୋତେ ସବୁକଥା କହିଲା··· ।"

"କାରଣ ?"

ତା' ଅଫିସ୍‌ରେ ଚାରିଜଣ କ୍ଲର୍କ ଅଛନ୍ତି । ସେମାନଙ୍କ ମଧ୍ୟରୁ ଦୁଇଜଣ ଦଶଦିନ ଛୁଟିରେ ଅଛନ୍ତି । ସେମାନଙ୍କର ଛୁଟି ମଞ୍ଜୁର ହୋଇ ନଥାନ୍ତା ତ ସେମାନେ କଦାପି ଚୁପ୍ ହୋଇ ରହିଯାଇ ନଥାନ୍ତେ । "ମିନିଷ୍ଟେରିଆଲ୍ ଷ୍ଟାଫ୍‌ର କାମ ହେଉଛି ବେତନ-ବିଲ୍ ତିଆରି କରିବା, ଆମେ ସେ କାମ କାହିଁକି କରିବୁ"?-କହି ଟେକ୍‌ନିକାଲ୍ ଷ୍ଟାଫ୍ ବିଲ୍ ତିଆରି କରିବାକୁ ଆଦୌ ମଙ୍ଗିଲେ ନାହିଁ । ଶେଷକୁ ଏମାସର ବିଲ୍ ତିଆରି ହିଁ ହୋଇ ପାରିଲା ନାହିଁ··· । ତେଣୁ ଟ୍ରେଜେରିରୁ ବେତନର ଚେକ୍ ମଧ୍ୟ ମିଳିଲା ନାହିଁ । ଟେକ୍‌ନିକାଲ୍ ଷ୍ଟାଫ୍ ଏକାଠି ମିଶି 'ଯେତେବେଳ ଯାଏ ଦରମା ଦିଆନଯିବ, ସେତେବେଳ ଯାଏ ଅଫିସରଙ୍କୁ ବାହାରକୁ ହିଁ ଯିବାକୁ ଦେବୁ ନାହିଁ କହି ସେମାନେ ତାଙ୍କ ଟେବୁଲ୍‌ଟିକୁ ଆସି ଘେରିଗଲେ ।"

ସେତେବେଳେ ଅନନ୍ତନ୍ ନାମ୍ବିଆର୍‌ଙ୍କର ମାନସିକ ଅବସ୍ଥା ଯେପରି ଥିଲା, ସେଥିରେ ନାଡ଼ାର୍‌ଙ୍କ ଦ୍ୱାରା ମିଳିଥିବା ଏହି ଖବରଟିରୁ ତାଙ୍କୁ ସେପରି କୌଣସି ରସ ମିଳିଲା ନାହିଁ ।

ହଠାତ୍ କ'ଣ ଗୋଟିଏ ମନେ ପଡ଼ିଗଲା ପରି ନିଷ୍ଟଲଙ୍କ ନାଡାର୍ ପଚାରିଲେ, "ଅନନ୍ତନ୍ ନାମ୍ବିଆର୍, ଆପଣ ଗୋଟାଏ ଖବର ଶୁଣିଲେଣି କି··· ?"

ଅନନ୍ତନ୍ ନାମ୍ବିଆର୍ ଜିଜ୍ଞାସାର ମୁଦ୍ରାରେ ତାଙ୍କ ଆଡ଼କୁ ଅନାଇଲେ ।

"ଆମ ସ୍ୱାମିନାଥଙ୍କର ସାନ ପୁଅଟି ମାତ୍ର ଗତବର୍ଷ ଲ' ପରୀକ୍ଷା ପାସ୍ କରିଛି । 'ନିଜ ଲୋକ' ଭାବି ଆପଣଙ୍କର ମାମୁଁ ପୁଅ ଭାଇ ଗୋବିନ୍ଦନ୍ ନାମ୍ବିଆର୍‌ଙ୍କ ପାଖରେ ଜୁନିଅର୍ ହୋଇ ଓକିଲାତି କରିବାଲାଗି ସ୍ୱାମିନାଥ ନିଜ ପୁଅକୁ ତାଙ୍କ ପାଖକୁ ପଠାଇଥିଲେ । ଗୋବିନ୍ଦନ୍ ନାମ୍ବିଆର୍ ଏହି ସହରର ଜଣେ ବଡ଼ ଓକିଲ ନା,—ଫୌଜଦାରୀ ଆଉ ଦେଓ୍ୱାନୀ ଉଭୟ ପ୍ରକାରର ମକଦ୍ଦମାରେ ।"

ଅନନ୍ତନ୍ ନାମ୍ବିଆର୍ ମଧ୍ୟ ଜାଣିଛନ୍ତି ଯେ ନିଷ୍ଟଲଙ୍କ ନାଡ଼ାର ଯେଉଁ ତମାଖୁ-ଦୋକାନରେ କାର୍ଯ୍ୟ କରନ୍ତି, ତାଙ୍କ ମାଲିକ ଶ୍ରୀଧରନ୍ ନାମ୍ବିଆର୍‌ଙ୍କ ଭଉଣୀ ସହିତ ହିଁ ଗୋବିନ୍ଦନ୍ ନାମ୍ବିଆର୍‌ଙ୍କର ବିବାହ ହୋଇଥିଲା ।

"ସେଉଠୁ ବର୍ତ୍ତିମାନ କ'ଣ ହେଲା ?"—ଗୋବର୍ଦ୍ଧନ୍ ନାୟକଙ୍କ ସମ୍ବନ୍ଧରେ ଅନନ୍ତନ୍ ନାୟକ୍ଙ୍କର ରହିଥିବା ଉପେକ୍ଷାଭାବଟି ଅଧା ମନରେ ପଚରା ଯାଇଥିବା ସେହି ପ୍ରଶ୍ନଟିରୁ ହିଁ ପ୍ରକଟ ହେଇଯାଉଥିଲା ।

"ଆଜି ସେହି ପୁଅ ସିଧା ଅଦାଲତରୁ ଦୋକାନକୁ ଆସିଥିଲା ଏବଂ କହିଲା, "ଆଉ ମୁଁ ମାମୁଁଙ୍କ ପାଖକୁ ଯିବି ନାହିଁ ।" ମାଲିକ ଏଡ଼େ ବଡ଼ ପାଟି କରି କହିଲେ, "ଯିବାକୁ ହିଁ ପଡ଼ିବ ।" ଦୁହିଁଙ୍କ ଭିତରେ ଖୁବ୍ ଲଢ଼ାଇ...।"

"ହୁଁ...ମାତ୍ର କାରଣ କ'ଣ ?"

ଆପଣ ତ ଗୋବର୍ଦ୍ଧନ୍ ନାୟକ୍ଙ୍କ କଥା ଜାଣିଛନ୍ତି । ତାଙ୍କ ପାଖରେ ଆଗରୁ ଛଅଜଣ ଜୁନିଅର କାମ କରୁଛନ୍ତି । ସେମାନଙ୍କ ମଧ୍ୟରୁ ଦୁଇଜଣ ମହିଳା । ଏ ପରି-ସ୍ଥିତିରେ ଚତୁର୍ଥ ଆଉଜଣେ ଜୁନିଅର୍, ସିଏ ପୁଣି ଆପଣା ବନ୍ଧୁବାନ୍ଧବ ଭିତରୁ, ଗ୍ରହଣ କରିବାଟା ଗୋବର୍ଦ୍ଧନ୍ ନାୟକ୍ଙ୍କୁ ମୋଟେ ଭଲ ଲାଗୁନଥିଲା । ମାତ୍ର ଏ ପୁଅଟି ବଡ଼ ଜିଲଖ । ଏଇ ଗୋଟାଏ ବର୍ଷ ଭିତରେ ବି ସିଏ ସେଠାରେ ଗୋବର୍ଦ୍ଧନ୍ ନାୟକ୍ଙ୍କର ଅଫିସର ସବୁପ୍ରକାର ହାଲଚାଲ ଜାଣିନେଇ ପାରିଥିଲା । ଗୋବର୍ଦ୍ଧନ୍ ନାୟକଙ୍କର କଥା ତ ଆପଣ ଭଲ କରି ଜାଣିଛନ୍ତି... । ମୁଁ ଆଉ କ'ଣ କହିବି · ?" – କହି ଗ୍ରେବାଇ ଗ୍ରେବାଇ କଥା ଗିଳୁଗିଳୁ ଏକ ଭାବପୂର୍ଣ୍ଣ ହସ ହସିଦେଇ ନିଷ୍ଟଳଙ୍କ ନାଡ଼ାର ଚୁପ୍ ହୋଇ ରହିଗଲେ ।

ଅନନ୍ତନ୍ ନାୟକ୍ଙ୍କର ମନ ଗୋବର୍ଦ୍ଧନ୍ ନାୟକ୍ଙ୍କର ଘର ପାଖରେ ଉଡ଼ି ଉଡ଼ି ଉପରକୁ ଉଠିଲା ।...

କୋର୍ଟ ରୁ କୃଷ୍ଣକର୍ତ୍ତାଙ୍କର ପୁଅ ନା ? ତେବେ ଆଉ ଅନ୍ୟପ୍ରକାର କପରି ହୋଇଥାନ୍ତା ? ମନ୍ତ୍ରିର ପ୍ରଭାବ ତ ଦଶଗୁଣ ହୋଇ ବଢ଼ି ଯାଏ... ।

ଆପଣାର ପିଲାବେଳେ ସେ ଚକାଛୁ କୃଷ୍ଣ କର୍ତ୍ତାଙ୍କର ଯେଉଁ ଅନ୍ୟ କଥାସବୁ ଦେଖିଥିଲେ, ସେଗୁଡ଼ିକ ସେ ଭୁଲି ଗଲେଣି, ମାତ୍ର....

ବାଳ ଧଳା ହୋଇ ଯାଇଥିଲା, ତଥାପି ସେଗୁଡ଼ିକ କୁଣ୍ଡାଇ ଗଣ୍ଠି ପକାଇ...

ସେଗୁଡ଼ିକ ଉପରେ ନାଲିଆ ନାଲିଆ ଫୁଲ୍...ଅଗ୍ନିକଣା ପରି ଜଳୁଥିବା ଆଖି ...ଭାଲୁପରି ବହଳ ଟାଆଁସିଆ କଳା କଳା ବାଳରେ ଭର୍ତ୍ତି ହୋଇଥିବା ଓ ସାନ ଆକାରର ଗଇଁଠା ପରି ବଳି ହୋଇଥିବା ଶରୀର ସତେଅବା ନିଆଁରେ ସ୍ନାନ କରି ବାହାରି ଆସିଥିଲା ।

ପାତଳା ମଲମଲ୍ ଧଳା ଧୋତି ଭିତରୁ ପିଠି ପାଖକୁ ଅସ୍ପଷ୍ଟ ରେଖାରେ ଦେଖା ଯାଉଥିବା ଲେଙ୍ଗୁଟି···ବାସ୍ ସେତିକି ଯାହା ମନେ ପଡ଼ୁଛି ।

"ଆଚ୍ଛା, ବହୁତ ଡେ଼ରି ବି ତ ହୋଇଗଲାଣି କାଲି ଦେଖାଯିବ । ବର୍ତ୍ତମାନ ମନକ୍କଡ଼୍ ପର୍ଯ୍ୟନ୍ତ ଚାଲିକରି ଯିବାକୁ ହେବ ।"—କହି ନମ୍ବିଆର୍ଙ୍କ ନାଡ଼ାର ଯେମିତି ବାଆଁ ଆଡ଼କୁ ବୁଲି ପଛ ଚାଲିବାକୁ ଲାଗିଲେ ଅନନ୍ତନ୍ ନାୟର୍ ସେହିପରି ଠିଆ ହୋଇ ତାଙ୍କୁ ଦେଖିବାକୁ ଲାଗିଥାନ୍ତି । ତା'ପରେ ଧୀରେ ଧୀରେ ଡାହାଣ ଆଡ଼କୁ ବୁଲି ବିଶ୍ରାମ ନେଉଥିବା ପିକ୍‌ନିକ୍ ଗ୍ରୁପ୍‌କର ମଧ୍ୟଦେଇ ଅତିକ୍ରମ କରି ସମୁଦ୍ରର ଧଳା ବାଲିଦ୍ୱାରା ଆବୃତ ବିଶାଳ ମଇଦାନଟି ଉପରେ ବସିଥିବା ସମୟରେ ମଧ୍ୟ ଅନନ୍ତନ୍ ନାୟର୍‌ଙ୍କର ମନ ଭିତରେ ଭାଉଜ କୁଞ୍ଜୁଲକ୍ଷ୍ମୀଙ୍କର ଦ୍ୱିତୀୟ ଜ୍ୱାଇଁ ଗୋବର୍ଦ୍ଧନ୍ ନାୟର୍‌ଙ୍କର ପିତା ସେହି କୋଚୁକୃଷ୍ଣନ୍ କର୍ତ୍ତାଙ୍କର ଆକୃତିଟି ହିଁ ଭାସି ରହିଥିଲା ।

ଅନନ୍ତନ୍ ନାୟର୍‌ଙ୍କର ପିତା ମଧ୍ୟ କେଡ଼େ ଶ୍ରଦ୍ଧାରେ ଶଙ୍କୁଣି ନାୟର୍‌ଙ୍କ ସହିତ ଆପଣାର ଭଉଣୀ କୁଞ୍ଜୁଲକ୍ଷ୍ମୀର ବିବାହ କରି ଦେଇଥିଲେ !

ବିବାହ ହୋଇଯିବା ପରେ ଭାଉଜ କୁଞ୍ଜୁଲକ୍ଷ୍ମୀ ପେରୁର୍‌କଡ଼େ଼'ରେ ଅବସ୍ଥିତ ଶଙ୍କୁଣି ନାୟର୍‌ଙ୍କ ଘରକୁ ଯାଇଥିଲା । ଶଙ୍କୁଣୀ ନାୟର୍ ବୟସରେ ଭାଉଜଙ୍କଠାରୁ ଦୁଇ ବର୍ଷ ବଡ଼ ଥିଲେ । ଶରୀର ଦେଖିବାକୁ ଭାରି ସୁନ୍ଦର ଓ ସୁସ୍ଥ । ସମସ୍ତେ କହନ୍ତି ଯେ ପେରୁର୍‌କଡ଼େ଼ ଜଙ୍କ୍‌ଶନ୍‌ଠାରେ ସିଏ ଗୋଟିଏ ଲୁଗା ଦୋକାନ ଖୋଲିଥିଲେ । ସେଠାରେ ଯେବେବେଳେ ଦେଖିବ, ଭାରି କାରବାର ଚାଲିଥିଲା । ତା ସହିତ ଯଥେଷ୍ଟ ସମ୍ପତ୍ତି ଓ ଜମି ଥିଲା, ବଡ଼ ଘର ପ୍ରଭୃତି ସବୁକିଛି ଥିଲା ।

ଭାଉଜଲାଗି ସେଠାରେ କୌଣସି କଥାରେ ଅଭାବ ନ ଥିଲା । ତାଙ୍କର ସବୁ ଅଭାବର ପୂରଣ କରିବାଲାଗି ଶଙ୍କୁଣି ନାୟର୍ ଜୀବନ ଦେବାକୁ ବି ପ୍ରସ୍ତୁତ ଥିଲେ । ନାୟର୍‌ଙ୍କର ପିତା ମାତା ତାଙ୍କ ବାଳ୍ୟକାଳରୁ ହିଁ ଚାଲି ଯାଇଥିଲେ, ତେଣୁ ଭାଉଜଙ୍କ ଲାଗି ହିଁ ଆପଣାର ଅପାର ପ୍ରେମଟିକୁ ଆଣି ଅଜାଡ଼ି ଦେବାର ମାର୍ଗରେ ପ୍ରତିବନ୍ଧକ ବା ଆକଟ ରଖିବାକୁ ଘରେ ଆଉ କେହିହେଲେ ନଥିଲେ ।

ଏଣେ 'ପାଲକ୍‌କୁଲଂକରେ' 'ପେରୁର୍‌କଡ଼େ଼'ଠାରୁ ଚାରି ପାଞ୍ଚମାଇଲ ଦୂର ଥିଲା । ଶାଶୁଘରକୁ ଯିବା ପରେ ଭାଉଜ ଦୁଇତିନି ଥର ଏଠାକୁ ଆସିଛନ୍ତି । ଅନନ୍ତନ୍ ନାୟର୍‌ଙ୍କର ପିତାମାତା ମଧ୍ୟ ଦୁଇତିନି ଥର ଭାଉଜଙ୍କ ଘରକୁ ଯାଇ ଦେଖି ଆସିଥିଲେ ।

ସେହି ସମୟରେ ଏଇ ଘଟଣାଟି ଘଟିଥିଲା । ତାଙ୍କର ମାଆ ଥରେ ତାଙ୍କୁ ସେହି ଘଟଣାଟି ସମ୍ବନ୍ଧରେ ସବୁକଥା କହିଥିଲେ,— ଅନନ୍ତନ୍ ନାୟର୍‌ଙ୍କର ମନେ ପଡ଼ିଗଲା ।

ଦିନେ ସନ୍ଧ୍ୟାବେଳେ କୂଅମୂଳେ ଗାଧୋଇ ସାରି ସେହି ଓଦା ଶାଢ଼ୀରେ ହିଁ କୃଷ୍ଣଲକ୍ଷ୍ମୀ ଘର ଭିତରକୁ ଚାଲି ଆସିଲେ । ଅକାଣତରେ ଗୋଡ଼ ଖସିଗଲା, ଅଥବା ହୁଏତ କାହାର ଖରାପ ଦୃଷ୍ଟି ବି ପଡ଼ିଲା, ସିଏ ଟଳିଟଳି ହୋଇ ଧୁଲ୍ କରି ଚିତ୍ ହୋଇ ପଡ଼ିଗଲେ । କୃଷ୍ଣଲକ୍ଷ୍ମୀଙ୍କର ଶରୀର କ'ଣ କୌଣସି ମାମୁଲି ସାଧାରଣ ଶରୀର ଥିଲା ? ଖୁବ୍ ହୃଷ୍ଟପୁଷ୍ଟ ଲୁହାର ନିଙ୍କିସମା ପରି ତିଆରି ହୋଇଥିଲା । ଜୋର୍‌ରେ ତଳେ ପଡ଼ିଯିବା ଫଳରେ ପିଠି ଉପରେ ମୋଟେ ଆଘାତ ଲାଗିଲା, ତଦ୍ଭିନ୍ନ ହାଡ଼ ଉପରେ ବି ଭାରି ମାଡ଼ ବାଜିଲା । ଶବ୍ଦ ଶୁଣି ଚାକରାଣୀ ଦଉଡ଼ି ଆସିଲା । କୃଷ୍ଣଲକ୍ଷ୍ମୀ ଉଠି ପାରୁ ନଥିଲେ, ସେମିତି ଅବଶିବ୍ୟ ହୋଇ ପଡ଼ି ରହିଥିଲେ । ତାଙ୍କୁ ହଲାଇବାକୁ କ'ଣ ଚାକରାଣୀର ବଳ ପାଇଥାନ୍ତା ? ତେଣୁ ଶଙ୍କୁଣୀ ନାୟରଙ୍କ ପାଖରେ ଦୋକାନରେ ଯାଇ ଖବର ପହଞ୍ଚିଲା । ସିଏ ବ୍ୟାକୁଳ ହୋଇପଡ଼ିଲେ ଓ ଧଇଁ ଧଇଁ ଘରେ ଆସି ପହଞ୍ଚିଲେ । ସମସ୍ତେ ମିଶି କୃଷ୍ଣଲକ୍ଷ୍ମୀଙ୍କୁ ଉଠାଇଲେ ଓ ବାହାରେ ଚଉତରା ଉପରେ ପଡ଼ିଥିବା ଖଟଟି ଉପରେ ଆଣି ଶୁଆଇଦେଲେ । ଆମ ଘରକୁ ବି ଖବର ନେଇ ଲୋକ ଆସିଥିଲା । ବାପା ଓ ମୁଁ ଦଉଡ଼ି-ଯାଇ ସେଠାରେ ପହଞ୍ଚିଲୁ, ତା'ପରେ ସବୁ ପ୍ରକାରର ବୈଦ୍ୟ ଆସିଲେ, ଚିକିତ୍ସା କଲେ, ମାତ୍ର ସିଏ ଆଉ ଗୋଡ଼ ଟେକି ଠିଆ ହୋଇପାରିଲେ ନାହିଁ । ଖଟଉପରେ ପଡ଼ି ସିଏ ଯେପରି ଯନ୍ତ୍ରଣାରେ ଛଟପଟ ହେଉଥିଲେ, ତାଙ୍କୁ ଦେଖି···ଓଃ···! ସହ୍ୟ ବି କରି ହେଉନଥିଲା । ଶେଷକୁ ସେହି ଦୁଷ୍ଟ ଦ୍ରୋହୀ କୋଚୁ କୃଷ୍ଣନ୍ କର୍ତ୍ତାକୁ ହିଁ ଡକାଇ ଅଣା-ଗଲା ।...

କର୍ତ୍ତା ହାଡ଼ର ସବୁ ରୋଗକୁ ଆରୋଗ୍ୟ କରି ଦେଉଥିଲେ । ଗୋଡ଼ ଖସି ହାତର ବି ହାଡ ଭାଙ୍ଗି ଯାଇଥାଉ ପଛକେ, ସିଏ ଆପଣାର ସାନ ଆଙ୍ଗୁଠିରେ ତାକୁ ଠିକ୍ କରି ଦେଇଥିଲେ, ତାଙ୍କର ଏପରି ମହାନ୍ ପ୍ରତିଷ୍ଠା ରହିଥିଲା । ସିଏ ଗୋଟିଏ କୁମ୍ଭିରେ ତେଲ ପୁରାଇ ନେଇଆସିଲେ । ଯେତେବେଳେ ସେହି ତେଲକୁ ଲଗାଉଥିଲେ, ସେତେ-ବେଳେ ଘରଭିତରେ ଆଉ କେହି ରହିବେ ନାହିଁ ବୋଲି କହି ଦିଆଗଲା । ସିଏ କେଉଁଠି ସବୁ ଲଗାଇଲେ, କିପରି ଲଗାଇଲେ, ସେକଥା କାହାରିକୁ ଜଣା ନାହିଁ । ତୃତୀୟ ମାସକୁ କୁମ୍ଭି ଖାଲି ହେଲା···ଭିଉଜ କୃଷ୍ଣଲକ୍ଷ୍ମୀଙ୍କର ଗୋଡ଼ ମଧ୍ୟ ଠିକ୍ ହୋଇଗଲା । ତା' ସହିତ ସିଏ ଆଉ କ'ଣ କୁହୁକ କଲେ କେଜାଣି, କି ମନ୍ତ୍ର ପଢ଼ିଲେ କେଜାଣି, ତାଙ୍କ ବିନା ବଞ୍ଚିବା ମୋ'ପକ୍ଷରେ ଆଦୌ ସମ୍ଭବ ନୁହେଁ ଏବଂ ମୁଁ ବର୍ତ୍ତମାନ ଶଙ୍କୁଣୀ ନାୟରଙ୍କ ସହିତ ବନ୍ଧନ ଛିଣ୍ଡାଇ ତାଙ୍କର ସହିତ ହିଁ ବିବାହ କରିବି',—କୃଷ୍ଣଲକ୍ଷ୍ମୀ ପ୍ରକାଶ୍ୟ ଭାବରେ ଏହିପରି ଏକ ଘୋଷଣା କରିଦେଲେ । ତାଙ୍କ ଭିତରକୁ ଏତେ ସାହସ କୁଆଡ଼ୁ ଆସିଲା, ସେକଥା କେବଳ ଭଗବାନ ହିଁ ଜାଣିଥିବେ ।

# ବାଇଶି

ସମୁଦ୍ର ପରି ପ୍ରସାରିତ ହୋଇ ରହିଥିବା ସେହି ବିଶାଳ ମଇଦାନଟିରେ ଅନେକ ଦୂର ପର୍ଯ୍ୟନ୍ତ ଦେଖାଯାଉଥିବା ରକ୍ତବର୍ଣ୍ଣ ଜ୍ୱାଳାଗୁଡ଼ିକର ଅଗ୍ନିମୟ ଜିହ୍ୱାଗୁଡ଼ିକୁ ଦର୍ଶନ କରୁ କରୁ ଅନନ୍ତନ୍ ନାୟର୍ ସେଇଠି ବସି ରହିଲେ । ସହର ଉପରେ ଚଢ଼ାଉ କରି ଏଠାକୁ ଆସିଥିବା ନରିକୁକ୍‌ରଓ୍ୱର ଲୋକମାନେ (ବିଲୁଆ ଶିକାର କରୁଥିବା ଗୋଟିଏ ଯାଯାବର ଜାତିର ଲୋକମାନେ) ନାନା କୋଳାହଳ କରି ସେମାନଙ୍କର ବେଳେଇ କରିବା ଆରମ୍ଭ କରି ଦେଇଥିଲେ । ସେହି କୋଳାହଳଟି ସହିତ କେତୋଟି ଅନ୍ୟାନ୍ୟ ପ୍ରତିଧ୍ୱନି ମଧ୍ୟ ହେଲବାରେ ଲଗିଥିଲା ...

ହଠାତ୍ ତିନୋଟି ପୋଲିସ୍ ଭ୍ୟାନ୍ ଗୋଟିଏ ପରେ ଗୋଟିଏ ଆସି ଠିଆ ହୋଇଗଲେ । ସିପାହୀମାନେ ହାତରେ ଲାଠି ଧରି ଅଟକ ଠିଆ ହୋଇଥିବା ଭ୍ୟାନ୍ ଗୁଡ଼ିକରୁ ତଳକୁ ଧଡ଼ ଧଡ଼ ଡେଇଁ ପଡ଼ିଲେ ଏବଂ ମଇଦାନର ଚାରିଆଡ଼କୁ ଦଉଡ଼ିଗଲେ । ଅବଶିଷ୍ଟ ତିନୋଟି ଦିଗରୁ ମଧ୍ୟ ପୋଲିସ୍ ସିପାହୀମାନେ ମଇଦାନର ମଧ୍ୟସ୍ଥଳଟି ଆଡ଼କୁ ଦଉଡ଼ି ଆସୁଥିବାର ଦେଖାଗଲା । ଅଳ୍ପ କିଛି ସମୟ ପରେ ଧିକ୍କାର...ହାୟ...ହାୟ ପୋଲିସ୍‌କୁ ଉଦ୍ଦେଶ୍ୟ କରି ଗାଳି...

ଇତିମଧ୍ୟରେ ସେହିଠାରେ ଠିଆ ହୋଇ ହୋ' ହୋ' ହେଉଥିବା ଭିଡ଼ଟି ମଧ୍ୟରୁ ଏହି ଆକସ୍ମିକ ଶିକାର ବଳରେ ଧରା ହୋଇଥିବା ଚାରି ପାଞ୍ଚଜଣ ପୁରୁଷ ଏବଂ ତିନି ଚାରିଜଣ ସ୍ତ୍ରୀଲୋକଙ୍କୁ ଠେଲି ଠେଲି ଆଣି ପୋଲିସ୍‌ବାଲାଙ୍କ ଭ୍ୟାନ୍ ଉପରେ ଚଢ଼ାଇ ଦିଆଗଲା...

'ହୁଁ !...ଇଏ ବି ଗୋଟାପ କାମ ।''— ଅନନ୍ତନ୍ ନାୟର୍ ମନେମନେ କହିଲେ

ଇଏ ତ ଏଠାରେ ପ୍ରତ୍ୟହ ଘଟୁଥିବା ଏକ ଘଟଣାରେ ପରିଣତ ହୋଇ-ସାରିଲାଣି । ସମ୍ଭବତଃ ଏଇଟି ହେଉଛି ଏହି ସ୍ଥାନଟିର ମହିମା । ଅନନ୍ତନ୍ ନାୟର୍‌ଙ୍କର ସେଣ୍ଟ୍ରାଲ ରେଲ୍ଷ୍ଟେସନ କଥା ମନେ ପଡ଼ିଗଲା । ସିଏକ ଦୁଇ ତିନି ବର୍ଷ ପୂର୍ବ ପର୍ଯ୍ୟନ୍ତ ସହରର ଉଚ୍ଚ ପୋଲିସ୍-ହାକିମ ଏବଂ ନଗର-ଶାସନ ଲାଗି ଏକ କଠିନ ସମସ୍ୟାରେ ହିଁ ପରିଣତ ହୋଇଯାଇଥିଲା ଏବଂ ଠିକ୍ ଏହି ସ୍ଥାନରେ ଡେରା ପକାଇ ସିଏ ରହୁଥିଲା । ସହରର ନାଗରିକମାନେ ସାମ୍ନାରେ ଥିବା ସିନେମା ଘରଟିର ନାମକୁ ସ୍ତ୍ରୀଲୋକଟିର ନାମ ସହିତ ବିଶେଷଣ କରି ଯୋଡ଼ି ଦେଇ ତାହାକୁ ଗୌରବାନ୍ୱିତ କରି ଦେଇଥିଲେ ।

ସେହି ରହସ୍ୟଟି ସହରରେ ଆଦୌ କାହାରିକୁ ଅଜଣା ନଥିଲା । ଏହି ସହରରେ ଏପରି କିଏ ଥିବ ସିଏକ ସେହି ସ୍ତ୍ରୀଲୋକକୁ ଜାଣି ନଥିବ ? ଅନନ୍ତନ୍ ନାୟର୍ ଶୁଣିବାକୁ

ପାଇଥିଲେ ସେ ଦେଶର କେତେକେତେ ଆଉ କେତେକେତେ ପ୍ରକାରର ସୁନ୍ଦର ବସ୍ତୁ ଖରିଦ୍ କରିବାଲାଗି ନଗରର ସମ୍ଭ୍ରାନ୍ତମାନଙ୍କଠାରୁ ଆରମ୍ଭ କରି ନିମ୍ନ ସ୍ତରର ଲୋକମାନଙ୍କ ପର୍ଯ୍ୟନ୍ତ ନିସ୍ପୃହିତ ଗ୍ରାହକ ହୋଇ ଏଠାରେ ଆସି ଜୁଟି ଯାଉଥିଲେ । ପୁରୁଣା କାଳର ଦୁର୍ଗମାନଙ୍କ ପରି ଏହି ସ୍ଥାନଟିର ଡ଼େଙ୍ଗିଟି ଆଗରେ ଗୋଟିଏ ଖାଇ ବି ଥିଲା—କୋଉଠାରୁ ନାଳର ଏକ ଅଂଶ ରୂପେ ଏଇଟି ବି ରହିଥିଲା । ଏକ ଘନ ନଡ଼ଆତୋଟା ସେହି ଡ଼େଙ୍ଗି-ଗୁଡ଼ିକୁ ବାକି ଧନୋଟିଯାକ ବଗରୁ ଭଲକରି ଘେରି ରହିଥିଲା । କେତେଦିନ ତଳେ ଗୋଟାଏ ଚିତାବାଘ କୌଣସି ପ୍ରକାରେ ଏଠାକୁ ଆସି ଲୁଚି ରହିଥିଲା, ଯେତେ ଚେଷ୍ଟା କଲେ ମଧ୍ୟ ତାହାକୁ ଆଉ ଧରି ହେଲା ନାହିଁ । ଶେଷକୁ ଜଣେ ଶିକାରୀ ଅଣାଗଲା ଓ ସିଏ ଯାଇ ଚିତାବାଘଟିକୁ ମାରି ପାରିଲା । ସେହି କାରଣରୁ ତୋଟାଟିର ନାମ 'ଚିତାବାଘ ବାଲା ତୋଟା' ହୋଇ ରହିଲା । ସେହି ଚିତ ବାଘ ବାଲା ତୋଟାଟି ଏହି ଡ଼େଙ୍ଗିଘର-ଗୁଡ଼ିକୁ ଚମତ୍କାର ସୁରକ୍ଷା ଦେଇ ରଖିଥିଲା । ଆଉ ସେହି ସ୍ଥାନଟିର ସୁରକ୍ଷା ବିଷୟରେ ବି କ'ଣ କହିବା ! ତା' ସହିତ ସହରର ବଡ଼ ବଡ଼ ଅଫିସର୍ ଓ ପ୍ରମୁଖ ନାଗରିକମାନଙ୍କର ଅନୁଗ୍ରହ ଏବଂ ଆଶୀର୍ବାଦ ବି ତ ରହିଥିଲା ।

ସେଇଠୁ କ'ଣ ହେଲା···?

କେଜାଣି କପରି ପୋଲିସ୍ ଇନ୍‌ସ୍‌ପେକ୍ଟରର କେତେଦିନ ରାଗରେ ଓ ପୁଣି କେତେଥର ଦିନବେଳେ ତାକୁ ସରଜମିନ୍ ଧରି ବି ନେଇଥିଲେ, ମାତ୍ର ଶେଷକୁ କିଛି କରି ପାରିଲେ ନାହିଁ । ଯେତେ ବେଶୀ ଟଙ୍କା ଜୋରିମନା ଦେବାକୁ ପଡ଼ିଲା ପଛକେ, ସେଇଟିକୁ ଦେଇଦେବାଲାଗି ସିଏ ସର୍ବଦା ହିଁ ପ୍ରସ୍ତୁତ ଥିଲା । ତା'ର କୌଣସି ପ୍ରକାର ଅର୍ଥାଭାବ ନଥିଲା । ତା' ସହିତ ଗର୍ବ ଓ ଦମ୍ଭ ବି କିଛି କମ୍ ନଥିଲା; ଜଣେ ଦୁଇଜଣ ପୋଲିସ ଅଫିସର୍‌ଙ୍କୁ 'ଆରେ କୁକୁର' ଏବଂ 'ଯାଅରେ କମିନାମାନେ' କହି ସିଏ ନେଣ୍ଟାଏ କରି ଛେପ ବି କେତେଥର ତଳକୁ ପକାଇ ଦେଇଥିଲା ।

ଏହିପରି ଭାବରେ ନଗରଟିର ହୃଦୟସ୍ଥ ଭାଗଟିରେ ଭାରି ସମାରୋହ ସହିତ ଚାଲିଥିବା ନରମାଂସର ଏହି ଦୋକାନଟିକୁ ସେଠାରୁ ଉତ୍ପାଟିତ କରି ପାରିବା କାର୍ଯ୍ୟଟି ନଗରପିତାମାନଙ୍କ ଲାଗି ଶେଷକୁ ଏକ ବଡ଼ ଶିରଃପୀଡ଼ାରେ ପରିଣତ ହୋଇଗଲା । ପରିଶେଷରେ ବଦଳି ହୋଇ ନୂଆ ପୋଲିସ ଇନ୍‌ସ୍‌ପେକ୍ଟର୍ ଗଙ୍ଗାଧର ପିଲାଇ ଏହି ସହରକୁ ଆସିଲେ । ଭାରି ସାହସୀ ମଣିଷ । ନଗରର ପ୍ରମୁଖ ବ୍ୟକ୍ତିମାନଙ୍କର ସତର୍କବାଣୀ ଏବଂ ଧମକପ୍ରଦ କୌଣସି ଭ୍ରୂକ୍ଷେପ ନକରି ସିଏ 'ସମତ୍ୱ ପୁଷ୍ଟି' ଓ 'ସତ୍ୟକୀର୍ତ୍ତି' ପ୍ରଭୃତି ସମ୍ବାଦପତ୍ର ଗୁଡ଼ିକର ସହଯୋଗରେ ଅନେକ ଲାଗି ଲାଗି ସେହି ଲୋକମାନଙ୍କୁ ସେଠାରୁ କୌଣସିମତେ ହଟାଇଦେଇ ପାରିଲେ । ଉପଯୁକ୍ତ ନଗରଶାସନ ସେହିସବୁ ଡ଼େଙ୍ଗିଘର ଏବଂ ସେହି ଜଙ୍ଗଲକୁ ଅନେକ ଧୈର୍ଯ୍ୟ ସହିତ ସେଠାରୁ ସଫା କରିଦେଲା । ତେବେସୁଦ୍ଧା,

ସେହି ଡ୍ରେଟ୍ରପରମ୍ପରାକର ଭିତରୁ, ସମାଧି ମଧ୍ୟରୁ ଗୋଟିକ ଜାଗାରେ ଶହେଟି ହୋଇ ଉଠି ଆସିଥିବା ଯକ୍ଷିଣୀମାନଙ୍କୁ ପ୍ରତଦିନ ଗିରଫ କରି ଓ ବାହାର କରି ଦେଇ ମଧ୍ୟ ସେଠାରେ ଅବାରିତ ଭାବରେ ସେହି ଧନ୍ଦାଟି ଲଗି ରହିଛି—ଏକଥା ଚିନ୍ତା କରି ଅନନ୍ତନ୍ ନାୟର ବିସ୍ମିତ ହୋଇଯାଉଥିଲେ ।

ବେଶ୍ କେତେସମୟ ଲଗି ସେଠାରେ ଏକାଠି ଆସି ଜୁଟିଥିବା ଲୋକମାନଙ୍କର ଖୁବ ଗଣ୍ଡଗୋଳ ଲଗି ରହିଲା । ସେହି ସ୍ତ୍ରୀ ଓ ପୁରୁଷମାନଙ୍କୁ ପୋଲିସ୍‌ଭ୍ୟାନ୍‌ରେ ଭର୍ତ୍ତି କରିନେଇ ଗୃଲଯିବାର କିଛିସମୟ ପରେ ପୁଣି ଆଗପରି ଶାନ୍ତ ବାତାବରଣ କରିବାକୁ ଲଗିଲା । କାଲିକୁ ପୁଣି ଏହି କଥା ହିଁ ଘଟିବ । ଇଏ ତ ଏଠାରେ ଏକ ନିତିଦିନର ଘଟଣା ହୋଇସାରିଲଣି ।

ଅନନ୍ତନ୍ ନାୟର୍‌ଙ୍କର ମନ ପୁନର୍ବାର ଗୋବର୍ଦ୍ଧନ୍ ନାୟର୍‌ଙ୍କ ବାପା କୋଚୁ-କୃଷ୍ଣନ୍ କର୍ତ୍ତାଙ୍କର ଘରପାଖରେ ମୁଣ୍ଡଲା ବୁଲିବାକୁ ଲଗିଲା ।

କର୍ତ୍ତାଙ୍କର ଆଗରୁ ଜଣେ ପତ୍ନୀ ଥିଲେ, ପାଞ୍ଚଛଅଟି ସନ୍ତାନ ମଧ୍ୟ ଥିଲେ, ଖାଲି ହାଡ଼ଭଙ୍ଗା ଭଲ କରିବା ବ୍ୟତୀତ ମନ୍ତ୍ରପଢ଼ି ବିଭୂତି ଦେବା, ତ୍ରେଉଁରିଆ ଲେଖିଦେବା, ବଶୀକରଣର ଔଷଧ ଦେବା ପ୍ରଭୃତି ନାନା କାର୍ଯ୍ୟରେ ସିଏ ସିଦ୍ଧହସ୍ତ ଥିଲେ । ତାଙ୍କଘର ମୁଭ୍‌ଟ୍ଟୁନ୍ ମୁକାଲଠାରେ ଥିଲା ।

ମାଆ, ବାପା, ନଗରରେ ଥିବା ନାୟର-ସଂଗଠନର ଶାଖାଟିର ପ୍ରମୁଖ ସଭ୍ୟମାନେ ଓ ଆହୁରି କେତେ ଲୋକ କୁଞ୍ଜୁଲକ୍ଷ୍ମୀଙ୍କୁ ସାମ, ଦାନ ଓ ଦଣ୍ଡର ସବୁ ଉପାୟ ପ୍ରୟୋଗ କରି କେତେ କହିଲେ ବୁଝାଇଲେ । ତଥାପି ସିଏ ନିଜର ଜିଦ୍‌ଟିକୁ ଛାଡ଼ିଲେ-ନାହିଁ । ଶଙ୍କୁଣି ନାୟର୍‌ଙ୍କର ଅବସ୍ଥା ଦେଖି ସମସ୍ତଙ୍କର ହୃଦୟ ବ୍ୟଥିତ ହୋଇ ଉଠିଲା ।

ବ୍ୟବସାୟରେ ତାଙ୍କର ଆଗରୁ ଯେଉଁ ମନ ଥିଲା, ସିଏ ସବୁକିଛି ଖତମ ହୋଇଗଲା । ଆପଣ ସ୍ତ୍ରୀଙ୍କ ପ୍ରତି ତାଙ୍କର ଯେଉଁ ପ୍ରେମ ଥିଲା, ତାହା ଆଦୌ ଏପରି ସେପରି ମାମୁଲି ପ୍ରେମ ନଥିଲା ··· ।

"ମୋ" ହୃଦୟକୁ ଖଣ୍ଡ ଖଣ୍ଡ କରିଦେଇ··· ମୋତେ ଛାଡ଼ିକରି ତୁମେ ମୋଟେ ଯାଅ ନାହିଁ···ତୁମ ବିନା ମୋ ପ୍ରାଣ ଆଉ କଦାପି ରହିବ ନାହିଁ···" ଏହିପରି ଅନେକ କିଛି କହି ସିଏ କୁଞ୍ଜୁଲକ୍ଷ୍ମୀଙ୍କର ଗୋଡ଼ କୁ ଧରି ପକାଇଥିଲେ··· ।

କୃଷ୍ଣ ଲକ୍ଷ୍ମୀଙ୍କର ମନ ତଥାପି ତରଳିଲା ନାହିଁ । "ଆପଣଙ୍କ ପ୍ରତି ମୋର ତ କୌଣସି ପ୍ରକାର ଘୃଣା ନାହିଁ...କିନ୍ତୁ କର୍ତ୍ତାଙ୍କ ବିନା ମୁଁ ଆଉ ଜୀବନରେ ରହି ପାରିବି ନାହିଁ ।" — କହି ସିଏ ସମ୍ପୂର୍ଣ୍ଣ ଅବିଚଳିତ ରହିଲେ ।

ତାପରେ... । ନାୟର ସଂଗଠନର ବୈଠକ ବସିଲା । ନାୟର ସର୍ଭିସ୍ ଆକ୍ଟ୍ ଅନୁଯାୟୀ ଯଦି କୌଣସି ସ୍ତ୍ରୀ ଆପଣାର ପତିକୁ ଆଉ ପସନ୍ଦ ନ କରିବ, ତେବେ ସିଏ ଛାଡ଼ପତ୍ର ଦେଇ ପୁନର୍ବାର ଦ୍ୱିତୀୟ ବିବାହ କରିପାରିବ ; ତେଣୁ ଅନେକ ବାଦବିବାଦ ପରେ କୃଷ୍ଣଲକ୍ଷ୍ମୀ ଓ ଶଙ୍କୁଣୀ ନାୟରଙ୍କ ମଧ୍ୟରେ ରହିଥିବା ବନ୍ଧନଟିକୁ ଭାଙ୍ଗିବା ସକାଶେ ସଂଗଠନ ସ୍ୱୀକୃତି ବି ଦେଲେ ।

ନାୟର୍ ସର୍ଭିସ୍ ସୋସାଇଟିର କାର୍ଯ୍ୟାଳୟକୁ ପତି-ପତ୍ନୀରୂପେ ଯାଇ ଜଣେ ଜଣେ ଅନ୍ୟ ପୁରୁଷ ଓ ଅନ୍ୟ ସ୍ତ୍ରୀ ରୂପେ ସେଠାରୁ ଫେରିଥିବା କୃଷ୍ଣ ଲକ୍ଷ୍ମୀ ଓ ଶଙ୍କୁଣୀ ନାୟର୍ଙ୍କ ବିଷୟରେ ମା' ଯାହା ଅନେକ ସମୟରେ କହୁଥିଲେ ଅନନ୍ତନ୍ ନାୟର୍ଙ୍କର ସେହି କଥାଟି ମନେ ପଡ଼ିଗଲା ।

"ଯେତେବେଳେ ସେହି ଝିଅ 'ମୁଁ ଯାଉଛି' ବୋଲି କହି ଆପଣାର ବାକ୍ସଟିକୁ ଉଠାଇ ସିବାକୁ ବାହାରିଲା, ସେତେବେଳେ ଶଙ୍କୁଣୀ ନାୟର୍ ଧଡ଼୍ କରି ଝସି ତା' ଗୋଡ଼ତଳେ ପଡ଼ିଗଲେ ଓ କର୍ଭି କର୍ଭି ହୋଇ କାନ୍ଦିବାକୁ ଲାଗିଲେ । ସେହି ଅଲକ୍ଷଣୀ ଝିଅର ହୃଦୟଟା ବି ଜଣଲା ଏକ ପଥରରେ ତିଆରି ହୋଇଥିଲା... । କିଛି ସମୟ ପର୍ଯ୍ୟନ୍ତ ସିଏ ତାଙ୍କୁ ସେହିଭଳି ବକବକ କରି ଅନାଇ ଠିଆହୋଇ ରହିଲା, ତା'ପରେ ଗୋଟିଏ ଗୋଟିଏ ଗୋଡ଼ ପକାଇ ଘରୁ ବାହାରି ପଡ଼ିଲା ଓ ପ୍ରସ୍ତୁତ ହୋଇ ରହିଥିବା ଗାଡ଼ିଟିରେ ବସି ମୁଡ୍‌ମୁନ୍ ମୁକଲ୍‌ରେ ଥିବା କୋଚୁକୃଷ୍ଣନ୍ କର୍ତ୍ତାଙ୍କ ଘରେ ଆସି ପହଞ୍ଚିଗଲା । ତା'ପରଦିନ ଠାରୁ ହିଁ ତାଙ୍କ ସହିତ ସମ୍ବନ୍ଧକୁ କାର୍ଯ୍ୟକାରୀ କରିନେଲା । ତା'ପରେ ଶଙ୍କୁଣୀ ନାୟର୍ ଆଉ ଉଠିଲେ ନାହିଁ । ଅନ୍ନଜଳ କିଛି ନ ଛୁଇଁ ସେହିପରି ପଡ଼ି ରହିଲେ । ହୃଦ୍‌ଯନ୍ତ୍ରର କ୍ରିୟା ବନ୍ଦ ହୋଇ ଗୋଟିଏ ମାସ ଭିତରେ ସିଏ ଗ୍ଲାଲିଗଲେ... । କୃଷ୍ଣଲକ୍ଷ୍ମୀ ମଧ୍ୟ କର୍ତ୍ତା ଓ ତାଙ୍କର ବଡ଼ ସ୍ତ୍ରୀ ସହିତ ମୋଟେ ଦଶୋଟି ମାସ ରହି ପାରିଲେ । ଦଶମ ମାସରେ ପ୍ରସବବେଦନାରେ ମୂର୍ଚ୍ଛିତ ହୋଇଯାଇ ପଡ଼ିଲେ, ତାପରେ ଆଉ ଚେତା ଫେରିଲା ନାହିଁ । ତାଙ୍କଠାରୁ ଜନ୍ମ ହୋଇଥିବା ପିଲା ଏଇ ଗୋବର୍ଦ୍ଧନ ନାୟର୍ ସେତେବେଳେ ଭାରି ମୋଟା ଓ ବଡ଼ୁଆ ହୋଇଥିଲା । ଶୁଣାଯାଏ ଯେ ପେଟ ଚିରି ଛୁଆଟିକୁ ବାହାର କରିବାକୁ ପଡ଼ିଲା । ନିଜେ ଜନ୍ମ କରିଥିବା ପିଲାଟିକୁ ସିଏ ଆଉ ଆଖି ଖୋଲି ଦେଖିପାରିଲେ ନାହିଁ । ବାବୁ ଅନନ୍ତ, ଏଇ ହେଉଛି ସଂସାରର ସ୍ଥିତି । ସମସ୍ତଙ୍କର ଆପଣା ଆପଣାର ଗୋଟିଏ ପଦ୍ଧତି ରହିଥାଏ । ତାହାର ଲଂଘନ କଲେ ଦଶା ଠିକ୍ ଏହିଭଳି ହୁଏ । ଯାହା ହୋଇଥାଉ

ପଛକେ, ଏକାଠି ମିଶାଇ କଷି ବାନ୍ଧ ଦେଲେ ପଦାର୍ଥଟି ଘଷି ହୋଇମାଏ··· ।" ଏହିପରି ଗୋଟିଏ ନୀତିଶିକ୍ଷା ସହିତ ମାଆ କୁଳୁଲକ୍ଷ୍ମୀଙ୍କର କାହାଣୀଟିକୁ ଇତି କରିଥିଲେ ।

କିନ୍ତୁ କ'ଣ ସେଇ ଗୋବର୍ଦ୍ଧନ୍ ନାୟର୍, ଆଜି ସମାଜରେ ତାହାର ଯେଉଁ ଇଜ୍ଜତ ଆଉ ଖାତିର ରହିଛି, ଉଚ୍ଚ ସ୍ଥାନ ରହିଛି, କୁଳଗୌରବ ରହିଛି, ସିଏ ବର୍ତ୍ତମାନ ସେହି ସବୁର ସ୍ୱପ୍ନ ବି ଦେଖିବାକୁ କ'ଣ କେବେ ସମର୍ଥ ହେବେ ? ସବୁକିଛିକୁ ଭୂଲି ପାସୋରି ସିଏ ବର୍ତ୍ତମାନ ଗଙ୍ଗାସ୍ନାନ କରିନେଇ ସାରିଲେଣି । ମାତ୍ର ବର୍ତ୍ତମାନ ମଧ୍ୟ ତାଙ୍କର କୋଉ କୁଳଗୌରବ ରହିଛି, ପରିବାରର ମହିମା ବି ରହିଛି ।

ଗୋବର୍ଦ୍ଧନ୍ ନାୟର୍ ଯେପରି ହୋଇଥାନ୍ତୁ ପଛକେ, ମାତ୍ର ତାଙ୍କର ମାଆ କୁଳଲକ୍ଷ୍ମୀ ମାଈଁଙ୍କ ବିରୁଦ୍ଧରେ କିଛି କହିବାଲାଗି ବା ତାଙ୍କର କି ଅଧିକାର ରହିଛି···। ତାଙ୍କ ଭିତରେ ଆଉ ସେ ନିଜେ ବିବାହ କରିଥିବା କାତ୍ୟାୟିନୀ ମଧ୍ୟରେ ଯେଉଁ ସାଦୃଶ୍ୟ ରହିଥିଲା ନା ।

ଅନନ୍ତନ୍ ନାୟର୍ଙ୍କ ଦେହରୁ ଝାଳ ଗମ୍ ଗମ୍ ବୋହିବାକୁ ଆରମ୍ଭ କଲା । କାତ୍ୟାୟିନୀଙ୍କ ତୁଳନାରେ କୁଳୁଲକ୍ଷ୍ମୀ ତ ଅନେକ ଭଲ ଥିଲେ···।

କିପରି ?

କୁଳୁଲକ୍ଷ୍ମୀ ତ ଲୋକମାନଙ୍କୁ ଏକତ୍ର ଡାକି ସମସ୍ତଙ୍କର ସମ୍ମତି ନେଇ ପୁରାତନ ବନ୍ଧନଟିକୁ ଛିଡ଼ାଇ ପୁଣି ନୂତନ ସମ୍ବନ୍ଧ ତିଆରି କରି ନେଇଥିଲେ... । ଆଉ ସେଇ କାତ୍ୟାୟିନୀ ତ···?

ଅନନ୍ତନ୍ ନାୟର୍ ଅନୁଭବ କଲେ ଯେ ତାଙ୍କର ମନଭିତରେ ବିବିଧ ପ୍ରକାର ନାନା ଭାବର ଏକ ମୂକ ସଂଘର୍ଷ ହିଁ ଚାଲିଛି । ଯଦି ·ସେହି ସଂଘର୍ଷଟିକୁ ଛେହିପରି ଭାବରେ ଚାଲିବାକୁ ଦିଆଯିବ, ତେବେ ଯେତେ କମ୍ ସମୟଲାଗି ହେଲେ ମଧ୍ୟ ବର୍ତ୍ତମାନ ଆପଣାର ସବୁ ପାକ ଚକ୍ରାକୁ ଭୂଲି ତାଙ୍କର ହୃଦୟ ଯେପରି ଶାନ୍ତ ହୋଇ ରହିଥିଲା, ତାହା ପୁଣି ଅସ୍ତବ୍ୟସ୍ତ ହୋଇ ପଡ଼ିବ ଏବଂ ଯନ୍ତ୍ରଣାର ଗୋଟିଏ କୁଣ୍ଡରେ ପରିଣତ ହୋଇଯିବା— ଏହିପରି ଏକ ଭାବନା ତାଙ୍କୁ ବ୍ୟାକୁଳ କରି ପକାଇବାକୁ ଆରମ୍ଭ କଲା । ଗୋଡ଼ଗୁଡ଼ାକ ବି ନିର୍ଜିବ ହୋଇ ଆସୁଥିଲା ପରି ମନେ ହେଉଥିଲେ, ତେଣୁ ସେ ଧୀରେ ଧୀରେ ଉଠିଲେ, ଟିକିଏ ଭିଡ଼ମୋଡ଼ି ହେଲେ ଏବଂ ମଇଦାନର ମଧ୍ୟଭାଗ ଆଡ଼କୁ ଧୀରେ ଧୀରେ ଚାଲିବାକୁ ଆରମ୍ଭ କଲେ ।

ସେଠାରେ ପୂର୍ଣ୍ଣ ନୀରବତା ରହିଥିଲା । ଚୁଲ୍ଲିସବୁ ଲିଭି ଆସିଥିଲେ । ସତେ ଅବା ମୃତ ଭୂମିର ଶବଗୁଡ଼ାକ ପରି ବଡ଼ ଅସ୍ତବ୍ୟସ୍ତ ଭାବରେ ନିଦ୍ରାମଗ୍ନ ହୋଇ ପଡ଼ିଥିବା ଲୋକମାନଙ୍କର ଆଳୁଅ ଗୁଡ଼ାକର ଭୟାନକ ଦୃଶ୍ୟ···

ଆକାଶରେ ଜହ୍ନ ଉଇଁ ଆସିଲା । ସେହି ଧଳା ଧଳା ବାଲି, ଦୂରରୁ ସିରସିର କରି ହଲୁଥିବା ନଡ଼ିଆଗଛର ପତ୍ରର । ଏହି ସମଗ୍ର ଦୃଶ୍ୟଟି ତାଙ୍କର ମନକୁ କିଞ୍ଚିତ ଆଶ୍ୱସନା ଦେଲାପରି ମନେହେଲା ।

କୁଆଡ଼ୁ ଗୋଟାଏ ଚଢ଼େଇର ଡେଣା ଫଡ଼ ଫଡ଼ ଶବ୍ଦ ଶୁଭିଲା । ରଜନୀଗନ୍ଧା ଫୁଲର ସୁଗନ୍ଧକୁ ଚାରିଆଡ଼େ ବରଷି ଦେଇ ଯାଉଥିବା ଶୀତଳ ପବନ ।

ଯନ୍ତ୍ରର ଘଣ୍ଟାରେ ଏଗାରଟା ବାଜିଲା···ହିଁ···ମାଧବୀ ଆଉ କାମାକ୍ଷୀ ତାଙ୍କୁ କହି କହି ଥକିଗଲେଣି ।

ଗତ ପନ୍ଦରବର୍ଷ ହେଲା ଏହି ଜୀବନ କ୍ରମଟି କ୍ରମେ ତାଙ୍କର ଅଭ୍ୟାସରେ ପଡ଼ି ଯାଇଛି ନା... । ରାତିକୁ ଘରକୁ ଯାଇପାରିଲେ ତ ଭଲ, ନଯାଇ ପାରିଲେ ତ ସିଏ ବି ଭଲ... । ସେହି ଘରେ ଗୋଟି ଗୋଟି କରି ପ୍ରତ୍ୟେକଟି ମୁହୂର୍ତ୍ତ ବିଶେଷତଃ ରାତିଗୁଡ଼ାକର ସେହି ଏକାନ୍ତତା ମନଟାକୁ କିପରି ଅକାରଣରେ ମାରିବାରେ ହିଁ ଲାଗିଥାଏ··· । ଆଉ ଏଠି ଘର ବାହାରେ ମଧ୍ୟ କୋଉ ଆରାମ ରହିଛି । ମୁଁ ଆଡ଼କୁ ଯାଆନ୍ତୁ ପଛକେ, ସେଠି ମଧ୍ୟ ପିଣ୍ଡ ଛାଡ଼ୁନାହିଁ, ତାଙ୍କର ଅନୁଧାବନ କରୁଥିବା ସେହି କଷ୍ଟ ସ୍ମୃତିଗୁଡ଼ିକର ପ୍ରେତବିମ୍ବ ସତେ ଅବା ଭୂତପ୍ରେତ ହୋଇ ତାଙ୍କୁ ଉତ୍ପୀଡ଼ିତ କରିବାକୁ ଲାଗି ଯାଉଛନ୍ତି । ଏପରି ପରିସ୍ଥିତିରେ ସିଏ ଆଉ କୋଉ ଜାଗାକୁ ଯିବେ ବା କୋଉ ମୁହୂର୍ତ୍ତଟିକୁ ବଞ୍ଚିବେ, ଅନ୍ତତଃ ତାଙ୍କ ଜୀବନରେ ଏପରି କୌଣସି ପ୍ରଶ୍ନର ହିଁ ଅବକାଶ ନାହିଁ । ପରିସ୍ଥିତି ଆସି ଏପରି ହୋଇ ସାରିଲାଣି । କୌଣସି ପ୍ରକାରେ ଏହି ପିଞ୍ଜରାଟି ମଧ୍ୟରୁ ପ୍ରାଣପକ୍ଷୀ ଉଡ଼ି ଚାଲି ନଯିବା ପର୍ଯ୍ୟନ୍ତ ତାଙ୍କୁ କ'ଣ ଆଉ କେବେହେଲେ ଶାନ୍ତି ମିଳିପାରିବ ?

ମଇଦାନର ଚାରିପାଖକୁ ଏପରି ଠିଆ ହୋଇଥିବା ପାରିଜାତ ଗଛଗୁଡ଼ିକରୁ ମଧୁର ସୁଗନ୍ଧ ଛାପିଆସି ସତେଅବା ତାଙ୍କ ଉପରେ ଯେପରି ହାତ ବୁଲାଇଦେଇ ଯାଉଛି, ହଠାତ୍ ତାଙ୍କର ଏହିପରି ଏକ ମାଦକ ଅନୁଭବ ହେଲା ।

ସିଏ ତ ବିଶ୍ୱାସଘାତକତା ଏବଂ ପ୍ରବଞ୍ଚନାର ଶେଷ ପାହାଚଟିରେ ଆସି ପହଞ୍ଚି ଗଲେଣି, ତେଣୁ ବର୍ତ୍ତମାନ କୌଣସି ମୃଦୁଳ ଭାବନାଲାଗି ତାଙ୍କ ଜୀବନରେ କ'ଣ କୌଣସି ସ୍ଥାନ ବି ରହିଛି ? ଯେତେବେଳେ ଜୀବନରେ ବହୁତ କଠୋରତା ଓ କର୍କଶତା

ଆସି ଭରିଯାଏ, କ'ଣ ସେତେବେଳେ ଯାଇ ଆଧ୍ୟାତ୍ମିକତାର ଦ୍ୱାରଟି ଖୋଲିବାର ବେଳ ଆସି ପହଞ୍ଚେ ?

ଆପଣାର ଗୋଡ଼ତଳେ ମୌନ ଭଙ୍ଗୀରେ ତାଙ୍କୁ କ'ଣ କହି ଯାଉଥିବା ବାଲି-କଣା ଗୁଡ଼ିକର ବିସ୍ତାରଟିକୁ ସେ ନିରୀକ୍ଷଣ କରି ଦେଖିଲେ । ହୁଁ...ଏହି ବାଲିକଣା ଗୁଡ଼ିକର ବିସ୍ତୃତ ହୃଦୟଟି ଉପରେ ପ୍ରକଟ ହୋଇ ପୁଣି କ୍ରମଶଃ ଅସ୍ପଷ୍ଟ ଓ ଅଦୃଶ୍ୟ ହୋଇ ଯାଉଥିବା କେତେ ନା କେତେ ପଦଚିହ୍ନ ନ ରହିଥିବ ?—ତାଙ୍କର ମନ ହଠାତ୍ ପ୍ରଶ୍ନ କରିବାକୁ ଲାଗିଲା ।

ଅଳ୍ପ କେତେଦୂରରେ ଘେରହୋଇ ବସିଥିବା ଗୁରି ପାଞ୍ଚଜଣ ଲୋକଙ୍କ ଉପରେ ଯାଇ ଅନନ୍ତନ୍ ନାୟର୍‌ଙ୍କର ଦୃଷ୍ଟି ପଡ଼ଗଲା । ସିଏ ଧୀରେ ଧୀରେ ସେହମାନଙ୍କ ଆଡ଼କୁ ପଦକ୍ଷେପ ବଢ଼ାଇ ଗ୍ଲଲେ ।

ପାଖକୁ ଆସିଯିବା ପରେ ଜହ୍ନ ଆଲୁଅରେ ସବୁକଥା ଆହୁରି ସ୍ପଷ୍ଟ ହୋଇ ଦେଖାଗଲା । ସେମାନଙ୍କ ଭିତରୁ ଜଣେ ବେଶ୍ ଡେ଼ଙ୍ଗା ହୋଇ ଦଶୁଥିବା ବ୍ୟକ୍ତି ଗୋଟାଏ ବକ୍ତୃତା ପରି କ'ଣ ଶୁଣାଇବାରେ ଲଗିଥିଲା ଏବଂ ଆଉମାନେ ତା'ର କଥାକୁ ଖୁବ୍ ମନୋଯୋଗ ସହକାରେ ଶୁଣୁଥିଲେ । ବକ୍ତୃତା ଦେଉଥିବା ମଣିଷଟି ଅନ୍ୟମାନଙ୍କ ତୁଳନାରେ ବୟସରେ କଛି କମ୍ ବୋଲି ମନେ ହେଉଥିଲା । ସେମାନଙ୍କ ଭିତରୁ ଜଣେ ଗେରୁଆ ଲୁଗା ପିନ୍ଧିଥିଲା ।

ଆଉକଛି ଆଗକୁ ଯାଇ ଅନନ୍ତନ୍ ନାୟର୍ ସେମାନଙ୍କର ପାଖକୁ ଯାଇ ଠିଆ ହୋଇଗଲେ ।

ସତେଅବା ଏକ ସ୍ରୋତଧାରାର ଲୟରେ ଧୀରେଧୀରେ ଆପଣାର ହୃଦୟ ମଧ୍ୟରୁ ଉଠି ବାହାର ଆସୁଥିବା କଣ୍ଠଧ୍ୱନରେ ଖୁବ୍ ଗମ୍ଭୀର ଭାବରେ ଏକ ସ୍ୱାନୁଭୂତମୟ ଢଙ୍ଗରେ ସେହ ଯୁବକଟି କଥା କହ ଯାଉଥାଏ । ସିଏ ତାଙ୍କୁ ସେଠାକୁ ଆସିବାର ଦେଖିକରି ମଧ୍ୟ ସତେଅବା ନଦେଖିଲା ପରି, ଆପଣାର କୌଣସି ଅନ୍ୟମନସ୍କତା ପ୍ରକଟ ନକରି ଅବିରତ କଥା କହୁଯାଉଥିଲା ।

ସେଠି ଦର୍ଶନର ନାନା କଥା ପଡ଼ୁଥିଲା; ତେଣୁ ସେଠାରେ ଆଗରୁ ବସିଥିବା ଆଉ ପାଞ୍ଚଜଣଙ୍କ ସହତ ଷଷ୍ଠ ଶ୍ରୋତା ହୋଇ ଅନନ୍ତନ୍ ନାୟର୍ ମଧ୍ୟ ଚେକା ମାଡ଼ି ଯାଇ ବସିପଡ଼ଲେ । ସେହ ପାଞ୍ଚଜଣ ବ୍ୟକ୍ତି ଉପରୁ ମୁଣ୍ଡ ହଲାଇ ଉର୍ଦ୍ଧ୍ୱ ମାତ୍ର କଣିଆ କରି ତାଙ୍କଆଡ଼କୁ ଟିକଏ ଅନାଇ ଦେଖିଲେ,– ଅନନ୍ତନ୍ ନାୟର୍ ମଧ୍ୟ ସେହ କଥାଟିକୁ ବେଶ୍ ଲକ୍ଷ୍ୟ କରି ପାରିଥିଲେ ।

ବକ୍ତୃତା ଦେଉଥିବା ବ୍ୟକ୍ତିଟିର ମୁହଁ କାନ୍ତିରେ ଝଟକ ଉଠୁଥିଲା, ମୁଖମଣ୍ଡଳ ପ୍ରସନ୍ନ ଦେଖା ଯାଉଥିଲା । ମାତ୍ର ସିଏ ପିନ୍ଧିଥିବା ଟେରିଲିନ୍ କମିଜ ଆଉ ପ୍ୟାଣ୍ଟ୍ ଓ ଅଣ୍ଟାଟିଏ ପରି ଲମ୍ବା ହୋଇ ବଢ଼ିଥିବା ଦାଢି– ଏହ ଚେହେରା ଓ ସିଏ କହ ଯାଉଥିବା କଥାଗୁଡ଼ିକ ମଧ୍ୟରେ ଆକାଶପାତାଳ ପ୍ରଭେଦ ରହଛି,—ଅନନ୍ତନ୍ ନାୟର୍‌ଙ୍କର ମନରେ ଏପରି ଏକ ଅନୁଭବ ହେଲା ।

ସେହି ଚେହେରାଟି ଅନନ୍ତନ୍ ନାୟରଙ୍କୁ ଖୁବ ପରିଚିତ ବୋଲି ମନେ ହେଉଥାଏ । ମନେହେଲା, ସିଏ ଏହି ଲୋକଟିକୁ ଆଗରୁ ନିଶ୍ଚୟ କୋଉଠି ଦେଖିଛନ୍ତି, ମାତ୍ର ଭୁଲି ଯାଇଛନ୍ତି । ସେହି କାରଣରୁ, ସେହି ଲୋକଟି ପ୍ରକୃତରେ କିଏ, ସେକଥାଟିକୁ ମଧ୍ୟ ସିଏ ମନେମନେ ଚିନ୍ତା କରିବାରେ ଲାଗିଥିଲେ । ଖୁବ ପରିଚିତ ବୋଲି ମନେ ହେଉଥାଏ ।

ଲୋକଟି କହିବା ଶେଷ କଲା । ମନେହେଲା, ସତେଅବା କିଛି ସମୟ ଧରି ଗ୍ଭଲିଥିବା କୌଣସି ଝଡ଼ ବନ୍ଦ ହୋଇଗଲା ଓ ପୁଣି ସବୁ ନିଃଶବ୍ଦ ହୋଇଗଲା । ତଥାପି ତା' କଣ୍ଠଧ୍ୱନିର ଗୁଞ୍ଜନଟି ବର୍ତ୍ତମାନ ମଧ୍ୟ ସମସ୍ତଙ୍କର କାନଭିତରେ ଅବାରିତ ରହିଥିଲା,— ଅନନ୍ତନ୍ ନାୟର୍ ସେହିପରି ଅନୁଭବ କରୁଥାନ୍ତି ।

ସିଏ କହିଥିବା କଥା ଉପରେ ସମସ୍ତେ ନିଶ୍ଚୟ ଗମ୍ଭୀର ଭାବରେ ବିଗ୍ଭର କରୁଛନ୍ତି । ଏପରି ଅନୁମାନ କରି ସେହି ଯୁବକଟି ସେଠାରେ ବସିଥିବା ସମସ୍ତଙ୍କ ଆଡ଼କୁ ଅନାଇ ଅନାଇ କିଛିସମୟ ପର୍ଯ୍ୟନ୍ତ ମୌନ ହୋଇ ବସିରହିଲା ଏବଂ ତା'ପରେ ଅନନ୍ତନ୍ ନାୟର୍ଙ୍କୁ ଦେଖିପାରି ଟିକିଏ ହସି କହିବାକୁ ଆରମ୍ଭ କଲା, "କିଏ ମାମୁଁଟି ?··· ବହୁତ ଦିନ ହେଲା ଦେଖି ନଥିଲି···। ଭଲ ଅଛନ୍ତି ତ ?"

ଅନନ୍ତନ୍ ନାୟର୍ ଚମକି ପଡ଼ିଲେ ।···ଇଏ···ଇଏ ହେଉଛି···

"ଆପଣ କ'ଣ ମୋତେ ଚିହ୍ନି ପାରୁନାହାନ୍ତି ? ମୁଁ ପଦ୍ମ ଭାସ୍କରନ୍ ନାୟର୍ !"

ବିସ୍ମୟରେ ତାଙ୍କ ମୁହଁର ଶିରାଗୁଡ଼ିକ କମ୍ପିଉଠିଲେ ।

"ତୋତେ", ମୁହଁ ଭିତରୁ ଏହି ଶବ୍ଦଟି ଯେମିତି ବାହାରି ପଡ଼ିଛି, ତତ୍‌କ୍ଷଣାତ୍ ସତେଅବା ଗୋଟାଏ ବଡ଼ ଭୁଲ ହୋଇଗଲା ପରି ତାହାକୁ ଲେଉଟାଇ ନେଇ ସିଏ କହିଲେ, "ମୁଁ ଆପଣଙ୍କୁ ଗ୍ଭରି ପାଞ୍ଚବର୍ଷ ତଳେ ଦେଖିଥିଲି; ତେଣୁ ହଠାତ୍ ଚିହ୍ନି ପାରିଲି ନାହିଁ," କମ୍ପି କମ୍ପି ଉଚ୍ଚାରିତ ହେଉଥିବା ତାଙ୍କର ଏହି କଥାଗୁଡ଼ିକୁ ଅବଶିଷ୍ଟ ପାଞ୍ଚଜଣ ଯାକ ବ୍ୟକ୍ତି ଆଶ୍ଚର୍ଯ୍ୟ ହୋଇ ଶୁଣୁଥିଲେ ।

ମାମୁଁ ! ଆପଣ ଆଉ ମୋତେ 'ଆପଣ' ଓ 'ଆଜ୍ଞା' କହି ଡାକନ୍ତୁ ନାହିଁ··· ଆଗପରି 'ଆରେ ! ଭାସି' କହି ଡାକନ୍ତୁ । ତାହାହିଁ ଯଥେଷ୍ଟ ହେବ···ସେଇଟି ହିଁ ମୋତେ ଭଲ ଲାଗିବ ।"

ଇତ୍ୟବସରେ ସିଏ କହିଥିବା କଥାଗୁଡ଼ିକର ଗମ୍ଭୀରତାକୁ ନିଜେ ଅବଲୋକନ କରିନେବା ପରେ ସିଏ କିଏ ବୋଲି ଯେତେବେଳେ ଜାଣିବାକୁ ମିଳିଲା, ସେତେବେଳେ ଅନନ୍ତନ୍ ନାୟର୍ ସତେଅବା ଭାରି ଗୌରବ ଅନୁଭବ କରିବାକୁ ଲାଗିଲେ ।

ଆଜି ସକାଳେ ଜ୍ଞାନାନନ୍ଦ ଆଶ୍ରମରେ ଯେତେବେଳେ ଭଉଣୀ କଲ୍ୟାଣୀ ତାଙ୍କୁ କହିଥିଲା, ସେତେବେଳେ ସେ ଆଦୌ ଭାବି ନଥିଲେ ଯେ ତାଙ୍କ ଭଣଜା ଏତେଦୂର ଜଣେ ଦାର୍ଶନିକ ହୋଇ ଯାଇଥିବ । ବଡ଼ ବଡ଼ ଦାର୍ଶନିକ ବାଗ୍ମୀରଙ୍କୁ ସିଏ କେଡ଼େ ସହଜ ସୁନ୍ଦର କରି ଗୋଟିଗୋଟି କରି ସ୍ପଷ୍ଟଭାବରେ କହିଦେଇ ପାରୁଛି ।

କିଛିସମୟ ପାଇଁ ଅନନ୍ତନ୍ ନାୟର୍ ଆଉ କିଛି କହି ପାରିଲେନାହିଁ । ସିଏ ଯେତେବେଳେ ନୀରବ ହୋଇ ତା'ର ଆଖି ଦୁଇଟିକୁ ନିରୀକ୍ଷଣ କରି ଦେଖୁଥିଲେ, ସେତେବେଳେ କୌଣସି କାରଣ ନଥାଇ ମଧ୍ୟ ତାଙ୍କର ମନ ଦର୍ଶନ-ଜଗତରୁ ଅପସରି ଯାଇ ଦୁର୍ଭାଗ୍ୟମୟ ଲୌକିକ ଜୀବନଟି ବିଷୟରେ ଓ ତାହାରି ଭିତରେ ବାସ କରୁଥିବା ନିଜର ଝିଅ ମାଧବୀ ବିଷୟରେ ଏବଂ ତା'ର ବିବାହ ବିଷୟରେ ଚିନ୍ତା କରିବାରେ ଲାଗିଗଲା । ହଁ ଏପରି ଏକ ସମୟ ଥିଲା, ଯେତେବେଳେ ସିଏ ନିଜେ ଓ ଭଉଣୀ କଲ୍ୟାଣୀ ଦୁହେଁଯାକ ମାଧବୀ ଖାସ୍ ଏଇଥିଲାଗି ଜନ୍ମ ହୋଇଛି ବୋଲି ଭାବି କ'ଣ ମନକ'ଣ ସ୍ୱପ୍ନ ଦେଖିବାରେ ଲାଗିଥିଲେ··· । ମାଧବୀ ପାଇଁ ଏହି ପିଲାଟି ସହିତ ବିବାହର ସମ୍ବନ୍ଧ ପଡ଼ିଥିଲା ନା !

କେହି ଆଉ କିଛି କହିଲେନାହିଁ । କେବଳ ନଡ଼ିଆଗଛର ପତରଗୁଡ଼ାକ ସିରସିର ହୋଇ କମ୍ପୁଥିବାର ଶବ୍ଦ ହିଁ ଶୁଣା ଯାଉଥିଲା । ପାଖରେ ରହିଥିବା ସିନେମାଘର ଭିତରୁ ମଝିରେ ମଝିରେ ଗୀତର ଶବ୍ଦଗୁଡ଼ିକ ଧୀରେଧୀରେ ଭାସି ଆସୁଥାଏ । ଶାଳୈର ସଡ଼କ ଉପରେ ଗୋଟିଏ ମଟରଗାଡ଼ି ଖୁବ୍ ଜୋର୍‌ରେ ବୁଲିପଡ଼ିଲା ଏବଂ ମେନ୍ ରୋଡ୍ ଆଡ଼କୁ ଛୁଟି ପଳାଇଗଲା ।

ଯୁବକଟି ଯେଉଁଠୁଁ ଛାଡ଼ିଥିଲା, ସେଇଠୁ ପୁଣି ଆଗକୁ ଆରମ୍ଭ କଲା ।

"ଦେଖନ୍ତୁ, ବେଦାନ୍ତକୁ ଯେତେ ମନ ଯେତେ ଗୋଳି କରି ପିଇ ଯାଇଥିଲେ ମଧ୍ୟ, ଯଦି ତଥାପି ଓଁକାରର ନିଗୂଢ଼ ଅନ୍ତର୍ଥଟିକୁ ବୁଝିବା ବାକି ରହି ଯାଇଥିବ, ତେବେ ସେଥିରେ ମୋଟେ କୌଣସି ଲାଭ ହେବନାହିଁ···ସରଳ ଓ ଠିକ୍‌ପ୍ରକାରେ ସେହିଟିକୁ ଲାଭ କରିବାଲାଗି ଅନେକ ମାର୍ଗ ରହିଛି···ଯେଉଁଦିନ ଠାରୁ ମୁଁ ଏସବୁ ବୁଝି ପାରିଲି, ସେହି ଦିନଠାରୁ କେଜାଣି କାହିଁକି ଏହି ସ୍ପିରିଚୁଆଲ୍ ଫିଲ୍ଡ୍‌ରେ ମୋର ଏକ ବିଶେଷ ରୁଚି ଉତ୍ପନ୍ନ ହୋଇଗଲା···ଯଦି କେହି ମୋତେ ଏପରି କାହିଁକି ହେଲା ବୋଲି ପଚାରିବ, ତେବେ ମୁଁ ତା'ର କୌଣସି ଉତ୍ତର ଦେଇ ପାରିବନାହିଁ । ମାତ୍ର ହୁଏତ ଏପରି ହୋଇଥିବ ଯେ ମୋ'ର ବାପାଙ୍କୁ ଏହି କ୍ଷେତ୍ରରେ ଅନେକ ବଡ଼ ବଡ଼ ଅନୁଭୂତି ଉପଲବ୍ଧ ହୋଇଥିଲା ବୋଲି ଏପରି ଘଟିଲା···ଏପରି ଘଟିନାହିଁ ବୋଲି ମୁଁ ଆଦୌ କହିବନାହିଁ···ମାତ୍ର ଏକଥା କଦାପି କୁହାଯାଇ ପାରିବନାହିଁ ଯେ ତଦ୍ଦ୍ୱାରା ମୋ'ର

ସିଧାସଳଖ କୌଣସି ଲାଭ ହୋଇଥିଲା···କାରଣ ତାଙ୍କର ସ୍ୱର୍ଗବାସ ହୋଇଯିବା ପରେ ହିଁ ମୁଁ ଜନ୍ମଲାଭ କରିଥିଲି···।"

କିଛିକ୍ଷଣ ମୌନ ରହି ସିଏ ପୁଣି କହିଲା –

"ସେହି ପ୍ରକାରର ମୋ'ର ଏହି ଆଧ୍ୟାତ୍ମିକ ଆଗ୍ରହକୁ ଯାହାକି କେତେକ ଅଜ୍ଞାତ ଏବଂ ଅସ୍ପଷ୍ଟ ରୂପରେ ମୋ'ଭିତରେ ଉତ୍ପନ୍ନ ହୋଇଥିଲା, ଉଚିତ ରାସ୍ତାରେ ଆଣି, ଜ୍ଞାନମାର୍ଗକୁ ସରଳ କରିଦେଇ ମୋତେ ଉପଦେଶ ଦେଇଥିଲେ ମୋ'ର ଗୁରୁବର ଉର ପରପ୍ପୁ ନୀଳକଣ୍ଠନ୍ ନାୟର୍ । ଆପଣମାନଙ୍କୁ ମୁଁ ଯାହାକିଛି କହି ପାରୁଛି, ସେସବୁକୁ ମୁଁ ଦଶ ପନ୍ଦର ବର୍ଷ ମଧ୍ୟରେ ସେହି ତାଙ୍କଠାରୁ ହିଁ ଲାଭ କରିଛି ।···"

କଷାୟଧାରୀ ବ୍ୟକ୍ତି ଜଣକ ପଚାରିଲେ, "ସେ କେଉଁ ଆଶ୍ରମର ?"

ମନ୍ଦହାସ୍ୟ ହସି ଈଶ୍ୱରନ୍ ଉତ୍ତର ଦେଲା, "ସିଏ ଏପରି ବ୍ୟକ୍ତି ନୁହନ୍ତି, ଯିଏକି ଘର ଛାଡ଼ି ଅରଣ୍ୟ ବା ଆଶ୍ରମରେ ଯାଇ ରହିବେ । ଗାର୍ହସ୍ଥ୍ୟ ତ୍ୟାଗ କରି ସନ୍ନ୍ୟାସ ଗ୍ରହଣ କରିବା ପରେ ମଧ୍ୟ ସିଏ ଘରେ ହିଁ ରହୁଥିଲେ । ସରକାରୀ ଚାକିରୀରେ ରେଜିଷ୍ଟ୍ରାର୍ କାମ କରି ଅବସର ଗ୍ରହଣ କରିଥିଲେ । ନଅଟି ସନ୍ତାନର ବାପ ଥିଲେ । ତାଙ୍କୁ ବା ତାଙ୍କଠାରୁ ଉପଦେଶ ଲାଭ କରିଥିବା ଆମ ଚାରି ପାଞ୍ଚଜଣ ବ୍ୟକ୍ତିଙ୍କୁ ତାଙ୍କର ଏହି ଲୌକିକ ବନ୍ଧନ ଆଦୌ କୌଣସି ପ୍ରକାରେ ବାଧକ ହୋଇ ନଥିଲା । ଏକଥା ଏକାବେଳେକେ ସତ କଥା ।"

କେଜାଣି କାହିଁକି ଅନନ୍ତନ୍ ନାୟରଙ୍କ ମନରେ କିଛିଟା ସାନ୍ତ୍ୱନା ଜାତ ହେଲା

"ବର୍ତ୍ତମାନ କ'ଣ ତାଙ୍କର ସମାଧି ହୋଇ ଗଲିଣି ?"

"ହଁ । ଏଇଠି ଉରପରପ୍ପୁଠାରେ ଅନେକ ସମୟରେ ଏକତ୍ର ହୋଇ ଆମେ ଘଣ୍ଟାଘଣ୍ଟା ଧରି ଆଧ୍ୟାତ୍ମିକ କେତେ ବିଷୟର ଚର୍ଚ୍ଚା କରୁଥିଲୁ । ଦିନେ ଆମ ଚାରିଜଣ ଯାକଙ୍କୁ ଏକା ସମୟରେ ତାଙ୍କର ହାତଲେଖା ଚିଠି ଆସିମିଳିଲା । ଆମେ ଯାଇ ସେଠାରେ ପହଞ୍ଚିଲା ବେଳକୁ ସେ ସମାଧିରେ ଲୀନ ହୋଇ ସାରିଥିଲେ, ଠିକ୍ ସେହିଦିନ ସକାଳେ । ହଁ, ଯଦି ସେ ଆସି ମୋ ଜୀବନରେ ଉପସ୍ଥିତ ହୋଇ ନଥାନ୍ତେ, ତେବେ ମୁଁ ବର୍ତ୍ତମାନ କେବଳ କେତେଗୁଡ଼ିଏ ମନ୍ତ୍ର ଓ ଗୁଣିଗାରେଡ଼ି ଛଡ଼ା ଆଉ କିଛି ହେଲେ କରି ପାରୁନଥାନ୍ତି··· ।

ଫିରଙ୍ଗି ଘଣ୍ଟାରେ ବାରଟା ବାଜିଲା ଓ ତା'ପରେ କଂସା ଘଣ୍ଟାଟା ମଧ୍ୟ ବାଜି କରି ଚୁପ୍ ହୋଇଗଲା,

ତା' ଆରଦିନ ସେମାନେ ରାତି ଦଶଟା ସମୟରେ ମଣ୍ଟକ୍ଲାଉଡ଼ରେ'ସମାଧି ଥିବା ବଗିଚାରେ ଏକଜୁଟ ହେବେ ବୋଲି କହି ଲୋକମାନେ ଜଣ ଜଣ କରି ଷ୍ଟିଫରନ୍‌ଙ୍କ ପାଖରୁ ବିଦା ହୋଇ ଚାଲିଗଲେ ।

ସମସ୍ତେ ଚାଲିଯିବା ପରେ ମଧ୍ୟ ସେଠାରୁ ଯିବାଲାଗି ଷ୍ଟିଫରନ୍ ନାୟରର ମୋଟେ ଯେପରି ମନ ହେଉନଥିଲା, ଏକଥା ଦେଖି ଅନନ୍ତନ୍ ନାୟର ଧୀରେ ଧୀରେ ପଚାରିଲେ —"କ'ଣ ହେଲା ଷ୍ଟିପୀ ! ତେଣେ ମାଆ ଖୋଜୁ ନଥିବେ ? ଘରକୁ ଯିବାକୁ ବି କ'ଣ ସମୟ ହେଉନାହିଁ ? ବର୍ତ୍ତମାନ ତ ବସ୍ ବି ମିଳିବନାହିଁ···।"

ଷ୍ଟିଫରନ୍ ହସି ଉଠିଲା ।

"ମାଆ ? ମୋ'ର ଯେ ଆଉ କୌଣସି ସଂଶୋଧନ ହୋଇ ପାରିବ ନାହିଁ, ସେ କଥା ମାଆ ଜାଣି ସାରିଲେଣି । ଆଜିକାଲି ଆପଣାର ମନକୁ ବୁଝାଇ ମଧ୍ୟ ନେଲେଣି ଘରକୁ ଫେରିବାର ଇଚ୍ଛା ପରିତ୍ୟାଗ କରିବା ମୋର ଅନେକବର୍ଷ ହୋଇଗଲାଣି ।"

ଅନନ୍ତନ୍ ନାୟର୍‌ଙ୍କୁ କଥାଗୁଡ଼ାକ କେଜାଣି କେମିତି କେମିତି ଲାଗୁଥାଏ ।

"ହୁଁ···ଆଜି ସକାଳେ ଜ୍ଞାନାନନ୍ଦ ଆଶ୍ରମରେ ଭଉଣୀ ସହିତ ମୋ'ର ଦେଖା ହୋଇଥିଲା । ବେଶ୍ କିଛିସମୟ ଲାଗି କଥାବାର୍ତ୍ତା ହୋଇଥିଲା···।"

ସିଏ ଯେପରି ଏହିସବୁ କଥା ଶୁଣିବାଲାଗି କୌଣସି ଧ୍ୟାନ ଦେଉନାହିଁ, ତାଙ୍କର ସେହିପରି ମନେ ହେଉଥାଏ । ତେଣୁ ପୁଣି ପଚାରିଲେ, "ତେବେ ରାତିରେ କୋଉଠି ଖାଉଛୁ, ଶୋଉଛୁ କୋଉଠି ?"

ସିଏ ପୁଣି ହସି ପକାଇଲା ।

"କାହିଁକି ମାମୁଁ । ସମସ୍ତଙ୍କୁ କ'ଣ ଘରକୁ ଯାଇ ମାଆର ପରଷା ଖାଦ୍ୟକୁ ହିଁ ଖାଇବାକୁ ପଡ଼ିବ ? କାଲି କ'ଣ ଖଟରେ ଆଉ ଗଦିଉପରେ ଶୋଇବାକୁ ପଡ଼ିବ ? ଇଏ ପୁଣି କେଡ଼େ ବଡ ବନ୍ଧନ ନ ହେବ କହିଲେ ! ଯେଉଁଠି ଯାହା ମିଳିଲା ଖାଇବ, ହଜମ କରିନେଇ ପାରିଲେ ହେଲା । ଗୋଟାଏ ପାଚିଲା କଦଳୀ, ଗୋଟାଏ ପିଆଲା କଫି – ମୋ' ପାଇଁ ଏତିକ ଯଥେଷ୍ଟ । କୌଣସିଠାରେ ହେଉ ପଛକେ, ଠିଆ ହୋଇ ହେଉ କିମ୍ବା ବସି କରି ହେଉ, ସତେ ଅବା ସୁଇଚ୍ ଲଗାଇ ଦେଲା ପରି ଶୋଇଯିବା ଉଚିତ । ଦିନକୁ

ଦୁଇଟି ଘଣ୍ଟାରୁ ଅଧିକ ଶୋଇବାଲାଗି ମୋତେ ଅନୁମତି ବି ନାହିଁ । ବଡ଼ ଭୋ'ରୁ ଉଠି ଠିକ ବେଳେ ପୋଖରୀରେ ପଶି ଥଣ୍ଡା ପାଣିରେ ସ୍ନାନ କରିବା ଉଚିତ । ଏପରି ଏକ ଜୀବନର ଅଭ୍ୟାସ କରିବା ଏହା ଭିତରେ ବେଶ୍ କେତେବର୍ଷ ହୋଇଗଲାଣି ।''

ତା'ର ମୁହଁକୁ ଦେଖି ତା' କଥାରେ ବିଶ୍ୱାସ କରିବା ଅନନ୍ତନ୍ ନାୟର୍‌ଙ୍କୁ ଖୁବ କଠିନ ମନେହେଲା । ତଥାପି ମନ କହୁଥାଏ, ତାଙ୍କ ପାଖରେ ମିଛ କହି ତା'ର କି ଲାଭ ହେବ ?

ପୁଣି କେତେ କ୍ଷଣ ବିତିଗଲା ।'' କହିଲେ ମାମୁଁ, ଏପରି କ୍ଷେତ୍ରରେ ମାଆ, ସ୍ତ୍ରୀ, ଝିଅ ଆଦି ସମ୍ବନ୍ଧର ଆଉ ପ୍ରକୃତରେ କ' ଅର୍ଥ ରହିଲା :''

ଅନନ୍ତନ୍ ନାୟର୍ ଚମକି ଉଠିଲେ । ଇଏ ପୁଣି କୋଉ ଆଡ଼କୁ ଇଙ୍ଗିତ କରି ଦେଲା କେଜାଣି ? ତାଙ୍କୁ କେନ୍ଦ୍ର କରି ଆଉ ବିଦ୍ରୂପ କରୁନାହିଁ ତ ? ହଠାତ୍ ମୁଣ୍ଡ ଉପରକୁ କରି ସେ ତା'ର ଆଖି ଆଡ଼କୁ ଚାହିଁକରି ଦେଖିଲେ ଓ ସେଠାରେ ଏପରି କୌଣସି ତୀକ୍ଷ୍ଣ ଭାବ ବିଦ୍ୟମାନ ଥିବାର ଅନୁଭବ କଲେ, ଯାହା—ଫଳରେ କି ତାଙ୍କୁ ପୁଣି ମୁଣ୍ଡ ତଳକୁ ନେଇ ଆସିବାକୁ ପଡ଼ିଲା ।

ହାତରେ ବାଲିକୁ ମାପୁ ମାପୁ ସେ ଚୁପ୍‌ଚାପ ବସି ରହିଥାନ୍ତି । ସିଏ ବସି ଚିନ୍ତା କରୁଥିଲେ, ବର୍ତ୍ତମାନ ସିଏ ଯେଉଁ ପ୍ରଶ୍ନଟି ପଚାରିଲା, ସେହି କଥାଟିକୁ ସିଏ ରାସ୍ତାରେ ଆଉ କେଉଁଠାରେ ଯାଇ ବଢ଼ାଇ ଦେବନାହିଁ ତ ? ତେଣୁ କଥାବାର୍ତ୍ତାକୁ ପୁଣି ତାହାର ସହିତ ଆଣି ସବନ୍ଧ କରିଦେବାର ଅଭିପ୍ରାୟରେ ସିଏ ବଡ଼, ସାବଧାନ ହୋଇ ପଚାରିଲେ, ''ହିଁ ନୀଳକଣ୍ଠନ୍ ନାୟର୍ ସମାଧିରେ ଲୀନ ହୋଇ ଯିବାପରେ ତୁମର କ'ଣ ଆଉକେହି ଗୁରୁ ଅଛନ୍ତି ?''

କିଛି ସମୟ ପୂର୍ବେ ତା' ମୁହଁରେ ଯେଉଁ ତୀକ୍ଷ୍ଣତା ଆସିଯାଇଥିଲା, ସେଇଟି ଅପସରି ଯିବାଲାଗି ବର୍ତ୍ତମାନ ଗୋଟିଏ ଦୁଇଟି ମୁହୂର୍ତ୍ତ ଲାଗିଲା । ପୁଣି, ''ମାମୁଁ ଆପଣ ଖୁବ ଚତୁର ଲୋକ'' ବୋଲି କହି, ସତେଅବା ତାଙ୍କର ପିଠିକୁ ଥାପୁଡ଼ାଇ ଦେଉଥିବା ପରି ଅଳପ ଅଳପ ହସି କହିଲା, ''ହିଁ, ଅଛନ୍ତି—କେଓ୍ୱଲମ୍ ପାଖରେ ।''

''ତାଙ୍କ ନାଆଁ କ'ଣ ?''

''ଶୋକ୍‌କଲିଙ୍ଗମ୍ ।''

''ସିଏ କ'ଣ ତାମିଲଭାଷୀ ?''

''ହିଁ ।''

"ପରିବାର ଛାଡ଼ି ଦେଇଛନ୍ତି, ନା··· ?"

"ନା ସିଏ ବର୍ତ୍ତମାନ ଆପଣାର ସ୍ତ୍ରୀ ପିଲାଙ୍କ ସହିତ ହିଁ ରହିଛନ୍ତି । ମୁଁ ମୋର ପ୍ରଥମ ଗୁରୁ ନୀଳକଣ୍ଠନ୍ ନାୟର୍‌ଙ୍କ ଠାରୁ ଯାହା କିଛି ଶିଖିଥିଲି, ତାହାର ସମ୍ପୂର୍ଣ୍ଣ ଅର୍ଥକୁ ବୁଝି କାର୍ଯ୍ୟରେ ପରିଣତ କରିବାର କଥାଟି ସ୍ୱାମୀଙ୍କ ପାଖକୁ ଆସିବା ପରେ ଯାଇ ଆରମ୍ଭ ହେଲା ।"···

ତା' ପରେ କିଛି ସମୟ ପାଇଁ ନୀରବତା । ଅନନ୍ତନ୍ ନାୟର୍‌ଙ୍କର ମନରେ ବର୍ତ୍ତମାନ କିଛି ନୂତନ ସନ୍ଦେହ ଉତ୍ପନ୍ନ ହେବାକୁ ଲାଗିଲା । ଜଣେ ବ୍ୟକ୍ତିର ଜୀବନରେ କ'ଣ ଗାର୍ହସ୍ଥ୍ୟ ଜୀବନ ଓ ଜ୍ଞାନର ପିପାସା ଦୁଇଟିଯାକ ଏକାସାଙ୍ଗରେ କଦାପି ସମ୍ଭବ ହୋଇ ପାରିବ ? ଯଦି ସମ୍ଭବ ହେବ, ତେବେ ଭାରୀ ସହଜରେ ମଧ୍ୟ ତାହା ନିଶ୍ଚୟ ସମ୍ଭବ ହେବ ।

ଏହି କଥାଟିକୁ ତାଙ୍କୁ କିପରି ପଚରାଯାଇ ପାରିବ ?

ହଁ । ଏହି ଅଭିଳାଷଟି ଗତ କେତେ ଦିନରୁ ତାଙ୍କର ହୃଦୟ ଭିତରେ ଚେର ମଡ଼ାଇବାକୁ ଆରମ୍ଭ କଲାଣି । ପ୍ରକୃତରେ ତାଙ୍କ ଗାର୍ହସ୍ଥ୍ୟ ଜୀବନର ପତନ ଏବଂ ଏହାର ଜ୍ଞାନମାର୍ଗ ଆଡ଼କୁ ଅଗ୍ରସର ହୋଇସିବା ସହଜରେ ହିଁ ତ ଏକଦମ୍ ନିରର୍ଥକ ହୋଇସିବାକୁ ପଡ଼ୁଛି ।

ବର୍ତ୍ତମାନ······

ଗୃହସ୍ଥର ଜୀବନ ଆଧ୍ୟାତ୍ମିକତା ସହଜରେ ବାଧକ ନୁହେଁ,—ଏହି ତଥ୍ୟଟିକୁ ଗୃହସ୍ଥଜୀବନ ଯାପନ କରୁଥିବା ବ୍ୟକ୍ତିମାନଙ୍କୁ ଗୁରୁ ବୋଲି ସ୍ୱୀକାର କରିନେବା ଦ୍ୱାରା ସିଏ ଏକ ପ୍ରକାର ମଉନ ଭାବରେ ସ୍ୱୀକାର ହିଁ କରି ନେଇଛି । ଏହା ଫଳରେ ତାଙ୍କ ମନରେ ପୁଣି ଆଶାର ନୂଆ ଅଙ୍କୁର ବାହାରିବାକୁ ଆରମ୍ଭ କଲାଣି···

ସକାଳେ ବସ୍‌ରେ ଯାଉଥିବା ସମୟରେ ସିଏ ମାଧବୀ ଆଉ ଧର୍ମପାଳନ୍ ବିଷୟରେ ଯାହାକିଛି ଶୁଣିଲେ, ସେକଥା ମିଥ୍ୟା ହେଉ···ତାହାହିଁ ତାଙ୍କର ଇଚ୍ଛା ତାହାହିଁ ତାଙ୍କର ଆଗ୍ରହ···। ମାତ୍ର ଯଦି ତାହା ସତ୍ୟ ହୋଇଯାଏ' ତେବେ··· ?

କୌଣସି ଓଲଟ ପାଲଟ ଘଟିବା ପୂର୍ବରୁ ହିଁ ସେହି ସ୍ନେହ ସମ୍ବନ୍ଧଟି ଘନିଷ୍ଠ ହୋଇ ଦୃଢ଼ ହୋଇଯାଉ, ଏହି ଭାରୀ ସହିତ ସିଏ ମାଧବୀର ପାଣିଗ୍ରହଣ କରାଇଦେଇ ପାରିବେତ ତାଙ୍କ ଉପରେ ରହିଥିବା ଦାୟିତ୍ୱଟି ପ୍ରକୃତରେ ପୂର୍ଣ୍ଣ ହୋଇଯାଇ ପାରିବ ।

କିନ୍ତୁ···

ସେହି କଥାଟି ସ୍ତ୍ରୀଙ୍କୁ ପଚାରିଯାଇ ପାରିବ କପରି ?

ଭଉଣୀ କଲ୍ୟାଣୀର ମଧ୍ୟ କେତେ ଇଚ୍ଛା ନଥିଲା ! କେବଳ ଏହାରି ଠାରୁ ସମ୍ମତିଟି ପାଇଗଲେ ସିଏ ମଧ୍ୟ କେଡ଼େ ଖୁସୀ ନହେବ···କିନ୍ତୁ ···ମୁଁ, ମାଧବୀର ବାପ ନିଜେ କପରି ସ୍ତ୍ରୀ'ପାଖରେ ସେହି କଥାଟିକୁ ଆଣି ପକାଇ ପାରିବି ?

ମାଧବୀ କୁନ୍ତୀର ବାପ ହେଲେ କ'ଣ ହେଲା, ମୁଁ ଏହାର ମାମୁଁ ବି ନୁହେଁ କି ? ବର୍ତ୍ତମାନ ଏହି ମଉକାଟିକୁ ଛାଡ଼ିଦେବି ତ ପୁଣି ଆଉ କେବେ ଏପରି ଏକ ମଉକା ମୋତେ ମିଳିବ ?

"କ'ଣ ହେଲା ମାମୁଁ, ଆପଣ ତ ରାତିର ଚନ୍ଦ୍ରାରେ ଏକାବେଳେକେ ନିମଗ୍ନ ହୋଇ ରହିଲେ :"

ସିଏ କାଶି ଗଳାରୁ ଖଙ୍କାର ସଫା କରି କହିଲେ, "ନାଇଁ, କିଛିନାହିଁ ।··· ତୋତେ ଗୋଟିଏ କଥା ପଚାରିବାର ଥିଲା ।···ତୁ ଅନ୍ୟଥା ଗ୍ରହଣ କରିବୁନାହିଁ ତ ?"

ସିଏ କହିଲା, "ମୋତେ ଯେକୌଣସି କଥା ପଚାରିବା ସକାଶେ ମାମୁଁଙ୍କର ସର୍ବଦା ପୂର୍ଣ୍ଣ ଅଧିକାର ରହିଛି ।"

ଅନନ୍ତନ୍ ନାୟର୍ ଆଉ ଏହି କଥାଟି ଉପରେ ଗୁଡ଼ାଏ ଭାବିବାକୁ ଚାହେଁନାହିଁ । ସିଧା ସିଧା ବିଷୟଟିକୁ ଆଣି ଥୋଇ ଦେଲେ ।

"ନାଇଁ, କିଛି ନାହିଁ । ସେଇ—ତୋର ଦୁଇଟିଯାକ ଗୁରୁଙ୍କର ସ୍ତ୍ରୀ ଆଉ ପିଲ-ମାନେ ଅଛନ୍ତି ନା ? ତେବେ ତୁ ପୁଣି କାହିଁକି ବିବାହ କରିବୁ ନାହିଁ ବୋଲି ଜିଦ୍ ଧରି ବସିଛୁ ?"

ସିଏ ଅନୁଭବ କଲେ, ଯେପରି ତାହାର ଉଜ୍ଜ୍ୱଳ ମୁଖମଣ୍ଡଳଟି ଉପରେ ବର୍ତ୍ତମାନ କେଜାଣି କାହିଁକି ଗୋଟାଏ ପ୍ରକାରର ଛାଇ କୁଆଡ଼ୁ ଆସି ଆଚ୍ଛନ୍ନ କରି ରହିଲା ।

"ମାମୁଁ···ମୁଁ ବିବାହ କରିବିନାହିଁ ବୋଲି ହିଁ ନିଷ୍ପତ୍ତି କରିଥିଲି... !"

ଅନନ୍ତନ୍ ନାୟର୍ ଅନୁଭବ କଲେ ସତେଯେପରି ତାଙ୍କ ହୃଦୟର କୌଣସି ଏକ କୋଣରେ ଗୋଟିଏ ସବୁଜ ଗଜା ମୁହଁ ଉଠାଇ ବାହାରି ଆସୁଛି ।

"ତେବେ···ବର୍ତ୍ତମାନ ?"

କିଛି ସମୟ ପାଇଁ ନୀରବତା ।

"ବର୍ତ୍ତମାନ ମୁଁ ମୋର ସେହି ଇଚ୍ଛାଟିକୁ ବଦଳାଇ ଦେଇଛି । ନା – ଇଚ୍ଛାଟିକୁ ବଦଳାଇବାକୁ ମୋତେ ବାଧ୍ୟ କରାଯାଇଛି ।"

ଏହାର ପରବର୍ତ୍ତୀ ପ୍ରଶ୍ନଟିକୁ ସେ କପରି ପଚାରିବେ,—ଅନନ୍ତନ୍ ନାୟର୍ ବଡ଼ ଅଡ଼ୁଆରେ ପଡ଼ିଲେ । ସିଏ କ'ଣ ତାଙ୍କ ଅନ୍ତରର କଥାଟିକୁ ଭଲ କରି ଜାଣି କରି ହିଁ ଏପରି କଥାମାନ କହୁଛି ? ଯଦି ଏପରି ହୋଇଥାଏ, ତେବେ ପନ୍ଦର ବର୍ଷ ପରେ ହେଲେ ମଧ୍ୟ, ଅନ୍ତତଃ ଏହି ଗୋଟିଏ ବିଷୟରେ ତ ଭଗବାନ ତାଙ୍କୁ ଆଖି ଖୋଲି ଟିକିଏ ଚାହିଁଲେ, ତାଙ୍କ ଲାଗି ଟିକିଏ ହସିବାର ଓ ତୃପ୍ତି ଲାଭ କରିବାର ଏକ ଅବସର ପ୍ରଦାନ କଲେ ।

ତାକୁ ଦେଖିଲେ ତା'ର ମୁହଁରୁ ଜଣା ପଡ଼ୁଥିଲା ସତେଯେପରି ସିଏ କୌଣସି ଗମ୍ଭୀର ଚିନ୍ତାରେ ହିଁ ଲୀନ ହୋଇ ରହିଛି । ବର୍ତ୍ତମାନ ସେହି କଥାଟିକୁ ପକାଇବାକୁ ପଡ଼ିବ—ଏକଥା ଭାବି ସେ କିଛି ସମୟ ଚୁପ୍ ହୋଇ ରହିଲେ; ତାକୁ ମଉନ ହୋଇ ରହିଥିବାର ଦେଖି ନିଜେ ପଚାରିଲେ, "ଖୁବ୍ ଭଲ କଥା···। ବିଚାରି ଭଉଣୀ କଲ୍ୟାଣୀର ମାନସିକ ତୃପ୍ତି ଲାଗି ହେଉ ପଛକେ, ତୁ' ଯେ ଆପଣାର ମନକୁ ବଦଳାଇ ନେଇଛୁ ଏହା ପ୍ରକୃତରେ ଗୋଟିଏ ଅତି ପବିତ୍ର କାର୍ଯ୍ୟ··· ।"

ଆଉ କିଛି ସମୟ ନୀରବ ରହି ସେ କହିଲା, "ମୁଁ ମାଆ ସକାଶେ ନୁହେଁ, ମାମୁଙ୍କ ସକାଶେ ହିଁ ନିଜର ମତକୁ ବଦଳାଇ ନେଇଛି ।"

ବର୍ତ୍ତମାନ ଅନନ୍ତନ୍‌ନାୟର୍‌ଙ୍କ ହୃଦୟ କେଜାଣି କାହିଁକି ଭାରି ଛଟପଟ ହେଇ ଉଠିଲା ।

"ହଁ···ମାମୁଁ । ମୁଁ ନିଜ ମନକୁ ବଦଳାଇ ନେଇଛି ବୋଲି ସବୁ ପ୍ରଥମେ ଏଠି ଆପଣଙ୍କ ଆଗରେ ହିଁ କହୁଛି । ଏପର୍ଯ୍ୟନ୍ତ ମା ବି ଏକଥା ଜାଣିନାହିଁ । ସିଏ ଏକଥା ଜାଣିଲେ ଯେ ତା'ର ମନରେ ସନ୍ତୋଷ ଆସିବ, ଏକଥା ମୋ'ର ଆଦୌ ମନେ ହେଉନାହିଁ ।···"

"କ'ଣ···?"

"ହଁ, ମୁଁ ଆପଣଙ୍କୁ ସବୁକଥା କହିଦେଉଛି ।···ଆଜି ଆପଣଙ୍କ ସହିତ ସାକ୍ଷାତ ହୋଇ ପ୍ରକୃତରେ ଭଲ ହେଲା । ଏସବୁ କଥାକୁ ମୁଁ ନିଜେ ମାଆ ପାଖରେ ଯାଇ କ'ଣ କହିଥାନ୍ତି । ଆପଣଙ୍କର ଯେତେବେଳେ ବର୍ତ୍ତମାନ ମାଆ ସହିତ ଦେଖା ହେବ, ତେବେ ଆପଣ ତାକୁ ଏକଥାଟିକୁ କହିଦେଇ ପାରିବେ ତ ତାହାହିଁ ଯଥେଷ୍ଟ ହେବ । ନୁହେଁ ? ଚାଲନ୍ତୁ, ପପ୍ପୁ ପିଲ୍ଲାଇ ଦୋକାନରେ ଗୋଟିଏ ଗୋଟିଏ କପ୍

ସୁଣ୍ଠି ଦିଆ ଚାହା ପିଇଆସିବା···ଖାଲି ଶୋଷ ହେଉଛି ।"—କହି ସିଏ ବସିବା ଜାଗାରୁ ଉଠି ଠିଆହେଲା ।

ମନ ଭିତରେ କେତେକେତେ ପ୍ରକାରର ଶଙ୍କା, ତଥାପି ଆଉ କୌଣସି ସ୍ଥିର ନପାଇ ସିଏ ମଧ୍ୟ ତା' ସହିତ ପପ୍‌ପୁ ପିଲ୍ଲଇର ଦୋକାନଆଡ଼କୁ ଅଗ୍ରସର ହେଲେ ।

ସେତେବେଳକୁ ଗୋଟାଏ ବାଜି ସାରିଥିଲା, ରାତିର ଶୋ' ଶେଷ ହେବାପରେ ସିନେମା ଥିଏଟରରୁ ଫେରୁଥିବା ଲୋକମାନଙ୍କର ଭିଡ଼ ପାତଳି କରି କରି ରାସ୍ତାରେ ଚାଲି ଯାଉଥିଲେ ।

କଙ୍ଗି ପିଇସାଗ ପୁଣି ଆସି ବାଲଉପରେ ବସିବାପାଏ ଭାସୀ ଆଉ କଛ କହଲ ନାହିଁ । ତା'ର ମୁହଁ ଆଡ଼କୁ ନଷ୍କ୍ଷଣ କର ଅନନ୍ତନ୍‌ନାସ୍ୱର୍ ଏତକ ବୁଝିନେଇ ପାଗ୍‌ଥିଲେ ଯେ ତା'ର ମନଭତରେ ଯେ କେତେ ପ୍ରକାର ତାବ୍ର ଚଲ୍ଲନରେ ଆନ୍ଦୋଳତ ହୋଇ ରହହ । ତାଙ୍କ ଅନ୍ତର ଭତରେ ଗୋଟିଏ ପ୍ରକାରର ନୈରାଶ୍ୟଭାବ ଧୀରେ ଧୀରେ ଉକୁଟି ଆସିଲ ଓ ଫଣା ବସ୍ତାର କରବାକୁ ଲଗିଲ । ଦୁହେଁ ଆସି ବାଲ ଉପରେ ବସିଲେ । କଛସମୟ ପରେ ସେ ଧୀରେ ଧୀରେ କହବାକୁ ଆରମ୍ଭ କଲ, "ମାମୁଁ । ବବାହ କରବ ନାହିଁ ବୋଲ ମୋର ଆଗରୁ ଯେଉଁ ଇଚ୍ଛା ଥିଲ, ତାହାପଛରେ ଏହ ·ଗୋଟିଏ କାରଣ ମଧ ରହଥିଲ ଯେ ମୁଁ କୌଣସି ପ୍ରକାର ବନ୍ଧନ ଓ ଅନୁଶାସନ ନରଖି ହିଁ ନଜର ଜୀବନ ଯାପନ କରୁଛ । ମାତ୍ର କାଲ ମୁଁ ଯେତେବେଳେ କୋଓ୍ୱଲମ୍ ଯାଇଥିଲ, ସେତେବେଳେ ସେଠାରେ ସମ୍ପୂର୍ଣ୍ଣ ଅପ୍ରତ୍ୟାଶିତ ଭାବରେ ହିଁ ମୋତେ ମୋର ଗୁରୁଙ୍କର ଆଜ୍ଞାଟିକୁ ମାନନେବାକୁ ପଡ଼ଲ···।"

କଛସମୟ ଚୁପ୍ ରହ ସିଏ ପୁଣି କହଲ, "ମୁଁ ତାହା ସ୍ୱୀକାର କରବ ନାହିଁ, —ଏପର କହ ମୁଁ ତାଙ୍କୁ କଦାପି ମନା କର ପାର ନଥାନ୍ତ । ଗୁରୁ ଆଉ ଶିଷ୍ୟ ଭତରେ ଏପର ଏକ ସମ୍ବନ୍ଧ ରହଛ ! ଆପଣାର ମୁହଁ ଖୋଲ ସିଏ ମୋତେ ସେକଥା ନକହଥାନ୍ତୁ ପଛକେ, ତଥାପି ଏହା ମୋ' ଲଗି ଏକ ନୈତକ କର୍ତ୍ତବ୍ୟ ହୋଇ ରହଥିଲ । ମୁଁ ଆଖି ବୁଜ ରାଜି ହୋଇଯାଇଛ । ସେତକ କହ ସେଠାରୁ ଚାଲ ଆସିଛ । ମାତ୍ର···ବର୍ତ୍ତମାନ ମଧ ମୋର ଅନ୍ତରାତ୍ମା ଏହା :କ'ଣ ପ୍ରକୃତରେ ଉଚତ ବୋଲ ମୋତେ ପ୍ରଶ୍ନ କରବାରେ ଲଗିଛ ମୋମନ ମୋତେ ବାର ବାର ଏହକଥା ହିଁ କହବାରେ ଲଗିଛ ଯେ କନ୍ୟାପକ୍ଷକୁ ଏହ ସମ୍ପାନ୍ତରେ ମୋତେ ଜାମାତା କର ବାଛବାର କଥାଟିକୁ ଆଦୌ ଭାବବାର ହିଁ ନଥିଲ···।"

"କନ୍ୟା କଏ ?"

ଶବ୍ଦଗୁଡ଼କ ପ୍ରାୟ ଓଠପର୍ଯ୍ୟନ୍ତ ଆସି ଯାଇଥିଲେ, ପୁଣି ହଠାତ୍ ରୋକ ହୋଇଗଲେ, ଛି, ମୋର ଏପର ପ୍ରଶ୍ନ ପଚାରବା ଆଦୌ ଉଚତ ନଥିଲ, ଏକଥା ଭାବ ଅନନ୍ତନ୍ ନାସ୍ୱର୍ ବଡ଼ ଆକୁଳ ହୋଇ ଉଠିଲେ ।

ଆପଣାର କଣ୍ଠସ୍ୱରରେ ଗୌରବର ଏକ ଭାବ ମିଶାଇ ଭାସୀଉତ୍ତର ଦେଲ, "ସମାଧି ପ୍ରାପ୍ତ ହୋଇଥିବା ମୋର ପ୍ରଥମ ଗୁରୁ ନୀଲକଣ୍ଠନ୍ ନାସ୍ୱର୍‌ଙ୍କର ସବା ସାନ ଝିଅ ...।"

"ହଁ, ମୁଁ ବି ସେଇକଥା ଭାବୁଥିଲି । ହୁଁ…ମୁଁ ଏହିସବୁ କଥା ହିଁ ଭାବୁଥିଲି ।" ସିଏ ଆଉ ଅଧିକ କିଛି କହି ପାରିଲେ ନାହିଁ । ତାଙ୍କର ମନଭିତରେ ଈର୍ଷା ମିଶ୍ରିତ କେତେକେତେ ଅଡ଼ୁଆ ଚିନ୍ତା କଳ୍ପନା ଆସି ଉଦିତ ହେବାକୁ ଲାଗିଲେ ।

କିନ୍ତୁ…ତାଙ୍କ କଥାଗୁଡ଼ିକ ସମ୍ଭବତଃ ଭାର୍ଗବୀକୁ ଆଦୌ ସେତେଦୂର ରୁଚିକର ଲାଗିଲା ନାହିଁ ।

"ମାମୁଁ । ଆପଣ ଦୟାକରି ତରତର ହୋଇ କାହାକୁ ହେଲେ ଶ୍ରେଷ୍ଠ ବୋଲି ଭାବିବେ ନାହିଁ । ସେହି ନୀଳକଣ୍ଠନ୍ ନାମ୍ବିର୍ ସ୍ୱାମୀଙ୍କ ଜଣେ ଭାରି ଉଚ୍ଚସ୍ତରର ବ୍ୟକ୍ତି । ଏଠି ଏହି ବାଲି ଉପରେ ଓ କେଜାଣି ଆଉ କେତେକେତେ ଜାଗାରେ ମୁଁ ତାଙ୍କ ସହିତ ରାତିଦିନ କେତେ କଥାବାର୍ତ୍ତା ହୋଇଛି । ମୋତେ ଖୁବ୍ ଭଲକରି ଜଣାଅଛି ଯେ ତାଙ୍କ ଭିତରେ କଦାପି ଏପରି କୌଣସି ଭାବନା ନ ଥିଲା । ସିଏ ବଞ୍ଚିଥିବା ସମୟରେ, ସିଏ ସମାଧିପ୍ରାପ୍ତି ହେବା ପରେ, କେତେଥର ରାତିରେ ଆଉ ଦିନବେଳେ ମୁଁ ତାଙ୍କ ଘରକୁ ଯାଇଛି…ମାତ୍ର କେବେ କାହାରି ମନରେ ଏପରି ଏକ ବିବାହର କଥା ଆସି ଦେଖାଦେଇଛି ବୋଲି ମୁଁ ଆଦୌ ଜାଣି ପାରିନାହିଁ । ମାତ୍ର – ହଁ ସବୁ କିଛି ବିଧାତାଙ୍କର ବିଧାନ ଅନୁସାରେ ତ ଘଟିଥାଏ । ନିଜ ପରିବାର ସକାଶେ ସିଏ କିଛିହେଲେ ଗୁଡ଼ି ଯାଇ ନାହାନ୍ତି । ତାଙ୍କର ସ୍ତ୍ରୀ ଯାବତୀୟ ସମ୍ପତ୍ତିକୁ ବିକି ଭାଙ୍ଗି ଦୁଇଟି ଝିଅଙ୍କର ବିବାହ କରିଦେଇ ପାରିଛନ୍ତି । ପୁଅମାନେ ସମସ୍ତେ ପାଠ ପଢ଼ୁଛନ୍ତି । ହୁଏତ ଏହି ପରିସ୍ଥିତିରେ ପଡ଼ି ହିଁ ଗୁରୁପତ୍ନୀ ମୋତେ ଜାମାତା ରୂପେ ପାଇବାର କଥାଟିକୁ ଚିନ୍ତା କରି କୋଓ୍ୱିଲମ୍ ସ୍ୱାମୀଙ୍କ ପାଖକୁ ଖବର ପଠାଇଥିବେ ।…"

ଅନନ୍ତନ୍ ନାମ୍ବିର୍ଙ୍କର ମନ ବର୍ତ୍ତମାନ ମଧ୍ୟ ଅଶାନ୍ତ ହୋଇ ରହିଥିଲା ।

"ତୁ ତ ନିଜେ ଯାଇ କୋଓ୍ୱିଲମ୍ ସ୍ୱାମୀଙ୍କୁ କହି ପାରିଥାନ୍ତୁ ।"

"କ'ଣ କହି ପାରିଥାନ୍ତି…?"

"ଯେ ଏହି ସମ୍ବନ୍ଧରେ ତୋ'ର ସମ୍ମତି ନାହିଁ ।"

ଭାର୍ଗବୀ ଚୁପ୍ ହୋଇଗଲା । ଆକାଶର ମଧ୍ୟଭାଗରେ ଜହ୍ନ ଅନେକ ତଳକୁ ଖସି ଆସିଥିଲା । ଥଣ୍ଡା ପବନ ବାଜି ଅନନ୍ତନ୍ ନାମ୍ବିର୍ଙ୍କର ଶରୀର ହଠାତ୍ କମ୍ପି ଉଠିଲା ପରି ହେଲା । ତଥାପି, ତାଙ୍କ ମନଭିତରେ ଏପରି ଗଣ୍ଠି ପଡ଼ିଗଲା ପରି ଲାଗିଲା ଯେ ହାତରେ ବାଜିବା ଚକଟି ମଧ୍ୟ ମୁହଁପାଏ ଆସି ପହଞ୍ଚି ପାରିଲା ନାହିଁ ।

କିଛି ସମୟ ପରେ ଭାର୍ଗବୀ ପ୍ରଥମେ କଥା କହିଲା । ତା' କଣ୍ଠସ୍ୱର ମଧ୍ୟରେ ଗୌରବ ଓ ଗାମ୍ଭୀର୍ଯ୍ୟତାର ମାତ୍ରା ବର୍ତ୍ତମାନ ଆହୁରି ଅଧିକ ହୋଇ ଯାଇଥିଲା ।

"ମାମୁଁ, ଆପଣ ଜାଣନ୍ତି ମୋ' ବାପା କାହିଁକି ମଲେ ?"

ଅନନ୍ତନ୍ ନାୟର୍ ଚମକି ଉଠିଲେ । ସିଏ ତାଙ୍କୁ କ'ଣ ପଚାରୁଥିଲେ ଆଉ ସିଏ ତାଙ୍କ ପ୍ରଶ୍ନଟିର କି ଉତ୍ତର ଦେଉଛି ! —ଏଇ କଥାଟି ଭାବି ସିଏ ଅସ୍ଥିର ହେବାକୁ ଲାଗିଲେ । ତଥାପି 'ମୁଁ ଜାଣିନାହିଁ' ବୋଲି ସଙ୍କେତ ଦେଇ ମୁଣ୍ଡଟିକୁ ହଲାଇଦେଲେ ।

"ପ୍ରାୟ ତିରିଶି ବର୍ଷ ପୂର୍ବେ ଯେତେବେଳେ ଏହି ଘଟଣାଟି ଘଟିଲା, ସେତେବେଳେ ମୋ'ର ଜନ୍ମ ହୋଇ ନଥିଲା । ଅନ୍ୟମାନଙ୍କ ଠାରୁ ଶୁଣିକରି ହିଁ ମୁଁ ସବୁକିଛି ଜାଣିବାକୁ ପାଇଲି । ସେତେବେଳେ ଆପଣଙ୍କର ବୟସ କେତେ ହୋଇଥିବ କହିଲେ ?"

"ସେତେବେଳେ ମୋ' ବୟସ ଷୋଳ ହୋଇଥିବ । ସେହି ଘଟଣାଟି ମୋର ବଡ଼ ଅସ୍ପଷ୍ଟ ଭାବରେ ହିଁ ମନେଅଛି । 'ଶ୍ରବଣ-ଉତ୍ସବ' ସମୟରେ – ହସ୍ତ ନକ୍ଷତ୍ର ଅବସରରେ, ତୁମ ବାପାଙ୍କୁ ତିନି ଚାରିଜଣ ଲୋକ ଉଠାଇ କରି ନେଇ ଆସିଥିଲେ ।"

"ସେତେବେଳେ ସେଠାରେ ଶଙ୍କମ୍ପି ସ୍ୱାମୀ ଆସି ଯେଉଁକଥା କହିଥିଲେ, ଆପଣ ସେକଥା ଶୁଣିଥିଲେ କି ?"

"ଓ ହୋ । ସିଏ କହିଥିଲେ ଯେ ଗୁରୁଙ୍କର ପରୀକ୍ଷା ନେବା ଉଚିତ ନୁହେଁ— ଏତିକି ମୋର ମନେଅଛି । ମାତ୍ର ସେତେବେଳେ ସିଏ ଠିକ୍ କାହିଁକି ଏହି କଥାଟି କହିଥିଲେ, ଆଜିପର୍ଯ୍ୟନ୍ତ ମଧ୍ୟ କେହି ତା'ର କାରଣ ଜାଣିନାହାନ୍ତି ।"

ଭାସୀ ହସିଲା । ସେହି ହସଟି ଭିତରେ ବେଦନା ଭରି ରହିଥିଲା,—ଅନନ୍ତନ୍ ନାୟର୍ଙ୍କୁ ସେହିପରି ମନେହେଲା ।

"ହଁ, ସେକଥା କାହାରିକୁ ଜଣାନାହିଁ, ମାଆକୁ ମଧ୍ୟ ଜଣାନାହିଁ । ମୁଁ ପିଲାଦିନେ ଏକଥା ମାଆପାଖରୁ ଏବଂ ଅନ୍ୟ ଲୋକଙ୍କ ପାଖରୁ ମଧ୍ୟ ଶୁଣିଥିଲି । ସମସ୍ତେ କହିଲେ ଯେ ଶଙ୍କମ୍ପି ସ୍ୱାମୀ ଆସିଲେ ଓ ସେହି କଥାଟି କହିଲେ, ମାତ୍ର ସେତିକି ବ୍ୟତୀତ କେହିହେଲେ ଜାଣି ନଥିଲେ ଯେ ତାଙ୍କର ସେଭଳି କହିବା ପଛରେ ପ୍ରକୃତରେ କ'ଣ କାରଣ ରହିଥିଲା । ···ମାତ୍ର···ଆଧ୍ୟାତ୍ମିକ ମାର୍ଗରେ ଧୀରେଧୀରେ ଅଗ୍ରସର ହେଉଥିବା ମୋର ବାଳକ – ହୃଦୟରେ ସେହି ପ୍ରଶ୍ନଟି କେବଳ ଯେ ଗୋଟିଏ ଗୂଢ଼ ରହସ୍ୟ ହୋଇ ରହିଲା ତାହା ନୁହେଁ, ମୋର ମନକୁ ତାହା ସବୁବେଳେ ସତେଅବା କୋରିଦେବାରେ ମଧ୍ୟ ଲାଗିଥିଲା ଏବଂ ଏପରି ମନେ ହେଉଥିଲା ଯେ ଠିକ୍ ଏହି କଥାଟି ମଧ୍ୟରେ ହିଁ ଜ୍ଞାନ ମାର୍ଗରେ ଚାବିକାଠି ପ୍ରଚ୍ଛନ୍ନ ହୋଇ ରହିଛି ।"

ଅନନ୍ତନ୍ ନାମ୍ବୁର୍ କ'ଣ କହିବେ ଠିକ୍ କରି ପାରିଲେ ନାହିଁ । ସିଏ ଖାଲି ସେହିଭଳି ଅନାଇ ରହିଥାନ୍ତି । ତାଙ୍କର ସ୍ମରଣ ହେଲା, ଆପଣାର ବାଲ୍ୟକାଳରେ ସିଏ ନିଜେ ମଧ୍ୟ କେତେଥର ଭାବିଥିଲେ ଯେ ଶଙ୍କମ୍ପି ସ୍ୱାମୀ ସେଦିନ ପ୍ରକୃତରେ କାହିଁକି ସେପରି ଗୋଟିଏ କଥା କହିଥିଲେ । ତା'ପରେ ଲୌକିକ ଜୀବନର ନାନା ଗଣ୍ଠି ମଧ୍ୟରେ ଓ ଅଡ଼ୁଆ ଭିତରେ ଯେତେବେଳେ ତାକୁ କଷ୍ଟିରେ ପକାଇ ଦେଖିବାକୁ ଆରମ୍ଭ କଲେ, ସେତେବେଳେ ସାଧାରଣ ଜୀବନର ବାହାରେ ଥିବା ସ୍ମୃତିଗୁଡ଼ିକ ମଧ୍ୟରେ ଏକାକୀ ସଞ୍ଚରଣ କରିବା ତାଙ୍କ ପକ୍ଷରେ ଆଉ ସମ୍ଭବ ହେଲାନାହିଁ । ପୁଣି, ଯେତେବେଳେ କାତ୍ୟାୟିନୀ ତାଙ୍କୁ ଏକୁଟିଆ ଛାଡ଼ି, ଚାଲିଗଲା, ସେତେବେଳେ କିଛିଦିନ ପାଇଁ ସେ ପୁନ୍ତୁରେ ଆଶ୍ରମରେ ଯାଇ ଧ୍ୟାନ ପ୍ରଭୃତି ମଧ୍ୟ କରୁଥିଲେ । ସେତେବେଳେ ମଝିରେ ମଝିରେ ସେହି ସ୍ମୃତି ଏକ ପ୍ରଶ୍ନଚିହ୍ନ ରୂପେ ଆସି ତାଙ୍କ ସମ୍ମୁଖରେ ଦଣ୍ଡାୟମାନ ହେଉଥିଲା । ମାତ୍ର ତାହାର କୌଣସି ଉତ୍ତର ନ ମିଳୁଥିବାରୁ ତାହା ପୁଣି ଆପଣାଛାଏଁ ବିଲୀନ ବି ହୋଇ ଯାଉଥିଲା··· ବାସ୍··· ।

ମାତ୍ର ଏହି ଭାସୀ ତ···?

ନିଜ ବାପର ପୁଅ ନା ! ତଥାପି ସିଏ ଏହି କଥାଟିକୁ ନିଜ ଜୀବନର ବ୍ରତରେ ପରିଣତ କରି, ଆପଣା ସାଧନାର ଆଧାର କରି ଅଗ୍ରସର ହେବାରେ ଲାଗିଛି, ଏକଥା ଜାଣି ଅନନ୍ତନ୍‌ନାମ୍ବୁର୍ ମୁଗ୍ଧ ହୋଇପଡ଼ିଲେ ।

ତା'ର ମୁଖମଣ୍ଡଳକୁ ଅବଲୋକନ କଲେ ମନ ହେଉଥିଲା ଯେ ବର୍ତ୍ତମାନ ସିଏ ତାଙ୍କୁ ଆଉ ଅଧିକ କୌଣସି କଥା କହିବାକୁ ଇଚ୍ଛା କରୁନାହିଁ । ତାଙ୍କର ମନକୁ ଏଇଟା କେମିତି ମନେହେବାକୁ ଲାଗିଲା । ତାଙ୍କର ମନେ ପଡ଼ିଗଲା ଯେ ସିଏ ତାଙ୍କ ପ୍ରଶ୍ନର ସିଧା ଉତ୍ତରଟିକୁ ଏପର୍ଯ୍ୟନ୍ତ ଦେଇନାହିଁ ।

ମାତ୍ର, ଅଳ୍ପ କିଛି ସମୟ ପୂର୍ବରୁ ସିଏ ତ ତାଙ୍କୁ ପଚାରିଥିଲେ ଯେ ସିଏ ଆପଣାର ଗୁରୁ କୋଓ୍ୱଲମ୍ ସ୍ୱାମୀଙ୍କୁ କାହିଁକି ନକହିଲା ଯେ ଏହି ସମ୍ବନ୍ଧଟି ତା'ର ମୋଟେ ପସନ୍ଦ ହେଉନାହିଁ । ସେତିକିବେଳେ ହିଁ ସେ ଆପଣାର ବାପାଙ୍କର ସେହି କଥାଟିକୁ ସ୍ମରଣ କରାଇ ଦେଇଥିଲା, ଯେତେବେଳେ ଶଙ୍କମ୍ପି ସ୍ୱାମୀ ଆସି କହିଥିଲେ, "ଆପଣା ଗୁରୁଙ୍କର କେବେହେଲେ ପରୀକ୍ଷା ନେବା ଉଚିତ ନୁହେଁ ।" ଏହି କଥାଟିରେ ହିଁ ତ ତାଙ୍କର ସେହି ପ୍ରଶ୍ନଟିର ଉତ୍ତର ନିହିତ ହୋଇ ରହିଛି । ଏବଂ ଏହାଦ୍ୱାରା ସିଏ ପ୍ରକୃତରେ କେତେ ସବଳ ଉତ୍ତରଟିଏ ନ ଦେଇଛି ।

ଅନନ୍ତନ୍‌ନାମ୍ବୁର୍ ଲଜ୍ଜିତ ଅନୁଭବ କଲେ । ସେ ତାଙ୍କ କନ୍ୟା ସହିତ ବିବାହ କରିବନାହିଁ – ଏହିପରି ଏକ ପ୍ରବଞ୍ଚନାରେ ପଡ଼ିସିବାର ସ୍ୱାଥପୂର୍ଣ୍ଣ ଅନୁଭବ ଏତେବେଶୀ

ବୁଝି ପାରିଲା ଯେ ସେ ଏକଥାଟି ପଚାରିବାକୁ ଇଚ୍ଛା କରୁଥିଲେ,—'ତୁ ଯେ ଆପଣାର ସମ୍ପୂର୍ଣ୍ଣ ଜୀବନଟିକୁ ସମର୍ପଣ କରି ଆଧ୍ୟାତ୍ମିକ ମାର୍ଗରେ ଚାଲୁଛୁ, ସେହି ଦୃଢ଼ ସଙ୍କଳ୍ପଟିର ବିରୁଦ୍ଧରେ ଯିବାକୁ ପଡ଼ିଲେ ସୁଦ୍ଧା ତୁ କାହିଁକି ପ୍ରଶ୍ନ କଲୁନାହିଁ ?" ତଥାପି, ସିଏ ଯେତେବେଳେ ସ୍ୱୟଂ କହିବାକୁ ଯାଉଛୁ, ସେତେବେଳେ ସବୁକଥା ତାହାର ତୁଣ୍ଡରୁ ହିଁ ଶୁଣି ନିଆଯାଇପାରେ, –ଏହିପରି ଏକ ପିଲାଳିଆ ନିରର୍ଥକ ଇଚ୍ଛା ତାଙ୍କର ଅନ୍ତର ଭିତରେ କାର୍ଯ୍ୟ କରିବାରେ ଲାଗିଥିଲା । ଏଥିରେ ତାଙ୍କୁ ନିଜକୁ ମଧ୍ୟ ଭାରି ଆଶ୍ଚର୍ଯ୍ୟ ଲାଗିଲା । ସେ ତାକୁ ପଚାରିଲେ, "ଭାସୀ, ସଚ୍ଚିଦାନନ୍ଦ ସ୍ୱାମୀ କାହିଁକି ସେପରି କହିଲେ ? ସେକଥା ମୁଁ ବି କ'ଣ ଜାଣି ପାରିବି କି ?"

ସିଏ କିଛି ଉତ୍ତର ଦେଇ ନଥିଲା । ତା'ର ମୁଖମଣ୍ଡଳ ଉପରେ ଉଙ୍କିମାରି ଉଠୁଥିବା ଭାବନାଗୁଡ଼ିକୁ ଅନନ୍ତନ୍‌ନାୟର୍ ମୋଟେ ଠଉରାଇ ପାରୁନଥିଲେ । ସେ କେବଳ ସେମିତି ବସି ରହିଲେ ।

"ଆପଣ ସେକଥା ଜାଣିବାରେ ମୋ'ର କୌଣସି ଆପତ୍ତି ନାହିଁ···ମାତ୍ର··· ଏଇଟା ଜାଣିବା କ'ଣ ଏତେ ଜରୁରୀ ? ମୁଁ ବୁଝିପାରୁଛି ଯେ ଯାହାକିଛି ଜରୁରୀ ଥିଲା ସେସବୁ କଥା ମୁଁ କହିଦେଇ ସାରିଛି ।"

ତା'ର କଥାକୁ କାଟିବାକୁ ଯାଇ ସିଏ କହି ପକାଇଲେ, "ନା ଭାସୀ ! ତୁମକୁ ମୋତେ ଏହି କଥାଟିକୁ କହିବାକୁ ହିଁ ପଡ଼ିବ ।"

କିଛି ସମୟ ପର୍ଯ୍ୟନ୍ତ କେହି କିଛି କହିଲେନାହିଁ । ତୁଳାପରି କେତୋଟି ମେଘ ଜହ୍ନକୁ କେତେ ସମୟ ପର୍ଯ୍ୟନ୍ତ ଘୋଡ଼ାଇ ରଖିଥିଲେ, ପୁଣି ଅପସରି ଯାଇ ଭାସି ଯିବାକୁ ଲାଗିଲେ ।

"ମାମୁଁ··· । ସେ କଥାଟି ଜାଣିବାଲାଗି ମୋତେ ଅନେକ କଷ୍ଟ କରିବାକୁ ପଡ଼ିଲା । ବାପାଙ୍କର ପୁରୁଣା ତାଳପତ୍ର ପୋଥି ଓ ପୁସ୍ତକ ପ୍ରଭୃତିକୁ ବେଶ୍ କେତେଦିନ ଯାଏ ଓଲଟପାଲଟ କରିବାକୁ ପଡ଼ିଲା । ବାପାଙ୍କର ଗୁରୁ କିଏ ଥିଲେ, କେବଳ ଏତିକି କଥା ଜାଣିବାକୁ ମଧ୍ୟ ବହୁତ ସମୟ ଲାଗିଗଲା । ତା'ପରେ ଯାଇ ତାଙ୍କର ଗୁରୁ କିଏ ଥିଲେ ସେକଥା ଜଣାପଡ଼ିଲା । ତା'ପରେ ଜାଣିବାକୁ ମିଳିଲା ଯେ ବାପା ମରିବାର ଗୋଟିଏ ବର୍ଷ ପୂର୍ବରୁ ହିଁ ସେ ସମାଧି ପ୍ରାପ୍ତ ହୋଇଯାଇଥିଲେ । ମୁଁ ତାଙ୍କର ଆଶ୍ରମ ଖୋଜି ଖୋଜି କେତେ ବୁଲିଲି । ଶେଷରେ କୁଟ୍ରାଲମ୍‌ର ଝରଣା ପାଖରେ ଜଙ୍ଗଲ ଭିତରେ ଗୋଟିଏ ଅନ୍ଧାର ଗୁମ୍ଫାରେ ବାପାଙ୍କ ଗୁରୁଙ୍କର ଆଉଜଣେ ଶିଷ୍ୟ, ଜଣେ ଋଷିଙ୍କର ଦର୍ଶନ ଲାଭ କରି ପାରିଲି । ବାପାଙ୍କୁ ଘରଯାଏ ଉଠାଇ ନେଇ ଯାଇଥିବା ବ୍ୟକ୍ତିଙ୍କ ମଧ୍ୟରେ ସିଏ ବି ଜଣେ ଥିଲେ । ମୁଁ ତାଙ୍କଠାରୁ ହିଁ ସବୁ କଥା ଜାଣିବାକୁ ପାଇଲି ।"

ପଲଓ୍ୱାଗାଡ଼ି ଆଉ ଦୁଇ ତିନିଜଣ ଲୋକଙ୍କର ନିଜଭିତରେ କଥାବାର୍ତ୍ତା ହୋଇ ଆସୁଥିବାର ଶବ୍ଦ···ଗୋଟିକ ପରେ ଗୋଟିଏ ଦୁଇଟି ମୋଟରଗାଡ଼ି ସର୍‌ସର୍ କରି ବାହାରି ଚାଲିଗଲେ, ଦୂରେ ଉପୁଡ଼ି ଯାଇଥିବା ଦୁଇଟି କୁକୁର ପରସ୍ପର ଭିତରେ ଲଢ଼ୁଥିବାର କୋଳାହଳ······

କିଛି ସମୟପରେ ପୁଣି ସେହି ନୀରବତା······ମନ୍ଥର ଭାବରେ ବୋହି ଯାଉଥିବା ପବନ ମଧ୍ୟରେ କେବଳ ନଡ଼ିଆଗଛର ପତ୍ରର ଗୁଡ଼ିକର ହିଁ ସିରସିର ଶବ୍ଦ ଶୁଣିବାକୁ ମିଳୁଥିଲା ।

ସ୍ୱାମୀ ଦୀର୍ଘନିଶ୍ୱାସ ପକାଇଲା ।

"ବାପାଙ୍କୁ କୁଣ୍ଡଳିନୀ ଯୋଗ ଓ ସିଦ୍ଧ ବୈଦ୍ୟର ପ୍ରକ୍ରିୟା ପ୍ରଭୃତି ସବୁକିଛି ଶିକ୍ଷା ଦେଇଥିଲେ କୁଟ୍ଟାଲମ୍‌ର ଏହି ସ୍ୱାମିଜୀ । ବାପାହିଁ ତାଙ୍କର ଅତ୍ୟନ୍ତ ବିଶ୍ୱାସଭାଜନ ସର୍ବ-ପ୍ରଥମ ଶିଷ୍ୟ ଥିଲେ । ସିଏ ଦିନେ ବାପାଙ୍କୁ ପାଖକୁ ଡାକି କହିଲେ, 'ବାବୁରେ,...ମୁଁ ଆଜି ରାତିରେ ସମାଧି ଗ୍ରହଣ କରିବି । କିନ୍ତୁ କେବଳ ତୋତେ ହିଁ ଶିଖାଇ ଦେଇଯାଉଛି । ଇଏ ବଡ଼ ରହସ୍ୟ କଥା । ମୁଁ ସମାଧିରେ ପ୍ରବେଶ କରିବାପରେ ଯଦି କେବେ ମୋତେ କାହାର କୌଣସି ଅତ୍ୟନ୍ତ ଆବଶ୍ୟକ କଥା ପଚାରିବାର ଥାଏ, ତେବେ ମୁଁ ତାହାର ବାଟ ବତାଇ ଦେଉଛି···ମାତ୍ର, ସେପରି ଗୁରୁତର ଆବଶ୍ୟକତା ନ ପଡ଼ିଲେ କଦାପି ଏହାର ପ୍ରୟୋଗ କରିବା ଉଚିତ ନୁହେଁ··· ।' ଏହିପରି ସତର୍କବାଣୀ ଶୁଣାଇ ସେହି ଗୁରୁଜଣକ ବାପାଙ୍କ କାନରେ ଉପଦେଶ ଦେଇ ମନ୍ତ୍ର ଓ ସାଧନାପଦ୍ଧତି ଆଦି ସବୁ ବୁଝାଇ ଦେଲେ । ସ୍ୱାମିଜୀ ସମାଧିମଗ୍ନ ହେବାପରେ ବାପା କେତେଦିନ ଯାଏ ଆପଣା-ମନକୁ ବେଶ୍ ଅଟକାଇ ରଖିଥିଲେ...ମାତ୍ର । ଭାଗ୍ୟ କ'ଣ ସତେ କାହାକୁ ଛାଡ଼ିବ ? ଗୁରୁଙ୍କର କଥା ପ୍ରକୃତରେ କେତେଦୂର ସତ୍ୟ ?—ବାପାଙ୍କ ମନରେ ଶଙ୍କାର ସାନ ଅଗ୍ନିକଣାଟିଏ ଜନ୍ମଲାଭ କଲା । ସେହି କଣାଟି ବଢ଼ି ବଢ଼ି ଶେଷକୁ ବିଶ୍ୱରୂପ ଧାରଣ କଲା ଏବଂ ସମସ୍ତ ହୃଦୟ ଭିତରେ ଅଚିରେ ଏକ ଅଗ୍ନି କୁଣ୍ଡର ରୂପ ଧାରଣ କରି ଜଳିବାକୁ ଲାଗିଲା । ସେହିଦିନ ବାପା ଏଠି ପାଖରେ ଥିବା ମୁଲକନ ପାହାଡ଼ ଉପରେ ଥିବା ଗୋଟିଏ ଅନ୍ଧାର ଗୁମ୍ଫା ଭିତରକୁ ଯାଇ ବସିଗଲେ ଏବଂ ଗୁରୁଙ୍କର ଉପଦେଶ ଅନୁସାରେ ଅତ୍ୟନ୍ତ ତୀବ୍ରତାର ସହିତ— ପରୀକ୍ଷା ସ୍ୱରୂପ ହିଁ ସେସବୁକୁ କରି କରି ଦେଖିଲେ— । ତା'ପରେ ଯାହା ଘଟିଲା ସେ କଥା ତ ସମସ୍ତେ ଜାଣିଛନ୍ତି ।"...

ଅନନ୍ତନ୍‌ନାୟରଙ୍କ ମନରେ ପୁନର୍ବାର କେତେ କ'ଣ ଉଦ୍‌ବେଳନ ପରି ଆରମ୍ଭ ହୋଇଗଲା । ସେ ଅନୁଭବ କରିବାକୁ ଲାଗିଲେ, ସତେଯେପରି ନୂଆ ନୂଆ କେତେ ଶଙ୍କା ଫଣା ବିସ୍ତାର କରି ଫୁଁ ଫୁଁ ଶବ୍ଦ କରି ତାଙ୍କ ଭିତରେ ଦଉଡ଼ିବାରେ ହିଁ ଲାଗିଛନ୍ତି ।

ସ୍ୱାମୀ ପୁଣି କହିବାକୁ ଆରମ୍ଭ କଲେ, "ଏହି କାରଣରୁ ହିଁ ଆପଣଙ୍କୁ ଗୋଟିଏ କଥା ଭଲ କରି ବୁଝିନେବାକୁ ପଡ଼ିବ··· । ବିଶ୍ୱାସ, ଅନ୍ଧ ବିଶ୍ୱାସ, ଏହାହିଁ ହେଉଛି ଆମ ମାର୍ଗଟିର ମୂଳାଧାର— । ଏଥିରେ ଯଦି ଏତେ ଟିକିଏ ମଧ୍ୟ ଭୁଲ ହୋଇଯିବ, ତେବେ ସେଥିରୁ ଜାଣିବାକୁ ହେବ ଯେ ବର୍ତ୍ତମାନ ମଧ୍ୟ ପରିପକ୍ୱତା ଆସିନାହିଁ, ପୂର୍ଣ୍ଣତା ବି ଆସିନାହିଁ । ଆମର ଅଭିଧାନ ଅନୁସାରେ ଏହାହିଁ ତାହାର ଅର୍ଥ ହେବ । ଏଣୁ ମୋ' ବାପାଙ୍କ ଜୀବନର ଅନ୍ତିମ ଘଟଣା ହିଁ ମୋ' ପାଇଁ ସର୍ବଦା ଏକ ସତର୍କବାଣୀ ହୋଇ ରହିଛି । ଆମଲାଗି ଏସବୁ ତର୍କ କରି ବିଜୟ ଲାଭ କରିବାର ଗୋଟିଏ ଗୋଟିଏ ଦାର୍ଶନିକ ବା ବୈଜ୍ଞାନିକ ପ୍ରଶ୍ନ ହୋଇ ରହିଥିଲା । ଏସବୁ ସାମୂହିକ ପ୍ରକ୍ରିୟାର ନିୟମ ଶୃଙ୍ଖଳର ଅଧୀନରେ କଦାପି ଆସିବ ନାହିଁ । ପ୍ରତ୍ୟେକ ଆତ୍ମାକୁ, ଆପେ ଆପେ, ଏକାନ୍ତ ଭାବରେ ସ୍ୱାନୁଭବ ଦ୍ୱାରା ହିଁ ଏହାର ପରିଚୟ ଲାଭ କରିବାକୁ ହୋଇଥାଏ । ଏସବୁ ତଥ୍ୟ ବିଷୟରେ କେବଳ କିଛିଟା ଇଙ୍ଗିତ ହିଁ କରିଯାଇ ପାରିବ, ମାତ୍ର ସେତିକିକୁ ଛାଡ଼ିଦେଲେ, ସେଗୁଡ଼ିକୁ ସାଧାରଣ ଜନସମୂହ ମଧ୍ୟକୁ ଟାଣି, ବାଦବିବାଦ କିମ୍ବା ତର୍କବିତର୍କ କରି, କାହା ଉପରେ ଜବରଦସ୍ତି ଲଦି ଦିଆଯାଇ ପାରିବନାହିଁ । ବୁଝାଇ ବି ଦିଆଯାଇ ପାରିବନାହିଁ । ତେଣୁ କୋଓ୍ୱେଲମ୍ ସ୍ୱାମୀଙ୍କ ଉପରେ ଅବିଶ୍ୱାସ କରିବାର କଥାଟିକୁ ମନରେ ମଧ୍ୟ ଆଣିବା କଦାପି ଉଚିତ ହେବନାହିଁ । ଏକଥା ସତ ଯେ ନିଜର ଅପରିପକ୍ୱତା ହେତୁ ମୋ' ମନରେ ଚଞ୍ଚଳତା ଅବଶ୍ୟ ରହିଛି, ତଥାପି ଯଦି ସେ ମୋତେ କୌଣସି କଥା କହିଛନ୍ତି, ତେବେ ତାହାକୁ ଅବଶ୍ୟ ଅନୁସରଣ କରିବାକୁ ପଡ଼ିବ···ଅବଶ୍ୟ ଅନୁସରଣ କରିବାକୁ ପଡ଼ିବ । ମାତ୍ର ମୁଁ ଏକଥା ମଧ୍ୟ ଭଲ କରି ଜାଣିଛି ଯେ ସୌନ୍ଦର୍ଯ୍ୟ, ପଦ ଓ ଧନ ପ୍ରଭୃତି କାରଣରୁ ମୋର ମାଆ ଏହି ସଂବନ୍ଧଟି ସକାଶେ ପୂର୍ଣ୍ଣମନରେ କଦାପି ଆପଣାର ସମ୍ମତି ଦେବେ ନାହିଁ । ମାତ୍ର, ସେଥିଲାଗି ଏହି ବିବାହ ମଧ୍ୟ କଦାପି ଅଟକି ଯିବନାହିଁ, କାରଣ ମୋର ଆଧ୍ୟାତ୍ମିକ ମାର୍ଗରେ ମୁଁ ଏହାକୁ ଏକ ମାଇଲଖୁଣ୍ଟ ରୂପେ ଗ୍ରହଣ କରି ନେଇଛି ।

ଷ୍ଟେସନ୍ ମାଷ୍ଟର୍‌ଠାରୁ ବିଦାୟ ନେଇ ଯେତେବେଳେ ଅନନ୍ତନ୍ ନାୟର୍ ସେଠୁ ଫେରିଲେ, ସେତେବେଳେ ଫିରଙ୍ଗି ଘଣ୍ଟାରେ ଦୁଇଟା ବାଜିଥିଲା । ବର୍ତ୍ତମାନ ପର୍ଯ୍ୟନ୍ତ ଦବିକରି ରହିଥିବା ରୋଗର କ୍ଳେଶଗୁଡ଼ାକ ଧୀରେ ଧୀରେ ତାଙ୍କ ଉପରେ ଆପଣାର ପ୍ରଭାବ ଦେଖାଇବାକୁ ଆରମ୍ଭ କଲେ ।

ହୁଁ…ସ୍ତ୍ରୀକୁ ଦେଖି ସେ ଯେତେବେଳେ କଥା କହିବାକୁ ଆରମ୍ଭ କଲେ, ସେତେବେଳେ ତାଙ୍କ ମନ ଭିତରେ ଅକାରଣରେ ଗୋଟିଏ କାମନା ତରଙ୍ଗାୟିତ ହେବାକୁ ଆରମ୍ଭ କରିଥିଲା । ସେହି କାମନାକୁ ଅଭିଶାପ ଦେଇ ଦେଇ ସେ ଧୀରେ ଧୀରେ ପାଦ ପକାଇ ସେଠାରୁ ହଟି ଆସିବାକୁ ଆରମ୍ଭ କଲେ ଓ ବିଶ୍ରାମ କରୁଥିବା ସିଟି-ବସ୍ ଗୁଡ଼ିକ ଭିତରୁ ଗୋଟିଏ ଅବଦମିତ ଶବ୍ଦ—ପୁରୁଷ ଏବଂ ସ୍ତ୍ରୀ ମାନଙ୍କର ମିଶ୍ରିତ କଣ୍ଠସ୍ୱର-ମାନ ଶୁଣାଯିବାକୁ ଲାଗିଲା ।

"ଆରେ ରୁନ ପଡ଼…"

"ଏଇଟା ତ ଗୋଟାଏ ବଳଦ…" ଆଉ ଫୁସ୍ ଫୁସ୍ ଶବ୍ଦ,

ଅନନ୍ତନ୍ ନାୟର୍ ଆଉ ଅଟକିଲେ ନାହିଁ ।

ମଣିଷକୁ ପୁଣି କେତେ ପ୍ରକାରର ଭୋକ ନଥାଏ !…

ପେଟର ଭୋକ…

ଚମଡ଼ାର ଭୋକ…

ଜ୍ଞାନର ଭୋକ ..

ଏବଂ ଏହିସବୁ ଭୋକକୁ ଶାନ୍ତ କରିବାଲାଗି ପୁଣି କେତେ କେତେ ପ୍ରକାରର ଉପାୟ…। ପ୍ରତ୍ୟେକ ମଣିଷ ଆପଣା ଆପଣାର ଢଙ୍ଗରେ ଆପଣାର ଭୋକଟିକୁ ଶାନ୍ତ କରିବାରେ ଲାଗିଥାଏ । ଏସବୁ କଥା ଚିନ୍ତା କରି ତାଙ୍କର କ୍ଳାନ୍ତ-ପରିଶ୍ରାନ୍ତ ପାଦଗୁଡ଼ାକ ଘରଆଡ଼କୁ ଅଗ୍ରସର ହୋଇ ଯାଉଥିଲେ ।

ସିଏ ଯାଇ ଉତ୍ତରରେ ଥିବା ବୀଥିଟିରେ ଢୁକି ପଡ଼ିଲେ, ନିଦ୍ରାରେ ନିମଗ୍ନ ହୋଇ ଜାକଜୁକ ହୋଇ ରହିଥିବା ଘରଗୁଡ଼ାକ ଭୂତ ଝାପ୍‌ସା ଦେଖା ଯାଉଥିଲା । ଗୋଟିଏ ହେଲେ ଘରେ ଆଲୁଅ ଜଳୁ ନଥିଲା । ମାତ୍ର ପିଲାମାନଙ୍କର କାନ୍ଦିବା ଶବ୍ଦ, କେହି

କାଟିବାର ଶବ୍ଦ, ଘୁଆ ଭାଙ୍ଗୁଥିବାର ଶବ୍ଦ, ପାଇପ୍‌ରୁ ପାଣି ବାହାରୁ ଥିବାର ଶବ୍ଦ,— ମଝିରେ ମଝିରେ ଏହିସବୁ କେତୋଟି ଶବ୍ଦ ବେଶ୍ ଶୁଣା ଯାଉଥିଲେ ।

ବହି ଯାଉଥିବା ପବନ ଭିତରେ ମଲ୍ଲୀ ଫୁଲର କୋମଳ ଗନ୍ଧ···

ନୀଳ ଆକାଶ ···

ଗୋଲକାର, ଶୀତଳ କିରଣଗୁଡ଼ିକୁ ବିକ୍ଷିପ୍ତ କରିଦେଇ ଆନନ୍ଦିତ ହେଉଥିବା ଜହ୍ନ···

ଅନନ୍ତନ୍ ନାୟରଙ୍କର ଅନ୍ତର୍ମନ ଭିତରେ କିଛି ସ୍ପନ୍ଦନ । ତାଙ୍କ ବୟସରେ ଏତିକି କହିବାକୁ ପଡ଼ିବ ଯେ ତାଙ୍କର ଯେତେଗୁଡ଼ିଏ ଶୋକ ରହିଛି, ସେଗୁଡ଼ିକରୁ କୌଣସିଟିକୁ ଶାନ୍ତ କରିବାଲାଗି ବର୍ତ୍ତମାନ ଅନ୍ନ ହିଁ ନାହିଁ—ଏହିପରି ଅବସ୍ଥା...

ଏମିତି ହୋଇ ମଧ୍ୟ କୌଣସି ପ୍ରକାରେ ଜୀବନଟାକୁ କଟାଇ ଦେବାର ଅବସ୍ଥା···

ଏହିସବୁ ଘର ଭିତରେ ବର୍ତ୍ତମାନ କ'ଣ ହେଉଥିବ ? - ତାଙ୍କର ମନ ଭିତରେ ଏହିପରି ଏକ ବିଚିତ୍ର ପ୍ରଶ୍ନ ଜାଗିଉଠିଲା । ଦିନର ପରିଶ୍ରମ ଭିତରେ ଆପଣାକୁ ଫୁଟାଇ ଦେଇ ପାରୁଥିବା ନିଦ ସେଠାରେ ବିରାଜମାନ କରୁଥିବ···?

ଯଦି ନ କରୁଥିବ, ତେବେ ମାଆ, ବାପା, ଭାଇ, ପିଲାମାନେ - ସମସ୍ତେ ଗୁରିପାଖେ ପଡ଼ିପଡ଼ି ଶୋଇଥିବା ସମୟରେ ଲୁଚି, ଲୁଚି, ଜାଗ୍ରତ ହେଉଥିବା ଶୋକକୁ ପରସ୍ପର ଶାନ୍ତ କରିନେବାର କୁକର୍ମ···। ଛି ଛି କରି ଦିନମାନ ଅଭିନୟ କରୁଥିବା ଲୋକମାନେ । ଆଦୌ ବିଶ୍ୱାସ ହେଉ ନଥାଏ କି ଏହି ବିଲେଇ ମଧ୍ୟ ଦୁଧକୁ ସତକୁ ସତ ପିଇନେଇ ପାରିବ । ଏହି ଜିସମର ଲୋକମାନେ ହିଁ ରାତି ପାହିଯିବା ପରେ ଘରେ ସେମାନଙ୍କ ସହିତ ଏକାଠି ବାସ କରୁଥିବା ଲୋକମାନଙ୍କର ସାମନାରେ ଯେତେବେଳେ ଆଖି ଖୋଲନ୍ତି । ସେତେ-ବେଳେ ସେମାନଙ୍କର ମନରେ କ'ଣ ସତରେ କୌଣସି ସଙ୍କୋଚ ହୁଏନାହିଁ ?···

ଏସବୁ କିପରି ବିପରୀତ କଳ୍ପନା···। ସଙ୍କୋଚ ପୁଣି କାହିଁକି ହେବ ? ଇଏ ତ ସମାଜଦ୍ୱାରା ସ୍ୱୀକୃତ ହୋଇ ରହିଥିବା ଗୋଟିଏ କଳା, ଯେଉଁ ବାଟରେ କି ସବୁକିଛି ଲୁହାଇ ଦିଆଯାଇ ପାରିବ ।

ଅନନ୍ତନ୍ ନାୟର୍ ଭାରି ଆଶ୍ଚର୍ଯ୍ୟ ହୋଇ ପଡ଼ିଲେ । ତାଙ୍କର ମନରେ କେତେଦିନ ହେଲା ଯେପରି କୌଣସି ପ୍ରକାରର ସ୍ପନ୍ଦନ ହୋଇ ନଥିଲା,-ଏହିସବୁ ବିପରୀତ ପ୍ରକାରର ସ୍ପନ୍ଦନ । ଆଜି ମଧ୍ୟରାତି ବ୍ୟତୀତ ହୋଇଯିବା ପରେ ତାଙ୍କର ଅନୁମତି ନନେଇ ମଧ୍ୟ ଏଗୁଡ଼ାକ କାହିଁକି ଉତ୍ପନ୍ନ ହୋଇ ଆସୁଛି ?

ଆଜି ସନ୍ଧ୍ୟାବେଳେ ଶାସ୍ତ୍ରୀଙ୍କ ମନ୍ଦିରରେ କାତ୍ୟାୟିନୀ ଉପରେ ତାଙ୍କର ଯେଉଁ ଆଖି ପଡ଼ିଯାଇଥିଲା, ବୋଧ ହୁଏ ସେଇଥି ପାଇଁ ·· ? କ'ଣ ପ୍ରକୃତରେ ଏଇ କଥା ? ତାଙ୍କୁ ଦେଖିବାକୁ ପାଇଥିବାରୁ କ'ଣ ତାଙ୍କର ବାସନାଗୁଡ଼ାକ ବର୍ତ୍ତମାନ ଜାଗ୍ରତ ହୋଇ ଆସି ତାଙ୍କୁ ଏପରି ପୀଡ଼ା ଦେବାରେ ଲାଗିଛି ?

ନାହିଁ ତ ଜାଗ୍ରତ ରହିଥିବା ପ୍ରଜ୍ଞା କ'ଣ ଆବେଶରେ ପଡ଼ିଯାଇ ଟଳଟଳ ହୋଇ ଫୁଟିବାରେ ଲାଗିଛି ?

ଆପଣାର ହୃଦୟ ଭିତରେ ସେ ଆତ୍ମ ପରୀକ୍ଷଣ କରିବାକୁ ଲାଗିଲେ । ସିଏ ଯାହା ହୋଇଥାଉ ପଛକେ, ଏହିସବୁ ସାନ ସାନ ଘରେ କ'ଣ ସବୁଦିନ ଏହିପରି ଶାନ୍ତିମୟ ଜୀବନ ବ୍ୟାପ୍ତ ହୋଇ ରହିଛି ? ତେବେ କେବଳ ତାଙ୍କର ଦାମ୍ପତ୍ୟ ଜୀବନଟାରେ କ'ଣ ଏପରି ବଡ଼ ବିପଦଟାଏ ଆସି ପହଞ୍ଚି ଯାଇଛି ? ତାଙ୍କର ଜୀବନପଥ ସତେ ଯେପରି କେତେ-କେତେ ପ୍ରକାରେ ଦିଗ୍‌ଭ୍ରାନ୍ତ ହୋଇ ବଙ୍କା ହୋଇ ଯାଇଛି··· । ମନରେ ଶାନ୍ତି ଅପସାରିତ ହୋଇ ଯାଇଛି··· । କେବଳ ତାଙ୍କର ଜୀବନରେ ହିଁ ଏସବୁ କଥା କାହିଁକି ଘଟିଲା···?

ଏଇ ଷାଠିଏ ବର୍ଷର ଚଉଦଟା ଭିତରେ ମଧ୍ୟ କି ବୈରାଗ୍ୟ ଆସି ପଶିଗଲାଣି ? ତାଙ୍କ ନିଜ ଭିତରେ ଯେ ଏପରି ବୈରାଗ୍ୟ ନାହିଁ, ସେକଥା ବା କିଏ କହି ପାରିବ ? ଯଦି ସେ ଏପରି ଜଣେ ବ୍ୟକ୍ତି ହୋଇଥାନ୍ତେ, ଯାହାର ବାସନାଗୁଡ଼ିକ ଯେଉଁ ଯେଉଁ ଦିଗରୁ ଆକର୍ଷଣ ଆସୁଥାନ୍ତା, ଯଦି ସେହି ସେହି ଦିଗରେ ବଙ୍କେଇ ଯାଉଥାନ୍ତା, ତେବେ ଏହି ପନ୍ଦରଟା ବର୍ଷ ଭିତରେ ଆପଣାର ଯାବତୀୟ ଅନ୍ତରସ୍ଥ ସଂଘର୍ଷ ସତ୍ତ୍ୱେ ସିଏ କ'ଣ ଦୃଢ଼ଚିତ୍ତ ରହି ସକଳ କର୍ମ କରିବାରେ ସମର୍ଥ ହୋଇ ଆପଣାକୁ କଦାପି ସମ୍ଭାଳି ରଖି ପାରିଥାନ୍ତେ ?

ଦଶବର୍ଷ ତଳେ ଯେତେବେଳେ କାତ୍ୟାୟିନୀ ତାଙ୍କୁ ଦେଖିଥିଲା, ସେହି ଦିନଠାରୁ ସିଏ ତାହାର ହିଁ ତ ହୋଇ ରହିଲେ । ନଚେତ୍ ଆପଣାର ବୁଭୁକ୍ଷାଗୁଡ଼ାକୁ ଶାନ୍ତ କରିବା-ଲାଗି ଏହି ସହରରେ କ'ଣ କୌଣସି ଉପାୟର ଅଭାବ ଥିଲା··· ?

ଅଳ୍ପସମୟ ପୂର୍ବରୁ ତ ସିଏ ମଇଦାନରେ ଶିକାରରେ ଦୃଶ୍ୟ ଦେଖିଆସିଲେ ।

ସିଟି-ବସ୍ ଭିତରୁ ସିଏ ଶୁଣିବାକୁ ପାଇଥିବାକଣ୍ଠସ୍ୱର—

···ଏହିପରି କେତେକେତେ ଉପାୟ ରହିଥିଲା; ତଥାପି ଦାନ୍ତକୁ ଚାପି ଧରି, ମାନସିକ ଭାବରେ ଅବଶ୍ୟ କେତେକ ଦୁର୍ବଳ ମୁହୂର୍ତ୍ତରେ ସ୍ଖଳିତ ହୋଇ ଯାଇଥିଲେ ମଧ୍ୟ କାର୍ଯତଃ ଏହି ପୁରାପୁରି ବ୍ରହ୍ମଚର୍ଯ—ଜୀବନକୁ ଅବଲମ୍ବନ କରି ରହିଥିଲେ । ଏକଥା ପୁଣି କିପରି ସମ୍ଭବ ହେଲା...?

ଯଦି ସେ କଳେକଳେ ଗୋଡ଼ ଖସାଇ ପଡ଼ିଥାନ୍ତେ ତ ତାଙ୍କ ଓ କାତ୍ୟାୟିନୀ ମଧ୍ୟରେ ଆଉ କି ଅନ୍ତର ରହିଥାନ୍ତା···?

ମାତ୍ର···ଏହି ଜୀବନଠାରୁ ବି ସେ କ'ଣ ପାଇପାରିଲେ ?

ଋଷିପାଦଙ୍କୁ ରହିତ ସ୍ୱାରୁଭାବରେ ପୂର୍ଣ୍ଣ ହୋଇ ରହିଥିବା ଏକ ଆତ୍ମତୃପ୍ତ ବୋଲି ତାହାଙ୍କୁ କୁହାଯାଇ ପାରିବ କି ?

ବସ୍ତିରେ...ମଇଦାନରେ ହୋଇଥିବା ଶିକାର···ଏସବୁ ପୁଣି କେଉଁ କଥାର ସଙ୍କେତ ଦେଇ ଯାଉଛି ?

ଦାରିଦ୍ର୍ୟର ? ଏକଥା କ'ଣ ଦୃଢ଼ ନିଶ୍ଚିତ ଭାବରେ କୁହାଯାଇ ପାରିବ—? ତାଙ୍କର ମନ ପ୍ରଶ୍ନ କରିବାକୁ ଲାଗିଲା ।

ଯଦି ଏହି ସବୁକିଛି କଥା ପଇସାପାଇଁ ହେଉଥାନ୍ତା, ତେବେ ପଇସା ନଥିବା ଲୋକେ, ବୋଝ ବୋହୁଥିବା ଲୋକେ, ଘରେ କାମ କରୁଥିବା ଲୋକେ ଗରିବ ହେଲେ ମଧ୍ୟ ଏହିସବୁ କାମ ପାଇଁ କିପରି ସାହସ କରି ପାରୁଥାନ୍ତେ ଏବଂ ସେଥିରୁ ପଇସା ବି ଉପାର୍ଜନ କରି ପାରୁଥାନ୍ତେ ? ସାଧାରଣତଃ ସବୁଠାରେ ପଚରି ଯାଉଥିବା ଏହିଭଳି ଗୋଟିଏ ପ୍ରଶ୍ନ ଭିତରେ ତାଙ୍କର ମନ ଛନ୍ଦିହୋଇ ପଡ଼ିଲା ଓ ଛଟପଟ ହେବାକୁ ଲାଗିଲା, ଏତଦ୍‌ବ୍ୟତୀତ, ବର୍ତ୍ତମାନ ତ ପଇସାର ଆଦୌ କୌଣସି ପ୍ରଶ୍ନ ନଥିଲା, ତେବେସୁଦ୍ଧା ଏହି ପୃଷ୍ଠଭୂମି ଉପରେ ଏସବୁ ହେବାରେ ଲାଗିଥିଲା···ଆଜି ମଧ୍ୟ, ସେହିସବୁ ଦେଶରେ ଯେଉଁଠି ପଇସାର ଆଦୌ କୌଣସି ପ୍ରଶ୍ନ ନାହିଁ, ସେଠାରେ ବି ଏସବୁ ଚମତ୍କାର ଭାବରେ ହୋଇ ଚାଲିଛି···ତେବେ ଏସବୁର କାରଣ ଆଉ କ'ଣ ହୋଇପାରେ···?

ଏକଥା କ'ଣ ସତ ଯେ ଯେତେବେଳେ ଯାଏ ମଣିଷର ଦେହରେ ରକ୍ତ ଓ ଚମ ରହିଥିବ, ସେତେବେଳେ ଯାଏ ଏସବୁ ପ୍ରଶ୍ନ ରହିବାକୁ ବାଧ୍ୟ ହେବ ?

ତାଙ୍କର ମସ୍ତିଷ୍କ ଭିତରଟା ଏହିପରି ନାନା ଉଦ୍‌ବେଳନରେ ଭର୍ତ୍ତି ହୋଇ ଆସିଲା ଯାହା ଋଷିଠାରେ ଦେଖିବାକୁ ମିଳିଲା, ସେହି ଉଦ୍ଦେଶ୍ୟ-ବୋଧ ଓ ଜ୍ଞାନପିପାସା କୋଉଠି, ଆଉ ଘୃଣିତ ଚର୍ମର ଏହି ଭୋକ ଆସି କୋଉଠି ?

ମାତ୍ର ଜୀବନରେ ଜ୍ଞାନପିପାସା ହିଁ ଏକମାତ୍ର ଯଥାର୍ଥ ପିପାସା ବୋଲି କହି କେହି କେବେ ଏଥିରୁ ନିଷ୍କୃତି ପାଇ ପାରିବ କି ? ସେହିପରି ଏହି ଭୋକଟା ବି ତ ଗୋଟାଏ ଯଥାର୍ଥ ଭୋକ ! ସେହି ସୀମା ପର୍ଯ୍ୟନ୍ତ ଏଇଟାକୁ ମଧ୍ୟ ସ୍ୱୀକାର କରିନେବା ବ୍ୟତୀତ ପ୍ରକୃତରେ ଆଉ କ'ଣ ଗତି ଅଛି ?

ଅଧିକ ଗମ୍ଭୀରତା ସହିତ ଏହି ସମସ୍ୟାଟିର ବିଶ୍ଳେଷଣ ଓ ତନ୍ନତନ୍ନ କରି ଅନୁସନ୍ଧାନ କରି ଭାବିବା ଫଳରେ ତାଙ୍କର ମସ୍ତିଷ୍କ ଗରମ ହୋଇ ଉଠିଲା ।

# ସତେଇଶି

ସିଦ୍ଧାନନ୍ଦପୁରମ୍‌ର ପୁଷ୍କରଣୀଟି ଜହ୍ନଆଲୁଅରେ ରଜତଖଣ୍ଡେ ହୋଇ ଚକ୍‌ଚକ୍ କରୁଥିଲା, ତାହାକୁ ଅବଲୋକନ କରୁ କରୁ ଅନନ୍ତନ୍ ନାୟର୍ ଠିଆ ହୋଇଗଲେ ।

ତାଙ୍କର ନିଶ୍ୱାସ ଫୁଲି ଉଠିଥିଲା ମୌନ ମନରେ ଶାନ୍ତ ବ୍ୟାପିଗଲା ପରି ମନେ ହେଉଥିଲା ..। ମାତ୍ର ଏଇଟାକୁ କ'ଣ ଶାନ୍ତ ବୋଲି କୁହାଯିବ ? ଶାନ୍ତ ..

ହୁଁ ···ଯେଉଁ ସୌନ୍ଦର୍ଯ୍ୟ ଓ ମୌନ-ମୁଖକୁ ସିଏ ଦିନେ ଅନୁଭବ କରିଥିଲେ, ସେହି ଦିନଗୁଡ଼ିକ ବିତି ଯାଇଛନ୍ତି, ଶୋଇ ପଡ଼ିଛନ୍ତି । ବର୍ତ୍ତମାନ ସେସବୁ ଆଉ କଦାପି ଲେଉଟି ଆସିବେନାହିଁ । ଏପରି ହୋଇଥିଲେ ମଧ୍ୟ ମନଟା ତଥାପି ଏପରି ବିବଶହୋଇ ପଡ଼ୁଛି କାହିଁକି···?

ଏହି ସବୁଯାକ ବିବଶତାକୁ ଏକାଠି କରି ଗୋଟିଏ ପୁଡ଼ା କରି ବାନ୍ଧି ସିଏ ମନର ଅନ୍ତରାଳରେ ନେଇ ପୋତି ରଖିଥିଲେ; ବଡ଼ ବଡ଼ ପ୍ରେରଣାର ସମ୍ମୁଖରେ ମଧ୍ୟ ତଥାପି ଅବିଚଳିତ ହୋଇ ରହି ପାରୁଥିବା ବୈରାଗ୍ୟ ଦ୍ୱାରା ପରିପୂର୍ଣ୍ଣ ମନ ବାହ୍ୟ ଜଗତର ସାନ ସାନ ବାଧାର ସମ୍ମୁଖୀନ ହୋଇ କାହିଁକି ଏପରି ଚଞ୍ଚଳ ହୋଇଉଠେ ?

ଅନନ୍ତନ୍ ନାୟର୍‌ଙ୍କର ହୃଦୟର ଗଭୀରତା ଚିରି ଏକ ଲମ୍ବା ଦୀର୍ଘଶ୍ୱାସ ବାହାରି ଆସିଲା ।

···ସେହି ଉତ୍ସବ ଦିନ ବିକ୍ରମନ୍ ତମ୍ପି ଯେଉଁ କାର୍ତ୍ତ୍ୟାୟିନୀକୁ ଦେଖିବାକୁ ପାଇଥିଲା, ତା'ପରେ ତାଙ୍କର ନିଜ ଜୀବନଟି ଯେ କିପରି କିପରି ଭାବରେ ବଦଳିଗଲା, ସେତେବେଳେ ତାଙ୍କୁ ପ୍ରାୟ ସତେଇଶି ବର୍ଷ ବୟସ ହୋଇଥିବ ।

ଡାକ୍ତର କେଶବନ୍ ନାୟର୍‌ଙ୍କର ଔଷଧ, ପୁଷ୍ଟିକାରକ ଭୋଜନ ଓ ଡାକ୍ତରଙ୍କର ଉପଦେଶକୁ ଯେତେ ଅଳପ ମାତ୍ରାରେ ହେଲେ ମଧ୍ୟ ପାଳନ କରି ନାନା ନିୟମ ଓ ନିଷେଧରେ ଅତିବାହିତ କରି ଯାଇଥିବା ଯୌବନ ଜୀବନ ସବୁ ମିଶି ଅଳ୍ପ ଅଳ୍ପ କରି ତାଙ୍କର ଶରୀରକୁ ସୁସ୍ଥ କରି ଆଣୁଥିଲେ । ତେଣୁ ସେ ଅଫିସ୍ ଯିବାକୁ ବି ଆରମ୍ଭ କରିଥିଲେ···।

ତହସିଲଦାର ବିକ୍ରମନ୍ ତମ୍ପିକୁ ରାଜପ୍ରାସାଦର କାର୍ଯ୍ୟାଳୟରେ ଜମିବଣ୍ଟା, ଜମିଦାରୀର ମାମଲା ପ୍ରଭୃତି ସମ୍ବନ୍ଧରେ ନାନା କାର୍ଯ୍ୟ କରିବାକୁ ପଡ଼ୁଥିଲା ତେଣୁ ସିଏ ତାଙ୍କୁ କେତେଥର ପ୍ରାଇଭେଟ୍ ସେକ୍ରେଟେରୀଙ୍କ କୋଠରୀରେ କଥାବାର୍ତ୍ତା କରିବାର ଦେଖିଛନ୍ତି ।

ମାତ୍ର···

ସେହି ଉତ୍ସବ ପରେ ଦପ୍ତରରେ ବ୍ରକମନ୍‌ଡମ୍ପିଙ୍କର ଆଗମନ ମୁହୂର୍ତ୍ତ ଭିତରେ ସମସ୍ତଙ୍କର ଅନ୍ତର କ୍ରମେ ଭାର କମ୍ ହୋଇ ଆସିଲା । ତାଙ୍କ ମନରେ ଏହିପରି ଏକ ସନ୍ଦେହ ଜାତ ହୋଇଥିଲା···

ହଠାତ୍···

ସିଏ ଫାଇଲ୍ ଭିତରେ ଏକଦମ୍ ବୁଡ଼ିକରି ରହିଥିବା ବେଳେ ଚପରାଶୀ ଆସି କହିଲା, "ଆଜ୍ଞା, ଆପଣଙ୍କୁ ସେକ୍ରେଟେରୀ ଆଜ୍ଞା ଡ଼କାଇ ପଠାଇଛନ୍ତି ।"

ସିଏ ଟିକିଏ ବିଚଳିତ ହୋଇଗଲେ ଓ ଆସନରୁ ଉଠିଲେ । ସାଧାରଣତଃ ପ୍ରାଇଭେଟ୍ ସେକ୍ରେଟେରୀ ଜଣେ ନିମ୍ନସ୍ତରୀୟ କିରାଣୀଙ୍କୁ ସିଧା ଡକାଇ ପଠାଇଛନ୍ତି, ସେହି ଦପ୍ତରର ଇତିହାସରେ ଆଗରୁ ଏପରି କେବେ ଘଟି ନଥିଲା । ସେକ୍ରେଟାରୀ ଉଚ୍ଚ ଶ୍ରେଣୀରେ ଥିବା ଗୁମାସ୍ତାଙ୍କୁ ମଧ୍ୟ କେବେହେଲେ ନିଜ କୋଠରୀକୁ ଡ଼ାକୁ ନଥିଲେ । କେବଳ ହେଡ୍ କ୍ଲର୍କ ହିଁ ବାରବାର ହରବର ହୋଇ ସେକ୍ରେଟେରୀଙ୍କ କୋଠରୀ ଭିତରକୁ ଦୌଡ଼ି ଦୌଡ଼ି ଯିବାର ଏବଂ ହାଲରେ ଗୋଟାସୁଦ୍ଧା ଗାଧୋଇ ଏତେ ବଡ଼ ମୁହଁ କରି ସେଠାରୁ ଲେଉଟିବାର ସେ ଅନେକ ସମୟରେ ଦେଖିଛନ୍ତି । ଏପରି ଅବସ୍ଥାରେ ··

ତାଙ୍କର ହାତଗୋଡ଼ ଥରଥର ହୋଇ କମ୍ପିବାକୁ ଲାଗିଲା । କୋଠରୀର କବାଟଟିକୁ ମାତ୍ର ଅଧା ଖୋଲି ସେ ସେକ୍ରେଟେରୀଙ୍କ କୋଠରୀ ଭିତରକୁ ପଶିଗଲେ । ତାଙ୍କୁ ନମସ୍କାର କରିବାର ଆତୁରତାରେ ତରତର ହୋଇ କବାଟ ଉପରୁ ହାତ ନେଇ ଆସିଲେ ଓ ସ୍ପ୍ରିଙ୍ଗ ଲଗା ହୋଇଥିବା ଦୁଆରଟା ତାଙ୍କ ପିଠିଉପରେ ଗୁପୁଡ଼ାଟାଏ ମାରିଦେଇ ସେଇଠି ଲଟକି ରହିଲା । ଆଉ ଦୁଇ ତିନିପାଦ ଆଗକୁ ପକାଇ ସେ ଅତି ଶିଷ୍ଟ ଓ ନମ୍ର ଭାବରେ ଠିଆହୋଇ ରହିଲେ ।

ପ୍ରାଇଭେଟ୍ ସେକ୍ରେଟେରୀଙ୍କର କଡ଼କୁ ଗୋଟିଏ ଚଉକୀ ଉପରେ ନିଜକୁ ବିସ୍ତୃତ କରିଦେଇ ସିଗାର୍‌ର ଧୂଆଁରେ ବୁଡ଼ି ରହିଥିବା ବ୍ରକମନ୍ ଡମ୍ପି···।

କଳା କଳା ଦାଢ଼ି, ଲହଡ଼ି ମାରୁଥିବା ଓ ସ୍ପ୍ରିଙ୍ଗ୍ ପରି ମୋଡ଼ି ମୋଡ଼ି ହୋଇ ଠିଆ ହୋଇଥିବା ମୁଣ୍ଡର ବାଳ, ମଥାଉପରେ ଲମ୍ବା ହୋଇ ପଡ଼ିଥିବା ଚନ୍ଦନତିଲକ, ଏକ ବିଶିଷ୍ଟ କାଇଦାରେ କାନ୍ଧଉପରେ ପଡ଼ିଥିବା ଚଉଡ଼ା ସବୁଜ ଧଡ଼ିବାଲା ଓ ନଡ଼ିଆର କଲି ପଡ଼ିଥିବା ଚଦର ଖଣ୍ଡିକ ତାଙ୍କର ଏବେ ବି ମନେ ପଡ଼ିଯାଉଛି ।

ହୁଁ···କ'ଣ ଖବର ଅନନ୍ତନ୍ ନାୟର୍···ତୁମେ ପାଲକୁକ୍କଲଙ୍କରେ ପରିବାରର ଭଗବତପିଲ୍ଲଇର ପୁଅ ନା ? ମୋତେ ଆଜିଯାଏ ଏକଥା ଜଣାନଥିଲା । ସିଏ ଆଉ ମୋର ବାପା ଭାରି ଘନିଷ୍ଠ ବନ୍ଧୁ ଥିଲେ···।"

ସତେଯେପରି କୌଣସି ବଡ଼ କଥାକୁ ଖୋଜି ଖୋଜି ହଠାତ୍ ପାଇ ଯାଇଛନ୍ତି, ଏହିପରି ମୁଦ୍ରାରେ ତମ୍ପି ଷ୍ଵର ବର୍ଣ୍ଣିତ ହେଲାପରି କଥା କହି ଯାଉଥିଲେ । ପ୍ରାଇଭେଟ୍ ସେକ୍ରେଟାରି ଶିବରାମନ୍ ନାୟର୍ ତାଙ୍କ କଥାରେ ହଁ ସହିତ ହଁ ମିଳାଇ କିଛି କହିବାରେ ଲାଗିଥିଲେ ।

ତା'ପରେ ସେକ୍ରେଟାରି ତାଙ୍କୁ ଦେବ କୁଲମ୍ ଟୀ' ଇଷ୍ଟେଟ୍‌ର ଫାଇଲ୍ ନେଇକରି ଆସିବାକୁ କହିଲେ । ଫାଇଲ୍ ଆଣିବା ଲାଗି ଯେତେବେଳେ ସେ ଆପଣା ସେକ୍‌ସନ୍‌କୁ ଗଲେ, ସେତେବେଳେ ସାଥୀ ଅନ୍ୟ କିରାଣିମାନେ ଏବଂ ମୁଖ୍ୟ କିରାଣି ସମସ୍ତେ ଈର୍ଷା ସହିତ ତାଙ୍କ ଆଡ଼କୁ ଅନାଇବାକୁ ଲାଗିଲେ । ଏକଥା ଜାଣୁଥିଲେ ମଧ୍ୟ ସିଏ ତଥାପି ଯନ୍ତ୍ରବତ୍ ସେଇ ଫାଇଲ୍‌ଟିକୁ ହାତରେ ନେଇ ପୁଣି ଚାଲିଗଲେ ।

ଫାଇଲ୍‌ଟାକୁ କିଛି ସମୟ ପାଇଁ ଓଲଟାଇ ପାଲଟାଇ ଦେଖିସାରିବା ପରେ ବ୍ରହ୍ମମାନ୍ ତମ୍ପି ଅତ୍ୟନ୍ତ ସନ୍ତୋଷ ପ୍ରକଟ କରିବାକୁ ଲାଗିଲେ ।

"ଶିବରାମନ୍ ନାୟର୍... । ତରବାଟ୍‌ଟୁ (କୁଳୀନ) ପରିବାରରେ ଜନ୍ମ ହୋଇ-ଥିବା ଜଣେ ବ୍ୟକ୍ତି ଯାହାକିଛି କାର୍ଯ୍ୟକରେ, ସେଥିରେ ଯେଉଁ ବ୍ୟବସ୍ଥା ଓ କ୍ରମ ଦେଖିବାକୁ ମିଳେ, ସେଥିରେ କାହାର କିଛିହେଲେ ଦୋଷ ଦେଖାଇବାକୁ ନଥାଏ । ଭେରି ଗୁଡ୍, ଅନନ୍ତନ୍ ନାୟର୍ ! ଏହି ମାମଲାଟିରେ ମହାରାଜାଙ୍କର ବଡ଼ ରୁଚି ରହିଛି··· । ଏହି କୀର୍ତ୍ତିମାନ୍ ଏବଂ... ।"

ଠିକ୍ ସେହି ସମୟରେ ହିଁ ତାଙ୍କୁ ଡ଼ର ଘେରି ଆସିବା ପରି ଲାଗିଲା । ଏସବୁ ସିଏ କୋଉଥିପାଇଁ କହିଲେ ? ଆଉ ଦିନେ ସଞ୍ଜବେଳେ ଅଫିସ୍‌ରୁ ବାହାରୁ ବାହାରୁ ଛଅଟାରୁ ଅଧିକ ସମୟ ହୋଇ ଯାଇଥିଲା । ଆଜିକାଲି ·ସେତେବେଳେ ଆଉ ବସ୍ କୁଆଡ଼ୁ ମିଳିବ ? ଚେମ୍ବୁ ଛତାଟିକୁ ହାତରେ ଧରି ସେ ଚାଲିବାକୁ ଲାଗିଲେ···

ତାଙ୍କୁ ପ୍ରାୟ ଛୁଇଁବାପରି ହୋଇ ଗୋଟିଏ ବଡ଼ ମଟରଗାଡ଼ି ଆସି ତାଙ୍କ କଡ଼ରେ ଠିଆ ହୋଇଗଲା । ଚମକିପଡ଼ି ସେ ଯେମିତି ମୁହଁ ବୁଲାଇ ଦେଖିଲେ, ଗାଡ଼ିର ପଛକବାଟ ଖୋଲି ସେମିତି ବ୍ରହ୍ମମନ୍‌ତମ୍ପି ସସ୍ନେହ କହି ଉଠିଲେ, "ଆସ, ଅନନ୍ତନ୍ ନାୟର୍ । ମୁଁ ବି ବର୍ତ୍ତମାନ ସେଇ ଆଡ଼କୁ ଯାଉଛି । ତୁମକୁ ମୁଁ ତୁମ ଘରେ ଯାଇ ଛାଡ଼ିଦେଇ ପାରିବି ।"

"ନାଇଁ ଆଜ୍ଞା । ମାଫ୍ କରିବେ, ମୁଁ ଚାଲି ଚାଲି ଚାଲିଯାଇ ପାରିବି ।"—କହି ସେ ଆହୁରି ଦୁଇପାଦ ଅଗ୍ରସର ହୋଇଗଲେ । ତାଙ୍କର ମନ ଭିତରେ ଗୋଟାଏ ବିଚିତ୍ର ଡ଼ର ତାଙ୍କୁ କାମୁଡ଼ି ଧରିଲା··· ।

କିନ୍ତୁ ବନମାନ୍ ତମ୍ପି ଛାଡ଼ିଲେ ନାହିଁ । ଗାଡ଼ିରୁ ଓହ୍ଲାଇ ପଡ଼ି କହିଲେ, "କାହିଁକି ଅନନ୍ତନ୍ ନାୟର୍ ତୁମେ ଏତେ ସଙ୍କୋଚୀ କାହିଁକି ହେଉଛ ? ମୁଁ ମଧ୍ୟ ଠିକ୍ ତୁମରି ପରି ଜଣେ ମଣିଷ, ମୁଁ କ'ଣ ତୁମକୁ ଧରି ଖାଇ ପକାଉଛି ?" ତମ୍ପି ତାଙ୍କର ହାତ ଧରି ତାଙ୍କୁ ଗାଡ଼ିରେ ଆଣି ବସାଇଦେଲେ ଏବଂ ଗାଡ଼ିର କବାଟ ବନ୍ଦ କରିଦେଲେ ।

ତମ୍ପିଙ୍କର ଆଖିଗୁଡ଼ାକ ଲାଲ ଲାଲ ଦିଶୁଥିଲା···ମୁହଁରୁ ଗୋଟାଏ ଗନ୍ଧ···

ସିଏ ଏକଥାଟିକୁ ମଧ୍ୟ ବେଶ୍ ନିରୀକ୍ଷଣ କରି ପାରିଲେ ଯେ ଡ୍ରାଇଭର୍ ବି ଓଠକୁ ଚାପି ଟିକିଏ ହସିଦେଲା ଓ କାର୍ ଷ୍ଟାର୍ଟ କଲା ।

ସେଇଠାରୁ ଆରମ୍ଭ କରି ପେରୁନ୍ତାନ୍ନି ପର୍ଯ୍ୟନ୍ତ ତାଙ୍କର ଘର ଆସିବାଯାଏ ତମ୍ପି କେଜାଣି କ'ଣ କେତେ ଚୂଳମୂଳ ନଥିବା କଥାସବୁ ବକିବାରେ ଲାଗିଲେ ।

"ଅନନ୍ତନ୍ ନାୟର୍ ସଂସାରରେ ସବୁଠାରୁ ଅଧିକ ଭାଗ୍ୟବାନ୍ କିଏ ତୁମେ ସେ କଥା ଜାଣିଛ ? ଏହି ପ୍ରଶ୍ନଟିକୁ ତୁମେ ମୋତେ ପଚାରିବ ତ ମୁଁ ଏହାହିଁ କହିବି ଯେ ସିଏ ଉର୍ବଶୀ ଆଉ ତିଲୋତ୍ତମା ପରି କୌଣସି ସୌନ୍ଦର୍ଯ୍ୟ ବତୀକୁ ପତ୍ନୀରୂପେ ପାଇ ପାରିଛି, ସେଇ ହେଉଛି ସମସ୍ତଙ୍କଠାରୁ ଅଧିକ ଭାଗ୍ୟବାନ୍ ।

ସିଏ କୌଣସି ଉତ୍ତର ଦେଲେ ନାହିଁ । ବାହାରକୁ ଅନାଇ ଦେଖିବା ଓ ତା'ପରେ ପୁଣି ତମ୍ପିଙ୍କର କଥନ ଗୁଡ଼ିକୁ ମନ ଦେଇ ଶୁଣୁଥିବାର ଅଭିନୟ କରିବା, ଏହିପରି ଏକ ବିଚିତ୍ର ଉଭୟ ସଙ୍କଟର ପରିସ୍ଥିତିରେ ସେ ସତେ ଅବା ବଡ଼ ଛଟପଟ ହେଉଥିଲେ ।

"ଅନନ୍ତନ୍ ନାୟର୍ । ମୁଁ ଯେ ଏପରି କହୁଛି, ତାହାର ଏକ କାରଣ ଅବଶ୍ୟ ରହିଛି । ଅଳ୍ପ ସମୟ ପୂର୍ବେ ଦେଓ୍ୱାନ୍‌ଙ୍କ ବଙ୍ଗଳାରେ ଗୋଟିଏ ପାର୍ଟିଥିଲା । ମୁଁ ବର୍ତ୍ତମାନ ସିଧା ସେହିଠାରୁ ଫେରୁଛି । ପାର୍ଟି ହେଉଥିବା ହଲ୍‌ଟି ଭିତରେ ମୁଁ ଯେମିତି ହି ପରି ଆସି ପ୍ରବେଶ କଲି, ସେତେବେଳେ ମୋ' ଉପରେ କାହାରି ଆଖି ପଡ଼ି ନଥିଲା... । ମାତ୍ର କିଛି ସମୟ ପରେ ଯେତେବେଳେ ନିଜର ପତ୍ନୀଙ୍କୁ ସାଙ୍ଗରେ ନେଇ ଡେପୁଟୀ ତହସିଲଦାର ବେଲୁପିଲାଇ ଆସି ସେଠାରେ ପହଞ୍ଚିଲେ, ସେତେବେଳେ ମୁଁ ଆଉ ତୁମେ କେତେ ଲୋକ ଭିଡ଼ ଲଗାଇ ତାଙ୍କର ସ୍ୱାଗତ କରିବାଲାଗି ଆଗକୁ ବାହାରି ଆସିଲେ । ହାକିମ ଅଫିସର୍ ଯେତେ ସିଏ ବସିଥିଲେ,—ସମସ୍ତେ, ମିଛ କାହିଁକି କହିବି, ମୁଁ ମଧ୍ୟ— ସ୍ଥାନରୁ ଉଠି ତାଙ୍କର ସ୍ୱାଗତ ଅଭ୍ୟର୍ଥନା କରିବାରେ ଲାଗିଲୁ । ପାଖରେ ଆସି ବସିବାଲାଗି ତାଙ୍କୁ ପ୍ରଲୁବ୍ଧ କଲାପରି ଡ଼ାକିଲୁ । ତାହାର କାରଣ ଆଉ କିଛି ନଥିଲା···ତୁମେ କେବେ

ମିସେସ୍ ବେଲୁ ପିଲାଇଙ୍କୁ ଦେଖିଛ···?"

"ନାହିଁ" ବୋଲି ସଙ୍କେତ ଦେଇ ସେ ମୁଣ୍ଡ ହଲାଇଲେ । କାନ୍ଧରେ ପଡ଼ିଥିବା ଚଦରକୁ ମୁହଁ ଉପରେ ଦବାଇ ମୁହଁ ପୋଛିଲେ ।" ହୁଁ···ତୁମରି ଷ୍ଟାଣ୍ଡାର୍ଡ ବି ଠିକ୍ ସେହିପରି ଖରି ଟାଣ···ବାଃ ରେ ବାଃ । କି ସୌନ୍ଦର୍ଯ୍ୟ ସେ । କି ସୌନ୍ଦର୍ଯ୍ୟ ବାପାରେ ।" ବର୍ଣ୍ଣନା କରିବା ସକାଶେ ଉପଯୁକ୍ତ ଶବ୍ଦ ନପାଇ ତମ୍ଭି ହରବର ହୋଇ ପଡ଼ିଲେ ।

"ଯଦି ସୋସାଇଟିରେ 'ପ୍ରେଷ୍ଟିଜ୍'କୁ, 'ଷ୍ଟେଟସ୍'କୁ 'କ୍ଲାପ୍ ଅପ୍' କରିବାଲାଗି ଇଚ୍ଛା କରୁଥିବ ଏବଂ ଯାହା ଇଚ୍ଛା କରୁଥିବ, ତାହା ଶୀଘ୍ର କରାଇବାକୁ ଥିବ, ତେବେ ଆଉ କିଛି ଆବଶ୍ୟକ ହେବନାହିଁ, ଅନନ୍ତନ୍ ନାୟର୍ । ଆମ ପାଖରେ ଆମ ମିସେସ୍ ଯଦି ମୁହଁଟିକୁ ଦେଖାଇ ଚୁପ୍‌ଚାପ୍ ଆସି ଠିଆ ହୋଇଯାଇ ପାରିବ, ତେବେ ତାହାହିଁ ଯଥେଷ୍ଟ ··· । କିନ୍ତୁ ଗୋଟିଏ କଥା ନିଶ୍ଚୟ ମନେ ରଖିଥିବ··· । ମିସେସ୍ ବେଲୁପିଲାଇଙ୍କ ପରି ସିଏ ଅବଶ୍ୟ 'ଭଲ୍‌ପ୍‌ଚୁଅସ୍' ହୋଇଥିବା ଦରକାର... ।"

ଆପଣାକୁ ପ୍ରକୃତିସ୍ଥ କରିବାକୁ ଅସମର୍ଥ ହୋଇ ତମ୍ଭି ସେହିପରି ଭଡ଼ ଭଡ଼ ହେବାରେ ଲାଗିଥାନ୍ତି ଅନନ୍ତନ୍ ନାୟରଙ୍କ ହୃଦୟରେ ଏକ ଆଗ୍ନେୟଗିରି ପ୍ରସ୍ତୁତ ହେବାରେ ଲାଗିଥାଏ ।

ତାଙ୍କ ଘର ଫାଟକ ପାଖରେ ଗାଡ଼ି ଯେମିତି ଆସି ଠିଆ ହୋଇଗଲା, 'ରକ୍ଷା ପାଇଲି ମଣିଷ' ବୋଲି ଭାବି ଅନନ୍ତନ୍ ନାୟର୍ ଗାଡ଼ିରୁ ଓହ୍ଲାଇ ପଡ଼ିଲେ । ତାହା ଦେଖି ତମ୍ଭି କହିଲେ, "ଇଏ କେମିତିଆ କଥା ଅନନ୍ତନ୍ ନାୟର୍ । ଅନ୍ତତଃ ଭଦ୍ରତା ବା ଔପଚାରିକତାର ଦୃଷ୍ଟିରୁ ହେଲେ ବି ତୁମେ ମୋତେ ଘର ଭିତରକୁ ଆସିବା ଲାଗି ଥରେ ଡ଼ାକିଲ ବି ନାହିଁ । ଚୁପ୍‌ଚାପ୍ ଗାଡ଼ିରୁ ଓହ୍ଲେଇ ପଡ଼ି ଚାଲିଯିବାକୁ ବସିଛ··· ।" ପରିହାସରେ ଏତିକ କହି ସେ ପୁଣି କହିବାକୁ ଲାଗିଲେ, "ଆଚ୍ଛା ସେଥିଲାଗି ତୁମେ କୌଣସି ଚିନ୍ତା କରନାହିଁ । ପୁଣି ଆଉ କୋଉଦିନ ସେକଥା ହେବ ।···ନୁହେଁ ?"— ତମ୍ଭି ଚାଲିଗଲେ ।

ହୁଁ । 'ଗାଈ କାହିଁକି ଲାଙ୍ଗୁଡ଼ ଟେକେ, ମୋତେ କ'ଣ ସେକଥା ଜଣାନାହିଁ— ବୋଲି ଭାବି ଅନନ୍ତନ୍ ନାୟର୍ ସେଦିନ ବଡ଼ ଅଶାନ୍ତ ମନ ନେଇ ଘରେ ପ୍ରବେଶ କରିଥିଲେ । ବର୍ତ୍ତମାନ ସେହି ଘଟଣାଟି ମନେ ପଡ଼ିଯାଉଛି ।

ଫେରୁଆରୀ ରାତିରେ ଅନ୍ଧାର ରହିଥିଲା ଓ ସେ ଧୀରେ ଧୀରେ ଚାଲିଚାଲି ଯାଉଥିଲେ । ସମସ୍ତ ଶରୀର ଅବଶତା ହେତୁ ଭାଙ୍ଗି ପଡ଼ିଲା ପରି ମନେ ହେଉଥାଏ । ମାତ୍ର, କେଜାଣି କାହିଁକି ମୋଟେ ନିଦ ମାଡ଼ୁ ନଥିଲା । ପ୍ରଜ୍ଞା ବେଶ୍ ସଚେତନ ଭାବରେ କାମ କରିଯାଉଥିଲା ।

ଦିନେ ଚୀଫ୍ ସେକ୍ରେଟାରୀ ତାଙ୍କୁ ଆପଣାର କୋଠରୀକୁ ଡକାଇ ପଠାଇଲେ ଓ ତାଙ୍କ ହାତରେ ଗୋଟିଏ ଅର୍ଡ଼ର ଦେଇ କହିଲେ—"ଅନନ୍ତନ୍ ନାୟର୍ । ହାର୍ଟି କଙ୍ଗ୍ରାଚୁଲେଶନସ୍ ।"

ସେହି ଆଦେଶଟିରେ ତାଙ୍କୁ ଉଚ୍ଚ ପାହ୍ୟାକୁ ପଦୋନ୍ନତି ଦିଆ ଯାଇଥିଲା । ସିଏ ସ୍ତବ୍ଧ ହୋଇ ରହିଗଲେ ।

ସେ ସ୍ୱପ୍ନରେ ସିଏ ଆଗରୁ ଏତେ ଟିକିଏ ହେଲେ ଆଶା କରିନଥିଲେ । ଚାକିରି କରିବାର ତିନୋଟି ବର୍ଷ ବି ପୂରିନାହିଁ । ସର୍ଭିସ୍ ତାଙ୍କଠାରୁ କେତେକେତେ ବରିଷ୍ଠ ବ୍ୟକ୍ତି ରହିଥିଲେ । ସେମାନଙ୍କୁ ସମସ୍ତଙ୍କୁ ଛାଡ଼ି କେବଳ ଅନନ୍ତନ୍

ନାୟର୍‌ଙ୍କୁ ଯଦି ପ୍ରମୋଶନ୍ ମିଳୁଛି, ତେବେ ..

ସିଏ ଖୁସୀ ହେବାକୁ ଭୁଲିଗଲେ । ଦେହଟାଯାକ ଝାଳରେ ଓଦା ହୋଇଗଲା ।

...ତମ୍ପିଙ୍କ ସକାଶେ ହିଁ ଆପଣଙ୍କର ଏହି ପଦୋନ୍ନତି ହୋଇପାରିଲା । ଆପଣ ଏତିକି ହିଁ ଜାଣିଥାନ୍ତୁ, ଏତିକି ହିଁ ଯଥେଷ୍ଟ ।"—ସେକ୍ରେଟରି ତାଙ୍କୁ କହିଲେ । ସିଏ ସ୍ତବ୍ଧ ହୋଇ ଦଣ୍ଡାୟମାନ ରହିଲେ । ସପ୍ତାହକ ଆଗରୁ ତାଙ୍କ ଗାଡ଼ିରେ ଯାଉଥିବା ବେଳେ ତମ୍ପି ତାଙ୍କୁ ଯୋଉସବୁ କଥା କହିଥିଲେ, ସେସବୁ ପୁଣି ମନେ ପଡ଼ିଯିବାକୁ ଲାଗିଲା ।

ଗୋଟାଏ ଜୀବନ୍ତ ଶବପରି ପାଦ ପକାଇ ସିଏ ଆପଣା ସ୍ଥାନଟିରେ ଆସି ବସି ପଡ଼ିଲେ । ତାଙ୍କର ସେହି ଅର୍ଡ଼ର୍‌ଟିକୁ ଦେଖି ଅଫିସ୍ ଗୋଟାକରେ ଯେତେଅବା ଝଡ଼, ଆନ୍ଦୋଳିତ ହୋଇ ଉଠିଲା ।

ସେହି ଘଟଣାଟିପରେ ତାଙ୍କର ସବୁଯାକ ମାନସିକ ଶାନ୍ତି ଯେତେଅବା କୁଆଡ଼େ ମରିଗଲା ।

ରାତିଦିନ ଅନ୍ତର ଭିତରେ କେବଳ ସେହି ଗୋଟିଏ ସଂଘର୍ଷ,—ବାସ୍ ସେଇ ଗୋଟିଏ...

ମୁଁ କ'ଣ ଏହି ପଦୋନ୍ନତିକୁ ସ୍ୱୀକାର କରିନେବି··· ? ଏହି ପଦୋନ୍ନତି କେତୋଟି ଆଗାମୀ ବିପତ୍ତିର ସୂଚନା ଦେଇ ଯାଉନାହିଁ ତ ? —ଏହିପରି କେତେ-କେତେ ପ୍ରକାରର ମାନସିକ ଯାତନା ।

ଅସୁସ୍ଥତାର କାରଣ ଦେଖାଇ ଦିନେ ଦୁଇଦିନ ଛୁଟୀ ନେଇ ନିରନ୍ତର ମାନସିକ ଦ୍ୱନ୍ଦ୍ୱ ଏବଂ ଅନ୍ତର ମଧ୍ୟରେ ସମସ୍ତ ଯନ୍ତ୍ରଣାକୁ ବହନ କରି ତାଙ୍କୁ ଆପଣା ଘର ଭିତରେ ହିଁ ରହିବାକୁ ପଡ଼ିଥିଲା ।

## ଅଠେଇଶ

ପେରୁଲ୍ୟାମ୍ପି ୱାଥରେ ମନୁଷ୍ୟମାନଙ୍କର କୌଣସି ଉଣ୍ଡ ଶବ୍ଦ ଶୁଭୁ ନଥିଲା । ନିଜର କର୍ତ୍ତବ୍ୟଟିକୁ ପାଳନ କରୁଥିବା ସଡ଼କର ଦୁଇ ପାଖରେ ଥିବା ବତୀଖୁଣ୍ଟଗୁଡ଼ିକ ଟୁକୁର ଟୁକୁର କରି ଆଖି ମେଲାଇ ଅସ୍ପଷ୍ଟ ମିଞ୍ଜି ମିଞ୍ଜି ଆଲୋକ ନିକ୍ଷେପ କରିବାରେ ଲାଗିଥିଲେ ।

ବତୀଖୁଣ୍ଟଗୁଡ଼ିକୁ ଘେରି ମଣ୍ଡଳି ବୁଲୁଥିବା ପତଙ୍ଗମାନଙ୍କର ଖୁସିକୁ ପୁଣି କିଏ ଦେଖିବ ··· ?

ଏହି ସଡ଼କଟା ବି ଯେତେ ଚାଲିଲେ ମଧ୍ୟ ତଥାପି ଶେଷ ହେଉନାହିଁ । ଶରୀରର ସର୍ବାଙ୍ଗରେ ନିଆଁ ଜଳୁଥିବା ପରି ଦହନ ଆଉ ପୀଡ଼ା······ । ଏହି ଚାଲିବା କେତେ ବେଳରୁ ଆରମ୍ଭ ନ ହେଲାଣି...... । ଘରେ ଯାଇ ପହଞ୍ଚିବାକୁ ଏହି ସଡ଼କଟିକୁ ଶେଷ କରିବାକୁ ହିଁ ପଡ଼ିବ, ତା'ଛଡ଼ା ଆଉ ଅନ୍ୟ ଉପାୟ କ'ଣ ଅଛି ?

ଉକୈକ୍କଲ୍ ମୁହାଣ ପାରିହୋଇ ଅନନ୍ତନ୍ନାୟର୍ ସେହି ଗଳିଭିତରେ ଆସି ପହଞ୍ଚିଲେ । ସେତେବେଳେ ବି ଜହ୍ନ ପଡ଼ିଥାଏ । ରାସ୍ତାକୁ ଚହ୍ନି ଚହ୍ନି ସିଏ ଘର ଅଭି-ମୁଖରେ ଯିବାକୁ ଲାଗିଲେ ।

ଘର ପାଖରେ ଆସି ପହଞ୍ଚିଲେ । କୌଣସି ଶବ୍ଦ ନକରି ବାହାର ଫାଟକଟିକୁ ଆଗକୁ ଠେଲି ଖୋଲିଦେଲେ ଓ ଅଗଣା ମଧ୍ୟକୁ ଆସି ଫାଟକଟିକୁ ଆସ୍ତେ କରି ବନ୍ଦ କରିଦେଲେ ।

ସବୁଆଡ଼େ ଖାଲି ନୀରବତା

ସମସ୍ତେ ନିଶ୍ଚିନ୍ତ ଶୋଇ ପଡ଼ିଥିବେ··· ।

ଅଗଣା ଭିତରେ ଠିଆ ହୋଇଥିବା ଖାଲି ସେଇ ଆମ୍ବଗଛଟା ଏପର୍ଯ୍ୟନ୍ତ ଶୋଇନାହିଁ । ଜହ୍ନ ଆଲୁଅରେ ଗୋଟାସୁଦ୍ଧା ଗାଧୋଇ ସିଏ ସିରସିର ହୋଇ ବହୁଥିବା ପବନ ସହିତ ଖୁସୀ ହୋଇ କ'ଣସବୁ କଥାବାର୍ତ୍ତା କରିବାରେ ଲାଗିଛି । ସେ ଧୀରେ ଧୀରେ ବାରଣ୍ଡା ଉପରକୁ ଉଠିଗଲେ । ଆରାମ ଚଉକିଟିକୁ ନେଇ ସେହି ଆମ୍ବଗଛଟିର ତଳେ ପକାଇଦେଲେ । ଶ୍ରୀ ପଦ୍ମନାଭ' ବୋଲି ଗୁଣୁ ଗୁଣୁ ଶବ୍ଦ କରି ସେଇଟିରେ ଲମ୍ବ ହୋଇ ପଡ଼ିଗଲେ ।

ବାଲ୍‌କୁଲ୍ କ୍ଳାନ୍ତ...

ସମସ୍ତ - ? ଉନଟା ବାଜି ସାରିବଣି ନା ।

ନିଦ ତାଙ୍କର ଆଖିପତା ଗୁଡ଼ିକୁ ଛୁଆଁଇ ଆଣୁଥିବାପରି ଲାଗୁଥିଲା । ମାନସିକ ଶାନ୍ତି ତ କୁଆଡ଼େ ମରି ସାରିଥିଲା । କ'ଣ କରିବେ ସିଏ ନିଜେ ହିଁ ଜାଣି ନଥିଲେ । ଦୁଇଦିନ ଛୁଟି ନେଇ ସେହି ଗଛଟିର ତଳେ ସେହି ଆରାମ ଚଉକିଟି ଉପରେ ପଡ଼ିପଡ଼ି, ଚନ୍ଦ୍ରାମଙ୍କ ରହି ପଥର ପରି ନିଶ୍ଚଳ ହୋଇ ପଡ଼ିରହିବାର ସେହି ମୁହୂର୍ତ୍ତିଗୁଡ଼ିକ...

ପ୍ରଥମ ଦିନ କାତ୍ୟାୟିନୀ କିଛି କହି ନଥିଲା । ଦ୍ୱିତୀୟ ଦିନ ସଞ୍ଜରେ ମଧ୍ୟ ସେ ସେହିପରି ଭାବରେ ସେଇଠି ବସି ରହିଥିଲେ । "ଏତେ ଚିନ୍ତା କ'ଣ ପାଇଁ ?" —ତାଙ୍କ ପାଖରେ ଠିଆହୋଇ କାତ୍ୟାୟିନୀ ଏକ ବଡ଼ ଦୟନୀୟ ସ୍ଥିତିରେ ତାଙ୍କୁ ଏହି ପ୍ରଶ୍ନଟି ପଚାରିଥିଲା । ଖୁବ୍ ମନେଅଛି ।

ମୁହୂର୍ତ୍ତେକ ସିଏ ତା'ଆଡ଼ିକୁ ଅନାଇ ଦେଖିଲେ । ତାଙ୍କୁ ମଧ୍ୟ କେମିତି କେମିତି ଲାଗିଲା । ଇଏ ଆପଣାର ପତ୍ନୀ । ସ୍ତ୍ରୀ' ଆଗରେ ନିଜର ସବୁ ଚିନ୍ତା ଓ ସଂଘର୍ଷର କଥା ଖୋଲି ନ କହିବା ତ ଆଉ କାହାକୁ ଯାଇ କହିବା ?

କିନ୍ତୁ... ...

ଏହିସବୁ ଚିନ୍ତା ଓ ସଂଘର୍ଷ ଯେତେବେଳେ ତାହାରି ସମ୍ବନ୍ଧରେ, ସେହି ପରିସ୍ଥିତିରେ ସେଗୁଡ଼ାକ ତା'ଆଗରେ କହିଲେ କି ଲାଭ ହେବ ?

"ତୁମେ ଯାଅ ଶୋଇବ... ... । ଏଗୁଡ଼ାକ ଜାଣି କ'ଣ କରିବ ?"

ଏପରି ଠୋ' କରି ଗୋଟାଏ ଉତ୍ତର ପାଇ କାତ୍ୟାୟିନୀ ତଥାପି ହଟିନ୍ଥି ନାହିଁ । —କହିଲା, "ଆଜିକାଲି ଆପଣଙ୍କର କ'ଣ ହୋଇଛି କହିଲେ ? ସବୁ କଥାରେ ମୋ' ଉପରେ ଏପରି ଚିଡ଼ି ଉଠୁଛନ୍ତି କାହିଁକି ? ... ... ମୁଁ କ'ଣ ଆପଣଙ୍କର ଶତ୍ରୁ ପରି କେହି ନା କ'ଣ ?" ତାଙ୍କର ବେଶ୍ ମନେ ପଡୁଥାଏ, କାତ୍ୟାୟିନୀର ଏହି ପ୍ରଶ୍ନଟି ତାଙ୍କୁ ଗୋଟାଏ ପ୍ରକାର ଆତ୍ମନିରୀକ୍ଷଣ ଲାଗି ଅନ୍ତର୍ମୁଖୀ ହୋଇଯିବାକୁ ବାଧ୍ୟ କରି ପକାଇଥିଲା ।

ଇଏ ଯାହାସବୁ କହୁଛି, ତାହାକୁ ପୂରାପୂରି କଦାପି ଭୁଲ୍ ବୋଲି କହି ହେବନାହିଁ ।" —ସେହି ଜଳମଙ୍କନ ଉତ୍ସବଟି ପରେ ତାଙ୍କ ପିଲାପିଲାଙ୍କ ସଂସାରରେ ଓ କାର୍ଯ୍ୟାଳୟ-ଜୀବନରେ ବ୍ରହ୍ମମନ୍ତ୍ରୀଙ୍କ ଦ୍ୱାରା ସମ୍ପୂର୍ଣ୍ଣ ଅନାବଶ୍ୟକ ଭାବରେ ଯେଉଁସବୁ ହସ୍ତକ୍ଷେପ ହେବାରେ ଲାଗିଛି, ସେଇଥି ସକାଶେ ତାଙ୍କର ଅନ୍ତର୍ମନ ଭିତରେ ଯେପରି ପିମ୍ପୁଡ଼ି କାମୁଡ଼ିବାରେ ଲାଗିଲେଣି । ସବୁ ଦଳ ଦଳ ହୋଇ ଦେଖିବାକୁ ମିଳୁଥିଲେ ମଧ୍ୟ ସବୁ ଯେପରି ଅସ୍ପଷ୍ଟ ହୋଇ ରହୁଛି । ଏସବୁ ଦ୍ୱାରା ସିଏ କ'ଣ ନିଜେ ନିଜକୁ କେବଳ ପ୍ରବଞ୍ଚିତ କରିବାରେ ହିଁ ଲାଗିଛନ୍ତି, —ଏହିଭଳି ଏକ ଅପରାଧ—ଭାବନା ତାଙ୍କୁ ଆକ୍ରମଣ କରିବାକୁ ଆରମ୍ଭ କଲା । ଏବଂ ତାହାର ସ୍ପନ୍ଦନଟି ଘର ଭିତରେ କାତ୍ୟାୟିନୀ

ସହିତ ସେ ଅତିବାହିତ କରୁଥିବା ଦାମ୍ପତ୍ୟ-ଜୀବନଟିରେ ମଧ୍ୟ ଅବଶ୍ୟ ଅନୁଭୂତ ହୋଇଥିବ । ଏବଂ ସିଏ ସେଇଟିକୁ ଜାଣିପାରି ନଥିବ,—ଇଏ କ'ଣ ପ୍ରକୃତରେ ଏତେ-ଦୂର ବେକୁଫ୍ ହୋଇଛି ?

"ମନଟାକୁ ମାରିଦେଇ ଏମିତ କାହିଁକି ବସିଛ··· ··· ? ମୁଁ ଏତେ ପଚାରୁଛି, ତୁମର କାନରେ କ'ଣ ଟିକିଏ ହେଲେ ପଶୁନାହିଁ ? ··· ···" ସିଏ ପୁଣି ଆସି ତାଙ୍କର ସ୍ମରଣ କରାଇ ଦେଉଛି ।

କେତେବେଳେ ହେଲେ ସିଏ ଏହା ସହିତ କେବଳ ପ୍ରେମ ବ୍ୟତୀତ ଆଉ କୌଣସି କଥାର କଳ୍ପନା ହିଁ କରି ପାରୁନଥିଲେ । ଧନର ଆଲୁଅରେ ସେ ତାକୁ ଯେତେବେଳେ ଦେଖନ୍ତୁ ନା କାହିଁକି, କେଜାଣି କାହିଁକି ଏକ ଅଜ୍ଞାତ ଭାବ, ଏକ ଅକାରଣ ଅସୂୟା ଓ ଘୃଣାରେ ହିଁ ପୂର୍ଣ୍ଣ ହୋଇ ଉଠୁଥିଲେ । ସୌନ୍ଦର୍ଯ୍ୟକୁ ଆପଣାର ଗୋଲାମ କରି ରଖି ଶାସନ କରିବାର ଏକ ନିରର୍ଥକ ଆକ୍ରୋଶ, ତା'ର ପ୍ରତ୍ୟେକ କାର୍ଯ୍ୟରେ ଧନଯାକ ଖାଲି ଦୋଷ ଏବଂ ଗଲତି ବ୍ୟତୀତ ସେ ଆଉ କିଛି ହେଲେ ଦେଖି ପାରୁ-ନଥିଲେ । ଏତେଦୂର ପର୍ଯ୍ୟନ୍ତ ତାଙ୍କ ହୃଦୟତଳର ଗହ୍ୱରରେ ଏକ ସ୍ଥାନ ପ୍ରସ୍ତୁତ କରିନେଇ ତାଙ୍କର ବୁଦ୍ଧିକୁ ସ୍ତବ୍ଧ କରିଦେଇ ଆବିର୍ଭୂତ ହୋଇ ଆସୁଥିବା ଏହି ଆତୁରତାର ଆଧାରଟି ପ୍ରକୃତରେ କ'ଣ ହୋଇପାରେ ?

ସିଏ କେବେ କଫି ଆଣି ଦେଉଥିଲା ତ ମନେହେଉଥିଲା ଯେ ସେଥିରେ ଚିନି କମ୍ ଦିଆହୋଇଛି···ବା ବେଶୀ ଦିଆହୋଇଛି...ଦୁଇଟାରୁ କୌଣସିଟି ନ ହୋଇଥିଲେ ମଧ୍ୟ ହୁଏତ ଡିକକ୍ସନ୍ ଯଥେଷ୍ଟ ହୋଇନାହିଁ । ସିଏ ଦୋସା ତିଆରି କରି ଦେଉଥିଲାତ, 'ଇଡ଼୍ଲି ତିଆରି କଲ ନାହିଁ ? ବୋଲି ପ୍ରଶ୍ନ । ତା ଆରଦିନ ସିଏ ଇଡ଼୍ଲି ତିଆରି କରି ଆଣି ଦେଲାତ ସିଏ କହନ୍ତି, ଖାଲି କାଞ୍ଜି ହୋଇଥିଲେତ ବେଶ୍ ଚଳି ଯାଇଥାନ୍ତା । ଏହିପରି ଆପଣାର ପ୍ରତାପ ଦେଖାଇ ମାନସିକ ଯାତନା ପ୍ରକଟ ହେବାରେ ଲାଗିଥିଲା । ଏହିପରି ଏକ ବିଚିତ୍ର ସ୍ଥିତି ।

ସିଏ ତାଙ୍କର କମିଜ କମ୍ବା ଧୋଇ ଧୋଇ ଦେଉଥିଲା ତ ତାଙ୍କୁ ଲାଗୁଥିଲା ଯେପରି ତଥାପି ମଇଳା ରହିଯାଇଛି । ସେହି କଥାଟିକୁ ସଙ୍ଗେ ସଙ୍ଗେ ସନ୍ଦୋଧ ଏଡ଼େବଡ଼ ପାଟି କରି ନ ପଚାରି ସିଏ ମୋଟେ ରହି ପାରୁନଥିଲେ । ଏଥିଲାଗି ତାଙ୍କର ମନଟା ମୋଟେ ମାନୁନଥିଲା—ଏପରି ଅବସ୍ଥା ... ।

ଦୁଇ ପ୍ରହରବେଳେ ଇଏ ମୋ 'ପାର୍କ୍ସ ଅଫିସ୍‌କୁ ଯେଉଁ ଖାଇବା ପଠାଉଛି, ଅନେକ ସମୟରେ ତାହାକୁ ଅଖିଆ ଠିକ୍ ସେମିତ ଘରକୁ ଫେରାଇ ଆଣିବାକୁ ମନ ହେଉଛି । ... କେଜାଣି କାହିଁକି' କାଲୁ ମନେ ହେଉଛି ଯେପରି ତରକାରୀରେ ମୋଟେ

ଲୁଣ ପଡ଼ିନାହିଁ । ସବୁ ସ୍ୱାଦହୀନ । ଇଏ କ'ଣ ନିଜ ଜିଭର ଦୋଷ ନା ମନ ଭିତରେ କୋଉଠି କିଛି ଖରାପ ରହିଛି ? ଅଥବା, ତା ନହେଲେ ପ୍ରକୃତରେ ଜିନିଷଟିରେହିଁ କୌଣସି ଗୋଳମାଳ ରହିଛି ?

ସନ୍ଧ୍ୟାବେଳେ, ସେ ଯେତେବେଳେ ଅଫିସ୍‌ରୁ ଘରକୁ ଫେରୁଥିଲେ, ସେତେବେଳେ ଖୁବ୍ ଡ୍ରେସ୍ ହୋଇ ସିଏ ଆସି ଫାଟକ ପାଖରେ ଆଗରୁ ଠିଆ ହୋଇଥାଏ, ସେଇଟାକୁ ଆଖିରେ ଅନାଇ ସୁଦ୍ଧା ହୁଏ ନାହିଁ । ସବୁକିଛି ଅସହ୍ୟ ଲାଗୁଥିଲା ।

ଏବଂ, ରାତିବେଳେ, ନିର୍ଲଜ୍ଜ ଭାବରେ, ଜବରଦସ୍ତି ଯାଇ "ମୋ, ରାଣି, ମୋ' ଦୁଲାରୀ" ବୋଲି କହି ସିଏ ତା'ର ହାତକୁ ଧରି ପକାଉଥିଲେ, ଗୋଡ଼ ଧରୁଥିଲେ ଓ ତାକୁ କେତେ ସୁନ୍ଦର ଭାବରେ ମନାଇ ନେଉଥିଲେ ଓ ତା,ପରେ ସେହି ଲୀଳାଟି ଆରମ୍ଭ ହୋଇ ଯାଉଥିଲା ।

ସେହି ସବୁ ରାତିରେ ନିଜର ସମ୍ମାନକୁ ହରାଇ ତା'ପାଖରେ ଶରଣ ନେଇ ଥିବାର ସେହି ସ୍ମୃତିଗୁଡ଼ିକ ଦିନବେଳେ ନିଆଁ ହୋଇ ଜଳିବାରେ ଲାଗିଥାନ୍ତି, ଏବଂ ସେହି କାରଣରୁହିଁ ଆହୁରି ଅଧିକ ତୀକ୍ଷ୍ଣତା ସହିତ ବିସ୍ଫୋଟିତ ହୋଇ ଉଠୁଥିବା ଘୃଣାର ଜ୍ୱାଳା ... ଏବଂ ଯେତେବେଳେ ଅଫିସ୍‌ରେ ବାକ୍‌ମନ୍ ତମ୍ପି ଆସି ଅନାବଶ୍ୟକ ଭାବରେ ଆପଣାର ବନ୍ଧୁତା ଗୁଡ଼ାକୁ ଦେଖାଇ ହୁଏ, ସେତେବେଳେ ତାହାକୁ ଚୁପ୍ ହୋଇ ସହି ଯାଉଥିବା ମନ ଘରକୁ ଆସି କାତ୍ୟାୟିନୀକୁ ଦେଖିବା ମାତ୍ରକେହିଁ ସତେଅବା ଟକଟକ ହୋଇ ଫୁଟିବାକୁ ଲାଗେ । ତାହାର ଉପରେ ସବୁଯାକ ରାଗକୁ ନେଇ ଅଜାଡ଼ି ଦେବାକୁ ଛଟପଟ ହେଉଥାଏ । ତା'ପରେ ପୁଣି ସେଇ ଲଙ୍କାକାଣ୍ଡ... । ଏହାର କାରଣ କ'ଣ ?
— କାତ୍ୟାୟିନୀକୁ ଏସବୁର କାରଣ ଜଣାଅଛିତ ? ସିଏ ନିଜେବି କ'ଣ ଜାଣିଛନ୍ତି ?

ବିତି ସମୟରେ ସବୁ ଆତ୍ମାଭିମାନକୁ ହରାଇ ତା'ପାଖକୁ ଆସୁଥିବାରୁହିଁ ସିଏ ସମ୍ଭବତଃ ଦିନବେଳେ ପ୍ରକଟ ହେଉଥିବା ତାଙ୍କର ସବୁ ରାଗ, ଦ୍ୱେଷ, ଗାଳି ଆଉ ମନ୍ଦକୁ ଉପେକ୍ଷା କରିବାର ଏକ ସ୍ଥିତିରେ ଆସି ପହଞ୍ଚି ଯାଇଥିଲା .. ।

"ଶୁଣୁଛ ? କ'ଣ ନିଦ ମାଡ଼ିଲାଣି କି... ?" ଏକଥା କହି ଯେତେବେଳେ କାତ୍ୟାୟିନୀ ଚେତାଇଦିଏ, ସିଏ ସେତିକିବେଳେ ଯାଇ ଆପଣାର ଅନ୍ତର୍ମୁଖୀ ଚିନ୍ତନ ଗୁଡ଼ାକରୁ ମୁକ୍ତ ହୋଇ ବାହ୍ୟ ଜଗତକୁ ଲେଉଟି ଆସନ୍ତି ଏବଂ କାତ୍ୟାୟିନୀର ମୁହଁ ଆଡ଼କୁ ଚାହିଁ ଦେଉଥନ୍ତି । ସେହି ଦୃଶ୍ୟଟି ଅନନ୍ତନ୍ ନାୟର୍‌ଙ୍କର ମନେ ପଡ଼ିଯିବାକୁ ଲାଗିଲା ।

ତା'ର ମୁଖମଣ୍ଡଳ ଉପରେ ଯେଉଁ ଉଜ୍ଜ୍ୱଳ କାନ୍ତି ରହିଥିଲା, ସେଇଟି କେବେ-ହେଲେ ମ୍ଳାନ ହୋଇ ଯାଉନଥିଲା । ନେତ୍ର ଉପରେ ନିରନ୍ତର ସନ୍ତରଣ କରୁଥିବା ଏକ ଶୋକ ଭାବ......

ହଠାତ୍ ଭାବନାବେଗରେ ଆକର୍ଷିତ ହୋଇଯାଇ ସେ ତା'ର ହାତକୁ ଧରି ଟାଣିଲେ ଏବଂ ତାକୁ ଆପଣାର କୋଡ଼ ଭିତରକୁ ନେଇ ଆସିଲେ ।

"ଥାଉ, ଥାଉ । ମୋତେ ସବୁ ଜଣାଅଛି । ବର୍ତ୍ତମାନ ଏପରି କରୁଛ । ଆଉ ଦିନ ହେଲାବେଳକୁ ସବୁ ଭୁଲି ଯାଉଛି । ଦସ୍ତାମାସ୍ତା ଗୁଡ଼ାଏ ଗାଳି ବରଷିବାରେ ଲାଗିଛ ··· ଏଇଟାତ ତୁମର ଅଭ୍ୟାସ ହୋଇ ଗଲାଣି ··· ।"

କେଜାଣି କାହିଁକି, ସେତେବେଳେ ଆଉ ତାଙ୍କ ମନରେ ରାଗ ହେଲାନାହିଁ । ସମ୍ଭବତଃ, ଆମ୍ବ ଗଛରେ ବଉଳ ଧରିଥିବା ହେତୁହିଁ ସେଗୁଡ଼ିକର ଗନ୍ଧ ସହିତ କାତ୍ୟା-ୟିନୀର ଦେହରୁ ବାହାରୁଥିବା ଝାଳର ସୂକ୍ଷ୍ମ ଗନ୍ଧଟି ମଧ୍ୟ ତାଙ୍କ ମୋହିତ କରି ଦେଉଥିଲା । ଏଇଟିକୁ ହରାଇବାର କଳ୍ପନା ମଧ୍ୟ ସେ କରି ପାରୁନଥିଲେ । ଯେତେ ଝଗଡ଼ା ଅଥବା ମନ-ଭଙ୍ଗାଭଙ୍ଗି ଥାଉ ପଛକେ, ସିଏ ନହେଲେ ତାଙ୍କୁ କ'ଣ କେବେହେଲେ ନିଦ ମାଡ଼ିବ ?

ତାଙ୍କର ହୃଦୟ ହାଲୁକା ହୋଇ ଆସିଲା ।

"କାତି ! ମୋତେ ପ୍ରମୋଶନ୍ ମିଳିଛି ।"

ବିସ୍ମୟରେ ତା'ର ଆଖି ଏଡ଼େବଡ଼ ହୋଇଗଲା । "ସତରେ ? ଏଡ଼େ ବଡ଼ ଭଲ ଖବରକୁ ଆପଣ ଏତେବେଳ ଯାଏ ମୋତେ କହି ନଥିଲେ ... । କ'ଣ ସେଇଥିଲାଗି ଏପରି ଚିନ୍ତିତ ହୋଇ ବସିଥିଲେ, ସତେଯେପରି କେହି କ'ଣ ଲୁଟି ନେଇଛି ... ?

ସିଏ କିଛି ସମୟ ପର୍ଯ୍ୟନ୍ତ ତାକୁ କୌଣସି ଉତ୍ତର ଦେଇ ପାରିଲେ ନାହିଁ, ଏହିପରି ଏକ ଅଶ୍ୱସ୍ତିତା ଉପୁଜାଉଥିବା ଅନୁଭୂତିରେ ସେ ବୁଡ଼ି ରହିଥିଲେ ।

କାତ୍ୟାୟିନୀ ଧୀରେ ଧୀରେ ଉଠି ପାଖରେ ଥିବା ଷ୍ଟୁଲ୍‌ଟି ଉପରେ ଯାଇ ବସିଗଲା ।

କିଛିସମୟ ପରେ, ଯେତେବେଳେ ସିଏ କହିଲେ, "ହୁଁ ! ଏହି ପ୍ରମୋଶନଟା ସେପରି କୌଣସି ଖୁସିର କଥା ନୁହେଁ; ତୁମେ ଯେପରି ଭାବୁଛ, ସେପରି ଆଦୌ ନୁହେଁ" ସେତେବେଳେ ଯାଇ ସିଏ ପଚାରିଲା, "ତୁମେ ଏପରି କାହିଁକି କହୁଛ ?"

କିଛିସମୟ ପର୍ଯ୍ୟନ୍ତ ସେ କୌଣସି ଉତ୍ତର ଦେଲେନାହିଁ । ଭାବୁଥିଲେ, ସ୍ତ୍ରୀ' ଆଗରେ କ'ଣ ସବୁକଥା କହିଦେବ ? ନା କହିବ ନାହିଁ ?

କହିବ ତ କୋଉଠୁ କିପରି ଆରମ୍ଭ କରିବ ? ଏହି ବିଷୟରେ କ'ଣ ଆପଣାର ସନ୍ଦେହଟାକୁ ମୁଁ ଖୋଲି କହି ଦେବ, ଯଦ୍ୟପି ଅନ୍ତରାତ୍ମା କହୁଛି ଯେ ଏସବୁ ସତ କଥା, ତଥାପି ତତ୍ସମ୍ବନ୍ଧୀରେ ପର୍ଯ୍ୟାପ୍ତ ପ୍ରମାଣ ନମିଳିବା ପର୍ଯ୍ୟନ୍ତ ସ୍ତ୍ରୀ' ଉପରେ ସନ୍ଦେହଟାକୁ ବ୍ୟକ୍ତ କରିଦେବା କ'ଣ ଉଚିତ ହେବ କି ?—ସିଏ ଏହିପରି ଏକ ଦ୍ୱନ୍ଦ୍ୱରେ ପଡ଼ିଗଲେ ।

ଏହି କଥାଟିକୁ କାତ୍ୟାୟିନୀ ଆଗରେ ଖୋଲିକରି ନ କହି ଯଦି ସେ ପଦୋନ୍ନତି ସ୍ୱୀକାର କରିନେବ, ତେବେ କାତ୍ୟାୟିନୀ ସହିତ କଥାଟିର ଯେତେଦୂର ସମ୍ବନ୍ଧ ରହିଛି, ସିଏ ହୁଏତ ତା'ପ୍ରତି ବିଶ୍ୱାସଘାତକତା କରି ବସିବେ,—ତାଙ୍କ ମନରେ ଏପରି ଏକ ବିଚାର ଉତ୍ପନ୍ନ ହେଲା । ମାତ୍ର, ଯାହା ହେବାର କଥା ହେବ ପଛକେ,—ଏକଥା ଭାବି ସେ କାତ୍ୟାୟିନୀଙ୍କୁ କହିବାକୁ ଲାଗିଲେ, "କାତ୍ତି ! ଏଇଟା ହେଉଛି କେବଳ ଗୋଟାଏ ଅନୁମାନ । ମାତ୍ର ମୁଁ ଭଲକରି ଜାଣିଛି ଯେ ଏହି ଅନୁମାନ ଭୁଲ ନୁହେଁ···। ସିଏ ଯାହାହେଉ ପଛକେ, ମୁଁ ଭାବୁଛି ଏ କଥାଟାକୁ ତୁମ ଆଗରେ କହିଦେଲେ ହିଁ ଭଲ ହେବ ।···"

ବଡ଼ ରମଣୀୟ ଭାବରେ କାତ୍ୟାୟିନୀ ଈଷତ୍ ହସିଲା ।

"ବାଃ ! ଭୂମିକା ତ ଭାରି ଡାଗର । କଥା କ'ଣ କହି ଦେଉନା କାହିଁକି···।"

କିଛିସମୟ ଲାଗି ନୀରବତା···।

"ମୋତେ ବର୍ତ୍ତମାନ ଯେଉଁ ପ୍ରମୋଶନ୍ ମିଳିଛି, ତାହା ଅତି କମ୍‌ରେ ପାଞ୍ଚବର୍ଷ ପରେ ମିଳିବା ଉଚିତ ଥିଲା । ତାହାହିଁ ଠିକ୍ ବି ହୋଇଥାନ୍ତା···"

"ତେବେ ବର୍ତ୍ତମାନ କେମିତି ମିଳିଗଲା ?"

"ମୋ'ଠାରୁ ବି ଅନେକ ସିନିଅର୍ ଲୋକ ଅଛନ୍ତି, ସେମାନଙ୍କୁ ଡ଼ିଆଇଁ ଓ ଉପେକ୍ଷା କରି ଶର୍ଟକଟ୍ ରାସ୍ତାରେ ମୋତେ ପଦୋନ୍ନତି ଦିଆଯାଇଛି ।"

"ତାହା ଆପଣଙ୍କର କୌଣସି ବିଶେଷ ସାମର୍ଥ୍ୟହେତୁ ତ ହୋଇଥିବ ।"

"ମୋର ସର୍ଭିସ୍ ବହିରେ ନିଶ୍ଚୟ ସେହିପରି କିଛି ଲେଖା ହୋଇଥିବ । ନିଜର ସାମର୍ଥ୍ୟ ବିଷୟରେ ମୋ' ନିଜର ମଧ୍ୟ ସନ୍ଦେହ ନାହିଁ । ମାତ୍ର···ଏଥର ଯେଉଁ ପ୍ରମୋଶନ୍ ହେଲା, ଏଗୁଡ଼ାକ ଆଦୌ ତା'ର ଅସଲ କାରଣ ନୁହେଁ । ମୁଁ ଭଲ କରି ଜାଣିଛି ।"

"ତେବେ କାରଣଟା ପୁଣି କ'ଣ ?"

ମିନଟିଏ ଅଧମିନଟ ଚୁପ୍ ରହିବାପରେ କାତ୍ୟାୟିନୀର ଆଖି ଉପରେ ଆପଣାର ଆଖିଗୁଡ଼ିକୁ ନିବଦ୍ଧ କରି ଧୀରଭାବରେ ସେ ଅତିସ୍ପଷ୍ଟ ଶବ୍ଦରେ କହିବାକୁ ଆରମ୍ଭ କଲେ, "ତାହାର କାରଣ ତୁମେ ।"

କାତ୍ୟାୟିନୀର ମୁଖମୁଣ୍ଡଳ ଉପରେ ବିସ୍ମୟର ଭାବ ମୁଁ "?

"ହଁ, ତୁମେ ।"

"କପରି ?"

ଏହି ପ୍ରଶ୍ନଟିର ଉତ୍ତର ସେ ଆଉଗୋଟିଏ ପ୍ରଶ୍ନରେ ଦେଲେ, "ତୁମେ ବେଞ୍ଜମିନ୍ ଡମ୍ବିକୁ ଜାଣିଛ କି ?"

"କୋଉ ବେଞ୍ଜମିନ୍ ଡମ୍ବି ?

ଡହିପିଲଡ଼ାର ବେଞ୍ଜମିନ୍ ଡମ୍ବି ।"

କାତ୍ୟାୟିନୀର କପୋଳ ଉପରେ ଚଲ୍ତାରେ ରେଖାମାନ ସ୍ପଷ୍ଟ ଅଙ୍କିତ ହୋଇ ଆସିଲା, "ନା-ଜାଣେନା ।",

"ତୁମକୁ ସିଏ ଭଲ କରି ଜାଣିଛନ୍ତି ।"

"ହୋଇଥିବ । ଆମେ ନଜାଣିକରିତ ମଧ୍ୟ ଆମକୁ ଆଉ କେତେକେତେ ଲୋକ ଜାଣିଥିବେ । ଆଚ୍ଛା, ସେ କଥାକୁ ଛାଡ଼ି ଦିଅନ୍ତୁ । ଆପଣ କହିଲେ ଯେ ମୁଁ ହେଉଛି ଆପଣଙ୍କର ପ୍ରମୋଶନ୍‌ର କାରଣ···ସେଇଟା କପରି ହେଲା ··?" କାତ୍ୟାୟିନୀ ଯେପରି ଏସବୁର ଅର୍ଥ କିଛି ବୁଝି ପାରୁନଥିଲା, ଏବଂ ପୁଣି ସେହିପରି ଠିକ୍ ସେହି ଜାଗାକୁ ଆସି ଠିଆହେଲା । ଅନନ୍ତନ୍ ନାୟର୍‌ଙ୍କୁ ହସ ମାଡ଼ିଲା ।

"ସତରେ କ'ଣ ତୁମେ କିଛି ଜାଣି ପାରୁନାହଁ ?"

କାତ୍ୟାୟିନୀର ମୁଖମଣ୍ଡଳ ଉପରେ ଦ୍ୱିଧାର ସଙ୍କେତ ।

ଦୟାକରି ମୋତେ ଅନ୍ଧାର ଭିତରେ ପକାଇ ଦିଅନ୍ତୁନାହିଁ···। ଆପଣଙ୍କ ପରି ମୋତେ ବୁଲାଇ ବଙ୍କା କରି ମୋତେ କଥା କହି ଆସେନାହିଁ । କୌଣସି କଥା କହିବାକୁ ଅଛି ତ ମୋତେ ସିଧାସିଧା କହିଦିଅନ୍ତୁ...।"

ତାଙ୍କର ଅଭିମାନ ଜାଗ୍ରତ ହୋଇ ଉଠିଲା ।

"ଜଳ-ମନ୍ଥନ ଉତ୍ସବ ଦନ ମହାରାଜାଙ୍କ ପରିବାରର ଗହଣରେ ମୋତିର ମାଳ ଆଉ କଣ୍ଟଲଗା ଧୋତି ପିନ୍ଧି ଆସିଥିବା ସେହି ଟାଆଁସିଆ ବାଳ ତହସିଲଦାରଙ୍କ ବ୍ରହ୍ମନ୍‌ତମ୍ପିକୁ କ'ଣ ତୁମେ ପ୍ରକୃତରେ ଦେଖିନାହଁ ?"

ତାଙ୍କର କଣ୍ଠସ୍ୱରରେ ରହିଥିବା ଗମ୍ଭୀରତା ହେତୁ ଅଥବା ଦୃଷ୍ଟିରେ ରହିଥିବା ତୀକ୍ଷ୍ଣତା ହେତୁ କାତ୍ୟାୟିନୀର ମୁହଁ ଉପରେ କିଛିତ୍ ଚଞ୍ଚଳତା ଦୃଷ୍ଟିଗୋଚର ହେବାକୁ ଲାଗିଲା,

"ତୁମେ କ'ଣ ପ୍ରକୃତରେ ବୁଝୁଛ ଯେ ଯେତେବେଳ ସିଏ ଗିଳିଦେବା ପରି ଏଡ଼େ ଏଡ଼େ ଆଖିରେ ତୁମକୁ ଦେଖିବାରେ ଲାଗିଥିଲେ, ସେତେବେଳେ ତୁମେ ମଧ୍ୟ ଯେ ତାଙ୍କ ଆଡକୁ ଅନାଇ ଦେଖୁଥିଲ, ସେକଥା ଉପରେ ମୋର ଆଦୌ ଆଖି ପଡ଼ିନାହିଁ ?"

କାତ୍ୟାୟିନୀର ମୁଖମଣ୍ଡଳ ଉପରେ ଗଭୀର ଚିନ୍ତାର ରେଖାମାନ ଉଙ୍କିମାରି ଉଠୁଥାଏ । "ଓ ହୋ ! ସେଇ ଲୋକ ? ସେଇ ବ୍ରହ୍ମନ୍ ତମ୍ପି ? ମୁଁ କ'ଣ ଏହି କଥାକୁ କେଉଁ ଦିନଠାରୁ ଜାଣିଥାନ୍ତି । ବର୍ତ୍ତମାନ ତାଙ୍କ ବିଷୟରେ କ'ଣ ହେଲା ?"

ଅନନ୍ତନ୍ ନାୟର୍ ମନ୍ଦ ହୋଇ ଆସିଲେ । ତାଙ୍କ କଣ୍ଠସ୍ୱରରେ କିଛି ଉପହାସର ଭାବ, "ନା, ଆଉ କିଛି କଥା ନାହିଁ··· ସିଏ ମୋ'ଠାରୁ ଗୁଣେ ପାଞ୍ଚବର୍ଷ ବଡ଼ ହେବ··· ଅର୍ଥାତ୍ ତରିଶି ବତିଶି ବର୍ଷର ହେବେ । ବର୍ତ୍ତମାନ ସମାଜରେ ତାଙ୍କର ଯେଉଁ ନାମ ଓ ସମ୍ମାନ ରହିଛି, ଷ୍ଟେଟସ୍ ରହିଛି, ଏସବୁକୁ ସେ ଆହୁରି ଅଧିକ ପରିମାଣରେ ବୃଦ୍ଧି କରିବାକୁ ଇଚ୍ଛା କରୁଛନ୍ତି ଏବଂ ସେଥିଲାଗି ଏକ ଅତ୍ୟନ୍ତ ରୂପବତୀ ସ୍ତ୍ରୀ ଲାଗି ତାଙ୍କର ଅବିଳମ୍ବ ଆବଶ୍ୟକତା ରହିଛି ।

"ଏଇଥି ପାଇଁ···?" କାତ୍ୟାୟିନୀର କଣ୍ଠସ୍ୱରରେ କୋପ ପ୍ରକଟ ହୋଇ ଆସିଥିଲା । ସେଥିପ୍ରତି କୌଣସି ଦୃଷ୍ଟିପାତ ନକରି ଅନନ୍ତନ୍ ନାୟର୍ ଆଜିପର୍ଯ୍ୟନ୍ତ ଆପଣା ମନଭିତରେ ଚାଲି ଆସିଥିବା ସଂଘର୍ଷ ଓ ବ୍ୟଥାଟିକୁ ବଖାଣି ଦେବାରେ ଲାଗିଲେ ।" ସିଏ ହେଉଛନ୍ତି, ବଡ଼ ତହସିଲଦାର । ମହାରାଜାଙ୍କ ଆଦେଶଦ୍ୱାରା ପ୍ରାପ୍ତ ହୋଇଥିବା କଣ୍ଟେନ୍ଟ୍ ମୁକୁନ୍ଦର ମହଲରେ ଯାଇ ସେ ବାସ କରୁଛନ୍ତି—ଘରେ ଚାକର-ବାକର ସବୁକିଛି ଅଛନ୍ତି ...ବାପାମାଆ ନାହାନ୍ତି,

ପଇସା ପାଣି ପରି ବୋହି ଯାଉଛି—କେତେ ଅଳଙ୍କାରରେ ମଣ୍ଡିତ ଦୁଇଟା ବଡ଼ ବଡ଼ କାର୍ ରହିଛି···ଡ୍ରାଇଭର୍ ବି··· ଏସବୁକୁ ବାଦ୍ ଦେଲେ ସମ୍ପତ୍ତି ଆଉ ଭୂମିର କୌଣସି ସୀମା ହିଁ ନାହିଁ । ତମ୍ପିର କୌଣସି ବେମାରି ବି ନାହିଁ···ଭାରି ହୃଷ୍ଟପୁଷ୍ଟ ଶରୀର··· ସୁନ୍ଦର ଚେହେରା ଓ ଆକୃତି···ତେବେ ସୁନ୍ଦରୀ ସ୍ତ୍ରୀର ବି କାହିଁକି ଅଭାବ ଘଟିବ · ? ତାଙ୍କୁ ପାଇବାଲାଗି କୋଉ ସ୍ତ୍ରୀକୁ କାହିଁକି ଖରାପ ଲାଗିବ ?"

କାତ୍ୟାୟିନୀ କଥା ମଝିରେ ପଶିଯାଇ ଟିଙ୍ଗାସ କଲାପରି କହିଲା, "ବର୍ତ୍ତମାନ ଆପଣ ଏସବୁ କଥା ମୋ' ଆଗରେ କାହିଁକି ବର୍ଣ୍ଣନା କରି କହୁଛନ୍ତି ? ମୋ'ର ତ ବିବାହ ହୋଇ ସାରିଛି··· : ପିଲା ବି ହୋଇ ସାରିଛି··· ।"

"ଯଦି ଏସବୁ ବିଷୟରେ ତାଙ୍କର କୌଣସି ଚିନ୍ତା ନଥିବ, ତେବେ···?" ବଡ଼ ଧାର୍ମିକ ଭାବରେ ଅନନ୍ତନ୍ ନାୟର୍ କହିଲେ ।

"ଆପଣ ବି କେମିତି ମରଦ ହୋଇ ଜନ୍ମ ହୋଇଛନ୍ତି କେଜାଣି । ମୋ' ସହିତ ଏସବୁ କଥା ବିଷୟରେ କଥାବାର୍ତ୍ତା ହେବାକୁ ଆପଣଙ୍କୁ ଲଜ୍ଜା ବି ମାଡ଼ୁନାହିଁ ? ବଜାରରେ ହାରି କରି ଆସିଥିବା ଯେଉଁ ମଣିଷ ଘରକୁ ଆସି ମାଆକୁ ପିଟେ, ତା' ଭିତରେ ଆଉ ଆପଣଙ୍କ ଭିତରେ ପୁଣି କେଉଁ ଫରକ ରହିଲା ?"—ସିଏ ଭାରି କ୍ରୋଧରେ ଗର୍ଜନ କରି କହିଲା ।

ଅନନ୍ତନ୍ ନାୟର୍ ଉତ୍ତର ଦେଇ କହିଲେ, "ସତ କଥା କହିବାରେ ପୁଣି ଲାଜ କାହିଁକି ମାଡ଼ିବ···?" ସେହି ସବୁଯାକ କଥା ବର୍ତ୍ତମାନ ବଡ଼ ଅସଜଡ଼ା ଓ ଅସ୍ତବ୍ୟସ୍ତ ଭାବରେ ନାନା ସ୍ୱତନ୍ତ୍ର ଆକାର ଧାରଣ କରି ଅନନ୍ତନ୍ ନାୟର୍ଙ୍କର ମାନସପଟ ଉପରେ ପ୍ରକଟ ହୋଇ ତାଙ୍କୁ ଆକୁଳ କରିଦେବାକୁ ଲାଗିଲେ ।

କୌଣସି ପ୍ରକାର ମୀମାଂସାରେ ନ ପହଞ୍ଚି ସେ ଦିନ ରାତିଟା ସେହିପରି ବିତିଲା ।

ତା' ଆରଦିନ ସେ ନିଦ ଭାଙ୍ଗି ଉଠି ପଡ଼ିଲେ । ପ୍ରଖର ଭାବରେ ବିଚ୍ଛୁରିତ ହୋଇ ପଡ଼ୁଥିବା ସୂର୍ଯ୍ୟାଲୋକରେ ଶରୀରରୂପ ଧାରଣ କରି ଠିଆ ହୋଇଥିବା ଆପଣା ଜୀବନର ସକଳ ସମସ୍ୟା, ଦୁଃଖ ପୀଡ଼ା ଅନ୍ତର୍ଦ୍ୱନ୍ଦ୍ୱର ଚିତ୍କାର ଏ ସବୁର ବିଚାର କରିବାଲାଗି ତାଙ୍କୁ ଆଦୌ ଅନୁମତି ଦେଉ ନଥିଲା ।

ବର୍ତ୍ତମାନ ଘରେ ଅଭାବ ରହିଛି । ପୁନଶ୍ଚ, ନିଜର ପ୍ରଭାବିତାକୁ ପ୍ରମାଣିତ କରି-ଦେବାର ଅଗ୍ନିପରୀକ୍ଷା ସ୍ୱରୂପ ଏହି ଚାକିରିଟିକୁ ଛାଡ଼ିଦେବା ମଧ୍ୟ ତାଙ୍କର ନିର୍ବୋଧତା ହିଁ ହେବ ।···ନୁହେଁ କି ? ତାହା ଏକ ପାଗଳାମି ବି ହେବ ।ବ୍ୟାବହାରିକ ପ୍ରକୃତ ଜୀବନଟିକୁ ଜାଣିଥିବା ତାଙ୍କର ବୁଦ୍ଧି ତାଙ୍କୁ ପରାମର୍ଶ ଦେବାକୁ ଲାଗିଲା ।

ଏହି ପଦୋନ୍ନତି ଦ୍ୱାରା ଅତି କମ୍‌ରେ ଶହେଟଙ୍କା ଅଧିକ ମିଳିବ । ହଁ, ଯେତେବେଳେ ଏହି ଶହେଟା ଟଙ୍କା ବର୍ତ୍ତମାନର ହଜାରେ ଟଙ୍କାର ସମାନ ଥିଲା ।— ବର୍ତ୍ତମାନ ତାଙ୍କର ମନ ତାଙ୍କୁ କହିବାରେ ଲାଗିଲା ।

ଏଣୁ, ''ଯେତେବେଳେ କଷ୍ଟ ଘଟିବ, ସେତେବେଳେ ଦେଖିବା, ରାସ୍ତାର ମୁଣ୍ଡରେ ଯାଇ ଗୋଟାଏ ନଈ ପଡ଼ିବ ବୋଲି ପ୍ରଥମରୁ କାହିଁକି ଅଣ୍ଟାରୁ କପଡ଼ା ଉଠାଇ ରୁହିବାକୁ ହେବ ? ବର୍ତ୍ତିମାନ ଧୈର୍ଯ୍ୟର ସହିତ ଡ଼ିଉଟିରେ ଯାଇ ଯୋଗ ଦେବି । ତା' ପରେ ଯାହା ଘଟିବ, ତାର ସମ୍ମୁଖୀନ ହେବି ।''—ଏହିପରି ଦୃଢ଼ ସଂକଳ୍ପ କରି ସେ ରୁକରିକୁ ଗଲେ । ଅନନ୍ତନ୍ ନାମ୍ବିଅର୍ଙ୍କର ଏହିସବୁ କଥା ବର୍ତ୍ତିମାନ ମନେ ପଡ଼ି ଯାଉଥିଲା ।

କୋଉଠି ଗୋଟାଏ କୁକୁଡ଼ା କ-କ-କଅ-କ କରି ଗୋଟାଏ ଲମ୍ବା ଡ଼ାକ ଛାଡ଼ିଲା ।

ଅନନ୍ତନ୍ ନାୟର୍ ଆଖି ଖୋଲିଲେ । ଜହ୍ନ ବୁଡ଼ି ଯାଇଥିଲା । ବର୍ତ୍ତମାନ ଚତୁର୍ଦ୍ଦିଗରେ ଅନ୍ଧାର ଘୋଟି ରହିଥିଲା ।

ଏଣେ, ପୂର୍ବଦିଗରେ ବାଲସୂର୍ଯ୍ୟକୁ ଜନ୍ମ ଦେବାଲାଗି ଗଗନର ଗର୍ଭକୁମ୍ଭ ଭାଙ୍ଗିଗଲା ଓ ରକ୍ତଧାରା ବୋହି ଯିବାରେ ଲାଗିଲା ।

ଶୀତରେ ହାଡ଼ଗୋଡ଼ କମ୍ପି ଉଠୁଥିଲା ପରି ଅନନ୍ତନ୍ ନାୟର୍ ଅନୁଭବ କରୁଥିଲେ ।

ସିଏ ଧୀରେ ଧୀରେ ଉଠି ଠିଆହେଲେ । ଟଳିଲାପରି ହୋଇ ବାରଣ୍ଡା ଆଡ଼କୁ ଗଲେ । ମୁଣ୍ଡ ବୁଲାଇ ଦେଲାପରି ହେଉଥିଲା ।

ଗୋଟାଏ କଣକୁ ତାଙ୍କ ପାଇଁ ଦୁଇଟା ବେଞ୍ଚ୍‌କୁ ଏକାଠି ଯୋଡ଼ିଦେଇ ସତରଂଜ ପକାଇ ଦିଆ ହୋଇଥିଲା ।—ମୁଣ୍ଡ ଆଉ ଗୋଡ଼ ଲାଗି ତକିଆ ରଖା ହୋଇଥିଲା ଗୋଟାଏ ସୁନ୍ଦର ବି ମହଜୁଦ ହୋଇ ରହିଥିଲା···ସେସବୁକୁ ସିଏ ବଡ଼ ଅସ୍ପଷ୍ଟ ଭାବରେ ବେଶ୍ ଦେଖି ପାରୁଥିଲେ···ବିଶ୍ବସ୍ତ ମାଧବୀ···।

ଟେବୁଲ୍ ଉପରେ କାଚ ଜାର୍‌ରେ ଜିରା ପଡ଼ିଥିବା ପାଣି ଥୁଆ ହୋଇଥିଲା । ଖୁବ ଥଣ୍ଡା ହୋଇ ଯାଇଥିଲା, ତଥାପି ତଣ୍ଟି ଶୁଖି ଯାଉଥିବା ପରି ଲାଗିବାରୁ ସେ ସେଥିରୁ ଦୁଇ ଢୋକ ପିଇଦେଇ ବେଞ୍ଚ ଉପରେ ଯାଇ ଲମ୍ବିଗଲେ ।

କେତେବେଳେ ଯାଏ ସେ ସେଠାରେ ଶୋଇ ରହିଲେ ସିଏ ଆଦୌ ଜାଣି ପାରିଲେ ନାହିଁ । ଜ୍ୱର ବଡ଼ ଟାଇଁ ଟାଇଁ ହୋଇ ଦେହରେ ଆସି ବାଜୁଥାଏ । ତା' ସହିତ "ବାପା, ବାପା," କହି ଡ଼ାକିବାର ଶବ୍ଦ ମଧ୍ୟ ଶୁଣାଯିବାକୁ ଲାଗିଲା ।

ଆପଣାର ଭାରି ଆଖିପତା ଯୁଗଳକୁ ସେ ବଳପ୍ରୟୋଗ କରି ଖୋଲିଦେଲେ । ତାକ୍ଷଣ ସୂର୍ଯ୍ୟକିରଣରେ ଆଖି ଝଲଝଲ ହୋଇଗଲା । ସିଏ ଦେଖିଲେ' ମାଧବୀ କୁଟୀ ଠିଆ ହୋଇ ରହିଛି । ଗାଧୋଇ ସାରି ଲଗାଇଥିବା ତେଲ୍‌ର ଚକଣ, ଆଭିଜାତ୍ୟ ଶୋଭାସମ୍ପନ୍ନ କାନ୍ତିଯୁକ୍ତ ମୁଖମଣ୍ଡଳ ।··· ଲମ୍ବା ଲମ୍ବା ବାଳ ତଥାପି ଓଦା ହୋଇ ରହିଥିଲା । ଧବଳ— ଉଜ୍ଜ୍ୱଳ ପରିଧାନ, ସବୁଜ ରଙ୍ଗର ବ୍ଲାଉଜ··· ।

"ବାପା, ଆଠଟା ବାଜିଗଲାଣି ।··· ଦୋକାନକୁ ଯିବନାହିଁ ? କାଲି ରାତିରେ ତୁମେ କେତେବେଳେ ଆସି ଏଠାରେ ଶୋଇଲ ? ମୁଁ ଶୋଇବାକୁ ଗଲାବେଳେ ତ ଗୋଟାଏ ବାଜିଥିଲା । ସେତେବେଳେ ଯାଏ ଆପଣ ଫେରି ନଥିଲେ । ତୁମ ଅସୁସ୍ଥ ଶରୀରଟାକୁ ଏଭଳି କଷ୍ଟ ଦେବାଟା କ'ଣ ଉଚିତ ହେଉଛି··· ?"

"ଆଠଟା ବାଜିଗଲାଣି ?"

ଅନନ୍ତନ୍ ନାମ୍ବିର୍ ଧଡ଼ପଡ଼ ହୋଇ ଉଠିବସିଲେ । ମାଧବୀ ତାଳରେ ପାଣି ଆଣିଦେଲା । ବାରଣ୍ଡାର ଦାଢରେ ଠିଆହୋଇ ସେ କୁଳି କଲେ, ମୁହଁ ଧୋଇଲେ ଓ ପୁଣି ଆସି ବସିଗଲେ । ମାଧବୀ ଗରମ ଗରମ ଗୁଣ୍ଡ ପୋଡ଼ାଇ ଦେବାଭଳି କଫି ଆଣି ଦେଇଗଲା – ହାତିମାର୍କା କଟ୍‌ଟନ କଫି । ସିଏ କଫିର ସ୍ୱାଦ ଉପଭୋଗ କରି ତାକୁ ପିଇବାକୁ ଲାଗିଲେ । ଏଇଟି ଅନନ୍ତନ୍ ନାମ୍ବିର୍‌ଙ୍କର ଦୈନନ୍ଦିନ ଅଭ୍ୟାସ ଥିଲା ।

ହଠାତ୍ କ'ଣ ଗୋଟାଏ ମନେ ପଡିଯିବାରୁ ତାଙ୍କର ଆଖି ପ୍ରଭାକରନ୍ ନାମ୍ବିର୍‌କୁ ତଲାସ କରିବାକୁ ଲାଗିଲା ।

କାଲି ମାଧବୀ ସହିତ ହୋଇଥିବା ତାର ବଚସା, ତା'ରେ ଲୁଗା ଦୋକାନରେ ତାକୁ ଦେଖିବା, ତା'ପରେ ତାକୁ କହିଦେବା ଲାଗି ଟମାସ୍ ଦେଇଥିବା ଖବର—ତାଙ୍କର ସବୁକୁଡ଼ିକ ମନେପଡ଼ିଗଲା ।

"ପ୍ରଭାକରନ୍ କୁଆଡ଼େ ଗଲା ?"

ମାଧବୀ ତାଙ୍କ ପ୍ରଶ୍ନର ଉତ୍ତର ଦେଇ କହିଲା," ଜଣେ ପୁରୁଣା ଚାକ୍ରୀ ବନ୍ଧୁ ସହିତ ସାକ୍ଷାତ କରିବାକୁ ଅଛି ବୋଲି କହି ସେ ଆଜି ଭୋର ସକାଳୁ କଫି ପିଇ ଚାଲିଗଲା ।"

ବୋଧହୁଏ ଟମାସ୍ ସହିତ ସାକ୍ଷାତ କରିବାକୁ ଯାଇଥିବା ଅନନ୍ତନ୍ ନାମ୍ବିର୍ ଖାଲି ଗିଲାସଟିକୁ ମାଧବୀ ହାତକୁ ବଢ଼ାଇଦେଲେ । ମାଧବୀ ଯିବାକୁ ବସିଲା ତ କହିଲେ," "ଝିଅ, ଏଠି ଆସି ଟିକିଏ ବସିଲୁ ।"

ପୁଣି ଫେଣପଡ଼ ଆଗରେ ଠିଆ ହୋଇଥିବା ମାଧବୀର ମୁଖମଣ୍ଡଳ ଉପରେ ବାର୍ଦ୍ଧକ୍ୟର ରେଖାକୁଡ଼ିଏ ଦଉଡ଼ିବାରେ ଲାଗିଛନ୍ତି ବୋଲି ସେ ଦେଖିବାକୁ ଲାଗିଲେ ।

କଫି ପିଇ ଯେଉଁ ବଳ ଆସିଲା, ତାହାର ସାହାଯ୍ୟରେ ସିଏ ସେହି ବସିବା ଅବସ୍ଥାରେ ହିଁ ଆଉ ଟିକିଏ ଘୁଞ୍ଚିଯାଇ ଗୋଡର ଚକଆଟିକୁ ଉଠାଇ ମୁଣ୍ଡତଳେ ଆଣି ଦେଲେ ଓ ତା'ଉପରେ କହୁଣି ଦୁଇଟିକୁ ଦବାଇ କାନ୍ଥରେ ପିଠିଟିକୁ ଆଉଜାଇ ରଖି ଆରାମରେ ବସିବାକୁ ଚେଷ୍ଟା କଲେ ।

"ହଁ ଝିଅ, ସେଇଠି ବସ ।" ସିଏ ଆନ୍ତରିକତାରେ ଏପରି କହିବାରୁ ମାଧବୀ ବେଞ୍ଚ୍‌ର ଗୋଟିଏ କଣରେ ଆସି ବସିପଡ଼ିଲା ଏବଂ ହାତରେ ଧରିଥିବା ଥାଳଟିକୁ ସେଇଠି ଗୋଟିଏ ପାଖରେ ତଳେ ରଖିଦେଲା । ତାପରେ "କ'ଣ" ବୋଲି ପଚାରି ସେ ଅନନ୍ତନ୍ ନାୟର୍‌ଙ୍କ ଆଡ଼କୁ ଚାହିଁ ଦେଖିବାକୁ ଲାଗିଲା ।

ଏଥର କିପରି ଆରମ୍ଭ କରାଯିବ ? ଅନନ୍ତନ୍ ନାୟର୍ ଦ୍ୱିଧାରେ ପଡ଼ି ଯାଇଥିଲେ ।

ନିଜର ଝିଅଟା···

ମାତ୍ର, ସିଏ କ'ଣ ଆଉ ପିଲା ହୋଇ ରହିଛି ? ···

ତାଙ୍କ ଘର ଚଳାଇବାର ଭାରଟିକୁ ତ ସେ ନିଜେ ସମ୍ଭାଳୁଛି । ଏହାକୁ ଉଚିତ ବାଟକୁ ଆଣିବାକୁ ହେଲେ ତାକୁ ନିଶ୍ଚୟ ଆବଶ୍ୟକ ଉପଦେଶ ଦେବାକୁ ହେବ, ମାତ୍ର ଅବଶ୍ୟ ଏକଥା ଠିକ୍ ଯେ କଠୋର ଶବ୍ଦ କହି ତା' ମନରେ କଦାପି ଦୁଃଖ ଦେବାକୁ ପଡ଼ିବ ନାହିଁ !

ବର୍ତ୍ତମାନ ତା' ଆଖିରେ ଲୁହ ଦେଖି ତାକୁ ସହିବାର ଶକ୍ତି ମଧ୍ୟ ଆଉ ତାଙ୍କ ପାଖରେ ନାହିଁ ।

"ନାଇଁ,—କିଛି ନାହିଁ ଯେ, କାଲି ବସ୍‌ରେ ବାସୁଦେବ ପିଲାଇ ସହିତ ଭେଟ ହେଲା । ସିଏ ମୋତେ କଥାଟିଏ କହିଲେ, କିନ୍ତୁ ସେଇଟି ଉପରେ ମୋର ଆଦୌ ବିଶ୍ୱାସ ହେଲା ନାହିଁ । ତଥାପି, ଏକଥାଟି ପ୍ରକୃତରେ ମିଛ ବୋଲି ମୁଁ ତୋ' ମୁହଁରୁ ନଶୁଣିବା ପର୍ଯ୍ୟନ୍ତ ମୋ' ମନରେ କଦାପି ଶାନ୍ତି ଆସିଲା ନାହିଁ । ସେଇଥିଲାଗି ତୋତେ ପଚାରିବା ।"

ମାଧବୀର ମୁଖମଣ୍ଡଳ ଉପରେ ଉତ୍କଣ୍ଠା ଦେଖାଗଲା । "ତଥାପି ଆପଣାକୁ ସମ୍ଭାଳି ନେଇ ସେ କହିଲା, ବାପା, ଆପଣଙ୍କ ମନରେ ମୁଁ କେବେହେଲେ ଦୁଃଖ ଦେବିନାହିଁ । ଆମ ସକାଶେ ଆଗରୁ ମଧ୍ୟ ଆପଣଙ୍କୁ ଅନେକ କଷ୍ଟ ହୋଇସାରିଛି ଓ ଆପଣଙ୍କ ଜୀବନର ଖୁସୀ ସମ୍ପୂର୍ଣ୍ଣଭାବେ ନଷ୍ଟ ହୋଇ ଯାଇଛି । ମୋତେ ସେ କଥା ଭଲଭାବରେ ଜଣା ଅଛି, ବାପା··· । "ମାଧବୀ ଗୋଟିଏ ଲମ୍ବା ଦୀର୍ଘନିଶ୍ୱାସ ପକାଇଲା । ତା'ର ବକ୍ଷଭାଗ ଫୁଲିଉଠି ପୁଣି ତଳକୁ ଆସି ଥମିଗଲା । ବେଦନାରେ ପୂର୍ଣ୍ଣ ହୋଇ ରହିଥିବା ତା'ର ଏହି କଥା ଗୁଡ଼ିକ କେଉଁ ସଙ୍କେତଟିକୁ ଯେ ଦେଇ ଯାଉଛନ୍ତି,— ସେକଥା ତାକୁ ବେଶ୍ ଜଣାଅଛି ।

ଅନନ୍ତନ୍ ନାୟର୍ ସିଧା ପ୍ରଶ୍ନଟିକୁ ପଗ୍ଭରିଦେଲେ,"ଧର୍ମପାଳନ୍‌କୁ ତୁ ଜାଣିଛୁ ?"

ତାଙ୍କ ଆଡ଼କୁ ଥରେ ଅନାଇଦେଇ ମାଧବୀ ଅପଣାର ଆଖି ଦୁଇଟିକୁ ସଙ୍ଗେ ସଙ୍ଗେ ତଳକୁ କରିଦେଲା । ସେ ଯେତେବେଳେ ସେହି ନାମଟିକୁ ଉଚ୍ଚାରଣ କରୁଥିଲେ, ସେତେବେଳେ ମାଧବୀର କଜ୍ଜଳଲଗା ଆଖିରେ କ୍ଷଣକ ସକାଶେ ଗୋଟାଏ ଗ୍ଭନଆର ଆଭାସ ଚମକ ଉଠି ପୁଣି ଅନ୍ତର୍ହିତ ହୋଇଗଲା । ତଦ୍ୱାରା ସିଏ କିଛି ନ କହି-ଥିଲେ ମଧ ତା'ର ଅନେକ କିଛି କଥା ସେ ତାଙ୍କ ଆଗରେ କହି ପକାଇବାପରି ହେଲା ।

"ତୁ ତାକୁ ଜାଣିଛୁ ନା ନାହିଁ ?—ସିଏ ଜାଣିଶୁଣି ଦ୍ୱିତୀୟଥର ପାଇଁ ପ୍ରଶ୍ନ କଲେ ଏବଂ ତା'ପରେ ମାଧବୀର ଓଠ ଭିତରୁ ଗ୍ଭବରହିତ ଗୋଟିଏ ଶବ୍ଦ ବାହାରି ଆସିଲା, "ଜାଣିଛି ।"

"ବାସୁଦେବ ପିଲଇ ମୋତେ ଯାହାସବୁ କହିଲା—ସେସବୁ କଥା କ'ଣ ସବୁଯାକ ସତ ?" ବର୍ତ୍ତମାନ ତାଙ୍କର କଣ୍ଠସ୍ୱରରେ ଯେଉଁ କମ୍ପନଟି ରହିଥିଲା, ସେଇଟିକୁ ସେ ଭଲ କରି ଜାଣି ପାରିଲେ ।

କିଛି ସମୟ ମୌନ ରହିବା ପରେ, ସତେ ଅବା କୌଣସି ଏକ ନିଷ୍ପତ୍ତିରେ ଆସି ପହଞ୍ଚି ଥିବା ପରି ମାଧବୀ କହୁ କହୁ କହି ପକାଇଲା, "ବାସୁଦେବ ପିଲଇ ଆପଣଙ୍କ ଆଗରେ କ'ଣ ସବୁ କହିଛନ୍ତି, ମୁଁ ସେ କଥା ଜାଣିନାହିଁ··· । ମୁଁ ନିଜେ ବେଶ୍ କେତେଦିନ ହେଲା ଗ୍ଭବୁଥିଲି ଯେ ଏହି ବିଷୟରେ ଆପଣଙ୍କ ସହିତ ଯାଇ କଥାବାର୍ତ୍ତା କରିବି । ମାତ୍ର ଯେତେବେଳେ ଆପଣଙ୍କ ସହିତ କଥା ହେବାକୁ ଆସିଲି, ସବୁଥର ହାରିଗଲି । ଆଜି ଯେତେବେଳେ ଆପଣ ସ୍ୱୟଂ ମୋତେ ସେହି କଥାଟିକୁ ପଗ୍ଭରିଲେଣି, ତେବେ ମୁଁ ଆପଣଙ୍କୁ ନିଶ୍ଚୟ ସମୁଦାୟ କଥାଟି କହିଦେବି, କିନ୍ତୁ—ଗୋଟିଏ କଥା... ମୁଁ କଟା ଘାଆରେ କଦାପି ଚୂନ ଲଗାଇବାକୁ ଯିବିନାହିଁ । ଆପଣଙ୍କଠାରୁ ପୂର୍ଣ୍ଣ ସହମତ ନ ପାଇଲେ ମୋ' ବିଷୟରେ କଦାପି କୌଣସି କଥା ଘଟିବନାହିଁ ।"

ତା'ର ଆଖି ନୀଳବର୍ଣ୍ଣ ହୋଇଗଲା । ଅନନ୍ତନ୍ ନାୟର୍‌ଙ୍କର ମନଟା ବି କେମିତି କେମିତି ହେବାକୁ ଲଗିଲା । ବର୍ତ୍ତମାନ କ'ଣ ସେ ତାଙ୍କୁ ନିଜ ପକ୍ଷକୁ ଟାଣିବାଲାଗି ଚେଷ୍ଟା କରୁଛି ନା ସିଏ ନିଜେ ତାକୁ ଆପଣା ପକ୍ଷକୁ ଟାଣିବାଲାଗି ଚେଷ୍ଟା କରୁଛନ୍ତି—ତାଙ୍କ ମନରେ ସନ୍ଦେହ ହେବାକୁ ଲଗିଲା ।

କିଛି ସମୟ ପରେ, ନିଜର ମନକୁ ଦୃଢ଼ କରିନେଇ ମାଧବୀ ପଗ୍ଭରିଲା, "ଆପଣ ବିଳାସିନୀକୁ ଜାଣିଛନ୍ତି ନା ?"

କିଛି ସମୟ ଚିନ୍ତା କରି ସେ ଉତ୍ତର ଦେଲେ, "ତୋ ସାଙ୍ଗରେ ମହିଳା କଲେଜରେ ବି. ଏ. ପଢ଼ିଲାବେଳେ ତୋ'ର ଯେଉଁ ସାଙ୍ଗ ଏକାଠି ପଢ଼ୁଥିଲା, ସେଇ ତ ? ଛଅସାତ ମାସ ତଳେ ଓ୍ୱେଲୁର୍‌ଠାରେ ସିଏ କ'ଣ ଗୋଟାଏ ଅପରେଶନ୍ କରାଉଥିବା ସମୟରେ ତା'ର କାଳ ହୋଇଗଲା, —ସେ କଥା କହି ତୁ ମୋ' ଆଗରେ ଥରେ କାନ୍ଦିଥିଲୁ ।"···

"ହିଁ, ହିଁ, ସେଇ ।"

ମାଧବୀର କଣ୍ଠସ୍ୱରରେ ଦୁଃଖର ବ୍ୟଞ୍ଜନା ଭରି ରହିଥିଲା, ଏକ ଦୀର୍ଘଶ୍ୱାସ ପକାଇ ସେ ନିଜେ କହିବାକୁ ଆରମ୍ଭ କଲା, "ସେହି ବାଳାସିନୀର ବଡ଼ ଭାଇ ହେଉଛି ଧର୍ମପାଳନ୍ ।" ଅନନ୍ତନ୍ ନାୟର୍ ପ୍ରଥମଥର ପାଇଁ ଏହି କଥାଟିକୁ ଶୁଣିଲେ ।

"ଓ ହୋ ! ଏପରି କଥା ? ମୋତେ ସେ କଥା ଜଣା ନଥିଲା," —ତାଙ୍କର କଣ୍ଠସ୍ୱରରେ ବିସ୍ମୟ ଝଲକି ଉଠୁଥିଲା ।

"ହିଁ, ଆପଣଙ୍କ ସହିତ ତା' ବିଷୟରେ କଥାବାର୍ତ୍ତା କରିବାକୁ ଆଉ ଅବସର ହିଁ ମିଳିନାହିଁ ।" —ମାଧବୀ କୌଣସି ଗୋଟିଏ ଚିନ୍ତାରେ ବିଲୀନ ହୋଇଗଲା ?

ଅନେକ ସମୟ କଟିଗଲାଣି; ସକାଳର ସବୁ କାମ ପଡ଼ିରହିଛି । ଏବଂ ବାଛି ବାଛି ଆଜି ହିଁ ଇନ୍‌କମ୍ ଟ୍ୟାକ୍‌ସର ହିସାବ କରିସିବା ସକାଶେ ଆଗରୁ ଦିନ ଧାର୍ଯ୍ୟ କରିହୋଇଛି । —ଏସବୁ କଥା ଅନନ୍ତନ୍ ନାୟର୍‌ଙ୍କୁ ଟିକିଏ ଚଞ୍ଚଳ କରି ପକାଇଲା ସତ, ମାତ୍ର ତଥାପି, ତାଙ୍କୁ ଆପଣାର ସବୁ କଥା ଫିଟାଇ କହିବା ଲାଗି ମାଧବୀକୁ ଗୋଟିଏ ଅବସର ଦେବା ହେଉଛି ତାଙ୍କର କର୍ତ୍ତବ୍ୟ, ସେହି କଥାଟିର ବିଚାର କରି ସେ ପୁଣି ବସି ରହିଲେ ।

ମାଧବୀ ଆସ୍ତେ ଆସ୍ତେ ଆରମ୍ଭ କଲା, "ଆପଣଙ୍କୁ ତ ସବୁ ଜଣାଅଛି, ପନ୍ଦର ବର୍ଷ ତଳେ ମୋତେ ଜନ୍ମ ଦେଇଥିବା ସିଏ ଯେତେବେଳେ ଆଉ ସମସ୍ତଙ୍କୁ ଛାଡ଼ି ଘରୁ ଚାଲିଗଲା, ମୋତେ ସେତେବେଳେ ପାଞ୍ଚବର୍ଷ ହୋଇଥିଲା । ସେତେବେଳେ ମୁଁ ଆମ ଗାଁରେ ଥିବା ପାଠଶାଳୀରେ ପ୍ରଥମ ଶ୍ରେଣୀରେ ପଢ଼ୁଥିଲି । ଶିକ୍ଷକ ଏବଂ ମୋ' ସାଙ୍ଗରେ ପଢ଼ୁଥିବା ଝିଅମାନେ ମୋତେ ଲକ୍ଷ୍ୟ କରି ନିଜ ଭିତରେ ସବୁବେଳେ କେତେ କ'ଣ ଫୁସ୍‌ଫାସ୍ ହେଉଥିଲେ । ଏପରି କାହିଁକି ହେଉଥିଲା ମୁଁ ସେକଥା ବୁଝି ପାରୁନଥିଲି । ମାତ୍ର, ବୟସରେ ବଡ଼ ହେବା ସଙ୍ଗେ ସଙ୍ଗେ ଓ ଉଚ୍ଚ ଉଚ୍ଚ ଶ୍ରେଣୀକୁ ଉଠି ଯାଉଥିବା ସଙ୍ଗେ ସଙ୍ଗେ ମୋ' ପଛରେ ମୋ' ବିଷୟରେ ହେଉଥିବା କଥାଗୁଡ଼ାକୁ

ମୁଁ କମେ କହୁ କହୁ ବୁଝି ବ ପାରିଲି । ସେତେବେଳେ ମୋ'ର ସବୁଯାକ ଘୃଣା ଓ ଆକ୍ରୋଶ ସେହିପରି କଥା କହୁଥିବା ଲୋକମାନଙ୍କ ପାଇଁ ହିଁ ଉଦ୍ଦିଷ୍ଟ ଥିଲା । ଯେତେବେଳେ କୌଣସି କଳହ ଲାଗି ଯାଉଥିଲା, ସେତେବେଳେ ଅନ୍ତିମ ଅସ୍ତ୍ର ହିସାବରେ ଆମ ଜାତିର ପିଲମାନେ ମୋ' ମାଆ ସମ୍ବନ୍ଧରେ କେତେକେତେ ଖରାପ କଥା ମଧ୍ୟ କହି ପକାଉଥିଲେ । ସେତେବେଳେ ମୋ'ର ପିଲା—ହୃଦୟଟି ମଧ୍ୟରେ କେବେହେଲେ ନ ଶୁଖିବା ପରି କେତେକେତେ ଘାଆ ସୃଷ୍ଟି ହେବାରେ ଲାଗିଥିଲା ।"

ଅନନ୍ତନ୍ ନାସ୍ତର୍ ବଡ଼ ସଙ୍କଟରେ ପଡ଼ିଗଲେ । ସ୍ୱୟଂ ଝିଅଟା ହିଁ ଆପଣାର ମାଆ ସମ୍ବନ୍ଧରେ ଅର୍ଥାତ୍ ତାଙ୍କର ଭୂତପୂର୍ବ ପତ୍ନୀ ସମ୍ବନ୍ଧରେ ଏହିସବୁ କଥାର ଆଲୋଚନା କରି ତାଙ୍କୁ ମଧ୍ୟ ତାହାରି ଭିତରେ ଛନ୍ଦିଦେବାକୁ ବସିଛି···

"ଝିଅ ! ଏସବୁ କଣ ମୋତେ ଜଣାନାହିଁ ? ତୁ ଯେତେବେଳେ ସ୍କୁଲରେ ପଢ଼ୁଥିଲୁ, ସେତେବେଳେ କେତେକେତେ ଦିନ "ମୁଁ ଆଉ ସ୍କୁଲକୁ ଯିବିନାହିଁ" ବୋଲି କହି କାନ୍ଦି କାନ୍ଦି ଘରକୁ ଫେରୁଥିଲୁ । ଯିଏ ଚାଲିଗଲା, ତାକୁ ତ ନିଜକୁ କୌଣସି ଅପମାନ ଲାଗିଲା ନାହିଁ, ଆମକୁ କାହିଁକି ଅପମାନ ହେବ—ଏହିପରି ଭାବି ମୁଁ ନିଜେ ତୋତେ କେତେପ୍ରକାର ସାନ୍ତ୍ୱନା ଦେଇ ପୁଣି ସ୍କୁଲରେ ନେଇ ଛାଡ଼ିଦେଇ ଆସୁଥିଲି ।··· ବର୍ତ୍ତମାନ ତୁ ସେସବୁ କଥା ଆଉ କାହିଁକି କହୁଛୁ ?—"

ମାଧବୀ କିଛି କହିଲା ନାହିଁ । କିଛି ସମୟ ପରେ ପୁଣି କହି ଚାଲିଲା, "ବର୍ତ୍ତମାନ ମୁଁ ଏଇଥି ସକାଶେ ସେସବୁ ବିଷୟରେ କହିଲି ଯେ ଏହିପରି ଗୋଟାଏ କଳଙ୍କ ଲାଗିଥିବା ଫଳରେ ମୁଁ ନିଜ ଜାତିର ଅନ୍ୟ ଝିଅମାନଙ୍କ ସହିତ ଏକାଠି ମିଳାମିଶି ସେମାନଙ୍କୁ ଆଉ ଆପଣାର କରି ପାରିଲିନାହିଁ । ବାସ୍, ଏତିକ କଥାହିଁ କହିବାକୁ ଚାହୁଁଥିଲି । ତେଣୁ ଘର ଭିତରେ ହେଉ ଅଥବା ବାହାରେ ହେଉ, ସର୍ବଦା ଏକାନ୍ତ ଏକୁଟିଆ ଭାବରେ ସମୟ କଟାଇବା ଲାଗି ମୁଁ ପିଲାଦିନରୁ ହିଁ ଆପଣାକୁ ଅଭ୍ୟସ୍ତ କରିନେଇଥିଲି··· । ସେହି ସମୟରେ, ବିଲାସିନୀ ଆସି ସେହି ସ୍କୁଲରେ ନାମ ଲେଖାଇଲା···"

ସକାଳୁ ସକାଳୁ ବାପ ଆଉ ଝିଅ ସବୁ କାମ ଭୁଲି ଇଏ କେଉଁ କଥାବାର୍ତ୍ତା ଭିତରେ ଆସି ବୁଡ଼ିଗଲେ ଓ ସେଇଥିରେହିଁ ମଗ୍ନ ରହିଲେ ?—ଏକଥା ଭାବି କାମାକ୍ଷୀ ଅମ୍ମା ସେହି ସମୟରେ ଘର ଭିତରୁ ବାହାରି ଆସି ଥରେ ଅନାଇଦେଇ ପୁଣି ଚାଲିଗଲା । ଅନନ୍ତନ୍ ନାସ୍ତର୍ଙ୍କର ଧ୍ୟାନ ସେଆଡ଼କୁ ଆକୃଷ୍ଟ ହେଲା ।

କଥା ବନ୍ଦ ହୋଇଗଲା ।

କଣ୍ଠସ୍ୱରକୁ ଧୀର କରଆଣି ମାଧବୀ ପୁଣି କହିବାକୁ ଆରମ୍ଭ କଲା, "ଆମ ପରିବାରରେ ଘଟିଥିବା କଥାଗୁଡ଼ିକ ବିଷୟରେ ବିଳାସିନୀ କୌଣସି ପ୍ରକାରେ ବିଚଳିତ ହୋଇଥିବାପରି ଆଦୌ ମନେ ହେଉନଥିଲା । ସିଏ ମୋତେ ଖୁବ ଭଲ ପାଉଥିଲା । ଆପଣା ମନର ବ୍ୟଥା ଓ ଚନ୍ତାଗୁଡ଼ିକୁ କାହାରି ଆଗରେ ପ୍ରକାଶ କରିଦେଇ ତଦ୍ଦ୍ୱାରା କିଛିଟା ଆଶ୍ୱାସନା ପାଇବାଲାଗି ମୋତେ ସତେଅବା ଏକ ଅବଲମ୍ବନ ଆସି ମିଳିଲା । ମାତ୍ର ସ୍କୁଲରେ ସେହି କଥାଟିର ମଧ୍ୟ ବିରୋଧ ହେବାକୁ ଲାଗିଲା । ଆପଣ ତ ଜାଣନ୍ତି ଯେ ସେହି ସମୟରେ ଇଲଓ୍ୱା ଜାତିର ଲୋକମାନଙ୍କୁ 'ନୀଚ ଜାତି, ଅଛୁଆଁ ଜାତି' କହି ଆମ ଜାତିର ଲୋକମାନେ କେବେହେଲେ ପାଖରେ ପଶିବାକୁ ଦେଉ ନଥିଲେ । ଅଛୁଆଁ ମନୋଭାବଟି ଖୁବ ଗମ୍ଭୀର ହୋଇ ରହିଥିଲା । ଏହିପରି ହୋଇଥିଲେ ମଧ୍ୟ, ଗୋଟିଏ ଇଲଓ୍ୱା ଜାତିର ଝିଅ ସହିତ ନାୟର୍ ଜାତିର ଗୋଟିଏ ଝିଅ ଏତେବେଶୀ ଘନିଷ୍ଠତା ରଖୁଛି, ଏଥିରେ ଆମ ଜାତିର ଲୋକମାନଙ୍କର ମୋ' ପ୍ରତି ରହିଥିବା ଘୃଣା ଆହୁରି ବଢ଼ିଗଲା । ମୋ'ର କେତେ ଶିକ୍ଷୟିତ୍ରୀ ମୋତେ ପାଖକୁ ଡକାଇ କେତେଥର ବୁଝାଇଲେ, ମାତ୍ର ମୁଁ ନିଜର ଦୁଃଖଦ୍ୱାରା ଏତେବେଶୀ ପୀଡ଼ିତ ହୋଇ ପଡ଼ିଥିଲି ଯେ ମୋର ଏକମାତ୍ର ଆଶ୍ୱାସନ-କେନ୍ଦ୍ର ବିଳାସିନୀ ସହିତ କଥାବାର୍ତ୍ତା ନକରିବାର କଳ୍ପନା ମଧ୍ୟ କରିପାରୁ ନଥିଲି । ତା'ସହିତ ରହିଥିବା ମୋର ଏହି ଘନିଷ୍ଠତାର ଆଉ ଗୋଟିଏ କାରଣ ଥିଲା ।"

ମାଧବୀ ଚୁପ୍ ହୋଇଗଲା ।

ଅନନ୍ତନ୍ ନାୟର୍ ଆପଣା ମନଭିତରେ ଗୋଟାଏ ପ୍ରକାର ଯନ୍ତ୍ରଣା ହେବାକୁ ଲାଗିଲେ । ତେବେ···ଇଏ ଯେତେବେଳେ ସ୍କୁଲରେ ପଢୁଥିଲା, ସେତେବେଳେ ମଧ୍ୟ ଏହି ମାମଲାଟି ଆରମ୍ଭ ହୋଇ ଯାଇଥିଲା··· ।

"ସେତେବେଳେ ଆମ ଘରର ଅବସ୍ଥା କେତେଦୂର ଖରାପ ହୋଇଯାଇଥିଲା— ମୁଁ ସେକଥା ବେଶ୍ ବୁଝିପାରୁଥିଲି । ଶିକ୍ଷାକୁ ଅଗ୍ରସର କରାଇବାର ଅସମର୍ଥତା । ମାତ୍ର ମୁଁ ମନା କରିବାରେ ଲାଗିଥିଲେ ମଧ୍ୟ ବିଳାସିନୀ ସେହି ସମୟରେ ମୋତେ ଅର୍ଥସାହାଯ୍ୟ ମଧ୍ୟ କରୁଥିଲା । ମୋ' ସ୍ୱାଭିମାନଟା ଏଥିରେ ବାଧକ ହୋଇ ଠିଆ ହେଉଥିଲା, ତଥାପି ମୋ' ମନଭିତରେ ଅନ୍ତରସ୍ଥାର ଏହି ସଙ୍କେତଟି ଅବଶ୍ୟ ଅନୁଭୂତ ହେଉଥିଲା ଯେ ଆପଣା କୁଟୁମ୍ବରେ ଉତ୍ପନ୍ନ ହୋଇଥିବା କଳଙ୍କଟି ଯୋଗୁଁ ମୋ'ର ଆପଣାର ମଧ୍ୟ କେତେକ କର୍ତ୍ତବ୍ୟ ଆସି ଉତ୍ପନ୍ନ ହୋଇଗଲାଣି, ସେହି କର୍ତ୍ତବ୍ୟକୁ ପୂରଣ କରିବାଲାଗି ମୋ'ଲାଗି ପାଠ ପଢ଼ିବା ଓ ଚାକିରି କରିବା ମଧ୍ୟ ଗୋଟିଏ ଦୃଷ୍ଟିରୁ ଦେଖିଲେ ଅତ୍ୟନ୍ତ ଆବଶ୍ୟକ ହୋଇ ପଡ଼ିଲାଣି । ତା' ସଙ୍ଗେ ସଙ୍ଗେ, ବିଳାସିନୀର ସ୍ନେହ ଆଗରେ ମୁଣ୍ଡ ନୁଆଁଇଦେବା ବ୍ୟତୀତ ମୁଁ ଆଉ ଅନ୍ୟ କିଛିହେଲେ କରିପାରୁ ନଥିଲି । କଲେଜରେ ପାଠ ପଢ଼ିବା

ପରେ ମଧ୍ୟ ଆମ ଦୁହିଁଙ୍କ ମଧ୍ୟରେ ଏହି ସ୍ଥିତି ଅପରିବର୍ତ୍ତିନୀୟ ହୋଇ ରହିଥିଲା । ଶେଷରେ ମୁଁ ଯେତେବେଳେ ବି.ଏ. ପଢ଼ୁଥିଲି, ସେତେବେଳେ ଯାଇ ମୁଁ ଜାଣିବାକୁ ପାଇଲି ଯେ ଏହି ସବୁଯାକ ସହାନୁଭୂତି ପଛରେ ବଳାସିନୀର ଏକମାତ୍ର ଭାଇ ଧର୍ମପାଳନ ହିଁ କାର୍ଯ୍ୟକରି ଆସୁଥିଲା··· ।"

ମାଧବୀ ଅଟକିଗଲା ।

କିଛି କହିବେ ବୋଲି ଇଚ୍ଛାକରି ଅନନ୍ତନ୍ ନାସ୍ତର୍ ମୁହଁ ଖୋଲିଲେ । ପୁଣି, ଆଉକିଛି ଭାବି, କିଛି ନକହି ମାଧବୀ ଆଡ଼କୁ ଅନାଇ ରହିଲେ ।

"ସେଇ ଭାଇଟିକୁ ଛାଡ଼ିଦେଲେ ବଳାସିନୀର ଆତ୍ମୀୟସ୍ୱଜନ ଆଉ କେହି ନଥିଲେ ।— ତାଙ୍କର ପରିବାରଟି ପ୍ରଥମେ ଶେମ୍‌ପଲନ୍ଦିରେ ବାସ କରୁଥିଲା— । ବର୍ତ୍ତମାନ ଦୁହେଁ ଯାକ ଆସି ପେଟେଟ୍‌ରେ ରହିଲେ ।"

କେତେକେତେ ପ୍ରକାରର କଥା ଫିଟିଯିବାରେ ଲଗିଛି,—ଅନନ୍ତନ୍ ନାସ୍ତର୍‌ଙ୍କୁ ସେହିପରି ବୋଧ ହେଉଥିଲା ।

"ତୁ ତାଙ୍କ ଘରକୁ ଯାଉଛୁ ?" ସେ ବେଶ୍ ଅନୁଭବ କରି ପାରିଲେ ଯେ ତାଙ୍କ କଣ୍ଠସ୍ୱରରେ ଭର୍ତ୍ସନାର କିଛିତ୍ ପରିମାଣରେ ଏକ ଗୁପ୍ତ ବି ରହିଥିଲା । ସେଥିରେ ଚକିତ ହେବାର କିଛିନାହିଁ । ଏହି ସନ୍ଧାନ୍ତରେ ଏତେଦୂର ଧୈର୍ଯ୍ୟର ସହିତ ସିଏ ଯେ ମାଧବୀର ସକଳ ବକ୍ତବ୍ୟକୁ ତା'ର ବାପ ହୋଇଥିଲେ ମଧ୍ୟ ସ୍ୱୟଂ କାନ ଡେରି ଶୁଣୁଛନ୍ତି,—ଏଇଟା କ'ଣ ଆଶ୍ଚର୍ଯ୍ୟର ବିଷୟ ନୁହେଁ ?

ମାଧବୀ ସଙ୍ଗେ ସଙ୍ଗେ ତାଙ୍କ ପ୍ରଶ୍ନର ଉତ୍ତର ଦେଲନାହିଁ । କିଛି ସମୟ ପର୍ଯ୍ୟନ୍ତ କ'ଣ ଗୋଟାଏ ଭାବନାରେ ନିମଗ୍ନ ହୋଇଗଲା, ତାଙ୍କର ଆଡ଼କୁ ଅନାଇ ରହିଥିଲା ।

ଏହି ସମୟରେ ଅନନ୍ତନ୍ ନାସ୍ତର୍ ଦେଖିଲେ, ବାରିପଟ ରାସ୍ତା ଦେଇ ପଡ଼ଶା ଘରୁ ଗୋଟିଏ ଛେଳି ଆସି ତାଙ୍କ ବାଡ଼ିରେ ପଶିଲା, ଏବଂ ସେ କେତେ ଶ୍ରଦ୍ଧାରେ ଯେଉଁ କନ୍ଦମୂଳଲଗାଇଥିଲେ, ତାହାର କଅଁଳିଆ ଗଜାଡ଼ାଳ ଗୁଡ଼ିକ ଟାଉଟାଉ କରି ଛିଣ୍ଡାଇନେଇ ଚୋବାଇବାକୁ ଲାଗିଲା । ସିଏ ଉଠିକରି ବସିପଡ଼ିଲେ ।

"ଖୁଡ଼ୀ ସେଇ ଛେଳିଟାକୁ ମାରିଦବଟି : କନ୍ଦମୂଳର ଲଟାଗୁଡ଼ାକୁ ଚୋବାଇ ଖାଇଯାଉଛି··· । ସିଏ ଡାକଦେଇଁ କହିବା ମାତ୍ରକେ ମାଧବୀ ଉଠିଗଲା ଓ ବାରଣ୍ଡାର ଶେଷ ମୁଣ୍ଡରେ ଠିଆହୋଇ ଯା' ଯା' କହି ଛେଳିଟାକୁ ନିକାଲି ଦେବାକୁ ଲାଗିଲା ।

ତେଣେ ରେଷ୍ଟେଇଘର କବାଟବାଟେ କାମାକ୍ଷୀ ମଧ୍ୟ ବଗିଚ୍ଚ ଭିତରକୁ ଆସି ଛେଳିଟିକୁ ଘଉଡ଼ାଇ ଦେବାକୁ ଚେଷ୍ଟା କଲା ।

"ବାଡ଼ରେ ବାଡ଼ ଦିଆଯାଇଛି, ତେବେସୁଦ୍ଧା ସିଏ କେଜାଣି କୋଉ ବାଟରେ ଭିତରକୁ ପଶି ଚାଲିଆସୁଛି ଏଇ ବ୍ରାହ୍ମଣଢିଆ ଛେଳି··· ।" ତା'ପରେ ପୁଣି କହିଲା "ବାପ ଝିଅଙ୍କର କଥାବାର୍ତ୍ତା କ'ଣ ଏବେସୁଦ୍ଧା ସରିଲାନାହିଁ ? ଆଜି କ'ଣ ଅଫିସ୍ ଆଉ ଦୋକାନକୁ ଯିବାର ନାହିଁ କି ?"—ପଚାରି କାମାକ୍ଷୀ ପୁଣି ରୋଷେଇଘର ଭିତରକୁ ଚାଲିଗଲା ।

"ହଁ ଅ, କେତେଟା ବାଜିଲାଣି ଟିକିଏ ଦେଖିଲୁ !" - ଅନନ୍ତନ୍ ନାୟର୍ ଟିକିଏ ଚଞ୍ଚଳ ହେଲାପରି ପଚାରିଲେ । ମାଧବୀ ଘର ଭିତରକୁ ଗଲା ଓ ନିଜର ହାତଘଣ୍ଟା ଘଣ୍ଟାଟିକୁ ଦେଖି ପୁଣି ଫେରିଆସିଲା,—"ନଅଟା ବାଜିଗଲାଣି ବାପା । ଏତେ ସମୟ କେତେବେଳେ ହୋଇଗଲା, କିଛି ଜଣା ବି ପଡ଼ିଲାନାହିଁ ।···"

"ହଁ, ଖୁବ ଡେରିହୋଇଗଲାଣି । ସକାଳେ କିଛି କାମ ହୋଇପାରିଲା ନାହିଁ··· ଆଚ୍ଛା, ପୁଣି ରାତିକୁ ଦେଖିବା," କହି ଅନନ୍ତନ୍ ନାୟର୍ ଘରର ପଛଆଡ଼କୁ ଚାଲିଗଲେ ।

"ଆଜି ରଣ୍ଟି ଖାଇବା ନେଇଯିବାକୁ ଆସିପାରିବ ନାହିଁ ବୋଲି ମୋତେ କାଲି କହିଯାଇଛି । ଆଜି ତା' ଭଉଣୀର ବାହାଘର···ଦି'ପହର ସକାଳେ ମାଧବୀ ଦୁଇଟି ଛଡ଼ୁଲି ବାଛି ସାଙ୍ଗରେ ନେଇଯାଇଛି ।" କାମାକ୍ଷୀ ଆସି କହିଲା, "ଯଦି ସମ୍ଭବ ହେବ, ତେବେ ମୁଁ ଦି'ପହରେ ଏଇଠିକି ଆସି ଖାଇଯିବି, ନହେଲେ ସେଇଠିକି କିଛି କିଣି—ଜଳଖିଆ କରିନେବି"—ତାକୁ ଏହି ଉତ୍ତରଟି ଦେଇ ଅନନ୍ତନ୍ ନାୟର୍ ହାତରେ ଛତାଟି ଧରି ତରତର ହୋଇ ଦୋକାନକୁ ବାହାରିଲେ । ଯେମିତି ଦୋକାନରେ ଯାଇ ପହଞ୍ଚିଲେ, ମାଲିକ ଆବାଜ ଦେଇ କହିଲେ, "କ'ଣ ହେଲା ଅନନ୍ତନ୍ ନାୟର୍ ! ଆଜି ବି କ'ଣ ତୁମେ ମନ୍ଦିରଆଡ଼େ ଚାଲିଯାଇଥିଲ··· ?"

ତାଙ୍କୁ କୌଣସି ଉତ୍ତର ନଦେଇ ଗୋଟାଏ କଷ୍ଟିତ ହସ ହସି ହସି ସେ ଆପଣାର ଆସନଟି ପାଖକୁ ଯାଇ ଛତାଟିକୁ ରଖିଲେ ।

"ଆଚ୍ଛା, ଯାହା ହେଲା ହୋଇଗଲା । ମୁଁ ଅଡ଼ିଟର୍ କୈମନ୍‌ଙ୍କ ପାଖକୁ ଫୋନ୍ କରି ଦେଇଛି । ସବୁ ଖାତାପତ୍ର ନେଇ ତୁମେ ଗାଡ଼ି ନେଇଯିବ ଓ ତାଙ୍କୁ ସାଙ୍ଗରେ ନେଇ ଇନ୍‌କମ୍ ଟ୍ୟାକ୍ସ ଅଫିସକୁ ଚାଲିଯିବ । ଦଶଟା ବାଜିବା ଉପରେ । ଆମ ହିସାବଟି ସବାଆଗ କରାଇଦେବାକୁ ହେବ ।" ମାଲିକ ତାଙ୍କୁ ତରତର କରାଇଦେଲେ ।

ଅନନ୍ତନ୍ ନାୟର୍ ତରତର ହୋଇ ହିସାବର ବହିଗୁଡ଼ିକୁ ଧରି ଆସିଲେ । ସେତେବେଳେ ମାଲିକ ଧୀର ସ୍ୱରରେ ଡ୍ରାଇଭର୍‌କୁ ଡାକି କହୁଥିଲେ, "ଭଗବନ୍, କାଲି ଅଫିସର ଇନ୍ଦୁଚୂଡ଼ନ ନାୟର୍‌ଙ୍କର କେତେଟା ବେଳକୁ ଗାଡ଼ି ଦରକାର, ପଚାରି ବୁଝି ଆସିବ । ତାଙ୍କର କାଲି ତିରୁଓ୍ୱେଟ୍ଟାରୁ ଯିବାକୁ ଅଛି ବୋଲି ସିଏ କହୁଥିଲେ । ସେ ଯେତେବେଳେ କହିବେ, ଠିକ୍ ସେତିକଟା ବେଳେ ଗାଡ଼ି ନେଇ ତାଙ୍କ ଘରେ ଯାଇ ପହଞ୍ଚିବାକୁ ପଡ଼ିବ । ତାଙ୍କୁ ପେଟ୍ରୋଲ୍ ଲାଗି କିଛି ଦେବାକୁ ପଡ଼ିବନାହିଁ ···"

"ଆଚ୍ଛା, ଯାଆନ୍ତୁ"—ମାଲିକ ଅନନ୍ତନ୍ ନାୟର୍‌ଙ୍କୁ ବିଦା କଲେ । ବହିଗୁଡ଼ିକୁ ନେଇ ସିଏ ଗାଡ଼ିରେ ଆଗ ସିଟ୍‌ରେ ଡ୍ରାଇଭର୍‌ର କଡ଼କୁ ଯାଇ ବସିଗଲେ ।

ଗାଡ଼ି ସିଧା ଅଡ଼ିଟ୍‌ର କୈମନ୍‌ଙ୍କ ଘରକୁ ଗଲା ଓ ସେଠାରୁ ତାଙ୍କୁ ଧରି ଇନ୍‌କମ୍ ଟ୍ୟାକ୍ସ ଅଫିସ୍‌ରେ ଯାଇ ପହଞ୍ଚିଲା ।

କୈମନ୍ ଆଗରେ ଯାଉଥା'ନ୍ତି । ହିସାବବହି ଗୁଡ଼ିକୁ ଦାନ୍ତରେ ଧରି ତାଙ୍କରି ପଛେ ପଛେ ଅନନ୍ତନ୍ ନାମ୍ବିଅର୍ ଅଫିସ୍ ଭିତରେ ଯାଇ ପହଞ୍ଚିଲେ ।

ସେତେବେଳକୁ ଅଫିସ୍‌ର କର୍ମଚାରୀମାନେ ଗୋଟି ଗୋଟି ହୋଇ ଚୁଲାଇ ଚଲି ଆସି ପହଞ୍ଚୁଥିଲେ ।

କୈମନ୍ ଏକୁଟିଆ ଇନ୍ଦ୍ରଚୂଡ଼ନ୍ ନାମ୍ବିଅର୍‌ଙ୍କ କୋଠରି ଭିତରକୁ ଗଲେ । ସିଏ ସେତେବେଳକୁ ତାଙ୍କ ସାମନାରେ ବସିଥିବା ଆଉଜଣେ ବ୍ୟକ୍ତିଙ୍କୁ ଭାରି ଖୁସି ହୋଇ କଛି କହିବାରେ ଲାଗିଥିଲେ ।

ବାହାରୁ ସେହିପରି ଠିଆ ହୋଇ ଅନନ୍ତନ୍ ନାମ୍ବିଅର୍ ଇନ୍ଦ୍ରଚୂଡ଼ନ୍ ନାମ୍ବିଅର୍‌ଙ୍କୁ ନିରୀକ୍ଷଣ କରି ଦେଖିଲେ । ନାଲିଆ ଗୋଲାପଫୁଲ ପରି ଚେହେରା, ପୌଢ଼ ବୟସ । କୈମନ୍ ତାଙ୍କୁ ନମସ୍କାର କଲେ ତ ସିଏ ଈଷତ୍ ହସି ପ୍ରତିନମସ୍କାର ଜଣାଇ ତାଙ୍କୁ ବସିବାକୁ କହିଲେ । କୈମନ୍ ବସିବା ପରେ ସିଏ ଆଗରୁ କହୁଥିବା ଆପଣାର କଥାଟିକୁ ପୁଣି ଆରମ୍ଭ କରିଦେଲେ । ତାଙ୍କର କଥାଗୁଡ଼ାକ ବାହାରେ ଠିଆ ହୋଇଥିବା ଅନନ୍ତନ୍ ନାମ୍ବିଅର୍‌ଙ୍କର କାନରେ ବି ଆସି ବାଜୁଥାଏ । ରାଜପରିବାର ସମ୍ବନ୍ଧରେ କଥା ପଡ଼ିଥିଲା । ତେଣୁ ସେହି କଥାକୁ ଶୁଣିବାଲାଗି ସିଏ ମଧ୍ୟ ଉତ୍ସାହିତ ହୋଇ ଉଠିଲେ ।

"ନାରାୟଣନ୍ ନାମ୍ବିଅର୍ ! ଇଏ ତ ଆଜି ବା କାଲିର କଥା ନୁହେଁ, କେତେ ପୁରୁଷ ତଳେ ଏଠାରେ ଦୁଇଜଣ ରାଣୀ ରିଜେଣ୍ଟ ହିସାବରେ ଶାସନ କରୁଥିଲେ··· । ସେତେବେଳେ ଷଡ଼ଯନ୍ତ୍ରକାରୀ ଆଠଘରିଆର ପିଲାଇମାନଙ୍କ ହେତୁ ଦେଶ ଆତଙ୍କିତ ହୋଇ-ଉଠିଥିଲା । ରାଣୀମାନେ ବା କ'ଣ କରି ପାରନ୍ତେ ! ରାଜ୍ୟଭାର ସମ୍ଭାଳିବା ଲାଗି ସେତେ-ବେଳେ ମାର୍ତ୍ତଣ୍ଡ ବର୍ମାଙ୍କର ଯଥେଷ୍ଟ ବୟସ ହୋଇ ନ ଥିଲା, ଏବଂ ଲୋକଙ୍କ ଉପରେ ମଧ୍ୟ ଆସ୍ଥାକର ହେଉ ନ ଥିଲା । ତେଣୁ ବିଶ୍ୱାସର ସହିତ ଜଣା ଆଦି ନାନାବିଧ ମୁଖ୍ୟ କାର-ବାରର ତତ୍ତ୍ୱାବଧାରଣ କରିବା ସକାଶେ କୋଲକୋଡ଼୍‌ଠାରୁ ରାଜବିଶ୍ୱାସଭାଜନ ସାତ-ଆଠୋଟି ନାମ୍ବିଅର୍ ପରିବାରକୁ ସେଠାକାର ଶାସକ ସାମୁଦିରିଙ୍କ ସାହାଯ୍ୟରେ ଏଠାକୁ ଡକାଇ ଅଣାଗଲା । ସେହି ପରିବାରମାନଙ୍କର କୃଷି, ଯୁଦ୍ଧକୌଶଳ ଓ ମୁଷ୍ଟିଯୁଦ୍ଧ ଆଦିରେ ଭାରି ଭଲ ତାଲିମ ରହିଥିଲା । ସେହି ପରିବାରଗୁଡ଼ିକ ହିଁ ଆଠଘରିଆ ପିଲାଇ ଲୋକମାନଙ୍କର କୌଣସି ପ୍ରକାର ଧମକ କିମ୍ବା ପ୍ରଲୋଭନ-କଥାରେ ବଶ ଭିତରକୁ ନ ଆସି ଶେଷ ପର୍ଯ୍ୟନ୍ତ ହିଁ ଏହି ରାଜକୁଳର ରକ୍ଷା କରିଥିଲେ ।··· ସେମାନଙ୍କର ଏହି ସେବାର ପୁରସ୍କାର ସ୍ୱରୂପ ଏହି ରାଜ୍ୟରେ ସେମାନଙ୍କୁ ବ୍ୟକ୍ତିଗତ ଭୂମି ଓ ସମ୍ପତ୍ତି ମିଳିଲା ଓ ସେମାନଙ୍କୁ ଏହି ରାଜ୍ୟର ନାଗରିକ ରୂପେ ସ୍ୱୀକାର କରି ନିଆଗଲା । ତା'ପରେ ଯୁବରାଜ ଗାଦିରେ ବସିଲେ । ସେହି ସାତ ଆଠୋଟି ପରିବାରରେ ଜନ୍ମ ହୋଇଥିବା

ବ୍ୟକ୍ତିଙ୍କ ଭିତରୁ ମୁଁ ହେଉଛି ଜଣେ,··· ସେହି ରାଜଭକ୍ତ ବିଶ୍ୱାସଭାଜନ ବ୍ୟକ୍ତିମାନଙ୍କର ରକ୍ତ ହିଁ ମୋର ଧମନୀରେ ପ୍ରବାହିତ ହେଉଛି । ସେଥିଲାଗି ଲକ୍ଷ ପ୍ରଲୋଭ ଦେଇ କେହି କଦାପି ମୋତେ କିଣିନେଇ ପାରିବ ନାହିଁ''—କହି ସେ କଥାଟାକୁ ସମାପ୍ତ କଲେ ।

ପୁଣି କହିବାକୁ ଲାଗିଲେ, ''ସାଢେ ଦଶଟା ବାଜିଗଲାଣି । ସମସ୍ତ କେତେ ଚଞ୍ଚଳ ବହିଗଲା, କିଛିହେଲେ ଜଣାପଡ଼ିଲା ନାହିଁ । ପୁଣି ସନ୍ଧ୍ୟାବେଳେ 'କେଭିଅର୍ସ'ରେ କଥାବାର୍ତ୍ତା କରିବା ।'' ଏହିପରି କହି ସେ ସମ୍ମୁଖରେ ଉପବିଷ୍ଟ ବ୍ୟକ୍ତିଜଣଙ୍କୁ ଇତିହାସର କାଳଚକ୍ରରୁ ମୁକ୍ତି ଦିଆଇଲେ । ତାଙ୍କୁ ବିଦା କରି ସାର କୈମନଙ୍କୁ କହିଲେ, ''ହିଁ, ହିଁ, ଆଜି ଭୈରବନ୍ ପିଲାଇଙ୍କର ଦୋକାନର ହିସାବ ଦେଖିବା କଥା ନା ?'' ଏକଥା ଶୁଣିବା ମାତ୍ରକେ ହିଁ ଅନନ୍ତନ୍ ନାମ୍ବିର୍ ହିସାବବହି ଗୁଡ଼ିକୁ ହାତରେ ଧରି ଭିତରକୁ ପ୍ରବେଶ କଲେ ।

ତା'ପରେ ସେ ସବୁଯାକ ବହିକୁ ଓଲଟପାଲଟ କରି ଦେଖିନେଲେ । ଛୋଟ ଛୋଟ କଥାଗୁଡ଼ିକ ବି ଇନ୍ଦ୍ରଚୂଡ଼ନ୍ ନାମ୍ବିର୍ଙ୍କର ଗୃଧ୍ର-ଦୃଷ୍ଟିରୁ ଏଡ଼ାଇ ହୋଇ ରହିଲା ନାହିଁ । କୈମନ୍ କେତେ ଆପତ୍ତି କଲେ, ପ୍ରତିତର୍କ କଲେ ଓ କୈଫିୟତ୍ ବାଢ଼ି ଦେଉଥିଲେ ମଧ୍ୟ ସେ ହିସାବଗୁଡ଼ିକୁ କାଟି ଆପଣାର ଡାଏରିବହିରେ ପ୍ରତ୍ୟେକଟି କଥାକୁ ବଡ଼ ବିସ୍ତୃତ ଭାବରେ ନାଲି କାଳିରେ ଟିପି ନେବାକୁ ଲାଗିଲେ, ଏବଂ ତାଙ୍କର ହିସାବ ରଖିବା ପ୍ରଣାଳୀଟିରେ ହିଁ କୌଣସି ଭୁଲ ହୋଇଯାଇଛି ଓ ଆଜି ମାଲିକଙ୍କର ରାଗର ଆଉ ସୀମା ରହିବନାହିଁ ବୋଲି ଭାବି ଅନନ୍ତନ୍ ନାମ୍ବିର୍ ଭୟରେ କାତର ହୋଇ-ପଡ଼ିଲେ ।

ଏହି ସମୟରେ ଭାର୍ଗବନ୍ ଅତ୍ୟନ୍ତ ଧୀର ଭାବରେ କୋଠରୀଟି ଭିତରେ ମୁଣ୍ଡଟିକୁ ଆଣି ଗଳାଇଦେଲା । ମୁଣ୍ଡଟେକି ଇନ୍ଦ୍ରଚୂଡ଼ନ୍ ନାମ୍ବିର୍ ତାକୁ ଦେଖିଲେ ଓ ପଚାରିଲେ, ''କିଏ··· ? ଓ ହୋ··· ଭୈରବନ୍ ପିଲାଇଙ୍କର ଗାଡ଼ିର ଡ୍ରାଇଭର ।'' ସିଏ କ'ଣ କହିବାକୁ ଆସିଛି, ସେହି ଅନୁମାନରେ ତା' ଆଡ଼କୁ ଅନାଇ ରହିଲେ ।

ଅନନ୍ତନ୍ ନାମ୍ବିର୍ଙ୍କର କିଛିହେଲେ କହିବାଲାଗି ହିମ୍ମତ ହେଲାନାହିଁ । ରାଜଭକ୍ତି ଏବଂ ବିଶ୍ୱାସରେ ପୂର୍ଣ୍ଣ ହୋଇଥିବା ରକ୍ତଟି ତାଙ୍କର ଧମନୀ ଗୁଡ଼ିକରେ ବହିବାରେ ଲାଗିଥିଲା ନା··· ।

'କିଛି ନାହିଁ ଆଜ୍ଞା···ମାଲିକ ପଚାରି ପଠାଇଛନ୍ତି କାଲି ଉରୁର୍ଉଡ୍ଟାକୁ କେତେବେଳେ ଯିବାର ଅଛି··· ?'' ଅତ୍ୟନ୍ତ ବିନମ୍ର ଭାବରେ ଏତକ କହି ଭାର୍ଗବନ୍ ସେହିପରି ଠିଆହୋଇ ମୁଣ୍ଡ କୁଣ୍ଡାଇବାକୁ ଲାଗିଲା ।

"ଓ ହୋ…ସେଇଥି ସକାଶେ… ? କାଲି ବଡ଼ଘେରରୁ ବାହାରିବାକୁ ପଡ଼ିବ… ତୁମେ ଠିକ୍ ପାଞ୍ଚଟା ବାଜିଲା ବେଳକୁ ଗାଡ଼ି ନେଇ ପହଞ୍ଚିବ ତ ଠିକ୍ ହେବ। ଘର କେଉଁଠି ତ ତୁମେ ଦେଖିଛ। ଏହା ଆଗରୁ ତୁମେ ସେଠାକୁ ଆସିଥିଲ ନା ? ଭୈରବକୁ ପିଲାଙ୍କୁ କହିଦେବ ଯେ କାଲି ଆମେ ଆଉ ଫେରିକରି ଆସି ପାରିବୁ ନାହିଁ। ତୁମେ ମଧ୍ୟ ସେଥିଲାଗି ପ୍ରସ୍ତୁତ ହୋଇ ଆସିଥିବ…।" ହାକମୀ ଆବାଜରେ ଭଣିଥିବା ଏହି କେତେଟା କଥା କହି ସିଏ ତାକୁ ବିଦା ଦେଲେ ଏବଂ ଇନ୍‌ଡ୍ରଚନ୍ଦନ ନାୟର୍ ହିସାବ ଗୁଡ଼ାକୁ ତନଖି ଦେଖିବାରେ ପୁନର୍ବାର ବ୍ୟସ୍ତ ହୋଇ ପଡ଼ିଲେ।

ତା'ପରେ ସିଏ ଆଉ ଖାତାରେ କିଛି ଟିପାଟିପି କଲେନାହିଁ। ଅନେକ ସମୟ ପର୍ଯ୍ୟନ୍ତ ତାଏର ବହିଟିକୁ ଉଠାଇଲେ ବି ନାହିଁ।

ହିସାବ ଶେଷ କରି ବାହାରକୁ ବାହାରିବା ବେଳକୁ ଗୋଟାଏ ବାଜି ଯାଇଥିଲା। ଅନନ୍ତନ୍ ନାୟର୍ ଗାଡ଼ିରେ ଅଡ଼ିଟର୍‌ଙ୍କୁ ଆଗ ତାଙ୍କ ଘରେ ଛାଡ଼ି ହିସାବ-ବହି ଗୁଡ଼ିକୁ ନେଇ ମାଲିକଙ୍କ ଘରେ ପହଞ୍ଚାଇ ଦେଇ ଆସିଲେ।

ମାଲିକଙ୍କର ମୁହଁରେ ପ୍ରସନ୍ନତା ଥିଲା, "ଅଡ଼ିଟର୍‌ଙ୍କ ସହିତ ବର୍ତ୍ତମାନ ଫୋନ୍‌ରେ କଥାବାର୍ତ୍ତା ହେଲା। ମୁଁ ସବୁ ଜାଣିଲି। ହିସାବର ଦିନଟିକୁ ବିପଦର ଦିନବୋଲି ଜାଣିଥିବ…ଯାହାହେଉ, ଇନ୍‌କମ୍ ଟ୍ୟାକ୍‌ସର ବିପଦଟିରୁ ତ ନିସ୍ତାର ମିଳିଗଲା। ବର୍ତ୍ତମାନ ସେଲ୍ ଟ୍ୟାକ୍‌ସର ବିପଦଟି ଆଗରେ ରହିଛି…" କହି ସେ ଯେତେବେଳେ ଅନନ୍ତନ୍ ନାୟର୍‌ଙ୍କୁ ବିଦାୟ ଦେଲେ, ସେତେବେଳେ ଅନନ୍ତନ୍ ନାୟର୍ ଘରକୁ ଯାଇ ଭୋଜନ କରି ଆସିବାଲାଗି ମାଲିକଙ୍କର ଅନୁମତି ମାଗିବାକୁ ବି ପାରୋଲେ ନାହିଁ।

ତା'ପରେ ଭାର୍ଗବନ୍ ସହିତ ମାଲିକ ଯେଉଁ ଗୁପ୍ତକଥା କହୁଥିଲେ, ତାକୁ ଦେଖିକରି ମଧ୍ୟ ନ ଦେଖିଲାପରି ହୋଇ ଅନନ୍ତନ୍ ନାୟର୍ ଧୀରେଧୀରେ ବାହାରକୁ ଆସିଲେ ଓ ଦୋକାନ ଆଡ଼କୁ ଅଗ୍ରସର ହେଲେ।

ଟାଣ ଖରା ଟାଇଁ ଟାଇଁ ମାରୁଥିଲା…।

ଦୋକାନକୁ ଯାଇ ସାନ ମାଲିକଙ୍କଠାରୁ ମଧ୍ୟ ସେ ଅନୁମତି ପାଇଗଲେ ଏବଂ ଛତା ହାତରେ ଧରି ପୂର୍ବତରଫ କଲ୍ଲାର ବସ୍‌ଷ୍ଟପ ଆଡ଼କୁ ଯିବାକୁ ଲାଗିଲେ।

କିଛି ସମସ୍ତ ଅପେକ୍ଷା କରିବାପରେ ଅନନ୍ତନ୍ ନାୟର୍ ଯେତେବେଳେ ବାସ୍ଧର ଘରେ ଯାଇ ପହଞ୍ଚିଲେ, ସେତେବେଳେ ସମସ୍ତ ଦୁଇଟାରୁ ଅଧିକ ହୋଇ ଯାଇଥିଲା ।

ଖାଇବାବେଳେ ସେ କାମାକ୍ଷୀଙ୍କୁ ପଚାରିଲେ, "ପ୍ରଶାନ୍ତକରନ୍ କ'ଣ ଫେରି ଆସିଲଣି ?" ଉତ୍ତର ମିଳିଲା, "ସକାଳୁ ତ ଯାଇଛି, ବର୍ତ୍ତମାନ ପର୍ଯ୍ୟନ୍ତ ଖାଇବାପାଇଁ ମଧ୍ୟ ଘରକୁ ଫେରିଲନାହିଁ ।···କୋଉଠିକି ଯାଇଛି କେଜାଣି ··· ?"

ବୋଧହୁଏ ଟମାସ୍ ସହିତ ସାକ୍ଷାତ୍ କରିବାକୁ ଯାଇଛି ।

କାଲି ସକାଳେ ମାଧବୀ ସହିତ ତା'ର ଯେଉଁ ବଚସା ହୋଇଥିଲା, ତା'ପରେ ଦ୍ୱି'ପହର ସମସ୍ତରେ ଲୁଗାଦୋକାନରେ ଲୀଲାକୁମାରୀ ସହିତ ସେ ତାକୁ ଯେଉଁ ଦେଖିଥିଲେ, ଅନନ୍ତନ୍ ନାୟର୍‌ଙ୍କର ସବୁ ମନେ ପଡ଼ିଗଲା । ତାଙ୍କର ଏହି ପନ୍ଦର ବର୍ଷର ଜୀବନଟାକୁ ସିଏ ଯେପରି ବିଦ୍ରୂପ କରି ଉଡ଼ାଇ ଦେବାକୁ ବସିଛି, ସିଏ ଠିକ୍ ସେହିପରି ଭାବରେ ହିଁ ଆପଣାର ମାଆ ସାଙ୍ଗରେ ଘନିଷ୍ଠତା ବଢ଼ାଇବାରେ ଲାଗିଛି । ତେବେ··· ?

ତାଙ୍କର ମନ କହୁଛି ଯେ ଏସବୁ ବିଷୟରେ ତାକୁ ସବୁକଥା ନବୁଝାଇ ସେମିତି ରହିଯିବା ଆଦୌ ଉଚିତ ହେଉନାହିଁ ।

କିନ୍ତୁ, କାଲିଠାରୁ ତାକୁ ଥରେ ଦେଖିବା ବି ତ ସମ୍ଭବ ହୋଇ ପାରିଲନାହିଁ । ସମ୍ଭବତଃ ସିଏ ଅନୁମାନ କରିସାରିଲଣି ଯେ ତାଙ୍କୁ ସବୁକଥା ଜ୍ଞାତ ହୋଇଗଲଣି ଓ ସେ ତା' ସହିତ ଏ ବିଷୟରେ କଥାବାର୍ତ୍ତା କରିବାକୁ ଚାହୁଁଛନ୍ତି ।

ଯେପରି କୌଣସି ଗୋଟାଏ ପରମ୍ପରାକୁ ହିଁ ରକ୍ଷା କରୁଛନ୍ତି, ସେହିପରି ମାତ୍ର ଅଳପ କିଛି ଖାଇ ସାରି ଆରାମ ଚଉକିଟି ଉପରେ ଟିକିଏ ଗଡ଼ିବାକୁ ଲାଗିଲେ, ଏବଂ ସେତେବେଳେ ତାଙ୍କ ହୃଦୟ ଭିତରୁ କିଏ ଯେପରି ନୀରବରେ କହିବାକୁ ଲାଗିଲା, "ଛି···ଛି···, ନିଜର ଏହି ଜୀବନଟା ପ୍ରକୃତରେ କେତେ ଖଣ୍ଡିଆ ହୋଇ ଗଲଣି, କେତେ ଛିନ୍ନଭିନ୍ନ ଓ ବିକ୍ଷିପ୍ତ ହୋଇ ଗଲଣି, କ୍ରମଶଃ କେତେବଡ଼ ଗୋଟାଏ ବୋଝ ହୋଇ ପଡ଼ିଲଣି !

ଗୋଟିଏ ଘରେ ବାସ କରୁଥିଲେ ମଧ୍ୟ ନିଜର ଜନ୍ମକଲା ପୁଅକୁ ସିଏ ସିଧାସିଧା ଗୋଟାଏ କଥା ବି ପଚାରି ପାରୁନାହାନ୍ତି । ଏତେବଡ଼ ଏ ବ୍ୟବଧାନ··· ··

ସ୍ଥିର ଭବିଷ୍ୟତ ବିଷୟରେ ସ୍ଥିରସଙ୍କଳ୍ପ ବିଚାର କରି କିଛି ନିର୍ଣ୍ଣୟ କରିବାଲାଗି ମଧ୍ୟ ସମୟ ନାହିଁ । ଏପରି ଆକୁଳତା ଆଉ ଅସ୍ଥିରତା···

ଏସବୁଥିରୁ ତାଙ୍କୁ କ'ଣ ମିଳିଲା ?

ଏସବୁର କାରଣ କ'ଣ ?

"ଘରେ ଘରଣୀ ବୋଲି କେହି ସ୍ତ୍ରୀଲୋକ ନାହାନ୍ତି ବୋଲି କ'ଣ ଏପରି ହେଉଛି ?"

ତା'ପରେ, ଅନନ୍ତନ ନାୟର୍‌ଙ୍କର ମନୋନେତ୍ରର ସମ୍ମୁଖରେ, କାଲି ସନ୍ଧ୍ୟାବେଳେ ଶାନ୍ତାମନ୍ଦିର ଭିତରେ କାତ୍ୟାୟିନୀଙ୍କୁ ଦେଖିଥିବାର ଦୃଶ୍ୟଟି ଆବିର୍ଭୂତ ହୋଇ ଆସିଲା । ନିଜର ଜୀବନଟା ତ ଏହିପରି ଭାବରେ ନଷ୍ଟ ଛାରଖାର ହୋଇଗଲା । କାତ୍ୟାୟନୀ ତେଣେ ଏପରି ଆଡ଼ମ୍ବରପୂର୍ଣ୍ଣ ଜୀବନ ଯାପନ କରିବାରେ ଲାଗିଛି ଯେ ସ୍ୱୟଂ ପ୍ରଭୁକରନ୍ ସେଠାକୁ ଯାଇ ନୈକଟ୍ୟ ଲାଭ କଲେଣି । ତାଙ୍କର ହୃଦୟ ବେଦନ କରି ଉଠିଲା ।

କ'ଣ ଏପରି କଥା ପ୍ରକୃତରେ କୁହାଯାଇ ପାରିବ ?

ଆପଣାର ବାହାର ଓ ଭିତର ଉଭୟ ଜୀବନଟା ହିଁ ଶୂନ୍ୟ ହୋଇଗଲା । ତା'ର ବାହ୍ୟ ଜୀବନରେ ତେଣେ ସେହିପରି ଦୀପ୍ତିମନ୍ତତା ବଜାୟ ରହିଛି ବୋଲି କ'ଣ ଏପରି ଏକ ନିର୍ଣ୍ଣୟରେ ଆସି ପହଞ୍ଚିବା ପ୍ରକୃତରେ ସମ୍ଭବ ହେବ ?

ତାଙ୍କର ଅନ୍ତର୍ଗତ ଜୀବନଟି ଯେ କେବଳ ଫମ୍ପା ହୋଇ ଗଲଣି,—ଏଥିର ମଧ୍ୟ ପ୍ରମାଣ କ'ଣ ?

ଦଶବର୍ଷ ତଳେ ସେଇ ଯେଉଁ ପ୍ରଥମ ସାକ୍ଷାତ ହୋଇଥିଲା,······ଅନନ୍ତନ୍ ନାୟର୍ ଆଖି ଫିଟାଇ ଚାରିଆଡ଼କୁ ଅନାଇଲେ । ଘର ଓ ବାହାର ସବୁକିଛି ମଧ୍ୟାହ୍ନର ନୀରବତା ଭିତରେ ନିମଗ୍ନ ହୋଇ ରହିଥିଲା ।

ଚିଁ ଚିଁ କରି ଦୁଇଟା ଘୁଣ୍ଟୁଚ ମୂଷା ଆମ୍ବଗଛର ତଳେ ଆସି ପଡ଼ିଗଲେ । କିଛିସମୟ ପର୍ଯ୍ୟନ୍ତ ପରସ୍ପର ଯୁକ୍ତ ହୋଇ ରହିଲେ; ତା' ପରେ ପୁଣି ପଳାଇଗଲେ ।

ଆମ୍ବଗଛର ନୀଳ ଛାୟା ବାରଣ୍ଡାଟିକୁ ବେଶ୍ ଶୀତଳ କରିଦେବାରେ ଲାଗିଛି; ତଥାପି ବାଡ଼ଉପରେ ଧକଧକ ହେଉଥିବା ଖରାକୁ ଅନାଇଦେଲେ ବେଳକୁ ଆଖି କ'ଣ ହୋଇଯାଉଛି । ତରତର ହୋଇ ଉଠିପଡ଼ି ଦୋକାନକୁ ଯିବାକୁ ବସିଲେ ତ ଶରୀରର କ୍ଳାନ୍ତି ତାଙ୍କୁ ଆଦୌ ତାହା କରିବାକୁ ଦେଲାନାହିଁ ଓ ସେ ବାଧ୍ୟ ହୋଇ ଠିକ୍ ସେହିପରି

ଖିବରେ ଚଉକିଟି ଉପରେ ପଡ଼ି ରହିଲେ । ତାଙ୍କର ଅର୍ଦ୍ଧନଗ୍ନ ଶରୀରଟା ଉପରେ ପବନର ହାତ ବୁଲିଭ ଯାଉଥିବାଟା ତାଙ୍କୁ ଖୁବ ସୁଖଦ ବୋଧ ହେଉଥିଲା ।

ଆଖି ଦୁଇଟା ଧୁଏଁ ଧୁଏଁ ବନ୍ଦ ହୋଇଗଲେ ।

କୋଉଠି କଣ୍ଠିକଟୁ ଧ୍ୱନି ବାହାର କରି କୁଆଟିଏ ରାବିବାରେ ଲାଗିଛି ।

ଏହି ପନ୍ଦରଟା ବର୍ଷ ଭିତରେ ମଣିଷମାନଙ୍କର ଭିଡ଼ ଭିତରେ ସାମିଲ୍ ହୋଇ ରହିଥିଲେ ମଧ୍ୟ ତାଙ୍କର ଜୀବନ ଏକାକୀତା ଦ୍ୱାରା ପରିପୂର୍ଣ୍ଣ ଗୋଟିଏ ଦ୍ୱୀପ ପରି ହୋଇ ରହିଯାଇଛି; ମାତ୍ର ଏହାର କାରଣ କ'ଣ ?

ମାଧବୀ ଆଜି ସକାଳେ ନିଜ ବିଷୟରେ କେତେକେତେ କଥା କହିଲା । ଏହି ସହରରେ ଓ ଏହି ଘରେ ରହିଥିଲେ ମଧ୍ୟ ସିଏ କାହିଁକି ସେହି କଥାଗୁଡ଼ିକୁ ଆଦୌ ଜାଣି ପାରିଲେ ନାହିଁ ?

ଯେପରି ମନେ ହେଉଛି, ମାଧବୀ ନିଶ୍ଚୟ ସେହି ପିଲାର ଘରକୁ ଯାଉଛି । ପ୍ରଭାକରନ୍ ନିଜର ମାଆ ସାଙ୍ଗରେ ସମ୍ବନ୍ଧ ବଢ଼ାଇବାରେ ଲାଗିଛି; କେବଳ ସେତିକି ନୁହେଁ, ନୀଳାକୁମାରୀ ସହିତ ବି ସମ୍ବନ୍ଧ ବଢ଼ିବାରେ ଲାଗିଛି...

କାତ୍ୟାୟିନୀ ଯଦି ଘରେ ଥାଆନ୍ତା, ତେବେ ଘରେ କ'ଣ ଏସବୁ ଅନର୍ଥ କେବେ ଘଟିଥାନ୍ତା ? କାହିଁକି ଘଟି ନଥାନ୍ତା ? ତା'ର ଏହି ଘରେ ରହିବାଟା ହିଁ ତ ଗୋଟାଏ ଅନର୍ଥ ହୋଇ ରହିଥିଲା । ନୁହେଁ କି ? ଦାନ୍ତକୁ ଦାନ୍ତ ମିଳିଲେ ତ... ?

କିନ୍ତୁ... !

ହୁଁ । ସେ ଯାହାହେଉ ପଛକେ, ସେତେବେଳେ ନିରନ୍ତର ଯେପରି ଏକ ମାନସିକ ସଂଘର୍ଷ ଚାଲିଥିଲା, ବର୍ତ୍ତମାନ ସେସବୁ ଦୂର ହୋଇଯାଇଛି । କିନ୍ତୁ ଯାଇଛି କି ?

ମରିବ ନାହିଁ, ଜୀଇ ରହିଥିବ– ଏହିପରି ଅଣନିଃଶ୍ୱାସୀ ହୋଇ ଏହି ଯାତନାମୟ ଜୀବନଟାକୁ ଜୀଇବା ଅପେକ୍ଷା ଯଦି ପ୍ରାଣବାୟୁଟା କେବେ ବାହାରି ଯାଇ ପାରିବ, ସେଥିରେ ହୁଏତ ଅପେକ୍ଷାକୃତ କମ୍ କଷ୍ଟ ହିଁ ଭୋଗିବାକୁ ପଡ଼େ ।

ସାଙ୍ଗରେ କାର୍ଯ୍ୟ କରୁଥିବା ଅନ୍ୟମାନଙ୍କର ଈର୍ଷାପୂର୍ଣ୍ଣ ଦୃଷ୍ଟିକୁ ସହ୍ୟ କରି ସିଏ ପଦୋନ୍ନତିଟିକୁ ସ୍ୱୀକାର କରିନେଇ କାମ ସମ୍ଭାଳି କାମକୁ ଯିବାର ଗୋଟାଏ ମାସ ଚାଲିଗଲା, ତଥାପି ଅଫିସରେ ବିକ୍ରମନ୍ ତମ୍ପିଙ୍କର ଦେଖା ମିଳିଲାନାହିଁ । କାଲେ ସିଏ

ଅପ୍ରସନ୍ନ ହୋଇ ତାଙ୍କର ପଦୋନ୍ନତିଟିକୁ ପୁଣି ନାକଚ କରିଦେବେ ବା ତାଙ୍କୁ ଚାକିରିରୁ ବାହାର କରିଦେବେ, ସେହି ଭୟରେ ସେ କୃତଜ୍ଞତା ପ୍ରକଟ କରିବାକୁ ଆପଣାପଟୁ ଯେ ତାଙ୍କ ଘରକୁ ଗଲେନାହିଁ, ତାହା କେବଳ ଭଲପାଇଁ ହିଁ ହୋଇଥିଲା। ତାଙ୍କର ମନ ଏହିପରି ହିଁ ଭାବିଥିଲା।

ମାତ୍ର ଅବସ୍ଥା ଆଦୌ ସେପରି ହୋଇ ରହିଲା ନାହିଁ।

ଥରେ ରବିବାର ଦିନ···

ଛୁଟିର ଆରାମ ଅନୁଭବ କରି ଏହିପ୍ରକାର ଦି'ପହର ସମୟରେ ଠିକ୍ ଏହି ଆରାମ ଚଉକିଟି ଉପରେ ସେ ତନ୍ଦ୍ରାମଗ୍ନ ହୋଇ ପଡ଼ିଥିଲେ, ଠିକ୍ ସେତିକିବେଳେ "ତୁମେ ଏପରି ଜଣେ ବିଚିତ୍ର ମଣିଷ, ମୁଁ କେବେହେଲେ କଳ୍ପନା କରି ନଥିଲି। ସିଧା ମୋତେ ଦେଖିନେବେ ତ କଫି ପିଆଇବାକୁ ପଡ଼ିବ, — ଏହି କଥା ଭାବି ହିଁ ତ ତୁମେ ଚୁପ୍‌ଚାପ୍ ହୋଇ ରହିଗଲ।" ଏକଥା କହି ବଡ଼ କୋଲାହଳ ସହିତ ବ୍ରାଉନମନ୍ ତାଙ୍କ ଘରେ ଆସି ପହଞ୍ଚିଗଲେ।

ଅନନ୍ତନ୍ ନାୟର୍ ଆଗରୁ ଏତେ ଟିକିଏ ହେଲେ ଭାବି ନଥିଲେ ଯେ ତାଙ୍କୁ ଆସିବାକୁ ନ ଡାକିଲେ ମଧ୍ୟ ସିଏ ଏହିପରି ଆପଣାଛାଏଁ ଆସି ପହଞ୍ଚିବେ। କ'ଣ ସବୁ କହି ବା କ'ଣ ସବୁ କରି ତାଙ୍କର ସ୍ୱାଗତ କରିବାକୁ ହେବ,—ଏ କଥାଟିକୁ ମଧ୍ୟ ଜାଣି ନ ଥିବାରୁ ସେ ସ୍ତବ୍ଧ ହୋଇ ରହିଗଲେ।

"ନାହିଁ ନାହିଁ ! ଆପଣ ଯେତେବେଳେ ଅଫିସକୁ ଆସିଥାନ୍ତେ, ମୁଁ ସେତିକିବେଳେ ଆପଣଙ୍କ ପାଖକୁ ଯାଇ କୃତଜ୍ଞତା ବ୍ୟକ୍ତ କରି ଆସିବି ବୋଲି ଭାବିଥିଲି" —ସିଏ କଥାଟାକୁ ଟିକିଏ ବଙ୍କାଇ ନେବାର ଚେଷ୍ଟା କଲେ।

"ମୁଁ କାମରେ କୋଉଠିକି ଯାଇଥିବି ଓ ତୁମେ ସେହିଠାରେ କୃତଜ୍ଞତା ଜ୍ଞାପନ କରିବାକୁ ଆସିବ, ଏ କଥାଟା ମୋଟେ ଉଚିତ ହେବ ନାହିଁ ଭାବି ମୁଁ ତୁମର ଅଫିସ୍‌କୁ ଯିବା ମଧ୍ୟ ବନ୍ଦ କରି ଦେଇଥିଲି, ଏବଂ ତା'ପରେ ତୁମଠାରୁ ସିନିଅର୍ କର୍ମଚାରୀମାନେ ମୋତେ ସେଠାରେ ଦେଖି ପକାଇବେ ତ ମନେ ମନେ ମୋତେ ଅଭିଶାପ ଦେବାକୁ ବି ଆରମ୍ଭ କରିବେ।" —ଏକଥା କହି ସେ ଠୋ' ଠୋ' ହୋଇ ହସି ଉଠିଲେ। ସେ···

କେତେସମୟ ଲାଗି କାମ-କାର୍ଯ୍ୟ ସମ୍ବନ୍ଧରେ ସାଧାରଣ କଥାଗୁଡ଼ିକର ଚର୍ଚ୍ଚା କରୁଥିବା ସମୟରେ ତାଙ୍କର ଦୃଷ୍ଟି ସତେଅବା କୌଣସି ଏକ ବସ୍ତୁକୁ ଖୋଜୁଥିବା ପରି ଛଟପଟ ହୋଇ ଏଣେତେଣେ ଧାଇଁବାକୁ ଲାଗିଥିଲା—ଏହି କଥାଟିକୁ ଲକ୍ଷ୍ୟ କରିବା ଅନନ୍ତନ୍ ନାୟର୍‌ଙ୍କ ପକ୍ଷରେ ମୋଟେ କଷ୍ଟକର ହେଲାନାହିଁ।

"ସିଏ ହେଉଛନ୍ତି ବଡ଼ ଡହସିଲଦାର । ତାଙ୍କ ସାମନାରେ କେତେକେତେ ଗ୍ରାମ-ଅଧିକାରୀ ହାତଯୋଡ଼ି, ମୁହଁ ବନ୍ଦ କରି ଥର ଥର କମ୍ପି ଠିଆ ହୋଇଥାନ୍ତି— ସେହିପରି ଜଣେ ବ୍ୟକ୍ତି ଯେତେବେଳେ ତାଙ୍କ ସହିତ ସମାନ ଆସନ ଉପରେ ବସି କଥା କହୁଛନ୍ତି, ତାହାହେଲେ ·· ?

ଏହି ପ୍ରକାରର ଏକ ଅନ୍ୟାୟପୂର୍ଣ୍ଣ ପଦୋନ୍ନତକୁ ସିଏ ତାଙ୍କୁ ଯାଇ କିଛି କହିବା ପୂର୍ବରୁ ଏବଂ ଆନ୍ତରି ଉପର ସ୍ତରରେ କୌଣସି ପ୍ରକାରେ ନଷ୍ଟ୍ କି ସମ୍ଭବ କରାଇ ଦେଇ ପାରିଛନ୍ତି । ତେବେ··· ?

—ଏହିପରି କେତେକେତେ କଥା ମନରେ ଭାବି ଯେତେବେଳେ ସେ ନିଆଁ ପ୍ରୋଇବାରେ ଲଗିଥାନ୍ତି, ସେତିକବେଳେ ତନ୍ମିଙ୍କର ଆଖିଦୁଇଟା ସତେଅବା କୌଣସି ବସ୍ତୁକୁ ଖୋଜୁଥିଲା ପରି ଛଟପଟ ହୋଇ ଏଠିସେଠି ବୁଲିବାରେ ଲାଗିଥିଲା, ମନ ଭିତରେ ଜାଗ୍ରତ ହୋଇ ଆସୁଥିବା ଯାବତୀୟ ପ୍ରଶ୍ନର ପରୋକ୍ଷ ଉତ୍ତର ହୋଇ ତାହା ତାଙ୍କ ଉପରେ ଆସି ବାଡ଼େଇ ହୋଇ ଯାଉଥିଲା । ସେହି ସମୟରେ···

ସିଏ ଆଉ କେତେ ସମୟ ଏସବୁ ଦେଖି ସହ୍ୟ କରି ପାରନ୍ତେ ! ସିଏ ତ ଏପରି ଆସି ବସିଗଲେଣି ଯେ ଏଠାରୁ ପୁଣି ଫେରିବା କଥାଟା ଯେପରି ତାଙ୍କର ମୋଟେ ମନେନାହିଁ··· ।

"ତୁମେ ଆଉ ତୁମେ ଦେଇଥିବା ପ୍ରମୋଶନ୍ ଦହେଁ ଯାକ ଚୁଲିକି ଯାଅ, ବଦମାସ୍ !" —ବୋଲି କହି ତାଙ୍କର ବେକ ଧରି ତଣ୍ଡିଆ ମାରି ଘରୁ ବାହାର କରିଦେଇ କବାଟ ବନ୍ଦ କରିଦେବାକୁ ତାଙ୍କର ଇଚ୍ଛା ହେଉଥାଏ । ତାଙ୍କର ସ୍ୱାଭିମାନ ଭିତରେ ଭିତରେ ରହି ବିକ୍ଷୋଭିତ ହୋଇ ଉଠୁଥାଏ ।

ମାତ୍ର···

କୌଣସି ଭୟ···

ତା'ପରେ ଯେଉଁ ଦୃଶ୍ୟଟି ଦେଖିବାକୁ ମିଳିବ, ସେଇଟି କିପରି ହେବ ? —ତାଙ୍କ ସ୍ୱାଭିମାନ ଉପରେ ଏହିପରି ଗୋଟାଏ ଆତଙ୍କ ଧୀରେ ଧୀରେ ହାତ ବୁଲାଇ ତାକୁ ଆପଣାର ବଶ କରିଦେବାରେ ଲାଗିଥାଏ । ଏହାକୁ କ'ଣ ଲୋକେ ଭୀରୁତା··· ଓ ନପୁଂସକତା ବୋଲି କହିଥାନ୍ତି କି ?...

ମୁଁ କ'ଣ ପ୍ରକୃତରେ ଏତେ ବଳହୀନ ?

ତାଙ୍କର ମନ ଚଳୃାରେ ବୃତ୍ତି ରହିଥାଏ । ସେତେବେଳେ ସେ କହିଲେ, "ଅନନ୍ତନ୍ ନାସ୍ତର୍ ! ମୁଁ ଆସିବାର କେତେ ବେଳ ହୋଇଗଲାଣି··· । ମନେ ହେଉଛି ଯେପରି ତୁମେ ମୋତେ ପୋଷେ ଚଣ୍ଡାପାଣି ବି ପିଆଇବ ନାହିଁ— । ମୁଁ ବି ଉରଓ୍ବାଟର (କୁଲୀନ) ପରିବାରର ନାସ୍ତର୍ ଜଣେ । ମୋତେ ତୁମେ କିଛି ପିଇବାକୁ ଆଣିଦେବ ତ ତଦ୍ଦ୍ୱାରା ତୁମକୁ କଦାପି କୌଣସି ଛୁଆଁ ଲାଗି ଯିବନାହିଁ ।" ସ୍ୱର ଗୃହୀଣି କରି ସେ ନିଜେ ଯତେ ଅବା ଜବରଦସ୍ତି କରି ଏକଥା ଯେତେବେଳେ କହିଦେଲେ, ସେତେବେଳେ ପୁଣି ଆଉ କ'ଣ କରାଯିବ ?

ସେଦିନ କାତ୍ୟାୟନୀ ସହିତ—ନିଜ ପଦୋନ୍ନତି ବିଷୟରେ, ତାହାର ନାନା କାରଣ ବିଷୟରେ ଯେଉଁ ବୋଷପୂର୍ଣ୍ଣ କଥାବାର୍ତ୍ତା ହୋଇଥିଲା, ତା'ପରେ ଦୁହେଁ ରାତିରେ କିଛିତ୍ ଶାରୀରିକ ନିକଟତା ମଧ୍ୟ ପ୍ରାପ୍ତ କରି ପାରିଥିଲେ । ତଥାପି ବର୍ତ୍ତମାନ ପର୍ଯ୍ୟନ୍ତ ପାରସ୍ପରିକ, ସୁମୁଖତାପୂର୍ଣ୍ଣ ମାନସିକ ଐକ୍ୟଟି ଉପଲବ୍ଧ ହୋଇ ପାରିନଥିଲା । ଏହିପରି ଏକ ଅବସ୍ଥା··· । କିନ୍ତୁ ପରଲୋକ ଆଗରେ ଏଗୁଡ଼ାକ ନେଇ ଦେଖାଇଦେବା କ'ଣ ଉଚିତ ହେବ ? ତେଣୁ, ବର୍ତ୍ତମାନ ଆସୁଛି" ବୋଲି କହି ଭିତର ଆଡ଼କୁ ଅନାଇ ସେ ସହଜ କଣ୍ଠସ୍ୱରରେ "କାତ୍ୟାୟିନୀ, ଗିଲାସେ ଚଣ୍ଡା ଆଣିଦେଲ" ବୋଲି ନ କହିବା ପର୍ଯ୍ୟନ୍ତ ଆଉ ରହି ବି ହେଲା ନାହିଁ । ଏପରି ଏକ ଦମ୍ପତୀସ୍ଥ ସ୍ଥିତି··· ।

ଭିତରୁ କୌଣସି ଜବାବ ଶୁଣାଗଲା ନାହିଁ; ମାତ୍ର ବର୍ତ୍ତମାନ ପର୍ଯ୍ୟନ୍ତ ଘର ଶାନ୍ତ ହୋଇ ରହିଥିଲା, ତାହାର ମଧ୍ୟରୁ ଏବେ ପ୍ରଶ୍ନକରନ୍‌ର କାନ୍ଦିବା ଶବ୍ଦ ଆସି କାନରେ ପଡ଼ିଲା ।

ବ୍ରହ୍ମନ ତମ୍ପିଙ୍କର ମୁଖମଣ୍ଡଳ ଉପରେ ବେଦନଶବ୍ଦର ତରଙ୍ଗଗୁଡ଼ିକ ଯେ କେତେକ ପରିମାଣରେ ଏକ ବ୍ୟାକୁଳତାର ଭାବକୁ ପ୍ରତିଫଳିତ କରାଇ ଆଣୁଥିଲା, ତାହା ଖାରି ସ୍ପଷ୍ଟ ହୋଇ ଯାଉଥିଲା ।

କିଛିସମୟ ପରେ ରୋଷେଇଘରେ କାମ କରି କରି ମଇଳା ହୋଇ ଯାଇଥିବା, ଅତି ଲେସ୍କୋଟ୍ ହୋଇ ଯାଇଥିବା ଓ କଳା ଲାଗିଥିବା ଗୋଟିଏ ଶାଢ଼ୀ ପିନ୍ଧି କାଖରେ କାନ୍ଦୁଥିବା ପୁଅକୁ ଓ ହାତରେ ଲୋଟାଏ ଚଣ୍ଡାପାଣି ଧରି କାତ୍ୟାୟିନୀ ସେଠାରେ ପହଞ୍ଚିଲା ।

ତମ୍ପିଙ୍କ ଆଡ଼କୁ କୌଣସି ଦୃଷ୍ଟି ନପକାଇ ଚଣ୍ଡାକୁ ଟେବୁଲ୍ ଉପରେ ରଖିଦେଇ କାତ୍ୟାୟିନୀ ପୁଣି ଘର ଭିତରକୁ ଫେରିଯିବାକୁ ବୁଲିପଡ଼ିଲା ତ ଯତେଥିବା କଣ୍ଠରେ

ଲାଗିଥିବା ମାଛକୁ ଝାଂଗୁଥିବା ପରି ତାକୁ ସେଇଠି ଆଉଦଣ୍ଡେ ଅଟକାଇ ରଖିବାର ମତଲବରେ ପରମ-କାର୍ଯ୍ୟବାଦୀ ତମ୍ପି ପିଲାକୁ ଗୋଟାଏ ବାହାନା ବନାଇଦେଲେ ଓ "ଆରେ ଆ, ମୋ' ପାଖକୁ ଆ" ବୋଲି କହି ଉଠିଯାଇ କାତ୍ୟାୟିନୀ ଆଡ଼କୁ ହାତ ବଢ଼ାଇଦେଲେ । ଘର ଭିତରକୁ ଚାଲି ଯାଉଯାଉ କାତ୍ୟାୟିନୀଙ୍କୁ ବାଧ୍ୟ ହୋଇ ଲେଉଟିବାକୁ ପଡ଼ିଲା, ପ୍ରଭାକରନ୍‌କୁ ତାଙ୍କ ହାତରେ ଦେବାକୁ ପଡ଼ିଲା ।

ଅନନ୍ତନ୍ ନାମ୍ବୁର୍ ଆଗରୁ ଠିକ୍ ଯେପରି ଅନୁମାନ କରିଥିଲେ – କାତ୍ୟାୟିନୀ ଓ ତମ୍ପିଙ୍କର ଦୃଷ୍ଟି ପରସ୍ପର ସହିତ ଆସି ଯିତେଅବା ଧକ୍କା ଖାଇଗଲେ,···ଏବଂ, ପୁଣି ଏପରି ବି ସନ୍ଦେହ ହେବାକୁ ଲାଗିଲା ଯେ ପିଲାଟିକୁ ତା'ପାଖରୁ ନେବା ସମୟରେ ତମ୍ପିଙ୍କ ଆଙ୍ଗୁଠି ଓ ତା'ର ଆଙ୍ଗୁଠି କେତେକ ପରିମାଣରେ ପରସ୍ପରର ସ୍ପର୍ଶ ମଧ୍ୟ ପାଇଗଲେ ।

କିଛି ସମୟ ପରେ ପ୍ରଭାକରନ୍‌କୁ ଉଠାଇ ଧରି କୃଷ୍ଣମନ୍ ତମ୍ପି "ଆରେ ଆରେ, କେଡ଼େ ବଦମାସ୍ ପିଲାଟାରେ···।" କହି ତାକୁ ଟିକଏ ଗେଲ୍ କରି, ତା'ପରେ ବିଦା ହୋଇ ଚାଲିଗଲେ । ସିଏ ଚାଲିଯିବା ପରେ ଅନେକ ସମୟ ପର୍ଯ୍ୟନ୍ତ ଅନନ୍ତନ୍ ନାମ୍ବୁର୍ ଆପଣାର ସେହି ଜାଗାଟିରେ ହିଁ ବସି ରହିଥିଲେ, —ସେତେବେଳଯାଏ ତାଙ୍କ ମନରେ ହଜାର ହଜାର ପୀଡ଼ା···

କିଛିସମୟ ପରେ, 'କାତ୍ୟାୟିନୀ' ବୋଲି କହି ସିଏ ଯେଉଁ କଣ୍ଠସ୍ୱରଟି ଶୁଣାଇଲେ, ସେଥିରେ ଗୋଟାଏ ପ୍ରକାରର ଦ୍ୱେଷ...

କୌଣସି ପ୍ରକାର ଭାବ-ପରିବର୍ତ୍ତନ ନକରି, ଅଳ୍ପ ସମୟ ପୂର୍ବରୁ ସିଏ ଯେଉଁ ବେଶଭୂଷାରେ ସେଠାକୁ ଆସିଥିଲା, ବର୍ତ୍ତମାନ ମଧ୍ୟ ସେହି ନିରଳଙ୍କାର ଅବସ୍ଥାରେ କାତ୍ୟାୟିନୀ ଆସି ସେଠାରେ ପହଞ୍ଚିଲା ।

"କ'ଣ, ଭାରି ଖୁସି ଲାଗିଲା, ନା ?"

ତାଙ୍କର ଏହି ଟେଢ଼ା ପ୍ରଶ୍ନଟିକୁ ଶୁଣି କ୍ରୋଧର ଆବେଶରେ କାତ୍ୟାୟିନୀର ନାକ ସତେଅବା ଏଡ଼େ ହୋଇ ଫୁଲିଯିବାକୁ ଲାଗିଲା ।

"ମୁଁ ତୁମକୁ ହିଁ ପଚାରୁଛି···। ଜାଣିଶୁଣି ତ ତୁମେ ପ୍ରଭାକରନ୍‌କୁ କହାଇଲ ଓ ପୁଣି ତାକୁ କାଖରେ ଧରି ତମ୍ପି ପାଖକୁ ଆସିଲ"

ସତେଯେପରି କେଉଁଠି କିଛିହେଲେ ଘଟି ନଥିଲା, ଏହିପରି ଏକ ଭାବ ଦେଖାଇ ବଡ଼ ଶାନ୍ତ ଭାବରେ ସିଏ ଯେଉଁ ଉତ୍ତର ଦେଲା ଓ ଯେପରି ଭାବରେ ଦେଲା,

ସେଥିରେ ଅନନ୍ତନ୍ ନାୟର୍‌ଙ୍କର ସବୁଯାକ ଇନ୍ଦ୍ରିୟ ସଚେତଅବା ଉତ୍ତପ୍ତ ହୋଇ ଉଠିଲେ, "ନାହିଁ ? ତାଙ୍କ ପାଖରେ କିଛିସମୟ ପାଇଁ ଆସି ଠିଆ ହେବାକୁ ଓ ପରସ୍ପରକୁ ସ୍ପର୍ଶ କରିବାର ମୁଖଟିକୁ ଅନୁଭବ କରିବାର ମତଲବରେ ହିଁ ତ···" ତା'ର ମୁଖମଣ୍ଡଳ ମନ୍ଦାରର ଫୁଲ ପରି ରକ୍ତବର୍ଣ୍ଣ ହୋଇ ଉଠିଲା । ଆଖି ମେଲାଇଦେଇ ଅନନ୍ତନ୍ ନାୟର୍‌ଙ୍କ ଉପରେ ଅଗ୍ନିବର୍ଷଣ କରୁଥିବାର ବେଗରେ ତା'ର ଅଙ୍ଗପ୍ରତ୍ୟଙ୍ଗ ଖାଲି କମ୍ପିବାରେ ଲାଗିଥାଏ ।

"ହଁ,—ସେଇ ମତଲବରେ...ତାହାର ସହିତ ଭେଟ କରାଇ ଦେବାକୁ ହିଁ ତୁମେ ମାନ ଆଜି ରାଗ ସବୁ ଛାଡ଼ି ମୋତେ ଘରଭିତରୁ ଡାକି ଆଣିଥିଲ···।"

ଅଗ୍ନିଖଣ୍ଡ ପରି ଏହି ଶବ୍ଦଗୁଡ଼ିକ ଯେମିତି ତା' ମୁହଁରୁ ବାହାରିଛି, ଅନନ୍ତନ୍ ନାୟର୍ ସେମିତି ସଚେତଅବା ପଶୁପ୍ରାୟ ହୋଇଗଲେ ଏବଂ ତା' ଉପରେ ବାଧା ବ୍ୟୁତ୍ପା କେତେ କ'ଣ ଗଦା କରି ପକାଇଲା । ଏ ସବୁଯାକ କଥା ବର୍ତ୍ତମାନ ମଧ୍ୟ ଠିକ୍ ଗୋଟାଏ ଦୁଃସ୍ୱପ୍ନ ପରି ମସ୍ତିଷ୍କର ଅନ୍ତଃକକ୍ଷ ଭିତରେ ଆନ୍ଦୋଳିତ ହେବାରେ ଲାଗିଛି ।

## ବନ୍ଧନି

"ହେ। ବଡ଼ଭାଇ ! କ'ଣ ଦ' ପହରଟାରେ ଏଡ଼େ ନିଦ ଲାଗିଯାଇଛୁ · ?"—କେହି ଡାକ ଜାରି ପଚାରୁଥିବାର ଶବ୍ଦ ଶୁଭିଲା ।

ତା' ସହିତ ପାଦଶବ୍ଦ ବି···

ସିଏ ଆଖି ଖୋଲିଦେଲେ । ଚାହିଁ ଦେଖିଲେ, ଆଗରେ ପଡ଼ିଥିବା ଚଉକି ଉପରେ ତାଙ୍କର ସାନଭାଇ ମଧୁସୂଦନନ୍ ନାୟର୍ ବସି ହସିବାରେ ଲାଗିଛନ୍ତି । ତା'ଠାରୁ ଖଣ୍ଡେ ଦୂରରେ ମନ୍ଦହାସ୍ୟ କରି ଅତ୍ୟନ୍ତ ବିନମ୍ର ଭାବରେ ଠିଆ ହୋଇଥିବା ଆଉଜଣେ ଯୁବକ ।

"ଆସ, ଆସ, ଧର୍ମପାଲନ୍ । ଏଠିକି ଆସି ବସ ।" ମଧୁସୂଦନନ୍ ନାୟର୍ ତାକୁ ଡାକିକରି କହିଲେ । ସିଏ ଆସି ପାଖରେ ଥୁଆ ହୋଇଥିବା ଟୁଲ୍‌ଟି ଉପରେ ବସିଲା ।

'ଧର୍ମପାଲନ୍' ବୋଲି କହି ମଧୁସୂଦନନ୍ ନାୟର୍ ଯେଉଁ ନାମଟି ଉଚ୍ଚାରଣ କଲେ, ତାହାହିଁ ଅନନ୍ତନ୍ ନାୟର୍‌ଙ୍କର ସବୁଯାକ ନିଦକୁ ଏକାବେଳେକେ ଭାଙ୍ଗିଦେଇ ଗଲା ଓ ତାଙ୍କୁ ସିଧା ଉଠାଇ ବସାଇଦେଲା ।

ତାଙ୍କର ହୃଦୟକୁ କେତେ ନା କେତେ ଅଜ୍ଞାତ ଓ ଅସ୍ପଷ୍ଟ ଭାବନା ଆସି ଆକ୍ରମଣ କରି ତାଙ୍କୁ ଆଘାତ ଦେବାକୁ ଲାଗିଲେ । ସେ ଧର୍ମପାଲନ୍‌କୁ ନିରୀକ୍ଷଣ କରି ଦେଖିବାକୁ ଲାଗିଲେ ।

ଗହମ ପରି ଦେହର ରଙ୍ଗ । ଭାରି ସୁନ୍ଦର ଚେହେରା । ସୁସ୍ଥ ଦେହ । ବୟସ ପ୍ରାୟ ପଇଁତିରିଶି ବର୍ଷ ହେବ···ମଧୁସୂଦନନ୍‌ଠାରୁ ବୟସରେ କିଛି ଜ୍ୟେଷ୍ଠ ହୋଇଥିଲେ ମଧ ଦେଖିବାକୁ ଭାରି ସୁନ୍ଦର । ସୁନ୍ଦର ନିଶ···ଧଳାରଙ୍ଗର କମିଜ୍···ମଲ୍‌ମଲ୍ ଧୋତି । ଭାରି ସୁନ୍ଦର ଦେଖା ଯାଉଥିଲା ।

"ବଡ଼ ଭାଇ ! ଧର୍ମପାଲନ୍ 'ସମଦ୍ଧ ପୁଷ୍ପ' ଦୈନିକ କାଗଜରେ ସହ-ସମ୍ପାଦକର କାର୍ଯ୍ୟ କରୁଛୁ । ଆପଣ ଯ୍ୟାକୁ ଆଗରୁ ଭଲ କରି ଦେଖିଛନ୍ତି ନା ?"

ମଧୁସୂଦନନ୍‌ର ସେହି ପ୍ରଶ୍ନଟିର ତାତ୍ପର୍ଯ୍ୟଟିକୁ ସେ ଠିକ୍ ଠିକ୍ ବୁଝି ପାରୁନଥାନ୍ତି, ସେଥିଲାଗି ପ୍ରଶ୍ନମୟ ଏକ ଭାବରେ ସେ ତା'ଆଡ଼କୁ ଅନାଇ ରହିଲେ ।

"ଭାଇ,—ଇଏ ଯାଇ ସାରିଲାପରେ ମୁଁ ତୁମ ସହିତ ଆଉସବୁ କଥାବାର୍ତ୍ତା କରିବି···ଏଠାରେ ଓ୍ୱିଲିକଡ଼ୁଓ୍ୱରେ ଥିବା ପାର୍ଟି-ଅଫିସ୍‌ରେ ଆମର କିଛି କାମଥିଲା । ବୋଧହୁଏ ଲେବର୍ ମିନିଷ୍ଟର୍ ମଧ ଆସିବେ । ଟାକ୍‌ସି ବାହାରେ ଠିଆ ହୋଇଛୁ । ତାକୁ

ଆଗ ସେଠାରେ ଗ୍ରାଡ୍ଡଦେଇ ପୁଣି ମୋତେ ନେବାପାଇଁ ଏଠାକୁ ଆସିବ । ସେହି ସମୟ୍ଟି ମଧ୍ୟରେ ମୁଁ ଆପଣଙ୍କୁ ସବୁକଥା କହିବ; ମାତ୍ର ତା'ପୂର୍ବରୁ ଆପଣ ଲୋକଟିକୁ ଭଲକରି ଦେଖିନେବା ଆବଶ୍ୟକ ଥିଲା ନା ? ସେଇଥିପାଇଁ ନେଇଆସିଲି," କହି ଅନନ୍ତନ୍ ନାୟର୍ଙ୍କର ଉତ୍ତର ଲାଗି କୌଣସି ଅପେକ୍ଷା ନକରି ସେ ଏକ ଭାବପୂର୍ଣ୍ଣ ହସ ହସି ଧର୍ମପାଲନ୍‌କୁ କହିଲେ, "ଧର୍ମପାଲନ୍, ତା'ହେଲେ ତୁମେ ପ୍ରଥମେ ଯାଅ ଏବଂ ସେଠାରେ ପହଞ୍ଚି ଗାଡ଼ିକୁ ପୁଣି ଏଠାକୁ ପଠାଇଦିଅ ।" ଅତ୍ୟନ୍ତ ଭଦ୍ରତା ସହକାରେ ଧର୍ମପାଲନ୍ ଅନନ୍ତନ୍ ନାୟର୍ଙ୍କଠାରୁ ବିଦାୟ ମାଗି କହିଲା, "ମୁଁ ତା'ହେଲେ ଯାଉଛି, ଆଜ୍ଞା !"

"ହଁ, ଯାଅ" ବୋଲି ସଙ୍କେତ ଦେଇ ଅନନ୍ତନ୍ ନାୟର୍ ମୁଣ୍ଡଟିକୁ ହଲାଇ ଦେଲେ, ପୂର୍ବନିର୍ଦ୍ଧାରିତ ଯୋଜନାଟି ଅନୁସାରେ ହିଁ ଯେ ମଧୁସୂଦନନ୍ ଜାଣିଶୁଣି ଧର୍ମପାଲନ୍‌କୁ ସେଠାରୁ ଅନ୍ୟତ୍ର ପଠାଇ ଦେବାକୁ ଚାହୁଁଛି -- ଏକଥାଟି ତାଙ୍କୁ ସମ୍ପୂର୍ଣ୍ଣ ଭାବରେ ପ୍ରକଟ ହୋଇଗଲା ।

ଧର୍ମପାଲନ୍ ଚାଲିଯିବା ପରେ କିଛି ସମୟ ପର୍ଯ୍ୟନ୍ତ ମଧୁସୂଦନ ନାୟର୍ ଚୁପ୍ ହୋଇ ବସି ରହିଥିଲେ ।

"ତୁମେ ବର୍ତ୍ତମାନ ଘରେ ଥିବ କି ନାହିଁ, ସେ ବିଷୟରେ ମୋର ସନ୍ଦେହ ହେଉଥିଲା । ଦୋକାନକୁ ଫୋନ୍ କରି ବୁଝିଲି ଯେ ତୁମେ ଖାଇବାଲାଗି ଘରକୁ ଯାଇଛ," —ସେ କହିଲେ । ଅନନ୍ତନ୍ ନାୟରଙ୍କ ମନରେ ଏପରି ଗୋଟିଏ ଯନ୍ତ୍ରଣା···

ମହାଦେବ ଆୟର୍ଙ୍କ ଝିଅଟି ବିଷୟରେ ଇଏ ଆସି ମଝିରେ ପଡ଼ିଲା, କାଲି ମାଲିକ ହିଁ ତାଙ୍କ ଆଗରେ ତାହାର ଅଭିଯୋଗ କରୁଥିଲେ; ଏପରି ପରିସ୍ଥିତିରେ ଆଜି ଦୋକାନକୁ ଫୋନ କରି ଆପଣାର ସହୋଦରତ୍ୱକୁ ଦୃଢ଼ କରିବାଲାଗି ଆଉ ତା'ର ପୁଣି କି ଆବଶ୍ୟକତା ରହିଥିଲା ? ତାଙ୍କର ସବୁ ତାଳପତ୍ର କଟିଯାଉ, ଏଥିଲାଗି ଆଉ କ'ଣ ବା ବାକି ରହିଲା ? ଭୈରବନ ପିଲାଇ ସେହି କିସମର ଜଣେ ବ୍ୟକ୍ତି ଥିଲେ··· । ଯଦି ତାଙ୍କ ଭିତରେ ଏଭଳି ଯୋଗ୍ୟତା ନଥାନ୍ତା, ତେବେ ହୁଏତ ଆହୁରି କିଛି ଦିନଲାଗି ପ୍ରାସାଦ-କାର୍ଯ୍ୟାଳୟରେ ହିଁ ତାଙ୍କର ଚାକିରିଟି ରହିପାରିଥାନ୍ତା,—ଏହିପରି ଏକ ଭାବନା ଅନନ୍ତନ୍ ନାୟରଙ୍କର ମନକୁ କାଟିକାଟି ଦେବାକୁ ଆରମ୍ଭ କଲା ।

ଏହାର ଆଗଥର ଯେତେବେଳେ ସେ ତାକୁ ଦେଖିଥିଲେ, ସେତେବେଳର ତୁଳନାରେ ମଧୁସୂଦନନ୍ କିଛି ପରିମାଣରେ ଟିକିଏ କମ୍ ବୟସର ବୋଲି ମନେହେଉଛି, —ତାଙ୍କୁ ସେହିପରି ବୋଧ ହେଉଥାଏ । ତା'ର ଦେହ ଉପରେ ଉଜ୍ଜ୍ୱଳ ଧଳା କମିଜ୍ ଓ ମଲ୍‌ମଲ୍ ଧୋତି ଭାରି ଭଲ ଦେଖା ଯାଉଥିଲା ।

"ସୁକୁମାରନ୍ କପରି ଅଛି ?"

"ହୁଁ ! ତା'କଥା କ'ଣ କହିବି ! ବାହାରେ ଖବରରେ ବେଶୀ ବୁଲିବୁନାହିଁ କହିଲେ ମଧ୍ୟ ସେ ମାନିଲେ ଯିନା ତେବେଯାଇ ହୁଅନ୍ତା ! ଦୁଇତିନି ଦିନ ତଳେ ଶ୍ରୀ କଣ୍ଠେଶ୍ୱର ମନ୍ଦିରର ପୋଖରୀକୁ ଗାଧୋଇବାକୁ ଯାଇଥିଲା । ଭାଗ୍ୟ ଭଲ ଯେ ପାଣି ଭିତରକୁ ପଶିବା ପୂର୍ବରୁ ହିଁ ମୂର୍ଚ୍ଛିତ ହୋଇଗଲା···ଆଉଗୋଟାଏ ବଡ଼ ବିପଦରୁ ରକ୍ଷା ମିଳିଲା । ···ତା'ର ସାଙ୍ଗସାଥୀ ତାକୁ ସେଠାରୁ ଉଠାଇ ଘରକୁ ନେଇ ଆସିଲେ ···ମଧୁସୂଦନଙ୍କ ମୁଖମଣ୍ଡଳ ଉପରେ ଏତେବେଳଯାଏ ଯେଉଁ କାନ୍ତି ରହିଥିଲା, ତାହା ମଳିନ ପଡ଼ି ଆସିଲା ଏବଂ ତା'ଉପରେ ଶୋକର ଛାୟା ବ୍ୟାପ୍ତ ହୋଇଗଲା ।

କିଛି ସମୟ ପରେ ପୁଣି ଆଗର ସେହି ଉତ୍ସାହ ସହିତ ସେ କହିବାକୁ ଲାଗିଲେ, "ମୁଁ ଯୋଉ କାମଟି ସକାଶେ ଆସିଥିଲି, ସେଇଟି ବିଷୟରେ ଆପଣ ଏପର୍ଯ୍ୟନ୍ତ କିଛି ଶୁଣିନାହାନ୍ତି··· । ଏହି ସହରର 'ଅନ୍ତଃଜାତୀୟ ବିବାହସଂଘ'ର ସଭାପତି ରୂପେ ଲୋକେ ଏଥର ମୋତେ ନିର୍ବାଚିତ କରି ଦେଇଛନ୍ତି । ତେଣୁ ଆଜିକାଲି ରାଜନୀତିକ କାମଟି ସଙ୍ଗେ ସଙ୍ଗେ ମୋତେ ବିବାହାଦି ବିଷୟ ମଧ୍ୟ ଦେଖିବାକୁ ପଡ଼ୁଛି ।···"

'ମହାଦେବ ଆୟର୍ଙ୍କ ଝିଅ ଉଷା ଓ ଆଲେସିଅସ୍ ମଧ୍ୟରେ ତୁ ତ ବିବାହ ପକ୍କା କରିଦେଲୁ— କାଲି ଦୋକାନରେ ସେହି ବିଷୟରେ କଥାବାର୍ତ୍ତା ହେଉଥିଲେ··· ତା'ହେଲେ ସେକଥା କ'ଣ ଠିକ୍ ?" ମଝିରେ କଥା ପକାଇ ଅନନ୍ତନ୍ ନାୟର୍ ପଚାରିଲେ ।

"ସେଇଟା ଗୋଟାଏ ଭାରି ଲମ୍ବା କାହାଣୀ । ମୁଁ ତାକୁ ଶୁଣାଇବାକୁ ଆରମ୍ଭ କରିବି ତ ସେଇଟା ବର୍ତ୍ତମାନ ମୋଟେ ସରିବନାହିଁ ।···ମୁଁ ଆଉକେବେ ଆସି କହିବି··· । ମୁଁ ବର୍ତ୍ତମାନ ଯାହା କହିବାକୁ ଆସିଛି, ତାହା ଅଉଗୋଟିଏ କଥା ।" କହି ସିଏ ପୁଣି କିଛି ଶୁଣାଇବାକୁ ଲାଗିଲେ । ସିଏ ପ୍ରକୃତରେ କ'ଣ କହିବାକୁ ଯାଉଛନ୍ତି, ତାହା ଅନୁମାନ କରି ପାରୁଥିଲେ ମଧ୍ୟ, ତା'ର ଯାହା କହିବାର କଥା, ସିଏ କହିଦେଉ ବୋଲି ଭାବି ସେ ମଉନ ହୋଇ ବସି ରହିଲେ ।

"ମୁଁ ଯେଉଁସବୁ ମଜଦୁର-ସଂଘର ଅଧ୍ୟକ୍ଷରୂପେ କାର୍ଯ୍ୟ କରୁଛି । ସେଥିରୁ ଅଧିକାଂଶ ସଂଘରେ ଧର୍ମପାଳନ୍ ସେକ୍ରେଟରି ହୋଇ ରହିଛି । ଗତ କେତେଦିନ ହେଲା ସେ ମୋ' ପାଖରେ ଗୋଟିଏ କଥା କହିବାରେ ଲାଗିଛି । ଏଇଟି ବିଷୟରେ ମୁଁ ସବୁ-

କଥା ଭଲକରି ଜାଣିଛୁ; ତେଣୁ ଯେଉଁଦିନଠାରୁ ଏକଥାଟିକୁ ଶୁଣିଲିଣି, ସେହିଦିନଠାରୁହିଁ ମୋ' ମନରେ ମୁଁ ଭାରି ଖୁସି ଅନୁଭବ କରୁଛି । ରାଜନୀତି ସହିତ ସେ ଏତେବେଶୀ ସଂଶ୍ଳିଷ୍ଟ ହୋଇ ରହିଛି, ତଥାପି ଏହିଭଳି କଥା ମାନଙ୍କରେ ତା'ର ବଡ଼ ସଙ୍କୋଚ ମଧ୍ୟ ରହିଛି । ···ତା'ଛଡ଼ା, ଆମମାନଙ୍କୁ ଛାଡ଼ିଦେଲେ ତା'ର ଆଉକେହି ଆତ୍ମୀୟସ୍ୱଜନ ବି ନାହାନ୍ତି । ସେଇଥି ସକାଶେ ମୁଁ ସିଧା ଆପଣଙ୍କ ସହିତ କଥାବାର୍ତ୍ତା ହେବାକୁ ଆସିଲି ଓ ତାକୁ ମଧ୍ୟ ସାଙ୍ଗରେ ନେଇ ଆସିଥିଲି ।"

ଥରକରେ ସିଏ କେତେକଥା କହିଗଲା । ତା'ପରେ ଅନନ୍ତନ୍ ନାୟରଙ୍କ ଆଡ଼କୁ ଅନାଇ ଦେଖିଲା ।

ଖରା ବାଡ଼ ଡେଇଁ ସେପାଖକୁ ଗଲାଣି, ତାକୁ ଦେଖି ଦେଖି ଅନନ୍ତନ୍ ନାୟର୍ ମଧୁସୂଦନନ୍‌ଙ୍କୁ ପଚାରିଲେ, "କେତେଟା ବାଜିଲା ।" ହାତବନ୍ଧା ଘଡ଼ିଟିକୁ ଦେଖି ମଧୁସୂଦନନ୍ କହିଲେ, "ସାଢ଼େ ତିନଟା ବାଜି ଗଲାଣି ।" ···

"ଦୋକାନ ଯିବାର ସମୟ ହୋଇଗଲାଣି ।"—ଅନନ୍ତନ୍ ନାୟର୍ ତରତର ହେବାକୁ ଲାଗିଲେ । ମଧୁସୂଦନନ୍ ପୁଣି କହିଲେ, "ମୁଁ ଯାହାକହୁଛି କହିବ, ତାକୁ ଶୁଣି ଆପଣ ଭାବପ୍ରବଣ ହୋଇପଡ଼ି କଦାପି ଗୋଟାଏ କିଛି ମୀମାଂସା କରି ପକାଇବେ ନାହିଁ । ନିଜ ପରିବାରର ଅବସ୍ଥା ପଇସାର ସୁବିଧା, ଆମକୁ ସବୁକଥା ଦେଖିବାକୁ ପଡ଼ିବ । ଆଜିକାଲି ସମୟ ବହୁତ ବଦଳି ଗଲାଣି । ତେଣୁ ଆପଣଙ୍କୁ ଯେପରି ସୁଉଙ୍କାଟିଏ ବି ଖର୍ଚ୍ଚ କରିବାକୁ ନପଡ଼ିବ,—ମୁଁ ସେକଥା ନିଶ୍ଚୟ ଦେଖିବି··· ।"

ଭୂମିକା ତିଆରି କରୁ କରୁ ବର୍ତ୍ତମାନ ଅସଲ କଥାଟି ଉପରକୁ ଆସିବାର ଆଉ କୌଣସି ଲକ୍ଷଣ ବି ଦେଖାଯାଉନାହିଁ—ଏହି କଥାଟି ଭାବି ଅନନ୍ତନ୍ ନାୟର୍ ବେଶ୍ ସଂଶୟରେ ପଡ଼ିଗଲେ । ତେଣେ ଦୋକାନକୁ ଯିବାରେ ମଧ୍ୟ ଭାରି ଡେରି ହୋଇଯାଉଛି । ସକାଳେ ତ ସେଥିପାଇଁ ଦୋକାନ-ମାଲିକ ଦି'ପଦ ଝୁଙ୍କି ବି ଦେଇଥିଲେ । ତେଣୁ ସେ ସିଧା କଥାଟି ଉପରକୁ ଚାଲିଆସିଲେ, "ତୁ ଯେ ତାକୁ ଏଠାକୁ ନେଇ ଆସିଥିଲୁ, ମାଧବୀ କ'ଣ ସେ ବିଷୟରେ କିଛି ଜାଣିଛି ?"

ମଧୁସୂଦନନ୍ ହଡ଼ବଡ଼ାଇ ଗଲେ ।

"ମୁଁ ଆଜି ସକାଳେ ମାଧବୀ ସହିତ ଏହି କଥାଟି ବିଷୟରେ ଆଲୋଚନା କରୁଥିଲି । ସେତେବେଳେ ତ ସିଏ କହିଲା ନାହିଁ ଯେ ଏହି କଥାଟି ସହିତ ତୁ ମଧ୍ୟ ସମ୍ପୃକ୍ତ ରହିଛୁ,—ସେଥିଲାଗି ମୁଁ ପଚାରୁଛି ··· ।"

ମଧୁସୂଦନନ୍ ଆପଣାକୁ ସମ୍ଭାଳି ନେଲେ । କହିଲେ, "ମୋତେ ଏସବୁ କଥା ଜାଣିଅଛି ବୋଲି ମାଧବୀ ମୋଟେ ଜାଣିନାହିଁ । ମୁଁ ଆଉ ଧର୍ମପାଳନ୍ ଯେ ଏଠାକୁ ଆସିଥିଲୁ,

ଆପଣ ଦୟାକରି ଏ କଥାଟିକୁ ଆଦୌ ମାଧବୀକୁ କହିବେ ନାହିଁ । ମାଧବୀ ଧର୍ମପାଲନ୍ ଆଗରେ ପରିଷ୍କାର କରି କହିଦେଇଛି ଯେ ଯଦି କୌଣସି କାରଣରୁ ଆପଣଙ୍କର ଏହି ବିବାହରେ ସମ୍ମତି ନମିଳିବ, ତେବେ ବିବାହ ହୋଇପାରିବ ନାହିଁ । ···ମାତ୍ର··· ମୁଁ ଆପଣଙ୍କୁ ଗୋଟିଏ କଥା କହିବି···ମୁଁ ବି ମାଧବୀର ପିତା ହେବି, ସେହି ଅଧିକାରରେ ହିଁ ମୁଁ କହିବି । ଏଥିରେ ଆପଣଙ୍କର ଭାବିବାର କିଛି ନାହିଁ । ··· ବର୍ତ୍ତମାନ ତ ସେହି କାଳ ଆସି ପହଞ୍ଚିଲାଣି, ଯେତେବେଳେ କି ମନୁଷ୍ୟ ଚନ୍ଦ୍ରପୃଷ୍ଠରେ ପହଞ୍ଚି ପୁଣି ନିରାପଦରେ ସେଠାରୁ ଫେରିଆସି ପାରିଲାଣି । ଏଣେ ଆମେ ମନୁଷ୍ୟମାନେ ନିଜ ନିଜ ଭିତରେ ନାୟର୍, ଇଳଓ୍ୱ ପ୍ରଭୃତି ଜାତିଭେଦର ଶିଙ୍ଗ କାଢି ଝଗଡ଼ା କରିବାରେ ଲଗିଥିବା— ଏହାର ଆଦୌ କୌଣସି ଅର୍ଥ ନାହିଁ । ଆଜିକାଲି ନାୟର୍ - ଇଳଓ୍ୱ ମଧ୍ୟରେ ବିବାହ ହେବା ଅତି ସାଧାରଣ କଥା ହୋଇଗଲାଣି । ନିଜ ପିଲାଙ୍କର ବିବାହରେ ମୁଁ ଜାତି, ଧର୍ମ ପ୍ରଭୃତିର କୌଣସି ଭେଦ ବିଚାର କରିବି ନାହିଁ ··· ।"

ଅନନ୍ତନ୍ ନାୟର୍ ମନେମନେ କହିବାକୁ ଲାଗିଲେ, "ଇଏ ଯଥାର୍ଥରେ ଜଣେ ରାଜନୀତିକ ଭାଷଣ ଦେବାବାଲାର କାର୍ଯ୍ୟ କରୁଛି ।" ତଥାପି ତାଙ୍କର ଅନୁଭବ ହେଲା, ସକାଳେ ମାଧବୀ ସହିତ କଥାବାର୍ତ୍ତା ହେଲାବେଳେ ତାଙ୍କର ହୃଦୟ ଉପରେ ଯେଉଁ ବୋଝଟି ଆସି ଉତ୍ପନ୍ନ ହୋଇଥିଲା, ଏହାର କଥା ଶୁଣି ସେହି ବୋଝଟି ଆହୁରି ବଢିଗଲା ।

"ଏ ବିଷୟରେ ମାଧବୀ ସହିତ ମୋ'ର କେତେକ ବିଷୟ ଆଲୋଚନା କରିବାକୁ ଅଛି । ତା'ପରେ ଯାଇ ମୁଁ କୌଣସି ନିଷ୍ପତ୍ତି କରି ପାରିବି ।" — ଅନନ୍ତନ୍ ନାୟର୍ ଏକଥା କହୁଥିବା ସମୟରେ ବାହାରୁ ମଟରଗାଡ଼ିର ହର୍ଣ୍ଣ ଶବ୍ଦ ଶୁଭିଲା । ମଧୁସୂଦନନ୍ ଉଠି ଠିଆ ହେଲେ ।

"ବଡ଼ ଭାଇ — ! ଆପଣ ଭଲ କରି ଭାବିଚିନ୍ତି ଯାହାକିଛି ନିଷ୍ପତ୍ତି କରିବେ ତ ଅବଶ୍ୟ ଠିକ୍ ହେବ । ମାତ୍ର ମାଧବୀର ମାଆ ସକାଶେ ଆମ ପରିବାର ଉପରେ ଯେଉଁ କଳଙ୍କ ଆସି ଲାଗିଛି, ସେହି କାରଣଟି ଲାଗି ମଧ୍ୟ, ଓ ମାଧବୀର ଭବିଷ୍ୟତ ଦୃଷ୍ଟିରୁ ବି ମୁଁ ଆପଣଙ୍କୁ ଏହି ପରାମର୍ଶଟି ଦେବି ଯେ —ଏହି ସୁଯୋଗଟିକୁ ଆଦୌ ହାତଛଡ଼ା କରିଦେବା ଉଚିତ ନୁହେଁ ।"

ମଧୁସୂଦନନ୍‌ଙ୍କର ଏହି ଦୃଢ଼ ଶବ୍ଦଗୁଡ଼ିକ ଅନନ୍ତନ୍ ନାୟର୍‌ଙ୍କ ହୃଦୟରେ କେତେ କ'ଣ ଓଲଟପାଲଟ ପକାଇ ଦେବାରେ ଲାଗିଲେ ।

ଜଣେ ଯୁବକ । ତା'ର କମିଜ ଉପରେ ମଥା ହୋଇଥିବା ବ୍ୟାଜ୍‌ଟିରୁ ଜଣାଯାଉଛି ଯେ ସିଏ ହେଉଛି ଜଣେ ସ୍ୱେଚ୍ଛାସେବକ । ସିଏ ସବେଗ ଅଗଣା ଭିତରକୁ ପଶି-

ଆସିଲା ଓ ସେଇଠୁ ମଧୁସୂଦନନ୍‌ଙ୍କୁ ନମସ୍କାର କରି ଅତ୍ୟନ୍ତ ଶିଷ୍ଟତା ସହିତ କହିଲା, "ଆଜ୍ଞା, ମନ୍ତ୍ରୀ ଆଦି ସମସ୍ତେ ଆସିଗଲେଣି । ଆପଣଙ୍କୁ ଶୀଘ୍ର ଆସିବାକୁ କହୁଛନ୍ତି···"

"ଆଚ୍ଛା ମୁଁ ତେବେ ଯାଉଛୁ ।" —ତାକୁ ସେ ଏତକ ଉତ୍ତର ଦେଲେ, 'ତା'ହେଲେ ବଡ଼ ଖୁସି ! ··· ମୁଁ ଯାଉଛୁ ? ମୋତେ ଗୋଟିଏ ସପ୍ତାହ ମଧ୍ୟରେ ଆପଣଙ୍କର ନିଷ୍ପତ୍ତି ଯାହା ହେଲା କହିବେ—" ମଧୁସୂଦନନ୍ ବାରଣ୍ଡା ଉପରୁ ତଳକୁ ଓହ୍ଲାଇଗଲେ ।

ତାଙ୍କ ସହିତ ଅନନ୍ତନ୍ ନାମ୍ବର୍ ମଧ୍ୟ ଓହ୍ଲାଇ ଆସିଲେ ଓ ପଚାରିଲେ, "କୋଉ ମନ୍ତ୍ରୀ ?"

"ସେଇ ଲେବର୍ ମିନିଷ୍ଟର୍ ଲୁସିଆନା" । ମଧୁସୂଦନନ୍‌ଙ୍କଠାରୁ ଉତ୍ତର ମିଳିଲା ।

କେତେଦିନ ତଳେ ଖବରକାଗଜ ମାନଙ୍କରେ ଯେଉଁ ଗୁଡ଼ପତ୍ର ଦେଇଥିବାର ଖବରଟିର ଖୁବ ଚର୍ଚ୍ଚା ହେଉଥିଲା, ତାଙ୍କର ସେକଥା ମନେପଡ଼ିଗଲା ।

"ତାଙ୍କ ଗୁଡ଼ପତ୍ର ଦେବା କଥା ପୁଣି କ'ଣ ହେଲା ?"—ସେ ପଚାରିଲେ ।

"ଆଇନ୍ ଅନୁସାରେ ବର୍ତ୍ତମାନ ମଧ୍ୟ ଗୁଡ଼ପତ୍ର ହୋଇନାହିଁ । ମାତ୍ର ରାଜନୀତିକ ମତଭେଦ ହେତୁ ସିଏ ଏବଂ ବିରୋଧୀଦଳର ନେତା ଦୁହେଁଯାକ ସେହିପକ୍ଷରେ ଦୁଇଟି ଧ୍ରୁବବିନ୍ଦୁ ହୋଇ ରହି ଯାଇଛନ୍ତି ··· ··· ।

ସେ ଦୁହେଁ ଟ୍ୟାକ୍‌ସିରେ ଚାଲିସିବା ପରେ ହିଁ ଅନନ୍ତନ୍ ନାମ୍ବର୍ ଘର ଭିତରକୁ ଗଲେ ଏବଂ କମିଜ୍‌ଟିକୁ ପିନ୍ଧିନେଲେ । ହାତରେ ଛତା ଧରିଲେ, ଦୋକାନ ସିବାଲାଗି ବସ୍‌ଷ୍ଟପ୍ ଆଡ଼କୁ ଶୀଘ୍ର ପଦଚାରଣା କରି ଅଗ୍ରସର ହେଲେ ।

ସେଲ୍‌ସ୍‌-ଟ୍ୟାକ୍‌ସ୍ ଅଫିସ୍‌ରେ କାଲି ବିଜୟସ୍ବରର ଯେଉଁ ହିସାବ ଦେଖାଇବାର ଅଛି, ଅନନ୍ତନ୍ ନାୟର୍ ତାହାର ମଧ୍ୟରେ ବୁଡ଼ିକରି ରହିଥିଲେ । ଟଙ୍କାର ବଡ଼ ବଡ଼ ସଂଖ୍ୟାଗୁଡ଼ାକ ତାଙ୍କର ମସ୍ତିଷ୍କ ଭିତରେ ପରସ୍ପର ଦେହରେ ଧକ୍‌କା ବଜାଇ ଖେଳିବାରେ ଲାଗିଥିଲେ; ମାତ୍ର ତେଣେ ତାଙ୍କର ହୃଦୟ ଆପଣା ଜୀବନଟିର ସମସ୍ତ ଲାଭକ୍ଷତିର ହିସାବ କରିବାରେ ଲାଗି ଯାଇଥିଲା ।

ପୁଣି ମଧୁସୂଦନନ୍ ବି କୁଆଡ଼ୁ ଥିଲା, ଆସି ପହଞ୍ଚିଗଲା । 'ଘୁଣ୍ଟୁଚମୂଷା ପାଇଁ ମଧ୍ୟ ତା'ର ଶକ୍ତି ଅନୁରୂପ ସେବା'' ବୋଲି କହି ଆପଣାର ସବୁଦିନିଆ ରୀତିଟି ଅନୁସାରେ ତାଙ୍କର ହୃଦୟଟିକୁ ଆହୁରି ଅଡ଼ୁଆ କରିଦେଇ ଚାଲିଗଲା ।

"ଅନ୍ତଃଜାତୀୟ ବିବାହରେ ଆମର ଲଜ୍ଜା ଅନୁଭବ କରିବାର କ'ଣ ଅଛି ?"
— ସେ କହିଥିଲା ।

ମାତ୍ର...

ଯଦି ସେ ସେହିପରି ଲଜ୍ଜା ଅନୁଭବ କରିବାକୁ ଲାଗିବେ ତ ତାହାର କ'ଣ ପ୍ରକୃତରେ କୌଣସି ଅର୍ଥ ହେବ...? ଅନ୍ତର୍ଜାତୀୟ-ସମ୍ବନ୍ଧରୁ ଜାତ ହୋଇଥିବା ଗୋଟିଏ ଝିଅକୁ ହିଁ କୁଟୁମ୍ବ-ଗୌରବ ପାଇଁ ଅନେକ ଚିନ୍ତା କରୁଥିବା ତାଙ୍କ ବାପା ତାଙ୍କର ଧର୍ମପତ୍ନୀ ରୂପେ ତାଙ୍କୁ ଆଣି ଦେଇଥିଲେ । ସିଏ ବି ଅସ୍ବୀକାର ନକରି ମାଳା ପିନ୍ଧାଇ ତାକୁ ଆପଣାର ଗୃହିଣୀ କରି ନେଇଥିଲେ । ସେତେବେଳେ ସିଏ କୌଣସି ଲଜ୍ଜା ଅନୁଭବ କରିନଥିଲେ । ବର୍ତ୍ତମାନ ଆପଣାର ଝିଅର ବିବାହ କଥା ଆସି ପହଞ୍ଚିଲା ତ ସେଥିରେ ବି ଲଜ୍ଜା ଅନୁଭବ କରିବାର ପୁଣି କ'ଣ ରହିଛି ?

ଅଛି...

ସେହି କ୍ଷେତ୍ରରେ ତ ଉଚ୍ଚ ଜାତିକୁ ନେଇ ସଙ୍କଟ ଥିଲା । କାତ୍ୟାୟିନୀ ଜଣେ ବ୍ରାହ୍ମଣ ଓ ନାୟର୍-କନ୍ୟାଙ୍କଠାରୁ ଜାତ ହୋଇଥିଲା...

ଗୋଟି ନାୟର୍ ଝିଅକୁ ଗୋଟିଏ ଇଲଓ୍ବ ଘରର ବ୍ୟକ୍ତି ହାତରେ ଦେଇ ଦେବା ଦ୍ବାରା,—ଏଥିରେ ସେହି ଇଲଓ୍ବର ଯେଉଁ ପର୍ଯ୍ୟନ୍ତ ସମ୍ବନ୍ଧ ରହିଛି, ତାହା ଏକ ଉଚ୍ଚଜାତି ଜନିତ ସଙ୍କଟ ଆଣି ଉତ୍ପନ୍ନ କରିବ... । ମାତ୍ର ଯେଉଁ ପର୍ଯ୍ୟନ୍ତ ନାୟର୍-କୁଳର ସମ୍ପର୍କ ରହିଛି, ସେଥିରେ ଏକ ନିମ୍ନ 'ତି ସହିତ ହିଁ ତ ସମ୍ବନ୍ଧ ସ୍ଥାପନ କରିବାକୁ ପଡ଼ିବ...!

ଉଚ୍ଚ ଜାତି ପୁଣି କ'ଣ ? ନିମ୍ନ ଜାତି ବି କ'ଣ...? ସମସ୍ତେ ତ ସମାନ...।

ଅବଶ୍ୟ ଉଚ ବୋଲି କହିଲେ ଯଦି ପ୍ରକୃତରେ କୌଣସି ଉଚତା ପ୍ରକଟ ହେଉଥାଏ, ତେବେ ସେହି ଉଚତାକୁ ସାଙ୍ଗରେ ଧରି ସିଏ ତାଙ୍କ ପାଖକୁ ଆସିଥିଲା, ସେହି କାତ୍ୟାୟିନୀ ପୁଣି ଏବେ କୁଆଡ଼େ ଯାଇ ରହିଲା ?

ପଦୋନ୍ନତି ହେଉ ତାଙ୍କୁ ପଇସା ଅଧିକ ମିଳିଲା ସତ,···ମାତ୍ର ଏଣେ ଘରର ଖର୍ଚ୍ଚ ମଧ୍ୟ ଖୁବ୍ ବଢ଼ିଗଲା । ପ୍ରଥମେ ବାପାଙ୍କର ଋଣଟିକୁ ପରିଶୋଧ କରିବାର ଦାୟିତ୍ୱ···। ଖାଇବା ପିଇବାର ସାମଗ୍ରୀ ବାବଦକୁ ଖର୍ଚ୍ଚ···ଏହିପରି କେତେ··· କେତେ...ଖର୍ଚ୍ଚ ।

କୌଣସି ନା କୌଣସି ବାହାନା କାଢ଼ି ବାଜମନ୍ ତମ୍ପି ଅନେକ ସମୟରେ ଘରେ ଆସି ପହଞ୍ଚି ଯାଉଥିଲେ । କୌଣସି ପ୍ରକାରର ଅସ୍ୱାଭାବିକ ଭାବ ନଦେଖାଇ ବଡ଼ ସହଜ ଢଙ୍ଗରେ ତାଙ୍କର ଉପସ୍ଥିତିରେ କାତ୍ୟାୟିନୀକୁ କିଛି ନା କିଛି ପଚାରୁଥିଲେ । ତମ୍ପିକୁ ଅଟକାଇ ରଖିବା ପାଇଁ କୌଣସି ଉପାୟ ହିଁ ଦିଶୁ ନଥିଲା । ସେଥିରୁ ଉତ୍ପନ୍ନ ହେଉଥିବା ସବୁକିଛି ଆକ୍ରୋଶ ଓ ଅପମାନକୁ ସେହି କାତ୍ୟାୟିନୀର ହିଁ ମୁଣ୍ଡ ଉପରେ ନେଇ ଉତାରି ଦେବାକୁ ପଡ଼ୁଥିଲା । ଏଇଟା ଗୋଟାଏ ନପୁଂସକତା,— ଏକଥା ଜାଣିକରି ମଧ୍ୟ ଅନନ୍ତନ୍ ନାୟରଙ୍କ ମନ ଏଭଳି ଭାବରେ ଅକର୍ତ୍ତବ୍ୟ ହୋଇ ପଡ଼ିଥିଲା ଯେ, ସିଏ ସେଥିରୁ ଆଦୌ ମୁକ୍ତ ହୋଇ ପାରୁନଥିଲେ ।

ଏହି ଅକର୍ତ୍ତବ୍ୟ ହୋଇ ପଡ଼ିବାର ଅବସ୍ଥାରେ ହିଁ କାତ୍ୟାୟିନୀର ଅଭିଯୋଗମାନ ପ୍ରେତମୂର୍ତ୍ତି ଧାରଣ କରି ଆକ୍ରମଣ କରିବାକୁ ଆରମ୍ଭ କଲେ ।

ଜନ୍ମ ଓ ଆକୃତି ଆଦି ସକାଶେ ଆପଣାକୁ ବଡ଼ ବୋଲି ଭାବିବାର ସ୍ୱଭାବ, କୌଣସି ପ୍ରକାର ମିତବ୍ୟୟିତା ନଥିବାର ଅଭ୍ୟାସ, ଆଡ଼ମ୍ବର-ପ୍ରିୟତା ଏବଂ ଘରର ଅନାବଶ୍ୟକ ଖର୍ଚ୍ଚ—ଏହିପରି ଭାବରେ ତା' ବିରୁଦ୍ଧରେ ତାଙ୍କ ମନରେ ନାନା ଦୋଷର ଗୋଟାଏ ଦୀର୍ଘ ତାଲିକା ତିଆରି ହେବାରେ ଲାଗିଥିଲା । ସେଥିଲାଗି ପ୍ରତିଦିନ କୌଣସି ନା କୌଣସି ଆଧାର ମଧ୍ୟ ମିଳି ଯାଉଥିଲା । ପୁଣି, ମନ ଇଚ୍ଛା ଝୁଡ଼ାଏ ଗାଳିଦେଇ ସାରିବା ପରେ ମଧ୍ୟ କେତେଥର ସେ ହାତ ଉଠାଇ ଦେଉଥିଲେ ତ ଭଲ, ନହେଲେ ସହନଶକ୍ତିକୁ ଅତ୍ୟନ୍ତ କଷ୍ଟ ସହିବାକୁ ପଡ଼ୁଥିଲା । ଏହିପରି ଏକ ପୃଷ୍ଠଭୂମି ଉପରେ ତା'ର ମାଆର ମୃତ୍ୟୁ ହେବାଦ୍ୱାରା ଘଟିଥିବା ଜବରଦସ୍ତି ଦୁହିଁଙ୍କ ମଧ୍ୟରେ ଏକ ବ୍ୟବଧାନର ସୃଷ୍ଟି ହୋଇଗଲା, ଏବଂ ପୁଣି ତା'ର ବାପା ମଧ୍ୟ ଚିନ୍ତାଗ୍ରସ୍ତ ଅବସ୍ଥାରେ ଯେତେବେଳେ ସହର ଛାଡ଼ି ନିରୁଦ୍ଦେଶ୍ୟ ହୋଇ ଚାଲିଯାଇ ଅଦୃଶ୍ୟ ହୋଇଗଲେ, ସେତେବେଳେ ପରିସ୍ଥିତି ଆହୁରି ଖରାପ ଆକାର ଧାରଣ କଲା ।

ମାନସିକ ସଂଘର୍ଷର ଏହି ଦିନଗୁଡ଼ିକରେ ରାତିବେଳେ ତୁହିଙ୍କ ଭିତରେ ଏକ ଆଉ ଗୋଟିଏ କଥାମର ଯୁଦ୍ଧ ବି ଚାଲିବାରେ ଲାଗିଥିଲା । ଆପଣା ମନର ସବୁଯାକ ଆକ୍ରୋଶକୁ ସିଏ ବଡ଼ ନିର୍ମମ ଭାବରେ ପ୍ରଦର୍ଶନ କରିବାରେ ଲାଗିଥିଲା ଓ ତାଙ୍କୁ ପରାଜିତ କରି ବିଜୟପତାକା ଉଡ଼ାଇ ଦେବାଲାଗି ତା'ର ଏହି ପାଶବିକ ଉନ୍ମାଦ···

ତାଙ୍କ ନିଜ ମନରେ ତାହାର ଉପରେ ସବୁକିଛୁ ଅନାସ୍ଥିତତା ଓ ବିରକ୍ତି-ଭାବକୁ ଘୋରତର ରୂପରେ ପ୍ରକଟ କରିଦେବାର ଓ ତାହାକୁ ଦଳାଦଳି ଧୂଳାଧୂଳା କରି-ଦେବାର ଅପାର ରୌଦ୍ରଭାବ···

ଉଭୟଙ୍କର ଭାବରେ ଏହିପରି ଉଗ୍ରରୂପ ଧାରଣ କରି, ପରସ୍ପର ପ୍ରତି କୌଣସି ସହାନୁଭୂତି ଅଥବା ପରସ୍ପରକୁ ବୁଝିବାର କୌଣସି ପ୍ରବୃତ୍ତି ନଥାଇ, କେବଳ ଦୈହିକ ଉନ୍ମତ୍ତତାର ଆଶ୍ରୟ ନେଇ ପରସ୍ପରକୁ ଆଘାତ କରିବା ଓ ପରସ୍ପର ସହିତ ଯୁଝିବାର ଏହି କଠୋରତା···

ରାତି ମଧ୍ୟରେ, ଆପଣାର ଶକ୍ତିକୁ ସଂଯମ ମଧ୍ୟରେ ରଖି ଓ ସଂହୃତ କରି ଆପଣାକୁ ସମ୍ଭାଳି ରଖିବାରେ ଲାଗିଥିବା ତାଙ୍କର ଏକାକୀ ମନ ବର୍ତ୍ତମାନ ଏଭଳି ଅନେକାନେକ ବିବଶତା ଓ ବାଧତା ଭିତରେ ପଡ଼ି ଛିନ୍ନଭିନ୍ନ ହୋଇଗଲା···

ପରିମାଣ···?

ଏବଂ ସବୁଠାରୁ ବଡ଼ କଥା ହେଉଛି ଯେ ସେହି ତାହାର ବିଜୟରେ ହିଁ ରାତି ପରେ ରାତି ଅତିକ୍ରାନ୍ତ ହୋଇ ଯାଉଥିଲା । ତଦ୍ୱାରା ତାଙ୍କ ଭିତରେ ହୀନତାର ଭାବନାଟି ଆହୁରି ବଢ଼ିଗଲା । ଉଗ୍ର ଆକ୍ରମଣ ପାଇଁ ପୁନଃ ଉତ୍ସାହ ଆସିଲା ।

ଏହିପରି ଭାବରେ ଦିନଗୁଡ଼ିକ କଟିଯାଉଥାଏ, ଏବଂ ଏହିଭଳି ଅତୃପ୍ତିମୟ ରାତିଗୁଡ଼ିକର ସବୁଜ ଫସଲ ହୋଇ ମାଧବୀ ବି ଜନ୍ମ ହୋଇ ସଂସାରକୁ ଆସିଲା···

"ଅନନ୍ତନ୍ ନାୟର୍ ! ମନ୍ତ୍ରୀ ଲୁସିୟାନାଙ୍କ ହିସାବରେ ଏକହଜାର ଟଙ୍କା ଜମା ଲେଖିଦିଅ..." ଭୈରବନ୍ ପିଲାଇଙ୍କର ଆଦେଶବାଣୀ ଅନନ୍ତନ୍ ନାୟର୍‌ଙ୍କୁ ପୁଣି ବର୍ତ୍ତମାନ ମଧ୍ୟକୁ ଟାଣି ଆଣିଲା ।

ସେତେବେଳକୁ ସନ୍ଧ୍ୟା ହୋଇ ଯାଇଥିଲା । ଦୋକାନରେ ବତୀ ଜଳି ଉଠିଲା । ଦୋକାନରେ ଗ୍ରାହକମାନଙ୍କର ଗହଳି···। ଖାତାବହି ନେଇ ସେ ଜମା ଲେଖିଦେଲେ, ମନ୍ତ୍ରୀ ଲୁସିୟାନାଙ୍କ ଗାଡ଼ିର ଡ୍ରାଇଭର୍ ବୋଧହୁଏ; ମାଲିକଙ୍କ ପାଖରୁ ଗୋଟାଏ କ'ଣ ବିଲ୍ ଭଙ୍ଗାଇ କରି ନେଉଛି ।

"ଆରେ···ମୁରୁଗଣ୍ଡି···ଏ ସବୁଯାକ ଜିନିଷକୁ ତୁମେ ଗାଡ଼ିଭିତରେ ନେଇ ରଖିଦିଅ ।" ମାଲିକଙ୍କର ଆଦେଶ ପାଇବାମାତ୍ରେ ହିଁ ସିଏ ସବୁଯାକ ଜିନିଷ-ଗୋଟାଏ

ସାନ ଦୋକାନ ଖୋଲିବା ସକାଶେ ତାହା ନିଶ୍ଚୟ ଯଥେଷ୍ଟ ଥିଲା,—ନେଇ ମନ୍ତ୍ରୀଙ୍କ ପତାକା ଲାଗିଥିବା ଗାଡ଼ିଟି ଭିତରେ ବୋଝେଇ କରିଦେଲା । ଅନନ୍ତନ୍ ନାୟର୍ ଆପଣାର ଜାଗାଟିରେ ବସି ବସି ହିଁ ଏସବୁ ଦେଖୁଥିଲେ । ଗାଡ଼ିଭିତରେ ଆଉ କେହି ନଥିଲେ ।

ଲୁସିୟାନାଙ୍କ ମନ୍ତ୍ରୀ-କୋଠିରେ ତାଙ୍କର ସ୍ୱାମୀ ବା ପିଲାମାନେ କେହି ହେଲେ ରହୁ ନଥିଲେ ମଧ୍ୟ ତଥାପି ତାଙ୍କ ପରିବାରର ଆଉ କେହି ଆତ୍ମୀୟସ୍ୱଜନ ଅବଶ୍ୟ ରହୁଥିବେ । ଏବଂ…ମନ୍ତ୍ରୀ କ'ଣ ଜଣେ ସାଧାରଣ ମଣିଷ ହୋଇଛନ୍ତି । ଅଧିକାଂଶ ସମୟରେ ବଡ଼ ଧରଣର ଖିଆପିଆମାନ ବି ହେଉଥିବ। ଅନନ୍ତନ୍ ନାୟର୍ ମନକୁ ମନ ଏସବୁ କଥା ଭାବି ଯାଉଥିଲେ ।

ମାଲିକଙ୍କ ଠାରୁ ବିଦାହୋଇ ଡ୍ରାଇଭର୍ ଚାଲିଗଲା ।

ମାଲିକଙ୍କର ବାଆଁ ପାଖରେ ପଡ଼ିଥିବା ଚଉକିଟି ଉପରେ ଅନନ୍ତନ୍ ନାୟର୍-ଙ୍କର ଧ୍ୟାନ ଯାଇ ପଡ଼ିଲା । ଯୋଉମାନେ ମାଲିକଙ୍କର ଅତି ଅନ୍ତରଙ୍ଗ ବନ୍ଧୁଥିଲେ, କେବଳ ସେହିମାନେ ହିଁ ସେହି ଚୌକିରେ ବସିବାର ଅନୁମତି ପାଉଥିଲେ…।

ସେଠାରେ ବର୍ତ୍ତମାନ ଆଇ. ଜି. ନମ୍ବିଆର୍ ବସିଛନ୍ତି । ସିଏ ପୁରୁଣା ଲୋକ, ଚାକିରିରୁ ଅବସର ଗ୍ରହଣ କରିବାପାଇଁ ମାତ୍ର କେଇଟା ବର୍ଷ ବାକି ଅଛି । ସେ ମାଲିକଙ୍କ କାନ ପାଖରେ ଯାହାସବୁ ଗୁଣୁଗୁଣୁ କରି କହୁଥିଲେ, ସେସବୁ ଅଧା ଅଧା ହୋଇ ଅନନ୍ତନ୍ ନାୟର୍‌ଙ୍କ କାନରେ ମଧ୍ୟ ଆସି ବାଜୁଥିଲା । ମାଲିକଙ୍କର ମୁଖମଣ୍ଡଳ ଉପରେ ବଡ଼ ଉଲ୍ଲାସ ଦୃଷ୍ଟିଗୋଚର ହେଲା । ଅନନ୍ତନ୍ ନାୟର୍‌ଙ୍କ କାନ ଆହୁରି ଟେଙ୍ଗା ହୋଇ ଠିଆ ହୋଇ ଗଲା ।

"କାଲି ରାତିରେ…ପ୍ରାୟ ଗୋଟାଏ ବେଳେ…ମୋ' ଲାଗି ଫୋନ୍ ଆସିଲା… ମୁଁ ଯେତେବେଳେ ଦୌଡ଼ିକରି ଆସିଲି, ସେତେବେଳେ ଦେଖିଲି ଯେ ଅବସ୍ଥାଟା ଭାରି ଜବର ହୋଇ ଜମିବାରେ ଲାଗିଛି—କଥାଟା ଆଉ ଅନ୍ୟକିଛି ନୁହେଁ । ଲୋକଟି ମଧ୍ୟ ମାମୁଲି ଲୋକ ନୁହେଁ,—ଆମର ଭାରତବର୍ଷରେ ଥିବା ଆଉଗୋଟିଏ ରାଜ୍ୟର ସେ ପୋଲିସ୍ ବିଭାଗର ମନ୍ତ୍ରୀ,—ଏଠି ଷ୍ଟେଟ୍‌ଗେଷ୍ଟ । ରେସିଡ଼େନ୍‌ସିରେ ତାଙ୍କର ରହଣି ହେଉଥାଏ—ରାତିରେ ଟାକସିରେ ବସି ବୁଲାଡ଼ି ବୁଲାଡ଼ି ବୁଲି ଶେଷରେ ଯେତେ-ବେଳେ ଲେଉଟି ଆସିଲେ, ସେତେବେଳେ ରେସିଡ଼େନ୍‌ସିର ଚୌକିଦାର ଆଉ ତାଙ୍କ ଭିତରେ ଝଗଡ଼ା - ଗାଡ଼ିରେ ସିଏ ବସିଥିଲେ, ମଦ ପିଇ ତାଙ୍କର ଆଉ ହୋସ୍ ବୋଲି କିଛି ନଥିଲା, ସାଙ୍ଗରେ ଝିଅଟିଏ ଏବଂ—ମାଲ୍ ଆମର ଏଇଠିକାର · ତାକୁ ଦେଖି ଚୌକିଦାର ପରିଷ୍କାର ଶବ୍ଦରେ ପକାଇଲା ସେ ବୃଭାକଣଯାକଙ୍କୁ ଭିତରକୁ ସିବାଲାଗି ମନା କରି-ଦେଲା…ସିଏ ତ 'ମୁଁ ଅମୁକ - ପୋଲିସ୍‌କୁ ଡାକିବି' ବୋଲି ପ୍ରଭୃତି କହି ଧମକ

ଦେବାରେ ଲାଗିଲେ—''ଯଦି କହୁଛ ଯିବାର କଥା, ତେବେ ଆପଣ ଏକା ଭିତରକୁ ଯାଆନ୍ତୁ, ମାତ୍ର ତାଙ୍କୁ କେବେହେଲେ ଯିବାକୁ ଦେବନାହିଁ''-ଘୋଷଣାଦାର କହି ପକାଇଲା । ଶେଷରେ ତାଙ୍କର ପ୍ରାଇଭେଟ୍ ସେକ୍ରେଟାରୀ ଆସିଲେ, ମୋତେ ଫୋନ୍ କରି ଡକାଇ ପଠାଇଲେ—ଏହା ପୂର୍ବରୁ ମୁଁ ତାଙ୍କ ରାଜ୍ୟରେ କେତେ ବର୍ଷ ଚାକିରି କରୁଥିଲି—ତେଣୁ ସେ ମୋତେ ବ୍ୟକ୍ତିଗତ ଭାବରେ ଜାଣିଥିଲେ– ମୁଁ ଗଲି ଓ ଗୋଟାଏ ପ୍ରକାରେ ଝଗଡ଼ାଟିର ମୀମାଂସା କରିଦେଲି ମାତ୍ର—ମୁଁ ସେଠାରେ ଯାଇ ପହଞ୍ଚିବା ପୂର୍ବରୁ ହିଁ ସେଇ ଝିଅଟି ସେହି ଟାକ୍‌ସିରେ ହିଁ ସେଠାରୁ ପଳାଇ ଯାଇଥିଲା, ତେଣୁ ତାଙ୍କୁ କିଏ ଦେଖିବାଲାଗି ଆଉ ସୌଭାଗ୍ୟ ହେଲାନାହିଁ ।''— ନମ୍ବିଆର୍ କଥା ଶେଷ କଲେ ।

ହୁଁ—ମନ୍ତ୍ରୀ ହେଉ ବା ଜଣେ ସାମାନ୍ୟ ମଣିଷ ହେଉ, ଯୋଉଠି ଶୁଣିବ କେବଳ ଏଇ କାହାଣୀ—।

ଏଇଟା କ'ଣ ଖାଲି ଏହି ଯୁଗର ଗୋଟାଏ ବଡ଼ତ କଥା—? ନା ସବୁ ଯୁଗରେ ଠିକ୍ ଏହିପରି ହୋଇ ଆସିଛି ?—ସଂସାର ଭିତରେ ସର୍ବତ୍ର ସବୁ ଯୁଗରେ ତ ଏଗୁଡ଼ାକ ଏକ ସାଧାରଣ ଘଟଣା ପରି ହୋଇ ରହିଆସିଛି,—ଅନନ୍ତନ୍ ନାୟର୍‌ଙ୍କ ମନ ଆପଣା ଭିତରୁ ଆଶ୍ୱାସନା ଖୋଜି ଖାଲି ଛଟପଟ ହେବାରେ ଲାଗିଥିଲା ।

# ଚଉଡରଣ

ଦୋକାନ ବନ୍ଦ ହେବାକୁ ବସିଲା ତ ଅନନ୍ତନ୍ ନାୟର୍ ଛତା ଧରି ବାହାରି ପଡ଼ିଲେ । ସବୁଦିନ ପରି କ୍ଲାନ୍ତ, ଓ ମନ୍ଥର, ଖୁବ ବଳହୀନ ହୋଇ ପଡ଼ିଥିଲେ ।

ରାଜପ୍ରାସାଦର ଗୁଳିକଟି ପିବା ପରେ ସିଏ ଆଉ ଔଷଧ କିଣି ଖାଇ ପାରୁନାହାନ୍ତି । ପଇସାର ଅଭାବ । ବୁଢ଼ାରେ ସବୁବେଳେ ରହି ଆସିଥିବା କଥା ବର୍ତ୍ତମାନ ଆହୁରି ବୃଦ୍ଧି ପାଇ ଆପଣାର ପ୍ରକୋପ ଦେଖାଇବାକୁ ଲାଗିଲାଣି—ତା'ପରେ, ଦେହ ଓ ମନକୁ ଆଜକାଲି ଅତିରିକ୍ତ ପରିଶ୍ରମ ବି କରିବାକୁ ପଡ଼ୁଛି ।

ତାଙ୍କର ନିଃଶ୍ୱାସ ଫୁଲି ଉଠିବାକୁ ଲାଗିଲା ।

କାଲି ଯେତେବେଳେ ଦୋକାନ ବନ୍ଦ ହେଉଥିଲା, ସେତେବେଳେ ନମ୍ବିଲଙ୍କ ନାଡ଼ାର୍ ତାଙ୍କ ସାଙ୍ଗରେ ଆସିଥିଲେ । ଆଜି ମନେ ହେଉଛି, ଶ୍ରୀଧରନ୍ ନାୟର୍ ଅନେକ ଆଗରୁ ହିଁ ତାଙ୍କ ତମାଖୁ ଦୋକାନଟି ବନ୍ଦ କରି ଦେଇଛନ୍ତି ।

ଶାଲେ ବଜାରରେ କୋଳାହଳ ବେଶ୍ କମ୍ ହୋଇ ଯାଇଥିଲା ।

ଗଣ୍ଡୋଡ଼ି କୃଷ୍ଣନ୍‌ର ମିଜାଜ ଆଜି ଖୁବ ଉତ୍ସାହପୂର୍ଣ୍ଣ ପରି ମନେହେଉଛି ।

"ହେ କେଶବ !···ତୋ'ର ଦୋସା ଖାଇବାକୁ ମନ ହେଉଛି ତ ମାଲିକଙ୍କର ଟେବୁଲ୍ ଖୋଲି ଗୁରିପଇସା ନେଇ ପାଆ ଓ ଦୋସା କିଣି ଖା"—ସିଏ ଏଡ଼େ ପାଟିରେ କହି କହ୍ମାଇବାରେ ଲାଗିଥିଲା । ମଜୁରି ଖଟୁଥିବା ପିଲମାନେ ତାକୁ ଘେରିଯାଇ ଆହୁରି ଚିହାଇବାରେ ଲାଗିଥିଲେ । ଓ ସିଏ—

"ଶଙ୍କର ପିଲାଇର ପିଲା ହେଲେନ<br>
ପଣ୍ଡୁଷ ମଞ୍ଜୀ କୁ ମାଗିକରି ନେଲା...<br>
ଶଙ୍କର ପିଲାଇର ପିଲା ହେବାକୁ ଲାଗିଲେ<br>
ପଣୁଷ ମଞ୍ଜିକୁ ଭାଜିକରି ଖାଇଗଲେ···"

କହି ତାଳି ବଜାଇ ସେ ଏକ ବିଶେଷ ଲୟରେ ଗାଇଉଠିଲା ଓ ପୁଣି ସେହି ତାଳରେ ନାଚିବାକୁ ବି ଆରମ୍ଭ କରିଦେଲା ।

ଏପରି ପରିସ୍ଥିତିରେ, ତାକୁ ଘେରିପଟୁ ଘେରି ଠିଆ ହୋଇଥିବା ଭିଡ଼କୁ ଜବରଦସ୍ତି ଠେଲି ପେଲି ଜଣେ ସ୍ତ୍ରୀଲୋକ ତା'ଆଗକୁ ଆସି କହିଲା, "ଆଜି ଘର-ଖରଚ ପାଇଁ କିଛି ଦେବାର ମତଲବ ଅଛି ନା ନାହିଁ ?"

"ଯା—ଯା ! ସ୍ତ୍ରୀର ଘରଖରଚ ପାଇଁ ପୁଣି ପଇସା ଦରକାର ପଇସା ! ତୁ କ'ଣ ଏଠି ପଇସା ଜମା କରି ରଖିଛୁ ? ମୁଇଁ ରୋଜ ଦେଉଛୁ ଆଉ ତୁ ରୋଜ ଖରଚ କରୁଛୁ— ? କିଏ ଜାଣିଛୁ, ତୋତେ ଆଉ କିଏ ତୋ' ଖରଚ ପାଇଁ ପଇସା ଦେଉଥିବେ ?"-- ସେ ଏଡ଼େ ପାଟିରେ ଚିତ୍କାର କରି କହୁଥିଲା ।

ତା'ଆଗରେ ସେଠାରେ ଯିଏ ଆସି ଠିଆ ହୋଇଥିଲା, ଯିଏ ବୋଧହୁଏ ତା'ର ପତ୍ନୀ ହିଁ ହେବ । ଯିଏ ବି ଓଲଟଜବାବ ଦେଇ କହୁଥିଲା, "ଲଫଙ୍ଗା ଦୁଷ୍ଟ ! .. ତୋ' ଜଭରେ ପୁଣି ଏତେ ହାଡ଼ ହେଲାଣି—ପୁଣି ଯଦି ସେମିତି ବକବକ ହେବୁ, ତେବେ ମୁଁ ତୋର ଜଭକୁ କାଟି ବାହାର କରିଦେବି—ନିଜର ସ୍ତ୍ରୀ ଆଉ ଗୁରିଗୁରିଟା ପିଲାଙ୍କ ଖର୍ଚ୍ଚ ଲାଗି ପଇସା ଦେବାକୁ ଯଦି ବଳ ନାହିଁ, ତେବେ ତୁ ଦୋଳି ଦୋହଲି ଏଠିକି ଆସୁଛୁ କାହିଁକି ?—ବର୍ତ୍ତମାନ ଘରକୁ ଆସିବୁ ତ— !"

ଅଶ୍ଲୀଳ କଥାଗୁଡ଼ାକର ଜବାବ ଯିଏ ବି ସେମିତି ଅଶ୍ଲୀଳ ଭାଷାରେ ଦେବାରେ ଲାଗିଥାଏ, "ହିଁ, ଖାଲି ମୋ'ଠାରୁ ଖର୍ଚ୍ଚ ମାଗିବାକୁ କାହିଁକି ଆସିବୁ ? ତୋ'ର ଗୁରିଜଣ ପିଲାଙ୍କର ବାପମାନଙ୍କ ପାଖକୁ ଯାଇ ମାଗୁନୁ ! – ମୁଁ ମୋର ଭାଗଟା ଅଲବତ ଦେଇଦେବି— ।" ତା'ର ଗୋଡ଼ ଆଉ ମାଟିଉପରେ ରହି ପାରୁନଥାଏ । ପାଟି କରି ସେ ସେଠୁ ସେହି ସ୍ତ୍ରୀଲୋକଟିକୁ ବାହାର କରିଦେବାର ଚେଷ୍ଟା କରୁଥାଏ ।

ଏହି ନାଟକଟି ସମ୍ଭବତଃ ଏଠାରେ ପ୍ରତିଦିନ ଅଭିନୀତ ହୁଏ, ତେଣୁ ଶାଲୋ ବଜାରରେ ଲୋକମାନେ ସେଇଟି ଉପରେ ଆଦୌ କୌଣସି ଧ୍ୟାନ ଦେଉନଥିଲେ । ତଥାପି, ସେଠାରେ ଥିବା ଦୋକାନର ଟୋକାମାନଙ୍କ ଲାଗି ଏଇଟିକୁ ଯେତେଥର ଦେଖୁଥିଲେ ମଧ୍ୟ ତାକୁ ଦେଖିବାରୁ ମିଳୁଥିବା ହସଟି ଆଦୌ କମ୍ ହୋଇ ଯାଉନଥିଲା । କେତେଜଣ ନୂଆ ବ୍ୟକ୍ତି ମଧ୍ୟ ତାମସାଟିକୁ ଦେଖୁଥିଲେ ।

ସେହି ଭିଡ଼ଟିକୁ ପାରି ହୋଇ ଅନନ୍ତନ୍ ନାୟର ଆଗକୁ ଗୁଲିଲେ ।—କାତ୍ୟାୟିନୀ ମଧ୍ୟ ଠିକ ଏହିପରି ତାଙ୍କ ପାଖରେ ଅନେକ ସମୟରେ ପଇସାପାଇଁ ଆସି ଗୋଳ କରୁଥିଲା, ଦରମାର ସବୁ ପଇସା ଘରପାଇଁ ଖରଚ କରିଦେବା ପରେ ମଧ୍ୟ— । କିନ୍ତୁ ଏଇ କୃଷ୍ଣନ ତାରି ଯିଏ ତା'ର ଜବାବ ଦେବାକୁ ଯାଇ କେବେହେଲେ ଏପରି ଆକ୍ରମଣ କରି ପାରୁନଥିଲେ । କାରଣ, ପ୍ରଭାକରନ୍ ନାୟର୍ ଜନ୍ମ ହେବା ପରେ ଯାଇ ତ ତାଙ୍କର ଜୀବନ—ନାଟକଟିରେ ବିକ୍ରମନ୍ ତମ୍ପିଙ୍କର ହସ୍ତକ୍ଷେପ ଆରମ୍ଭ ହେଲା । ମାଧବୀ ଜନ୍ମ ହେବା ପର୍ଯ୍ୟନ୍ତ ଅବସ୍ଥାଟି କେତେକ ପରିମାଣରେ ଅନ୍ଧାର ମଧ୍ୟରେ ରହିଥିଲା । ବେଳେବେଳେ ଯେତେବେଳେ ସେ ଘରେ ଆସି ପହଞ୍ଚୁଥିଲେ, ଯେତେବେଳେ ଯିଏ

ଯାହା ଆସି ଔପଗ୍ୟାସିକ କେତୋଟି କଥାର ସ୍ୱଦନମସ୍ତ କରି ଯାଉଥିଲା, କେବଳ ସେତିକି··· ।

ମାତ୍ର ମାଧବୀ ଜନ୍ମ ହୋଇ ସାରିବାପରେ···

ଆଜି ଗ୍ଲକରି ଯିବାରେ ମଧ୍ୟ ଅନନ୍ତନ୍ ନାୟରଙ୍କୁ ଖରି ହାଲ୍ଲଆ ହୋଇ ପଡ଼ଲପରି ଲାଗୁଥାଏ । ତଣ୍ଟି ଶୁଖି ଯାଉଥାଏ । ଏକ ଭୟଙ୍କର ତୃଷା···

ସେ ଧୀରେ ଧୀରେ ପାପଡ଼ବାଲା ପଷ୍ଟୁ ପିଲଇଙ୍କର ଦୋକାନକୁ ଯାଇ ଗୋଟିଏ ପିଆଲା ମୂଣ୍ଡି ଦିଆ ଗ୍ୟହା ପିଇଦେଲେ । ପଷ୍ଟୁ ପିଲଇର ଔପଗ୍ୟାସିକ କଥାଗୁଡ଼ାକର ମଧ୍ୟ ସେ ଜବାବ ଦେଇ ପାରୁନଥିଲେ,—ତାଙ୍କୁ ଏପରି ଭୟଙ୍କର କ୍ଳାନ୍ତ ଲାଗୁଥିଲା, ଶୋଷ ବି ହେଉଥିଲା ।

କଫି ପିଇ ପାନ ଖାଇବାପରେ ଟିକିଏ ଉତ୍ସାହ ଆସିବାପରି ଲାଗିଲା । କାଲି ପରି ଆଜି ମଧ୍ୟ ଡେରି ହେବା ଉଚିତ ହେବନାହିଁ । ଶୀଘ୍ର ଘରକୁ ଯିବାକୁ ହେବ··· । ମାଧବୀ ସହିତ ଆରମ୍ଭ କରିଥିବା କଥାଟି ଆହୁରି ବାକୀ ରହିଛି···
ପ୍ରଭାକରନ୍‌କୁ ମଧ୍ୟ ତା'ର ବିପରୀତ ଆଚରଣଟି ବିଷୟରେ ସିଧା କହିଦେବାକୁ ହେବ ଏବଂ କୌଣସି ଏକ ମୀମାଂସାରେ ପହଞ୍ଚିବାକୁ ପଡ଼ିବ ।

ବର୍ତ୍ତମାନ ବସ୍‌ପାଇଁ ଅପେକ୍ଷା କରି ଠିଆହୋଇ ରହିବା ପରିବର୍ତ୍ତେ ଗ୍ଲକି ଗ୍ଲକି ଯିବା ହିଁ ଠିକ୍ ହେବ - ଏପରି ଭାବି ସେ ସବୁଦିନ ତୁଳନାରେ କିଛି ଅଧିକ ଜୋର୍‌ରେ ଆଗକୁ ପାଦ ପକାଇବାକୁ ଲାଗିଲେ ।

ଯେଉଁ ମଇଦାନଟିରେ ସିଏ କାଲି ଭାସୀ ସହିତ କଥାବାର୍ତ୍ତା କରିବାକୁ ବସିଥିଲେ, ସେଇଟି ଆଜି ଶୂନ୍ୟ ପଡ଼ିଛି ।

ଏଠି ସେଠି ଗୋଟିଏ ଦୁଇଟି ମୂଣ୍ଡ...

କିଏ ଜାଣିଛି, ଆଜି ମଧ୍ୟ ଭାସୀ ଓ ତା'ର ଅନୁଗାମୀମାନେ ସେଇଠି ଆସି ବସିଛନ୍ତି···ନା, ସେକଥା ମୋଟେ ହୋଇ ପାରିବନାହିଁ । ଆଜି ମଣ୍ଡକ୍‌କାଡ଼ୁର ସମାଧି ପାଖରେ ଥିବା ବଗିଚ୍ଚାରେ ଏକଜୁଟ ହେବାଲାଗି ସ୍ଥିର କରି ତ ସେମାନେ କାଲି ଏଠାରୁ ଯାଇଥିଲେ ।

ମାଧବୀ ବିଷୟରେ ଭାସ୍କରନ୍ ତାଙ୍କୁ ପ୍ରକୃତରେ ଧୋକା ହିଁ ଦେଲା ।···ହେଲେ ବି, ଏହି ବୟସରେ ମଧ୍ୟ ତା'ଭିତରେ କେତେ ଆଧ୍ୟାତ୍ମିକ ତେଜ ପ୍ରଜ୍ଜ୍ୱଳିତ ହୋଇ ନରହିଛି ।

ଅନନ୍ତନ୍ ନାୟର୍ ବସ୍ତୁତଃ ପ୍ରକାଶ ନକରି ରହି ପାରିଲେନାହିଁ ।

ବାଟ ଚାଲି ଯାଉଯାଉ, ସିଏ ସବୁଦିନ ସକାଶେ ମନଭିତରେ ଯାହାକୁ କେବେହେଲେ ସ୍ମରଣ କରିବେନାହିଁ ବୋଲି ବାରବାର ପ୍ରତିଜ୍ଞା କରି ଆସିଥିଲେ, ସେହି କାର୍ତ୍ୟାୟିନୀର କଥା ପୁଣି ଆସି ମନେ ପଡ଼ିଗଲା ।

ମାଧବୀ ଜନ୍ମ ହେବାପରେ କେଜାଣି କାହିଁକି ଵିକ୍ରମନ୍ ତମ୍ପି ବେଶ୍ କେତେଦିନ ତାଙ୍କର ଘରଆଡ଼େ ଆଉ ଆସିଲେ ନାହିଁ, ଅର୍ଥ ସବୁ ବି ଆସିଲେ ନାହିଁ । ଖବର ମିଳିଲା ଯେ ଵିକ୍ରମନ୍ ତମ୍ପି ଆଉ ତାଙ୍କର ଜ୍ୟେଷ୍ଠ ଭାଇ କେଶବନ୍ ତମ୍ପିଙ୍କ ଭିତରେ କ'ଣ ଗୋଟାଏ ମନାନ୍ତର ଘଟିଛି । ସିଏ ଭଲ କରି ଜାଣିଥିଲେ ଯେ କେବଳ ଏହି ଗୋଟାଏ ସହରରେ ନୁହେଁ; ମାତ୍ର ସେ ଯୁଆଡ଼େ ଯାଉଥିଲେ, ସେଠାରେ ମଧ୍ୟ ଵିକ୍ରମନ୍ ତମ୍ପିଙ୍କର କେତେ କିସମର ରକ୍ଷିତା ସ୍ତ୍ରୀମାନେ ରହୁଥିଲେ । ତା' ସହିତ ପିଇବାର ଅଭ୍ୟାସଟି ବି ରହିଥିଲା··· । ଏତେବେଶୀ ପଇସା, ଗଦି ଆଉ ବିଦ୍ୟା ସବୁକିଛି ମହଜୁଦ ରହିଥିଲେ ମଧ୍ୟ ସମସ୍ତେ ଭଲ କରି ଜାଣିଥିବା ତାଙ୍କର ଏହି ଦୁଇଟି ଦୋଷ ସକାଶେ ହିଁ ବୋଧହୁଏ ଝିଅ ଥିବା କୌଣସି ବାପ କୌଳିକ ପ୍ରଥା ଅନୁସାରେ ତାଙ୍କସହିତ ଝିଅ ବାହାଦେବାକୁ ଆଦୌ ସାହସ କରୁନଥିଲେ ।

କିନ୍ତୁ ଆକ୍ରମଣ କରିବାଲାଗି ତାଙ୍କୁ କ'ଣ ଅନ୍ୟ ଘର ମିଳିଲା ନାହିଁ ?

ଏ କଥାଟି କ'ଣ ନିଶ୍ଚିତ ଭାବରେ କୁହାଯାଇ ପାରିବ ଯେ ତାଙ୍କଲାଗି ସେଇ ଗୋଟିଏ ଥିଲା ବା ଅଛି ? ଏହିପରି ଭାବରେ କେଜାଣି କେତେ ଘର ହୋଇଥିବ··· । ହୁଁ···କେବଳ ଏଇଠି ଘରଜଗା କୁକୁର ପରି ସିନା ମୁଁ ତାକୁ ଅଟକାଇ କରି ରଖିଛୁ । ଦ୍ୱିତୀୟତଃ, ମୁଁ ବାପ ବି ହୋଇ ସାରିଛି ଓ ମୁହିଁ ହେଉଛି କାର୍ତ୍ୟାୟିନୀର ସ୍ୱାମୀ । ମୁଁ ମହଜୁଦ ହୋଇ ରହିଛି, ତେଣୁ ତୁମେ କଦାପି ଆପଣାର କୌଣସି କାରସାଦି ଦେଖାଇ ପାରିବନାହିଁ··· ମୁଁ ବି ଜଣେ ପୁରୁଷ ··· ଅନ୍ତତଃ ଏହାପରେ କେବେ ସାମନାକୁ ଆସି ମୋ' ବାଟରେ ଠିଆ ହେବାକୁ କଦାପି ମନେ କରିବନାହିଁ,—ଅନନ୍ତନ୍ ନାୟରଙ୍କର ମନର ଏହି କଥାଗୁଡ଼ିକୁ ସିଏ କ'ଣ ଆଉ ପରୋକ୍ଷ ଭାବରେ ବୁଝି ପାରିଲେ କି ? ତା' ନହେଲେ, ଖୋଲା ହୋଇଥିବା ପ୍ରତ୍ୟେକ ଘର ଭିତରେ ପଶି ଶୁଂଘି ବୁଲୁଥିବା କୁକୁରପରି ଆମର ଏଠିବି ଘରପାଖରେ ଚକର ଦେଉଥିବା ସିଏ ବର୍ତ୍ତମାନ ଏଠାକୁ ଆଉ ନଆସିଲେ କାହିଁକି ? ତାଙ୍କର ପ୍ରକୃତିରେ କ'ଣ ହେଲା ··? କାରଣ ଯାହା ହୋଇଥାଉ ପଛକେ, ସେ ଯଦି ଏହିପରି ଭାବରେ ହିଁ ମୋ' ଜୀବନରୁ ଅପସରି ଯାଇ ପାରିବେ, ତେବେ ତାହାହିଁ ଯଥେଷ୍ଟ ହେବ— ସେ ମନେମନେ ଭଗବାନଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ ।

ଆଗ ପର ନହେଲେ ମଧ୍ୟ ବର୍ତ୍ତମାନ ବି ତଥାପି ଅଳ୍ପବହୁତ ଝଗଡ଼ା ହେଉଥିଲା, ପୁଣି ଆପେ ସନ୍ଧି ହୋଇ ଯାଉଥିଲା ଏହିପରି ଭାବରେ ଜୀବନଟି କଟି ଯାଉଥିଲା । ବେମାରି ପଶିଥିବା ତାଙ୍କର ଶରୀରଟି ଠାରୁ, ତାଙ୍କ ବେମାରିଟି ଠାରୁ ଆପଣାକୁ ବଞ୍ଚାଇ ରଖିବାକୁ ଚେଷ୍ଟା କରୁଥିବା କାତ୍ୟାୟିନୀ ଲାଗି ଜୀବନର ପ୍ରତ୍ୟକ୍ଷ ବାସ୍ତବଟିକୁ ସ୍ୱୀକାର କରିନେବା ବ୍ୟତୀତ ଆଉ କ'ଣ ଅବା ରହିଥିଲା— ? ଏହି ଅନୁମାନ ଗୁଡ଼ିକ ଦ୍ୱାରା ଦିନଗୁଡ଼ିକୁ କଟାଇ ଦେବାର ସେହି ଅବସ୍ଥା … ।

ସେତେବେଳେ ମାଧବୀକୁ ବର୍ଷେ ଚାଲୁଥାଏ । ପ୍ରଭାକରନ୍ ସ୍କୁଲ୍‌କୁ ଯିବାକୁ ଆରମ୍ଭ କରୁଥାଏ ।

ଅଫିସ୍‌ରୁ ଘରକୁ ଫେରିବା ସମୟରେ, ଶରୀର ଭିତରେ ପ୍ରାଣ ନାମକ ଗୋଟିଏ ପଦାର୍ଥ ପ୍ରକୃତରେ ଅଛି କି ନାହିଁ, ସେହି ବିଷୟରେ ତାଙ୍କୁ ଆଶଙ୍କା ବି ହେବାକୁ ଲାଗିଲା । କଠିନ ପରିଶ୍ରମ ଦ୍ୱାରା ପ୍ରାୟ ଭାଙ୍ଗି ପଡ଼ିବାପରି ହେଉଥିବା ଏହି ଶରୀରଟାକୁ ବହନ କରି ହିଁ ସେ ଚାଲି ଚାଲି ଘରେ ଯାଇ ପହଞ୍ଚୁଥିଲେ । ଏହି କ୍ଳାନ୍ତି ଲାଗି,—ହୁଏତ କାର୍ଯ୍ୟାଳୟରେ କାର୍ଯ୍ୟ ଅତ୍ୟଧିକ ହୋଇଗଲା ବା ବେମାରି ତାଙ୍କର ଫୁସ୍ ଫୁସ୍ ଦୁଇଟିକୁ ଢଳଢଳ କରି ଖାଇବାକୁ ଆରମ୍ଭ କଲା, ଅଥବା ରାତିରେ କୌଣସି ପ୍ରକାର ସଂଯମ ନରଖି ସେ ଧାତୁକ୍ଷୟ କରିବାକୁ ଲାଗିଲେ, – ଏହାଭିତରୁ କୌଣସି ଗୋଟାଏ କଥା କାରଣ ହୋଇ ରହିଥିଲେ ବା ହୁଏତ ଉଦୋଟିଯାକ ହିଁ କାରଣ ପରି କାର୍ଯ୍ୟ କରୁଥିଲେ,—ସେକଥା କିଏ ଜାଣିଛି ?

ଘରେ ଆସି ପହଞ୍ଚିବା ମାତ୍ରେ ହିଁ କାତ୍ୟାୟିନୀ ସହିତ କଳି କରିବାଲାଗି କୌଣସି ନା କୌଣସି କାରଣ ଅବଶ୍ୟ ଜୁଟି ଯାଉଥିଲା । ସେଦିନ ତା'ର ଜଣେ ପୁରୁଣା ସାଙ୍ଗ ମୁଖର୍ଜି କୁମାରୀର ବିବାହ ଉପଲକ୍ଷେ ପଠା ହୋଇଥିବା ନିମନ୍ତ୍ରଣ-ପତ୍ର ଏକ କାରଣ ହୋଇ ଅପେକ୍ଷା କରି ରହିଥିଲା । ଝିଅଟିର ଶ୍ୱଶୁର୍‌ରେ ହେଉଥିବା ସେହି ବିଭାଘରକୁ ପରିବାର ଯାକ ସମସ୍ତେ ଯିବେ,— ଏହିପରି ଗୋଟାଏ ଜିଦ୍ କରି କାତ୍ୟାୟିନୀ କହି ଚାଲିଗଲା, "ସିଏ ପ୍ରକୃତରେ ବଡ଼ ଭାଗ୍ୟବତୀ—ମୋ' ବୟସ ସହିତ ତା' ବୟସ ସମାନ···ଡାକ୍ତରି ପଢ଼ି ବର୍ତ୍ତମାନ ଚାକିରି ବି କଲାଣି···ଏବେ ତା'ର ବିବାହ ହେବାକୁ ଯାଉଛି ··· ବର ମଧ୍ୟ ଆଉଜଣେ ବଡ଼ ଡ଼ାକ୍ତର ··· ହୁଁ ··· ଆଉ ମୁଁ ଏଠି ଗୋଟାକ ଯାଗାରେ ଦୁଇଦୁଇଟା ପିଲା ଜନ୍ମ କରି ବୁଢ଼ୀ ହୋଇଗଲାଣି ··· ।" କହି ସିଏ ଏକାବେଳେକେ ଗର୍ଜନ କରି ଉଠିବାରୁ ଅନନ୍ତନ୍ ନାୟର୍‌ଙ୍କର ରାଗଟା ମଧ୍ୟ ପଦାକୁ ବାହାରି ପଡ଼ିଲା ।

"ଏଠାରେ ବର୍ତ୍ତମାନ ତୁମର କ'ଣ ଅଭାବ ରହିଛି ?"

"କିଛି ଅଭାବ ନାହିଁ ? ସବୁ କଥାରେ ତ ତୁମର ରାଗଗୁଡ଼ାକ ନାକ ଉପରକୁ ଚଢ଼ିଯାଉଛି ।…ନିଜର ସ୍ୱାମୀ ବୋଲି ଜାଣି କୌଣସି କଥା କହି ହେଉନାହିଁ ବା ପଚାରି ବି ହେଉନାହିଁ … । ଆଉ କିଛି ନହେଉ ପଛକେ, ଅନ୍ତତଃ ଗୋଟିଏ ଦିନପାଇଁ ମଧ୍ୟ ତୁମେ ମୋ' ଉପରେ ଗାଳିବର୍ଷଣ ନ କରି ଶାନ୍ତ ହୋଇ ରହି ପାରୁଛ କି ?" ତା'ର କଣ୍ଠସ୍ୱର କ୍ରମେ ଉଚ୍ଚକୁ ଉଚ୍ଚକୁ ହେବାରେ ଲାଗିଥିଲା । ତେଣେ ଅନନ୍ତନ୍ ନାୟର୍‌ଙ୍କର ଉଗ୍ରତା ମଧ୍ୟ ବଢ଼ିବାକୁ ଲାଗିଲା । ତଥାପି, ନିଜର ଦାନ୍ତକୁ ଖୁବ୍ ଜୋର୍‌ରେ ଚାପିରଖି ସେ କହିଲେ, "ଉପୁରି କମାଇବା ସକାଶେ ମୁଁ କୋଉଠି ମନ୍ଦିରର ଭୋଜନାଳୟରେ ଯାଇ କାମ କରୁନାହିଁ । ଆୟ ଯେତିକି, ତାହାର ମୁତାବକ ତୁମକୁ ଘର ଚଳାଇ ଆସୁନାହିଁ ଏବଂ ତେଣୁ ତୁମେ ଏଇଟା ଆଣ, ସେଇଟା ଆଣ, ଏଠିକି ଯିବା ସେଠିକି ଯିବା, କହି ମୋତେ କେବଳ ଅର୍ଡ଼ର ଦେବାକୁ ଲାଗିଛ । ଏସବୁଯାକ କଥାକୁ ତୁଲାଇବାକୁ ମୋର ଆଉ ବଳ ନାହିଁ … ।

ସେ "ମନ୍ଦିରର ଭୋଜନାଳୟରେ କାମ କରିବା"ର କଥାଟି ଯେମିତି କହିଛନ୍ତି, ସେମିତି ସେଇଟିରେ ହିଁ କାତ୍ୟାୟିନୀର କ୍ରୋଧାଗ୍ନି ପ୍ରଜ୍ଜ୍ୱଳିତ ହୋଇ ଉଠିଲା ।

"ଏତେ ସାହସ ତୁମର ଯେ ମୋ' ବାପାଙ୍କୁ ଥଟ୍ଟା କରିବ । ଭଗ ନ୍ୟାୟ-ଦେବତା ଆସି କୁଆଡ଼ୁ ପହଞ୍ଚିଗଲେ … । ସତେ ଯେମିତି କେବେହେଲେ ସତ୍ୟର ବିରୁଦ୍ଧରେ ଯାଇନାହାନ୍ତି … ।"

ସେପାଖର ଅଙ୍ଗାରର ଶବ୍ଦଗୁଡ଼ିକ ଆସି ଏପାଖ ଅଙ୍ଗାରରେ ବାଜିବାକୁ ଲାଗିଲେ ଏବଂ ସେଠାରେ ମଧ୍ୟ ନିଆଁ ଜଳାଇଦେଲେ ।

"ହୁଁ ! ମୋ' ଭିତରେ ତୁମେ କୋଉ ଅନ୍ୟାୟ ବା ଅସତ୍ୟ ଦେଖିଲ କହିବ ।"

"ସେଗୁଡ଼ାକ କ'ଣ ଖୋଲିକରି କହିବାକୁ ପଡ଼ିବ ?"

"ସେତିକି କହିବାକୁ ବାକି ଅଛି ତ କହି ପକାଉନ ।

ଦଣ୍ଡେ ନୀରବ ରହି ସେ ପଚାରିଲା, "ତୁମର ଯେଉଁ ପଦୋନ୍ନତି ହେଲା, ସେଇଟା କ'ଣ ନ୍ୟାୟବାଟରେ ହେଲା ?" ଶୁଣି କରି ତାଙ୍କର ସାତୋଟଯାକ ନାଡ଼ୀ ସତେଅବା ସଙ୍କୁଚିତ ହୋଇ ଆସିଲେ । ଶିରଗୁଡ଼ାକ କୋପର ଆବେଗରେ ଶିର ଶିର କରି ଉଠିଲେ ।

ନିଜ ଅନ୍ତରାତ୍ମାର ସବୁଯାକ ସଂଘର୍ଷକୁ ଭୁଲାଇ ରଖି ଅନେକ ଭାବିଛନ୍ତି ଠିକ୍ କରିବା ପରେ ଯାଇ ସେ ଘରର ଅବସ୍ଥାକୁ ଦେଖି ହିଁ ସେହି ଉନ୍ନତିଟିକୁ ସ୍ୱୀକାର

କରି ନେଇଥିଲେ । ଏବଂ ସେଥିଲାଗି ବର୍ତ୍ତମାନ ତାଙ୍କ ଗୃହିଣୀ ହିଁ ତାଙ୍କ ଉପରେ ଦୋଷାରୋପଣ କରିବାରେ ଲାଗିଛି ··· । ତା'ପରେ ସିଏ କେଜାଣି କ'ଣ ମନ କ'ଣ ବକିଯିବାରେ ଲାଗିଲେ । ତା'ଉପରକୁ ହାତ ଉଠାଇଥିଲେ ବୋଲି ମଧ୍ୟ ବେଶ୍ ମନେ ଅଛି । ତଥାପି ସିଏ ଦବିଲା ନାହିଁ କି ରହିଗଲା ନାହିଁ । ବର୍ତ୍ତମାନ ତ ସିଏ ଉଠିକରି ସିବାକୁ ମଧ୍ୟ ଅସମର୍ଥ ହୋଇ ପଡ଼ିଥିଲେ । ପୁଣି, ତାଙ୍କ ହାତର ମାଡ଼ଟା ମଧ୍ୟ କାତ୍ୟାୟିନୀଙ୍କୁ ହୁଏତ ମୋଟେ କାବୁ ନଥିଲା, – ସେକଥା ତାଙ୍କୁ ଭଲ କରି ଜଣାଥିଲା ।

"ତୁମକୁ ସ୍ୱାମୀ କରି ପାଇବା ଦିନଠାରୁ ମୋ' ଜୀବନଟା ସତେଅବା ଗୋଟାଏ ନରକରେ ପରିଣତ ହୋଇଗଲା । ଅନ୍ୟମାନେ ଯେପରି କରନ୍ତି, ତୁମେ ସେହିପରି ମୋତେ ଏହି ସହରରୁ ବାହାରକୁ କୁଆଡ଼େ ନେଇକରି କେବେହେଲେ ଯାଇଛ ? ଏହି ପାପୀ ପ୍ରାଣଟା ରହିଥିବାତକ ତୁମପାଇଁ ଏବଂ ତୁମର ପିଲାଙ୍କପାଇଁ ଘରର ସବୁ କାମ କରିବାପାଇଁ ହିଁ ଯାହା ସମସ୍ତ ଅଛି ।" କାତ୍ୟାୟିନୀ ଭେଁ' ଭେଁ' କାନ୍ଦିବାରେ ଲାଗିଥାଏ ଓ ଏତେ ପାଟିରେ ଏସବୁ କଥା କହୁଥାଏ । ତା' ସହିତ ଦ୍ୱନ୍ଦ୍ୱଯୁଦ୍ଧ କରିବାଲାଗି ଆପଣାର ଶକ୍ତି ନଥିବାରୁ ସେ ଗଭୀର ଦୀର୍ଘଶ୍ୱାସଟିଏ ପକାଇ ଶେଷକୁ ବିଛଣାର ହିଁ ଶରଣ ନେଲେ ।

ଖାଲି ପ୍ରଭାକରନ୍ ଆସି ତାଙ୍କ ପାଖରେ ଯାହା କିଛି ସମୟ ପର୍ଯ୍ୟନ୍ତ ଠିଆହୋଇ ରହିଲା, ପୁଣି ଖେଳିବାକୁ ଚାଲିଗଲା ।

ଏହିପରି ଭାବରେ ଦିନ ପରେ ଦିନ କଟି ଯାଉଥାଏ । ଯାହା ମନ ତାହା ହୋଇଯାଉ ପଛକେ, ମୁଖିଦକୁମାରୀର ବାହାଘରକୁ ନିଶ୍ଚୟ ଯିବାକୁହିଁ ପଡ଼ିବ । କାତ୍ୟାୟିନୀ ପୁଣି ଜିଦ୍ ଧରି ବସିଲା । ଅନେକ ଦୂରକୁ ଯାତ୍ରା କରିବାକୁ ପଡ଼ିବ, ପଇସାର ଅଭାବ ଏବଂ ସ୍ୱାସ୍ଥ୍ୟର ଦୃଷ୍ଟିରୁ ମଧ୍ୟ ସେହି ଯାତ୍ରାଟି କଦାପି ଉଚିତ ହେବନାହିଁ । ପିଲାମାନଙ୍କୁ ସାଙ୍ଗରେ ନେଇ ଗଲେ କେତେ ଅସୁବିଧା ହେବ, ସିଏ ଏହିପରି ଅନେକ କାରଣ ଦେଖାଇଲେ । କାତ୍ୟାୟିନୀ ତେବେସୁଦ୍ଧା ମାନିଲାନାହିଁ ।

ପଡ଼ିଆରେ ମାର୍ଗ ଦେଇ ଯାଉଯାଉ ଅନନ୍ତନ୍ ନାମ୍ବର୍‌ଙ୍କର ନିଶ୍ୱାସ ହଠାତ୍ ଫୁଲି ଉଠୁଥିବା ପରି ମନେହେଲା ।

ସେ ଆଉ କିଛି ବାଟ ଆଗକୁ ଗଲେ । ଗୋଟିଏ ସାନ କୋଠରୀ ଭିତରୁ ସଡ଼କ ଉପରେ ଆଲୁଅ ପଡ଼ୁଥିଲା । ସେହି କୋଠରୀଟି ଅନେକ ଦିନୁଁ ବନ୍ଦ ହୋଇ ରହିଥିଲା । ଆଜି ମାତ୍ର ଖୋଲିଲା । ସେ ଏକଥା ଭାବି ଭାରି ଆଶ୍ଚର୍ଯ୍ୟ ହେଲେ । ସେଠାକୁ ଯାଇ ଭିତରକୁ ଉଙ୍କି ମାରି ଦେଖିଲେ, ତ୍ୟାଗରାଜନ୍ ତାଙ୍କ କାମରେ ବ୍ୟସ୍ତ ହୋଇ ରହିଛନ୍ତି । ରାଜପ୍ରାସାଦରେ କାମ କରିବା ସମୟରୁ ହିଁ ତ୍ୟାଗରାଜନ୍‌ଙ୍କୁ ସିଏ ଜାଣିଥିଲେ । ତାଙ୍କୁ ଦେଖିବା ମାତ୍ରକେ ତ୍ୟାଗରାଜନ୍ "ଆରେ ଅନନ୍ତନ୍ ନାମ୍ବର୍ ବାବୁ, ଆସନ୍ତୁ ଆସନ୍ତୁ," କହି ତାଙ୍କର ସ୍ୱାଗତ କଲେ ।

ଭିତରକୁ ସିବାଲାଗି ମନ ହେଲାନାହିଁ । ତେଣେ ଘୋଡ଼ାଗୁଡ଼ାକ ବି ଭାରି ଘୋଳି ହେଉଥାଆନ୍ତି । ଆଜି ପ୍ରକୃତରେ ଅଧିକ ହାଲିଆ ଲାଗୁଥିଲା । ତେଣୁ ଧୀରେ ଧୀରେ ଯାଇ ସେ ବାହାର ବାରଣ୍ଡାଟି ଉପରେ ବସି ପଡ଼ିଲେ ।

"ଖବର କ'ଣ ତ୍ୟାଗରାଜନ୍...ତୁମ ସହିତ କେତେ ଦିନରୁ ଦେଖା ହୋଇନାହିଁ । ବର୍ତ୍ତମାନ ତୁମକୁ କ'ଣ କୌଣସି ନୂଆ ଅର୍ଡ଼ର ମିଳି ଯାଇଛି କି ?"— ସେ ପଚାରିଲେ । "ଆଜ୍ଞା, ସେକଥା ଆଉ କାହିଁକି ପଚାରୁଛନ୍ତି ! ଯେତେବେଳେ ମିଳୁଛି, ସେତେବେଳେ ରାଜଭୋଗ, ଆଉ ଯେତେବେଳେ ନମିଳୁଛି, ସେତେବେଳେ ଖାଡ଼ା ଖାଡ଼ା ଉପବାସ । ଆମ ଜୀବନ ବିଷୟରେ କହିବାକୁ ଗଲେ ଏହାହିଁ ସେହି ଗୋଟିଏ କଥା ।"

ହାତରେ ଧରିଥିବା ହାତୀଦାନ୍ତ ଉପରେ କାରିଗରି କାମ କରୁକରୁ ସେ ଏହି ଉତ୍ତରଟି ଦେଲା ।

ତ୍ୟାଗରାଜନ୍‌କୁ ହାତୀଦାନ୍ତର କାରିଗର ବୋଲି ନ କହି ଜଣେ କଳାକାର ବୋଲି କହିବା ହିଁ ଅଧିକ ଉଚିତ ହେବ—ଅନନ୍ତନ୍ ନାମ୍ବର୍‌ଙ୍କର ଏହିପରି ପ୍ରତୀତ ହେଉଥାଏ । ତା'ର ସୂକ୍ଷ୍ମ ଓ ସୁନ୍ଦର କାରିଗରି ତାହାହିଁ ପ୍ରମାଣିତ କରି ଦେଉଥାଏ । ସିଏ ଆଗରୁ ଶୁଣିଥିଲେ ଯେ ଏହି କାରିଗରିର ନୈପୁଣ ପାଇଁ ତାଙ୍କୁ ରାଷ୍ଟ୍ରପତିଙ୍କଠାରୁ ବି ସମ୍ମାନ ପ୍ରାପ୍ତ ହୋଇଛି ।

ଅନନ୍ତନ୍ ନାମ୍ବର୍ ଗୋଟିଏ ଧ୍ୟାନରେ ତା'ର କାରିଗରିକୁ ଦେଖୁଥାଆନ୍ତି । କୁରୁକ୍ଷେତ୍ରର ଦୃଶ୍ୟଟିକୁ ସିଏ ହାତୀଦାନ୍ତ ଉପରେ କାଟୁଥିଲା । ଅର୍ଜୁନ ହାତରେ ଧନୁ

ଧରି ରଥ ଉପରେ ଠିଆ ହୋଇଛୁ, ପାର୍ଥସାରଥି ରଥ ଚଳାଉଛନ୍ତି । ଆପଣାର ବାଳ-ଗୁଡ଼ିକ କେଶର ପରି ଖେଳାଇଦେଇ ଘୋଡ଼ାମାନେ ଆଗକୁ ଯିବାଲାଗି ପ୍ରସ୍ତୁତ ହୋଇ ରହିଛନ୍ତି । ଏତିକ ଛୋଟିଏ ଦାନ୍ତ ଉପରେ ଏହି ଅଦ୍ଭୁତ ଦୃଶ୍ୟଟି ଫୁଟିଉଠିଛି । ତ୍ୟାଗରାଜନ୍‌ର ଆଙ୍ଗୁଠିଗୁଡ଼ିକ କେଡ଼େ ସୂକ୍ଷ୍ମତା ସହିତ ତା' ଉପରେ କାମ କରି ଯାଉଛନ୍ତି··· ।

"ଆଜ୍ଞା !···ଆମ ଦେଶ ହାତୀଦାନ୍ତ ପାଇଁ ପୃଥିବୀ ପ୍ରସିଦ୍ଧ । ଏଇଟା ତ ସେଇ ପୁରୁଣା ଜଣାଶୁଣା କଥା । ଆଜିକାଲି ଏଠାକାର ମୋମ ହାତୀଦାନ୍ତ କୁଆଡ଼େ ଛପି ରହି-ଯାଉଛି କେଜାଣି ! ସୁନା ଖୋଜିଲେ ମିଳୁଛି, କିନ୍ତୁ ହାତୀଦାନ୍ତ ମିଳୁନାହିଁ । ଏବଂ ଆମ୍ଭମାନଙ୍କୁ ଆପଣା କାମ ସକାଶେ ବିଦେଶରୁ ହାତୀଦାନ୍ତ ମଗାଇ ଆଣିବାକୁ ପଡ଼ୁଛି··· । ସେଥିରେ ବି 'କୋଟା ସିଷ୍ଟମ୍' ରହିଛି··· । ହାତୀଦାନ୍ତ ମିଳିଲେ ମିନା ଏଣେ ଧନ୍ଦା ଚାଲିପାରିବ !" ତାହାର ଏହି କଥାଗୁଡ଼ିକ ସମ୍ପୂର୍ଣ୍ଣ ସତ ବୋଲି ବୋଧ ହେଉଥିଲା ।

"ସେଥିରେ କ'ଣ ହେବ··· । ଯେତେବେଳେ ହାତୀଦାନ୍ତ ମିଳୁଛି, ସେତେବେଳେ ତ ହାତୀଦାନ୍ତରୁ ତିଆରି ଜିନିଷଗୁଡ଼ିକ ବଡ଼ ମହଙ୍ଗା ଦରରେ ବିକ୍ରୀ ହେଉଛି । ବିଦେଶୀ ଯାତ୍ରୀମାନେ ତୁମେ ଯେତେ ଦାମ୍ କହିବ, ସେତେ ଦେବାକୁ ମଧ୍ୟ ତିଆରି ହୋଇ ଯାଉଥିଲେ, ଆଗ ଆସି ଝାମ ମାରି ନେଇଯିବାକୁ ଖୋଜି ଖୋଜି ଯାଇ ପହଞ୍ଚି ଯାଉଁଥିଲେ ନା ?"

ତ୍ୟାଗରାଜନ୍ ମୁଣ୍ଡ ଉଠାଇ ଅନନ୍ତନ୍ ନାୟର୍‌ଙ୍କ ଆଡ଼କୁ ଚାହିଁଲା । ଜଣେ କଳାକାରର ଆଖିକୁ ସେ ସିଧା ଏବଂ ଅତି ନିକଟରୁ ଅନାଇକରି ଦେଖୁଥାନ୍ତି । ସେଠାରେ ମଧ୍ୟ ଦାରିଦ୍ର୍ୟ ଏବଂ ଦୁଃଖପୂର୍ଣ୍ଣ ହୋଇ ରହିଥିଲା । ତ୍ୟାଗରାଜନ୍‌ର ଆକୃତି ଶରୀର, ସବୁକିଛି ସେହି ଅଭାବର ହିଁ ସଙ୍କେତ ଦେଇ ଯାଉଥିଲେ ।

"ଆଜ୍ଞା ।···ସମସ୍ତେ ଠିକ ଏହିପରି ଭୁଲ୍ ଅନୁମାନ କରୁଛନ୍ତି । ଦାମ୍ ତ ଅନେକ କିନ୍ତୁ···ଆମେ ହନସ୍ତ କାମ କରୁଥିବା ଲୋକମାନଙ୍କୁ ଯାହା ମିଳେ ତାହାର ପରିମାଣ ଆପଣଙ୍କର କଳ୍ପନାଠି ପରି ମୋଟେ ବେଶୀ ନୁହେଁ । ମାତ୍ର, ଯେତିକ ମିଳୁଛି; ତାହାହିଁ ନିୟମିତ ଭାବରେ ମିଳୁଥିଲେ ମଧ୍ୟ ଆଉ କିଛିହେଲେ କହିବାକୁ ନଥିଲା । ଯେତିକ ମଜୁରି ମିଳେ, ଆମେ ଯେକୌଣସି ମତେ ସେଇଥିରେ ପେଟଟିକୁ ବଞ୍ଚାଇ ନେଉ ।"—କହି ସେ ପୁଣି ଆପଣାର କାମରେ ଲାଗିଗଲା ।

"ଆଜ୍ଞା । ···ଆଗକାଳରେ କେହି ଏହି ସହରକୁ ଆସୁଥିଲା ତ ତାକୁ କୋଲାଲମ୍ ପର୍ଯ୍ୟନ୍ତ ଡଙ୍ଗାରେ ବସି ଆସିବାକୁ ପଡ଼ୁଥିଲା । ତା'ପରେ ସେଠାରୁ ଡ଼ାକ

ଗାଡ଼ିରେ ବସି ଦିନଟିଏ ଓ ରାତିଟିଏ ବିତାଇବାକୁ ପଡ଼ୁଥିଲା । ସେହିପରି ଭାବରେ ମୁଁ ଦିନେ ବାପାଙ୍କ ସହିତ ଏଠାରେ ଆସି ପହଞ୍ଚି ଥିଲି । ଆପଣ ତ ସବୁ ଜାଣିଛନ୍ତି··· ସେତେବେଳେ ରାଜା ବସିଥିଲେ ।··· ହାତିଦାନ୍ତର ମଧ୍ୟ କୌଣସି ଅଭାବ ନଥିଲା··· ବର୍ତ୍ତମାନ ତ ଆମର ସମବାୟ କାର୍ଯ୍ୟାଳୟଟି ସବୁକିଛୁ ହୋଇ ବସିଛି । ତଥାପି ମୋ'ପରି ଲୋକଙ୍କର ଉଦ୍ଧାର ସକାଶେ କୌଣସି ଉପାୟ ନାହିଁ । ବର୍ତ୍ତମାନ ଲୋକମାନେ ନିଜର ଦୈନନ୍ଦିନ ଆବଶ୍ୟକତା ଓ ପେଟଟିକୁ ଭୁଞ୍ଜାଇବାର ପ୍ରୟୋଜନଟିକୁ ଆଗ ଦେଖିବେ ନା ଏତେବେଶୀ ଦାମ୍ ଦେଇ ହାତିଦାନ୍ତର ଜିନିଷ କିଣିବାପାଇଁ ଆସିବେ ।" କହି ତ୍ୟାଗ-ରାଜନ୍ ଗୋଟିଏ ଦୀର୍ଘନିଶ୍ୱାସ ପକାଇଲା ।

ଶରୀର ଭିତରେ କିଛି ଡାକିଡ ଆସିଲାପରି ମନେହେଲା । ତ୍ୟାଗରାଜନ୍ ଠାରୁ ବିଦାୟ ନେଇ ଅନନ୍ତନ୍ ନାୟର୍ ଆଗକୁ ଯିବାକୁ ଲାଗିଲେ ।

ତେବେ··· ?

ବରଂଚ ହେଉ ମନେ ହେଉଛି ଏ ତ୍ୟାଗରାଜନ୍ ବି ସୁଖରେ ନାହିଁ । ସବୁ ଜାଗାରେ କ'ଣ ସେଇ ଗୋଟିଏ କାହାଣୀ । ତା'ର ପାରିବାରିକ ଜୀବନରେ ବି କେତେ ନା କେତେ ସମସ୍ୟା ରହିଥିବ,···ସେକଥା କିଏ ଜାଣିଛି··· ।

କାତ୍ୟାୟିନୀଙ୍କୁ ଯେ ସେ ଖୁସୀ କରି ପାରିଲେ ନାହିଁ, କେବଳ ପଇସାର ଅଭାବ ହିଁ କ'ଣ ତା'ର କାରଣ ଥିଲା ?

କେତେଦିନ ହେଲା ବିକ୍ରମନ୍ ତମ୍ପିଙ୍କର ଆଉ ତାଙ୍କ ଜୀବନ ଉପରେ କୌଣସି ଆକର୍ଷଣ ବି ହିଁ ହେଉ ନ ଥିଲା । ଅନନ୍ତନ୍ ନାୟର୍ଙ୍କ ଦୃଷ୍ଟିରୁ କହିବାକୁ ଗଲେ ଏହାଦ୍ୱାରା ତାଙ୍କୁ ନିଶ୍ଚୟ କିଛି ନିଷ୍କୃତି ମିଳୁଥିଲା ।... ଇତି ମଧ୍ୟରେ ଆଷାଢ଼ ମାସରେ ଅମାବାସ୍ୟା ପର୍ବ ସମୟରେ ସେ ଯେତେବେଳେ ସମୁଦ୍ର ବେଳାରେ ସେହି ଅପାର ଜନଭିଡ଼ଟି ମଧ୍ୟରେ ପୁରୋହିତଙ୍କ ଆଗରେ ବସି କୁଶହସ୍ତ ହୋଇ ମୃତ ପିତୃପୁରୁଷ ମାନଙ୍କ ଉଦ୍ଦେଶ୍ୟରେ ଶ୍ରାଦ୍ଧ ଦେବାରେ ଲାଗିଥିଲେ ସେତିକିବେଳେ ଶ୍ରାଦ୍ଧ କରିସାରି ସମୁଦ୍ରରେ ଯାଇ ବୁଡ଼ ପାରୁଥିବା ଲୋକମାନଙ୍କ ମଧ୍ୟରେ ବିକ୍ରମନ୍ ତମ୍ପି ଦେଖିବାକୁ ମିଳିଲେ । ମାତ୍ର···ଭଲ ହେଲା···ସିଏ ଅନନ୍ତନ୍ ନାୟର୍ଙ୍କୁ ଦେଖି ପାରିନଥିଲେ ।

ମାତ୍ର ଯେତେବେଳେ ସୁଖଦ କୁମାରୀର ବିବାହ ଆଉ ମୋଟେ ସପ୍ତାହେ ବାକି ଥିଲା, ସେତେବେଳେ ଦିନେ ବିକ୍ରମନ୍ ତମ୍ପି ଅକସ୍ମାତ୍ ଆସି ହାଜର ହୋଇ ଗଲେ । ଆଗ ଅପେକ୍ଷା ଟିକିଏ ଝଡ଼ିଗଲା ପରି ଦେଖାଯାଉଥିଲେ ।

"ଅନନ୍ତନ୍ ନାମ୍ବର୍‌... ! ତୁମେ ବି ଖୁବ ସିଆଣିଆ... । ବେମାର ଆଉ ଅସୁସ୍ଥତା ହେଲେ ମଧ୍ୟ ମୋତେ ଛାଡ଼ଲ ନାହିଁ... । ହଁ ଆଣ...ଆଣ...ତୁମର ସେଇ ଗେହ୍ଲା ଝିଅକୁ ମୁଁ ବି ଟିକିଏ ଦେଖିଥାଏ...। ମୁଁ ସେତେବେଳେ ମଧ୍ୟ ବେଶ୍ ଜାଣି ପାରିଥିଲି... । ମାତ୍ର ଇତି ମଧ୍ୟରେ ରବର୍ ଇନ୍ସପେକ୍ଟର ମାମଲାରେ କେତେଦିନ ଲାଗି କୁଟ୍‌ଟିକାନମ୍‌ରେ ଯାଇ କ୍ୟାମ୍ପ୍ କରିବାକୁ ପଡ଼ିଲା । ସେଠୁ ଫେରିଆସିବା ପରେ ମଧ୍ୟ ଏଠାକୁ ଥରେ ଆସିବି ବୋଲି କେତେଥର ଭାବିଲି, କିନ୍ତୁ ଆଜି ଯାଇ ସମୟ ମିଳିଲା...।"

ଏପରି ମନେ ହେଉଥାଏ ଯେ ତାଙ୍କର କଥା, ହସ, ସବୁକିଛି ଖାଲି କୃତ୍ରିମତା ଛଡ଼ା ଆଉ କିଛି ନୁହେଁ ।

ଆଷାଢ଼ ଅମାବାସ୍ୟା ଦିନ ଅନନ୍ତନ୍ ନାମ୍ବର୍ ତାଙ୍କୁ ଦେଖିଥିଲେ, ସେକଥା ସିଏ ତାଙ୍କ ଆଗରେ ପ୍ରକାଶ କଲେ ନାହିଁ ।

ତମ୍ପିଙ୍କର ମୁକାବିଲା କରିବାର ଆଉ ଉପାୟ ନଥିଲା, ତେଣୁ ଗୋଟାଏ ଫିକା ହସ ହସି ଝିଅକୁ ନେଇକରି ଆସ ବୋଲି କାତ୍ୟାୟିନୀଙ୍କୁ ଡାକ ଦେବାକୁ ପଡ଼ିଲା ।

କାତ୍ୟାୟିନୀ ମଧ୍ୟ କୌଣସି ବେଳ ଦେଖାଇଲା ନାହିଁ ।ମାଧବୀକୁ କାଖେଇ ସେଠାକୁ ଆସିଲା ।

ଝିଅଟିକୁ ତମ୍ପି ତା'ହାତରୁ ଛଡ଼ାଇ ନେଇଗଲେ ଏବଂ "ଆହା । ଅଳ୍ପକାଳ ମାଆପରି ହୋଇଛି...ଆରେ ! ଖୁବ ସୁନ୍ଦର ଝିଅ । ମୋ ମୁନାଟା !" ବୋଲି କହି ଖୁବ ଆବେଗ ଭାବରେ ତାକୁ ଗେଲ କରିବାକୁ ଲାଗିଲେ । ତାଙ୍କର ଏହି ସୀମାତୀତ ପ୍ରେମ-ପ୍ରଦର୍ଶନ ଅନନ୍ତନ୍ ନାମ୍ବରଙ୍କୁ ଆଶ୍ଚର୍ଯ୍ୟ କରି ପକାଉଥିଲା ।

ତା'ପରେ ଅତ୍ୟନ୍ତ ଅପ୍ରତ୍ୟାଶିତ ଭାବରେ ସେ ଝିଅର ହାତରେ ହୀରାର ମୁଦିଟିଏ ବାହାର କରି ପିନ୍ଧାଇଦେଲେ ।

ପ୍ରଭାକରନ୍ ବଡ ଈର୍ଷାରେ ଠିଆହୋଇ ଦେଖୁଥିଲା । ସିଏ ତାକୁ ମଧ୍ୟ ଛାଡିଲେ ନାହିଁ ।" ଆରେ...ଏଇଟା ତୋ'ପାଇଁ..."କହି ପକେଟ୍‌ର ଗୋଟିଏ ସୁନା ଚେନ୍ ବାହାର କଲେ ଓ ତା' ବେକରେ ନେଇ ପିନ୍ଧାଇ ଦେଲେ । ଅନନ୍ତନ୍ ନାମ୍ବର୍ କିଛି କହିପାରୁ ନଥାନ୍ତି । କିଛି ସମୟ ପରେ ଫେରିକରି ଗଲାବେଳେ ତମ୍ପି କହିଲେ, 'ହେ ଅନନ୍ତନ୍ ନାମ୍ବର୍‌...ଆମେ ଦୁହେଁ ଏପରି ମିଳାମିଶା କରିବାର ଛଅବର୍ଷ ହୋଇଗଲା । ମୁଁହିଁ ନିର୍ଲଜ୍ଜ ହୋଇ ଅଧିକାଂଶ ସମୟରେ ତୁମ ଘରକୁ ଆସୁଛି । ତୁମଭିତରୁ କେହି ଆଜିପର୍ଯ୍ୟନ୍ତ ମୋ'ଘରକୁ ଆସିଲନାହିଁ । କାଲି ରବିବାର ଅଛି ନା...

ମୁଁ ସକାଳେ ଗାଡ଼ି ପଠାଇଦେବି, ତୁମେ ସମସ୍ତେ ମୋ'ଘରକୁ ଚାଲିଆସିବ...ତୁମେ ସମସ୍ତେ କାଲି ସେଇଠି ଖିଆପିଆ କରିବ... ।" ମର୍ଜିରେ ମନା କଲେ ମଧ୍ୟ ସେ କାହାରି କଥା ନଶୁଣି ନିମନ୍ତ୍ରଣ ଦେଇଗଲେ ।

ସେଠାରେ ମଧ୍ୟ ଅନନ୍ତନ୍ ନାୟରଙ୍କର ହିଁ ପରାଜୟ ହେଲା ।

"ଆମେ ତୁମ ଘରକୁ ଯିବୁନାହିଁ ।" ସେ ଏକଥାଟି ବେଶ୍ ମୁହଁ ଉପରେ କହି ପାରିଥାନ୍ତେ । ମାତ୍ର ତାଙ୍କୁ ସେପରି କରିବାକୁ ଦେଉ ନଥିବା ସିଏ କେଉଁ ଶକ୍ତି ଥିଲା କେଜାଣି ? ତାଙ୍କଦ୍ୱାରା ଯାହାକିଛି ହୋଇ ପାରିଲା, ସିଏ ହେଉଛି କେବଳ ସିବୁଦିନ ପରି ସେଦିନ ରାତିରେ ମଧ୍ୟ କାତ୍ୟାୟିନୀ ସହିତ ଝଗଡ଼ା ।

ଅଣ୍ଡା ପବନରେ ହାଲୁପା ଗୁଡ଼ାକୁ ଅନନ୍ତନ୍ ନାୟର୍ ମୋଟେ ସହି ପାରୁନଥିଲେ ଆଜି ଏତେବେଳେ ହାଲିଆ ବି କାହିଁକି ଲାଗୁଛି ? ମାତ୍ର ଅଳ୍ପସମୟ ପୂର୍ବରୁ ତ ସେ ତ୍ୟାଗରାଜନ୍‌ର ଘରେ ବିଶ୍ରାମ ନେଇ ଆସିଛନ୍ତି । ବର୍ତ୍ତମାନ ପୁଣି ନାକର ପବନ ଫୁଲିବାକୁ ଆରମ୍ଭ କଲାଣି...ତଣ୍ଟି ଶୁଖି ଶୁଖି ଯାଉଛି...

ହଠାତ୍ କାଶ ଆସିଲା । ସଡ଼କର ଗୋଟାଏ କଡ଼କୁ ଠିଆ ହୋଇ ସେ ତୁହାକୁ ତୁହା କାଶିବାକୁ ଲାଗିଲେ, ଆଖିରୁ ପାଣି ବାହାରିଯିବାକୁ ଲାଗିଲା । ଛେପ ପକାଇଲା ବେଳକୁ ଖଙ୍କାର ଭିତରେ ନାଲି ନାଲି ହୋଇ କ'ଣ ଦିଶିଗଲା । ଅବଶ୍ୟ ଅନ୍ଧାରରେ କିଛି ଭଲ କରି ଦେଖା ଯାଉନଥାଏ ।

ହଁ...ପନ୍ଦର ବର୍ଷରୁ...ନା—ନା,...ସେପରି କୌଣସି କାଳର ସୀମା ବାନ୍ଧି-ଦେବା ଆଦୌ ସମ୍ଭବ ନୁହେଁ । ଯେଉଁ ଦିନଠାରୁ ସେ ସଂସାରକୁ ବୁଝିବାକୁ ଆରମ୍ଭ କଲେଣି, ସେହି ଦିନଠାରୁ ସେ ଜୀବନରେ ଯେତେଯେତେ ଦୁଃଖ ଭୋଗିଲେଣି, କେବେ ସେ ସବୁର ଶେଷ ହେବ—ସେକଥା କିଏଜାଣିଛି ?

ଏପରି କେତେକ ଲୋକ ଅଛନ୍ତି, ଯେଉଁମାନଙ୍କ ଜୀବନରେ ସବୁକିଛି ଠିକ୍ ଭାବରେ ଚାଲିଥାଏ । ଦୁଃଖକୁ ଅନୁଭବ କରିବାଲାଗି ମଧ୍ୟ ସେମାନଙ୍କର ଗୋଟେ ସମୟ ନଥାଏ । କିନ୍ତୁ ଆପଣାକୁ... ?

ପରିବାରରେ ନାରାୟଣ ପିଲାଇ ସବୁଠାରୁ ବଡ଼ ପୁଅ ଥିଲା । ମଧୁସୂଦନ୍ ତାଙ୍କ ପରେ ଜନ୍ମ ହେଲା ।

ସେ ଦୁହିଁଙ୍କର ଜୀବନରେ ନିଜ ନିଜ ଦୃଷ୍ଟିରୁ ଦେଖିଲେ ବେଶ୍ ଗୋଟାଏ ପ୍ରକାରର ଆରାମ ରହିଛି... । ମାତ୍ର ନିଜ ଜୀବନଟା ପୁଣି ଏପରି ହୋଇଗଲା ? ଏହାର କାରଣ କ'ଣ ?

କ'ଣ ଏହାର ଏପରି ଏକ ମୀମାଂସା କରାଯାଇ ପାରିବ କି ? ନିଜର ଭଉଣୀ କଲ୍ୟାଣୀକୁ ଯୌବନାବସ୍ଥାରେ ହିଁ କେତେ ବିପଦ ସହିବାକୁ ପଡ଼ିଲି । ସେମାନଙ୍କୁ ଅତିକ୍ରମ କରି, ପୁଅର ବୈରାଗ୍ୟଭାବକୁ ବି ଅତିକ୍ରମ କରି ସ୍ୱୟଂ ଏକ ସୁସ୍ଥତା ଉତ୍ପନ୍ନ କରି ସିଏ ତ ପୁଣି ଶାନ୍ତିରେ ଆପଣାର ଜୀବନଟିକୁ ବଞ୍ଚି ପାରୁଛି... । ଏହିପରି ଆପଣା ମାଆବାପାଙ୍କର ସବାତଳ ପୁଅ ସୁକୁମାରନ୍ ନାୟର୍··· ! ସିଏ ଜୀବନରେ କୋଉଠୁ କିଛିର ହିଁ ଅପେକ୍ଷା ରଖିନାହିଁ···ଖାଲି ସମସ୍ତ ଅନୁସାରେ ଖାଇବାଟା ମିଳିଗଲେ ହେଲା ···ମଧୁସୂଦନ୍‌ର ଘରେ ସାନବଡ଼ ନାନା କାମ...ପିଲାଙ୍କୁ ବୁଝାଇ ରଖିବା, ପାଖରେ ଥିବା ପାନବାଲାର ଦୋକାନରେ ପଡ଼ିଥିବା ବେଞ୍ଚ୍ଟି ଉପରେ ବସି ପଡ଼ୋଶୀଙ୍କର ଖବରି ନେବା···ଏହିପରି ଭାବିବେ ତା'ର ଜୀବନଟା ମଧ୍ୟ ଗୋଟିଏ ପ୍ରକାରର ନିଶ୍ଚିନ୍ତିରେ ବେଶ୍ କଟିଯାଉଛି···

ନିଜ କୁଟୁମ୍ବର ଲୋକମାନେ ତ ଏମିତି, ପୁଣି ତେଣେ ବାହାର ସଂସାରରେ ମଧ୍ୟ ମାଲିକ ଭୈରବନ୍ ପିଲାଇ, ତାଙ୍କ ସହିତ ଦୋକାନରେ କାର୍ଯ୍ୟ କରୁଥିବା ଆଉ ଅନ୍ୟମାନେ, ସାଙ୍ଗ ପିଷାରଡ଼ି, ଅଡ଼ିଟର୍ କୈମନ୍ ଇନ୍ଦୁଚୂଡ଼ନ ପ୍ରଭୃତି ଅଫିସର-ମାନେ, ପ୍ରଭାକରନ୍‌ର ସାଙ୍ଗ ଟମାସ୍, ଏଇ ଅଳ୍ପସମସ୍ତ ପୂର୍ବେ ଯାହାସହିତ ଭେଟ ହେଲା, ସେଇ ତ୍ୟାଗରାଜନ୍, ପଲନିସ୍ୱାମି ଚେଟ୍ଟିୟାର୍, ମହାଦେବ ଆୟର୍ ସମସ୍ତଙ୍କର କେତେ ନା କେତେ ସମସ୍ୟା ରହିଛି, ତଥାପି ସେହି ସମସ୍ୟାଗୁଡ଼ିକୁ ଜୀବନରେ ଏକାଠି କରି ସଲଗ୍ନ କରି ରଖିଥିବା ଏପରି କୌଣସି ସଂଯୋଜକ ରହିଛି, ଯାହା ତାଙ୍କ ନିଜ ଜୀବନରେ ନାହିଁ । ଏପରି କାହିଁକି ହେଲା ? ଆଧ୍ୟାତ୍ମିକ ପଥରେ ନିରତ ବାଟ ଚାଲି ଯାଉଥିବା ଭାସ୍କରନ୍‌କୁ ମଧ୍ୟ ଲୌକିକ ଜୀବନ ସହିତ ଆଣି ବାନ୍ଧି ପାରୁଥିବା କେତେକ ସଂଯୋଜକ ରହିଛି । ମାତ୍ର ନିଜର ଏହି ହୃଦୟଟା ହିଁ କାହିଁକି ପ୍ରଭାକରନ୍ ନାୟର ଓ ମାଧବୀକୁ ଏହି ମାଟିଉପରେ ଆଣି ଠିଆ କରି ରଖିବାର ପାଣଟି ରହିଥିଲେ ମଧ୍ୟ ତଥାପି କାହିଁକି,— ଆତ୍ମଶାନ୍ତି ନପାଇ ଭୂତ ହୋଇ ଏଣେ ତେଣେ ବୁଲିବାରେ ଲାଗିଛି, ସତେଅବା ହାତରେ ଧରି ହେଉନଥିବା, କୋଉଠିହେଲେ ଲାଗି କରି ରହି ପାରୁନଥିବା ଏବଂ ପ୍ରଚଣ୍ଡ ପବନରେ କୁଆଡ଼େ ମନ କୁଆଡ଼େ ଉଡ଼ି ପଳାଇବାରେ ଲାଗିଥିବା ଶିମିଳିତୁଳା ପରି ଉଡିବୁଲୁଛି ।

ବର୍ତ୍ତମାନ ଆଉ କାହାକୁ ମନେ ପକାଇଲେ ଶାନ୍ତି ମିଳିବ ?

ତା'ନହେଲେ କ'ଣ ଏ ସବୁକିଛି କେବଳ ଗୋଟିଏ ଗୋଟିଏ ବ୍ୟର୍ଥ ଚଞ୍ଚଳତା ମାତ୍ର, ଯାହାକି ଖାଲି ନିଜର ବଳହୀନତା ହେତୁ ହିଁ କେବଳ ଆପଣା ଦ୍ୱାରା ହିଁ ଅନୁଭୂତ ହେଉଛନ୍ତି ? କାହାକୁ ଦୁଃଖ ପଡ଼ୁନାହିଁ କହ ତ !

ନିଜ କୁଟୁମ୍ବରେ ଯେଉଁମାନେ ଅଛନ୍ତି, ଯେଉଁମାନେ ବାହାରେ ଅଛନ୍ତି, ସମସ୍ତଙ୍କର ଜୀବନରେ କୌଣସି ନା କୌଣସି ଦୁଃଖ ଅବଶ୍ୟ ଅଛି । ଦୁଃଖର ରହସ୍ୟ-ଟିକୁ ଜାଣିନେବା ମାତ୍ରେ ହିଁ ଜୀବନରେ ଆଉ ମୋଟେ ଦୁଃଖ ରହିବନାହିଁ କ'ଣ ଏପରି ଗୋଟିଏ କଥା ପ୍ରକୃତରେ କୁହାଯାଇ ପାରିବ ? ଯଦି ବାସ୍ତବରେ ଦୁଃଖ ହିଁ ନଥାନ୍ତା, ତେବେ ଦୁଃଖର ରହସ୍ୟ ଜାଣିବାରେ ମଧ୍ୟ ଆଉ ସେପରି ପ୍ରଧାନତା ବା କ'ଣ ରହିଥାନ୍ତା ? ଦୁଃଖକୁ ଅତିକ୍ରମ କରି ତା'ର ଆରପାରିରୁ ହିଁ ଆନନ୍ଦର ସେପାଖକୁ ଯାଇ ଅଶାନ୍ତ ଆତ୍ମାକୁ ଶାନ୍ତି ପ୍ରଦାନ କରିବା ହିଁ ହେଉଛି ସାକ୍ଷାତ ଆନନ୍ଦ । ଦୁଃଖ ନଥିଲେ ଜୀବନ ହିଁ କୋଉଁଠି ଥା'ନ୍ତା ? ସେପରି ଏକ ଅବସ୍ଥାର କଳ୍ପନା କରିବା ଅଯଥାର୍ଥ ନୁହେଁ କି ?

ଏସବୁ ଜାଣିକରି ମଧ୍ୟ ତାଙ୍କର ହୃଦୟସ୍ଥ ଶାନ୍ତି ପାଇବାଲାଗି କାହିଁକି ନାସ୍ତି କରି ଦେଉଛି—ଅନନ୍ତନ୍ ନାୟରଙ୍କ ଅନ୍ତରାତ୍ମା ପୁନର୍ବାର ବିଶ୍ୱରୂପ ଧାରଣ କରି ତାଙ୍କୁ ପଚାରିବାକୁ ଲାଗିଲା ।

ଆଜି ଘରେ ଅନେକ କାମ ପଡ଼ିରହିଛି,—ଏହି ଭାବନାଟି ତାଙ୍କୁ ବେଶ ଚିନ୍ତାଇବାରେ ଲଗିଥାଏ, ତଥାପି ସେଥିରେ ସହଯୋଗ କରିବାକୁ ତାଙ୍କର ଗୋଡ଼ ଦୁଇଟା ମୋଟେ ସମ୍ମତ ହେଉ ନଥାନ୍ତି । ତେଣୁ ଯେତିକ ସମ୍ଭବ ଅନନ୍ତନ୍ ନାୟର୍ ସେତିକ ବେଗରେ ହିଁ ଚାଲିବାରେ ଲଗିଥିଲେ ।

କଣ୍ଟୋନ୍‌ମେଣ୍ଟ୍ କ୍ଲବ୍ଠାରୁ ବନ୍ଦମନ୍ ତମ୍ପିଙ୍କ ଘର ପର୍ଯ୍ୟନ୍ତ ତାଙ୍କର ଗାଡ଼ିରେ ଅନନ୍ତନ୍ ନାୟର୍ କାତ୍ୟାୟିନୀ ଓ ପିଲମାନଙ୍କୁ ସାଙ୍ଗରେ ନେଇ ଯାଇ ସେଠି ପହଞ୍ଚିଥିଲେ,—ତାଙ୍କର ସ୍ମରଣ ହେଲ ।

ସେହି ସୌଧଟିକୁ ଦେଖିବା ମାତ୍ରେ ହିଁ କାତ୍ୟାୟିନୀ ସତେଅବା କାବା ହୋଇ ଠିଆ ହୋଇ ରହିଲ, ତାଙ୍କ ନିଜଭିତରେ ମଧ୍ୟ ସେହି ଭାବଟି ବେଶ୍ କିଛି ସମୟ ଯାଏ ରହିଥିଲ ।

ସେଠାରେ ସେଦିନ ଯେଉଁଭଳି ରାଜସିକ ସତ୍କାର ମିଳିଲ, ସେଥିରେ ତାକ ଫୁଲ୍ କେତେ ବଡ଼ ହୋଇ ଯାଇଥିଲ । ଏପରି ଅବସ୍ଥା······

ତିନି ମହଲ ଘର, ପ୍ରତ୍ୟେକ ମହଲରେ ସଜ୍ଜିତ ଅଲଙ୍କୃତ କେତେ କେତେ ବଖରାମାନ, ଚଟାଣ ଉପରେ ସବୁଠାରେ ଚକ୍‌ଚକ୍ ଗାଲିଚା ପଡ଼ିଛି, କବାଟ ଓ ଝରକା ଉପରେ ରେଶମର ପର୍ଦ୍ଦା, ଉପର ଛାତରୁ ତଳକୁ ଓହଳି ଚକ୍‌ଚକ୍ କରୁଥିବା ଝଡ଼ଝଡ଼ି ପରଦା, ଫୁଲରେ ଭର୍ତ୍ତି ଫୁଲ୍ ବଗିଚା —

ତମ୍ପିଙ୍କର ଏହି ଆବାସଟି ସତେଅବା କୌଣସି ରାଜପ୍ରାସାଦ ପରି ଅତି ଶୋଭାସମ୍ପନ୍ନ ଓ ଆଡ଼ମ୍ବରପୂର୍ଣ୍ଣ ହୋଇ ରହିଥିଲ ।

ଆଉ ଏଇ ସବୁକିଛିକୁ ଭୋଗ କରୁଥିଲେ କେବଳ କେତେଜଣ ପରିବାରବର୍ଗ, ଅତି ଉତ୍ତମ ଭୋଜନ ।

ରାତିରେ ଘରକୁ ଫେରିବା ସମୟରେ ସମସ୍ତଙ୍କୁ ଗୋଟିଏ ଲେଖାଏଁ ରୂପା ଥାଳୀରେ ଭରିଭରି କରି ଦିଆ ଯାଇଥିବା କେତେ ଉପହାର-ସାମଗ୍ରୀ···

ବିଦାୟ ନେଇ ସେମାନେ ତମ୍ପିଙ୍କ ଗାଡ଼ିରେ ହିଁ ଘରକୁ ଫେରିଲେ । ଯେଉଁସବୁ ଥାଳୀକୁ ଆଣି ଡ୍ରାଇଭର୍ ଘର ଭିତରେ ରଖିଦେଇ ଗଲ, ସେଥିରେ ଥିଲ ରେଶମର କେତେ ଶାଢ଼ୀ, ଜରିଲଗା ଧୋତି, ସୁନା ମୋହର ଆଦି କେତେକେତେ ପଦାର୍ଥ,—ଦେଖିକରି ମୂର୍ଚ୍ଛା ହୋଇଗଲ ପରି ମନେ ହେଉଥିଲ ।

ଆଶ୍ଚର୍ଯ୍ୟ ଓ ସମ୍ଭ୍ରମ ପରେ ଠିକ୍ ଆଗପରି କାତ୍ୟାୟିନୀ ସହିତ ଝଗଡ଼ା ଆରମ୍ଭ ହୋଇଗଲା ।

ତାଙ୍କ ପାଖରେ ଏପରି ଦରବ କ'ଣ ଅଛି, ଯାହାସକାଶେ କ ଡମ୍ଭି ଏସବୁ ବଇନାମୂଲ୍ୟ ଦେଇ ପଠାଉଥିଲା—ସେକଥା ସେ ଭଲକରି ଜାଣିଥିଲେ··· ।

ଅତ୍ୟଧିକ କ୍ରୋଧରେ ପରସ୍ପର ମଧ୍ୟରେ ଭୀଷଣ ଶବ୍ଦ-ବିନିମୟ ହେଲା, କିନ୍ତୁ କାତ୍ୟାୟିନୀ ଏକାବେଳେକେ ଜିଦ୍ ଧରି ବସିଲା—"ଯାହାସବୁ ଉପହାର ରୂପେ ଆସିଛି, ସେସବୁକୁ ଫେରାଇଦେବା ମୋଟେ ଠିକ୍ ହେବନାହିଁ । ତାହା ବଡ଼ ଅଶିଷ୍ଟତା ହେବ··· ।"

ତା'ପରେ ପୁଣି କ'ଣ – ? ସାରାଯାକ ଝଡ଼, ତୋଫାନ, ଗର୍ଜନ, ବିଜୁଳିର ଝଲକ ଓ ବରଷାର ଝର ଲଗିଲା—ଗୋଟିଏ ହେଲେ ବାଦ୍ ଗଲାନାହିଁ । ପୁଣି ସକାଳ ହେଲା ମାତ୍ରକେ ମୁଖେଦକୁମାରୀଙ୍କର ବିଶ୍ରାଘର ପାଇଁ ସପରିବାର ହିଁଶ୍ୱର ଯାତ୍ରା ବି ହେଲା··· ।

ହଁ···ସେଇ ହିଁଶ୍ୱର ଯାତ୍ରା ପରଠାରୁ ହିଁ ତାଙ୍କ ଜୀବନରେ ବଡ଼ ବଡ଼ ସଙ୍କଟମାନ ଆସି ଉତ୍ପନ୍ନ ହେବାକୁ ଲଗିଲ ।

କାତ୍ୟାୟିନୀର ବନ୍ଧୁ ମୁଖେଦକୁମାରୀର ଅଧୁନାତନ ଜୀବନସ୍ରୋତ ଓ ତା'ର ବାପଘରର ଉନ୍ନତ ଅବସ୍ଥା ଦେଖି ବେଳେବେଳେ କାତ୍ୟାୟିନୀର ମନରେ ପ୍ରତିହିଂସା ବି ଜାତ ହେଉଥିଲା । ତା'ର କଥାରୁ ମଧ୍ୟ ତାହା ଅନେକ ସମୟ ପ୍ରକଟ ହୋଇ ଯାଉଥିଲା ।

କିନ୍ତୁ, ସେଥିରେ ଅନନ୍ତନ୍ ନାୟର୍ ଆଉ କ'ଣ ପାରିଥାନ୍ତେ ?

କିଛିଦିନ ପାଇଁ କୁଆଡ଼େ ବାହାରକୁ ଯାଇ ଟିକିଏ ଖୋଲା ପବନ ଖାଇ ଆସିବାକୁ ସେ ଯେତେବେଳେ କହୁଥିଲା, ସେତେବେଳେ ସେ କୌଣସି ବାଧା ଦେଉଥିଲେ ତ ସେଥିରୁ ଏପରି ଅନର୍ଥମାନ ଆସି ପହଞ୍ଚୁଥିଲା ଯେ ସିଏ କ୍ରୋଧରେ ଉନ୍ମତ୍ତ ହୋଇ ପିଲାଙ୍କ ପିଠିରେ ବଳପରୀକ୍ଷା ବି କରି ନେଉଥିଲା । ତେଣୁ କେବଳ ଚୁପ୍ ହୋଇ ଶୁଣିବାର ହିଁ ଏକ ଅବସ୍ଥା ଆସି ପହଞ୍ଚି ଯାଇଥିଲା ।

ମାନସିକ ନାନା ସଂଘର୍ଷ ଓ ଶରୀରର ବେମାରି ହେତୁ ଅନନ୍ତନ୍ ନାୟର ଦିନକୁ ଦିନ ଦୁର୍ବଳ ହୋଇ ପଡ଼ୁଥିଲେ··· । କିନ୍ତୁ କାତ୍ୟାୟିନୀର ଦେହରେ ଦିନକୁ ଦିନ ନୂଆ ଉଜ୍ଜ୍ୱଳତା ଏବଂ ନୂତନ ପୁଷ୍ଟି ବୃଦ୍ଧି ପାଇବାରେ ଲଗିଥାଏ··· ।

ତାଙ୍କୁ ଦେଖିବା ମାତ୍ରକେ ଗୋଟାଏ ପ୍ରକାରର ଭୟ ଜାତ ହେଉଥିଲା । ସେଦିନ ପ୍ରଥମ ଥର ବ୍ରହ୍ମମନ ତମ୍ଭିଙ୍କ ଘରୁ ଫେରିଆସିବା ପରଠାରୁ ଅଧିକାଂଶ ସମୟରେ ସେହିପରି ହେଉଥିଲା । ସିଏ ହେଉଛନ୍ତି ସ୍ୱାମୀଙ୍କ ପରିବାରର ସବୁଠାରୁ ନିକଟ ବନ୍ଧୁ— ଏହି ଅନୁମାନରେ କାତ୍ୟାୟନୀ ସ୍ୱୟଂ, ସିଏ ନ କହିଥିଲେ ମଧ୍ୟ, ଦଉଡ଼ି ଦଉଡ଼ି ତମ୍ଭିଙ୍କର ସେବା କରିବାକୁ ଲାଗିଲା । ଅବସ୍ଥାଟି ଏତେଦୂର ପର୍ଯ୍ୟନ୍ତ ଅଗ୍ରସର ହୋଇ ଯାଇଥିଲା ।

ତଥାପି, ତାଙ୍କ ଭିତରେ ଏପରି ଏକ ଦୃଢ଼ତା କାମ କରୁଥିଲା ଯେ ବର୍ତ୍ତମାନ ମଧ୍ୟ ଅବସ୍ଥା ଅକ୍ତିଆରର ବାହାରକୁ ଗଲାପରି ମନେ ହେଉ ନଥିଲା । ମାତ୍ର, କାତ୍ୟାୟିନୀକୁ ନିୟନ୍ତ୍ରଣରେ ରଖିବା ଲାଗି ତାଙ୍କ ପାଖରେ ଯେଉଁ ଯୁକ୍ତି ଥିଲା, ସିଏ ସବୁଯାକ କାଳକ୍ରମେ ସରି ଆସିବାରେ ଲାଗିଥିଲା ଏବଂ ତେଣୁ ଏପରି ଅନୁଭବ ହେବାକୁ ଲାଗିଲା ଯେ ନିୟନ୍ତ୍ରଣର ଏହି ଅବସ୍ଥାଟି ଦୋହଲି ପଡ଼ିବାକୁ ଆଉ ମୋଟେ ବେଶୀ ଦିନ ବାକି ନାହିଁ ।

ଓଃ ! ସିଏ ଯେତେବେଳେ ଏକ ଜୀବନ୍ତ ଶବ ପରି ବିଚରଣ କରିବାରେ ଲାଗିଥିଲେ, ସେହି ଅବଧିଟି ମଧ୍ୟରେ କେତେଆଡ଼ୁ କେତେ ବିପଦ ଆସି ତାଙ୍କ ଉପରେ ନପଡ଼ିଲା !

ଅଫିସ୍‌ରେ, ତାଙ୍କ ପଛଆଡ଼େ ଯେଉଁସବୁ କଥା କ୍ରମେ କୁହୁଳି କୁହୁଳି ଉଠୁଥିଲା, କ୍ରମେ ସେଗୁଡ଼ାକ ଆସି ତାଙ୍କର ଆଗରେ ପଡ଼ିବାକୁ ଲାଗିଲେ ।

ଏଣେ ପଡ଼ିଶାର ଲୋକମାନଙ୍କ ମଧ୍ୟରେ ଏକ ପ୍ରକାରର ଉପହାସର ଭାବନା ବ୍ୟାପିବାକୁ ଆରମ୍ଭ କଲା । ସେ କଥା ମଧ୍ୟ ପରିଷ୍କାର ଜଣା ପଡ଼ିଗଲା ।

କିନ୍ତୁ ସେଥିଲାଗି କ'ଣ କରାଯିବ ?

ଏ ସବୁର ପ୍ରତିକାର କିପରି କରାଯିବ ?

"ଆଉ ଆପଣ ଏଠାକୁ ଆସିବେ ନାହିଁ" ବୋଲି ବ୍ରହ୍ମମନ୍ ତମ୍ଭିଙ୍କୁ କହିବାକୁ ହେବ ନା "ତାଙ୍କ ସଙ୍ଗରେ ଏଣିକି କଥା ହେବ ନାହିଁ" ବୋଲି କାତ୍ୟାୟିନୀକୁ କହିବାକୁ ହେବ, ଦୁଇଟା ମଧ୍ୟରୁ ବର୍ତ୍ତମାନ କ'ଣ ଗୋଟାଏ ବି ସମ୍ଭବ ନଥିଲା ?

ଦେହର ଅବସ୍ଥା ପୁଣି ଏପରି ହେଲା ଯେ ଅନେକ ସମୟରେ ଅଫିସ୍‌ରୁ ଛୁଟୀ ନେବାକୁ ପଡ଼ୁଥିଲା । ତାଙ୍କର ଆବଶ୍ୟକତା ଅନୁସାରେ, କୌଣସି ପ୍ରକାର ପ୍ରତିରୋଧ

ନକଲ ସେକ୍ସେନର ତାଙ୍କର ଛୁଟି ମଞ୍ଜୁର କରି ଦେଉଥିଲେ; ଏବଂ ପଛରେ ଯେଉଁ ଶକ୍ତି କାର୍ଯ୍ୟ କରୁଥିଲା—ସେ କଥା ମଧ୍ୟ ସେ ଜାଣିଥିଲେ ।

କାର୍ଯ୍ୟାଳୟରେ ଏପରି କେତେ କେତେ ସୁବିଧା··· ।

ଏପରି ସ୍ଥିତିରେ ଏତେଗୁଡ଼ାଏ ସୁବିଧା ରହିଥିବା ଚାକିରିଟି ହାତରୁ ଖସିଯିବ ତ···

ତେଣୁ ବିକ୍ରମନ୍ ଚମ୍ପିଙ୍କ ସହିତ ବିରୋଧ ଲଗାଇ ତାଙ୍କୁ ଫେରାଇ ଦେବା କ'ଣ ତାଙ୍କ ପକ୍ଷରେ କେବେ ସାଧ୍ୟ ଥିଲା ?

"ତାଙ୍କ ସହିତ ଆଉ କଥା କହିବ ନାହିଁ" କହି କାତ୍ୟାୟିନୀଙ୍କୁ ବନ୍ଧ କରିବାରେ ବି ଫାଇଦା କ'ଣ ହେବ ? ଯଦି ତାଙ୍କଠାରୁ ଲୁଚାଇ ଛପାଇ ସିଏ ତା'ସହିତ କଥାବାର୍ତ୍ତା କରିବାକୁ ଆରମ୍ଭ କରନ୍ତି, ତେବେ··· ?

ଏହା ଛଡା ବି, ଅବୁଝା ପିଲାଙ୍କ ପରି ଏହି ସ୍ତ୍ରୀଲୋକଟାକୁ ବନ୍ଧ କରି ରଖିବାରେ କି ଲାଭ ହେବ ? ସେହିପରି ତାଙ୍କର ଧମକର ପ୍ରଭାବରେ ବା ଡରରେ ଯଦି ସିଏ ଅନୁଶାସିତ ହୋଇ ରହିବ, ତେବେ ସେଥିରେ ବି କି ଲାଭ ହେବ ?

ମାଧବୀକୁ ପାଞ୍ଚ ବର୍ଷ ହେବାଯାଏ, ସେହି ଚାରିଟି ବର୍ଷ ମଧ୍ୟରେ ସିଏ ଯେଉଁସବୁ କଷ୍ଟ ଭୋଗିଛନ୍ତି···

ସେଦିନକବେଳେ ସେ ଦିନେ ଯେତେବେଳେ କାର୍ଯ୍ୟାଳୟରେ ଯାଇ ପହଞ୍ଚିଲେ, ସେଠାରେ ଏକ ଆଦେଶ ପାଇଲେ ଯେ ତାଙ୍କୁ ହେଡ୍‌କ୍ଲର୍କ ପଦରେ ଅବସ୍ଥାପିତ କରାଗଲା ।

"ଘରେ ଯଦି ସୁନ୍ଦରୀ ସ୍ତ୍ରୀ ରହିଥିବ, ତେବେ ଖାଲି ହେଡ୍‌କ୍ଲର୍କ ଚାକିରି କାହିଁକି, ତହସିଲଦାର ଚାକିରି ମଧ୍ୟ ବାଟ ପଚାରି ଘରେ ଆସି ପହଞ୍ଚିଯିବ,"—ତାଙ୍କ କାନରେ ଆସି ପଡ଼ୁଥିବା ଏଥିପରି ଅନେକ କଡ଼ା କଥା—

ଏହା ସହିତ ଘରେ ମଧ୍ୟ ଗୋଟାଏ ପ୍ରକାରର ସମୃଦ୍ଧି ବେଶ୍ ଦୃଷ୍ଟିଗୋଚର ହୋଇ ପାରିଥିଲା, ପିଲାଙ୍କ ପୋଷାକରେ, କାତ୍ୟାୟିନୀର ପରିଧାନରେ, ଦୈନିକ ଆବଶ୍ୟକ ହେଉଥିବା ବସ୍ତୁଗୁଡ଼ିକରେ···

ଏସବୁ ସୁଅ କୁଆଡ଼କୁ ଯାଉଛି··· ?

ଅତି ସ୍ପଷ୍ଟ ହୋଇ ଯାଉଥିଲା ଯେ ସ୍ଥିତି ନିସ୍ଥନ୍ତରେ ବାହାରକୁ ଗ୍ଭଲିଯିବାରେ ଲାଗିଛି ବର୍ତ୍ତମାନ ଆଉ ଡେରି କରିବା ଆଦୌ ଉଚିତ ହେବନାହିଁ ଏହିପରି ନିଷ୍ପତ୍ତି କରି ହଠାତ୍ ଘଡିରେ ସିଏ ତାଙ୍କୁ ଡାକିଲେ ।

"କାତ୍ୟାୟିନୀ ! ତୁମର ପାଖରେ ହିଁ ମୁଁ ସ୍ତ୍ରୀ ସୁଖ ଭୋଗ କରିବାର ନିଶାଟିକୁ ଅନୁଭବ କରି ଆସିଛି । ମୁଁ ସେଥିଲାଗି ତୁମ ପାଖରେ ଜୀବନଯାକ କୃତଜ୍ଞ ରହିବି । ଏଥିଲାଗି ନିଜ ଇଚ୍ଛାରେ ଗ୍ଭଲିବା ସକାଶେ ତୁମର ମଧ୍ୟ ଅଧିକାର ରହିଛି । ମାତ୍ର ଗୋଟାଏ କଥା— ! ମୁଁ ଆଉ ମୋର ପିଲାମାନେ ଯେଉଁ ଘରେ ରହୁଛନ୍ତି, ସେଥିରେ ଆମେ ସମସ୍ତଙ୍କ ସାମନାରେ ଏପରି ଚାଲିବାକୁ ଆରମ୍ଭ କରିବା ତ ମୁଁ ସେକଥା ଆଦୌ ସହ୍ୟ କରି ପାରିବି ନାହିଁ··· ।"

ଏହା ପୂର୍ବରୁ ସେ କେତେଥର ତା'ସହିତ ଟିକିଏ ଉଗ୍ରତା ସହିତ ଉଚ୍ଚ ଗଳାରେ ବି କଥାବାର୍ତ୍ତା କରିଥିଲେ ; ମାତ୍ର ସେସବୁ ସମୟରେ ତାଙ୍କର କଥାରେ ଯେଉଁ ଦୃଢ଼ତା, ତୀବ୍ରତା ଏବଂ ଗମ୍ଭୀରତା ଆଦୌ ଧ୍ୱନିତ ହେଉ ନଥିଲା, ବର୍ତ୍ତମାନ ସେ ରହି ରହି ଧୀରେ ଧୀରେ ଅର୍ଥପୂର୍ଣ୍ଣ ଭାବରେ ଏବଂ ନିଶ୍ଚୟତା ସହିତ ଯେଉଁ କେତୋଟି ଶବ୍ଦ ଉଚ୍ଚାରଣ କଲେ, ତଦ୍ୱାରା ସେହିସବୁ ଭାବ ବେଶ୍ ପ୍ରକଟ ହୋଇ ଯାଉଥିଲା । —ସିଏ ନିଜେ ମଧ୍ୟ ଏ କଥାଟି ବେଶ୍ ଉପଲବ୍ଧି କରି ପାରିଲେ ।

"ମୋର ପିଲାମାନେ" ବୋଲି କହିଲାବେଳେ "ମୋର ଶବ୍ଦଟି ଉପରେ ସିଏ ଯେପରି ଜୋର ଦେଇ କହିଲେ, ଏବଂ ତାକୁ ଯେପରି ପ୍ରଧାନତା ଦେଲେ, ସେ କଥାଟି ନିଶ୍ଚୟ ବୁଝିନେଇ ପାରିଥିବ । ତାଙ୍କର ଏପରି କହିବାରେ ଏହି ଅଭିପ୍ରାୟ ଥିଲା ଯେ ତାକୁ ହରାଇ ବସିଲେ ମଧ୍ୟ ସିଏ ତଥାପି ନିଜର ପିଲାମାନଙ୍କୁ କେବେହେଲେ ହରାଇବାକୁ ଇଚ୍ଛା କରୁନାହାନ୍ତି—କାତ୍ୟାୟିନୀ ତାକୁ ଏହିପରି ଅର୍ଥରେ ବୁଝୁ ବୋଲି ସେ ଗ୍ଭହୁଁଥିଲେ । ଏକଥା ମଧ୍ୟ କୁହାଯାଇ ପାରିବ ଯେ ସେହି ସମୟରେ ତାଙ୍କ ହୃଦୟରେ ଏହି ଭାବନାଟି ମଧ୍ୟ ଉତ୍ପନ୍ନ ହୋଇ ଯାଇଥିଲା ଯେ ସେଇ ପିଲାମାନେ ଯେତେବେଳେ ବଡ଼ ହୋଇଯିବେ, ସେତେବେଳେ କାତ୍ୟାୟିନୀକୁ ଏହିସବୁ କଥାର ସେମାନଙ୍କ ଆଗରେ ନିଶ୍ଚୟ ଜବାବ ଦେବାକୁ ପଡ଼ିବ ।

କାତ୍ୟାୟିନୀ ଚୁପ୍ ରହିଲା ।

"ତୁମକୁ କୁଞ୍ଜଲକ୍ଷ୍ମୀର କଥା ନିଶ୍ଚୟ ଜଣାଥିବ । ସିଏ ଯେତେବେଳେ ପରିସ୍ଥିତି ଦ୍ୱାରା ବାଧ୍ୟ ହେଲା ସେତେବେଳେ ତାକୁ କ'ଣ କରିବାକୁ ପଡ଼ିଲା, ଏକଥାଟି ମଧ୍ୟ ତୁମକୁ ନିଶ୍ଚୟ ଜଣାଥିବ ।"

"ଜାଣିଅଛୁ, ମାତ୍ର ସିଏତ ଅନ୍ୟପ୍ରକାର କଥା ଥିଲା, ଇଏ ଆଉ ଗୋଟାଏ ପ୍ରକାର କଥା ।" ଅତ୍ୟନ୍ତ ଦୃଢ଼ତା ସହିତ ସ୍ପଷ୍ଟ ଶବ୍ଦରେ ଉତ୍ତର ମିଳିଲା ।

"ହଉ ହେଲା । ବର୍ତ୍ତମାନ ଏହି ବିଷୟଟି ଉପରେ ଆଉ ଆଲୋଚନା କରିବାର କୌଣସି ପ୍ରୟୋଜନ ନାହିଁ ।" ଜାଣିଶୁଣି କଥାଟିକୁ ସେଇଠି ଶେଷ କରି ଅନନ୍ତନ୍ ନାୟର୍ ବିଛଣାର ଶରଣ ମଧ୍ୟକୁ ଚାଲିଗଲେ ।

ଆଖି ବୁଜିଦେଲେ ମଧ୍ୟ ହୃଦୟକୁ ତଥାପି କୌଣସି ଏକ କଥା ସତେଅବା ଦଗ୍ଧ କରିବାକୁ ଲାଗିଲା । ସେହି ସ୍ତ୍ରୀଟି ସହିତ ହୋଇଥିବା କଥାବାର୍ତ୍ତା ପରେ, ତାଙ୍କ ଅନ୍ତର ଭିତରେ ଅବଶେଷ ପରି ଯେଉଁ ଆଶାଟି ସୂତାସମାନ ଝୁଲୁଥିଲା, ସେଇଟି ମଧ୍ୟ ଛିଣ୍ଡିଗଲା । ସମ୍ଭବତଃ ସେହି ନିରାଶାରୁ ଉତ୍ପନ୍ନ ହୋଇଥିବା ବେଦନା ହିଁ ତାଙ୍କୁ ଦଗ୍ଧ କରୁଥିଲା,—ଏହିପରି ଏକ ସନ୍ଦେହ ହେବାକୁ ଲାଗିଲା କାତ୍ୟାୟିନୀର କଥାରେ ଯେଉଁ ଦୃଢତା ଓ ସ୍ପଷ୍ଟତା ରହିଥିଲା, ତାହା ତାଙ୍କର ଟିକିଏ ହୋଇ ଅବଶିଷ୍ଟ ରହି ଯାଇଥିବା ଆଶାଟିକୁ ମଧ୍ୟ ନିର୍ମୂଳ କରିଦେଲା ।

ମନେ ହେଉଛି, କୁଞ୍ଜୁଲକ୍ଷ୍ମୀ ବିଷୟରେ ମଧ୍ୟ ଇଏ ବେଶ୍ କିଛି ଖବର ରଖିଛି । ଯେତେବେଳେ ସେ କୋଚୁକୃଷ୍ଣ କର୍ତ୍ତାଙ୍କୁ ଲୋଡ଼ିଲା, ସେତେବେଳେ ସିଏ ଆଦୌ ଏପରି ଅଙ୍କାବଙ୍କା କରି କଥାକୁ ବଢ଼ାଇ ନଥିଲା···ସିଧା ଫଇସଲା କରି ଦେଇଥିଲା···ତାହାକୁ କାର୍ଯ୍ୟରେ ପରିଣତ କରିବାରେ ମଧ୍ୟ କୌଣସି ବିଳମ୍ବ କଲାନାହିଁ···ଘରର ବୈଠକ ଡକାଇ ପଞ୍ଚାୟତ ବସାଇ ନିଜର ସ୍ୱାମୀକୁ ଛାଡ଼ପତ୍ର ଦେଲା ଓ କୌଣସି ବିଶୃଙ୍ଖଳା ସୃଷ୍ଟି ନ କରି କର୍ତ୍ତାଙ୍କ ପାଖକୁ ଚାଲିଗଲା । ଯେତେବେଳେ ସିଏ ସେହି ଘଟଣାଟି ପ୍ରତି ସଙ୍କେତ ଦେଲେ, ତା'ର ଉତ୍ତରରେ କାତ୍ୟାୟିନୀ ତ ଏହାହିଁ କହିଲା ଯେ କୁଞ୍ଜୁଲକ୍ଷ୍ମୀ ଛାଡ଼ପତ୍ର ଦେଇଥିବା ଭଲ କାରଣ ଏହି କ୍ଷେତ୍ରରେ ଆଦୌ ଉପସ୍ଥିତ ହୋଇନାହିଁ··· ।

ତେବେ···?

କ'ଣ ଏହାର ମତଲବ ହେବ ଯେ ଦୈହିକ ଆବଶ୍ୟକତା ପାଇଁ ସେହି କାରଣଟି ଉପସ୍ଥିତ ହୋଇନାହିଁ ? କ'ଣ ହୃଦୟର ଇଚ୍ଛା ଗୁଡ଼ିକର ପୂରଣ ପାଇଁ ଏସବୁ ହେଉଛି ? ତା' ନହେଲେ...କ'ଣ ଜୀବନର ସୁବିଧାଗୁଡ଼ିକ ପାଇଁ ?—ଅର୍ଥାତ୍ ଧନ, ବୈଭବ, ପଦ, ଚାକର ବାକର···ଇତ୍ୟାଦି ଇତ୍ୟାଦି ।

ତାଙ୍କର ମୁଣ୍ଡ ବୁଲାଇଗଲା ପରି ଲାଗିଲା । ନିଶ୍ୱାସ ବନ୍ଦ ହୋଇଯିବାକୁ ଲାଗିଲା । ଏସବୁ କ'ଣ ବେମାରି ହେତୁ ? ବା ସ୍ମୃତିଗୁଡ଼ିକର ଅଗ୍ନି ବର୍ଷଣ ହେତୁ ? ସିଏ ସେସବୁଗୁଡ଼ିକୁ ଠିକ୍ ଠିକ୍ ଠଉରାଇ ପାରିଲେ ନାହିଁ ।

ପ୍ରହର ଶେଷ ହେବାର ସଙ୍କେତ ଦେଇ ବଡ଼ ଦସ୍ତମୀସ୍ତ ଧ୍ୱନିରେ କୁଆଡ଼ୁ ଘଣ୍ଟା ବାଜିଲା । ଜାଣିଶୁଣି ଆଖି ବୁଜିରଖି ଶୋଇ ପଡ଼ିବାର ଚେଷ୍ଟା କଲେ ତାହା ବି ବ୍ୟର୍ଥ ହୋଇଯିବ— ଭାବନା ଗୁଡ଼ାକ ବିଶ୍ୱରୂପ ଧାରଣ କରି ତାଙ୍କୁ ଏତେଦୂର ଯାତନା ଦେବାରେ ଲାଗିଥିଲେ ।

ଚନ୍ଦ୍ରାଭ୍ୟସ୍ତ ପରି କାତ୍ୟାୟିନୀ ଗାଢ଼ ନିଦରେ ଶୋଇଥାଏ । ହୁଁ, ସ୍ତ୍ରୀକୁ କେମିତି ନିଦ ମାଡ଼ିପାରୁଛି କେଜାଣି···

ତାଙ୍କର ଅବସ୍ଥା ଏପରି ହୋଇଗଲା ଯେ ସେ ଆଉ ବିଛଣା ଭିତରେ ରହି ବି ପାରିଲେନାହିଁ । ଧୀରେ ଧୀରେ ଉଠି ବାହାରକୁ ବାହାରିଗଲେ । ଗୋଡ଼ ଦୁଇଟା ତାଙ୍କୁ ଯୁଆଡ଼େ ନେଇଗଲେ, ସିଆଡ଼କୁ ଗ୍ଲୁଲିବାକୁ ଲାଗିଲେ । କୋଉ କୋଉ ଗଳି ଭିତର ଦେଇ ଗଲେ ଓ କେତେ ଯୁଗପାଇଁ ଗଲେ, ସେ କିଛି ହେଲେ ଜାଣି ପାରିଲେ ନାହିଁ । ଯେଉଁଠି ଆସି ପହଞ୍ଚିଗଲେ, ସେହି ସ୍ଥାନଟିକୁ ଚିହ୍ନି ସାରି ସେ ବଡ଼ ଆଶ୍ଚର୍ଯ୍ୟ ହେବାକୁ ଲାଗିଲେ ।

ସିଏ ନିଜକୁ ଶ୍ରୀକଣ୍ଠେଶ୍ୱର ମନ୍ଦିରର ପ୍ରାଙ୍ଗଣ ଭିତରେ ଦେଖିବାକୁ ପାଇଲେ । ତାଙ୍କର ଦେହ ପୁଲକିତ ହୋଇ ଉଠିଲା··· ।

ମନ୍ଦିରର ପୁଷ୍କରିଣୀଟି ଅନ୍ଧାର ଭିତରେ ମଗ୍ନ ହୋଇ ରହିଥିଲା, ତଥାପି ନିର୍ମାଲ୍ୟ ପୂଜାର ଦର୍ଶନ କରିବା ସକାଶେ ଆସିଥିବା ଯାତ୍ରୀମାନେ ଦଳଦଳ ହୋଇ ସ୍ନାନ କରିବାରେ ଲାଗିଥିଲେ । ଭାରି କୋଳାହଳ ଶୁଣା ଯାଉଥିଲା ।

ପିଲାଦିନେ ମାଆଙ୍କ ହାତ ଧରି ଭଗବାନଙ୍କର ଦର୍ଶନ କରିବାକୁ ସେ ଯେତେବେଳେ ଏଠାକୁ ଆସୁଥିଲେ, ସେତେବେଳେ ମାଆ ତାଙ୍କୁ କହୁଥିବା କଥାଗୁଡ଼ାକ ତାଙ୍କର ମନେ ପଡ଼ିଗଲା ।···

"ପୁଅରେ ! ଏହି ଶ୍ରୀକଣ୍ଠେଶ୍ୱର କ୍ଷେତ୍ର ହେଉଛି ଏହି ରାଜଧାନୀଟି ପାଇଁ ଏକ ନବରତ୍ନମଣିମୟ ଦୀପ । ଏଥିପାଇଁ ବିଶାଖା ଅଷ୍ଟମୀ, ଆଦ୍ରା, ଶିବରାତ୍ରି ପ୍ରଭୃତି ବିଶେଷ ଦିନ ମାନଙ୍କରେ ସ୍ୱୟଂ ଶ୍ରୀସ୍ୱର୍ଣ୍ଣଦେହ ହୋଇ ମହାରାଜ ବି ଏଠାକୁ ଆସନ୍ତି ଓ ଦର୍ଶନ କରି ଯାଆନ୍ତି । ଶ୍ରୀକଣ୍ଠେଶ୍ୱରଙ୍କର ନିର୍ମାଲ୍ୟପୂଜାକୁ ପ୍ରାୟ ଏକବିଂଶତି ଦିନ ପର୍ଯ୍ୟନ୍ତ କେହି ବ୍ରହ୍ମମୁହୂର୍ତ୍ତରେ ଆସି କରି ପାରିବ ତ ତା' ଜୀବନରେ ଆଉ କୌଣସି ଦୁଃଖ ରହିବନାହିଁ । କୌଣସି ଅଭିଳାଷ ଅପୂର୍ଣ୍ଣ ରହି ଯିବନାହିଁ ।"

ଜୀବନରେ ନିରନ୍ତର ସଂଘର୍ଷ ହେତୁ ସେ ଶ୍ରୀକଣ୍ଠେଶ୍ୱରଙ୍କର ବି ଦର୍ଶନ କରିପାରୁ ନଥିଲେ । ଏପରି ପରିସ୍ଥିତିରେ, ବର୍ତ୍ତମାନ ସମସ୍ତ ଜୀବନଟିକୁ ତାଙ୍କର ଶରଣରେ ସମର୍ପିତ ନକରି ଆଉ ଅନ୍ୟ ଗତି ନାହିଁ ବୋଲି ସିଏ ଶେଷକୁ ଏଇଠି ଆସି ପହଞ୍ଚିଗଲେ ନା କ'ଣ ?

ସିଏ ଆଖି ବୁଜି ଯୋଡ଼ହସ୍ତ ହୋଇ ଠିଆହୋଇ ରହିଲେ । ହଠାତ୍ ହୃଦୟ ଭିତରେ ବିଜୁଳିର ଗୋଟିଏ ରେଖା ··· ··· କପରି, କାହିଁକି ପ୍ରଭୃତି ପ୍ରଶ୍ନର ସେଠାରେ ଆଉ କୌଣସି ଉତ୍ତର ନଥିଲା । ମାତ୍ର ଦିନେ ସିଦ୍ଧାର୍ଥଙ୍କୁ ଯେଉଁପରି ବୋଧ ମିଳିଥିଲା, ଠିକ୍ ସେହିପରି ସେହି ଅମର ମୁହୂର୍ତ୍ତିଟିରେ ତାହା ଏକ ମାୟାଜାଲ ପରି ହୋଇ ପ୍ରାଦୁର୍ଭୂତ ହୋଇ ଆସିଲା ।

ସେହି ମୁହୂର୍ତ୍ତିଟିର ବିନାଶ ନାହିଁ ।

ଆଜି ହେଉଛି ପ୍ରଥମ ଦିନ ··· ···

ଆଜିଠାରୁ ଏକତ୍ରିଶି ଦିନ ପର୍ଯ୍ୟନ୍ତ ଶ୍ରୀକଣ୍ଠେଶ୍ୱରଙ୍କର ନିର୍ମାଲ୍ୟପୂଜାର ଦର୍ଶନ କରିବାକୁ ହେବ । ଏଠାରେ ସିଧାରେ ଆସି ଶୋଇ ବ୍ରାହ୍ମ ମୁହୂର୍ତ୍ତରେ ମନ୍ଦିରର ପୁଷ୍କରିଣୀରେ ସ୍ନାନ କରି ନିର୍ମାଲ୍ୟର ଦର୍ଶନ କରୁଥିବା ଲୋକମାନଙ୍କ ସହିତ ସମ୍ମିଳିତ ହୋଇଯିବାକୁ ପଡ଼ିବ ।

ବର୍ତ୍ତମାନ ସେ କଥା ମନେ ପଡ଼ିଗଲା ବେଳକୁ ବି ତାଙ୍କୁ ଆଶ୍ଚର୍ଯ୍ୟ ଲାଗୁଛି । ସେଠି ସେ ଅଧିକ ଡେରିଯାଏ ଠିଆ ହୋଇ ଆଉ କିଛି ଭାବିଲେ ନାହିଁ । ମନ୍ଦିରର ପୁଷ୍କରିଣୀ ଭିତରକୁ ଓହ୍ଲାଇଗଲେ । ବରଫ ପରି କାଳୁଆ ପାଣିରେ ଗାଧୋଇ ପଡ଼ିଲେ, ଓଦା ଲୁଗାରେ ମନ୍ଦିରରେ ପ୍ରବେଶ କଲେ, କେତେକେତେ ଘୃତ ଦୀପରେ ଉଜ୍ଜ୍ୱଳ ଆଲୋକରେ ମନ୍ଦହାସ୍ୟ କରି ଠିଆ ହୋଇଥିବା ଶ୍ରୀ କଣ୍ଠେଶ୍ୱରଙ୍କ ସାନ୍ନିଧ୍ୟରେ ··· ···

ନିଜର ଆଶା ଓ ନିରାଶାଗୁଡ଼ିକୁ—

ସବୁଯାକ ଇଚ୍ଛା ଓ ଅନିଚ୍ଛାକୁ —

ସବୁକିଛି ସଙ୍କଟକୁ—

ମନର ସଂଘର୍ଷଗୁଡ଼ିକୁ—

ଯାବତୀୟ ବଞ୍ଚନାକୁ—

ପ୍ରତୀକ୍ଷାଗୁଡ଼ିକୁ—

ସବୁକିଛିକୁ—

ସ୍ୱୟଂ ଆପଣାକୁ ସମ୍ପୂର୍ଣ୍ଣ ଭାବରେ ସମର୍ପିତ କରିଦେଇ ଫାଇସଲ୍ ଲଜି ମସ୍ତକନତ କରି ଠିଆହୋଇ ରହିଲେ ତ ତାଙ୍କର ଦେହସାରା ପୁଲକ ଖେଳିଯିବାକୁ ଲାଗିଲା … … । ସମସ୍ତ ମନୁଷ୍ୟ ଶକ୍ତି ସମ୍ପୂର୍ଣ୍ଣରୂପେ ହାରିଗଲା; ବର୍ତ୍ତମାନ ଆଉ କୌଣସି ଗ୍ୱରା ବାକି ରହିଲାନାହିଁ । ମୁକ୍ତିର ଆଉ କୌଣସି ମାର୍ଗ ବି ରହିଲାନାହିଁ ଏହିପରି ଏକ ମନଃସ୍ଥିତିର ସୀମାରେଖା ଉପରେ ଆସି ପହଞ୍ଚିଗଲା ପରି ଦୁଇହାତ ଉପରକୁ ଉଠାଇ, "ହେ ପରମ ପିତା । … ବର୍ତ୍ତମାନ ତୁମେ ହିଁ ମୋ'ର ଏକମାତ୍ର ସହାୟ,— ମୋତେ ଅଭୟ ଦାନ କର !" ବୋଲି କହି ଶରଣ ପଶିବା ବ୍ୟତୀତ ଆଉ କ'ଣ ଉପାୟ ରହିଛି ? … …

ପେରୁଭାନ୍ନିୟାଥ୍ ପାଣ୍ଡୋଇ ଇଂଜେକ୍ଲ୍ ସ୍କୁଲ୍ ଠାରୁ ବଙ୍କାଇ ଯାଇଥିବା ଗଳିରେ ଅନନ୍ତନ୍ ନାମ୍ବୁର୍ ଯାଇ ପ୍ରବେଶ କଲେ ।

ଶ୍ରୀକଣ୍ଠେଶ୍ୱରଙ୍କ ପାଖରେ ନିଜର ସମସ୍ତ ଭାରକୁ ସମ୍ପୂର୍ଣ୍ଣ ହୃଦୟ ସହିତ ସମର୍ପିତ କରିଦେଇ କାର୍ଯ୍ୟ କରିବାର ସେହି ବୁଦ୍ଧିମତ୍ତାର କଥାଟି ଭାବି ତାଙ୍କୁ ଏବେ ମଧ୍ୟ ଆଶ୍ଚର୍ଯ୍ୟ ଲାଗୁଛି, ଏବଂ କୌତୁହଳ ମଧ୍ୟ ଜାତ ହେଉଛି । ମାତ୍ର ତୁରନ୍ତ ଫଳପ୍ରାପ୍ତି ହେବାର ସେହି କଥାଟି ତାଙ୍କ ଜୀବନରେ ପ୍ରକୃତରେ କେତେଦୂର ଚରିତାର୍ଥ ହୋଇ ପାରିଲା ?

ସେହିଦିନ ଠାରୁ ଆରମ୍ଭ କରି ଏକଶ୍ୱିଳଶି ଦିନ ପର୍ଯ୍ୟନ୍ତ ତାଙ୍କ ଜୀବନରେ ଗୋଟିଏ ନୂଆ ମୋଡ଼ ଆରମ୍ଭ ହୋଇଗଲା,—ଆମେ ଏପରି ନିଃସନ୍ଦେହ କହିପାରିବା, ରାତିରେ ଖାଇବା ପରି ଦଶ ଏଗାରଟା ସମୟରେ ଖଣ୍ଡେ ଗାମୁଛା ନେଇ ସେ ଘରୁ ବାହାରି ପଡ଼ନ୍ତି ଓ ଶ୍ରୀକଣ୍ଠେଶ୍ୱରଙ୍କ ମନ୍ଦିରର ମଣ୍ଡପ ଉପରେ ଅନ୍ୟ ଭକ୍ତମାନଙ୍କ ସହିତ ସିଏ ବି ପଡ଼ି ରହିଥାନ୍ତି ...... । ବଡ଼ ଭୋରରୁ ତିନିଟା ବେଳେ ଉଠି ପୁଷ୍କରିଣୀର ସେହି ଥଣ୍ଡା ପାଣିରେ ସ୍ନାନ କରନ୍ତି ଓ ନିର୍ମାଲ୍ୟର ଦର୍ଶନ କରନ୍ତି ...... ।

ଘରକୁ ଫେରିଲା ବେଳକୁ ସକାଳ ହୋଇଯାଏ । ଖବର ପଢ଼ି ଯାଇଥାଏ— ତା'ପରେ କଫି ପିଇ ଅଫିସ୍‌କୁ ଚାଲିଯାଆନ୍ତି । ପୁଣି ରାତିକୁ ଶ୍ରୀକଣ୍ଠେଶ୍ୱର ମନ୍ଦିର ...... ସେହିପରି ଭାବରେ ଜୀବନ କଟିଯିବାକୁ ଲାଗିଲା । ଏହି ଏକଚାଳିଶିଟି ଦିନ ମଧ୍ୟରେ କାତ୍ୟାୟିନୀର ଚାଲିଚଳନ ଅଥବା ବିକ୍ରମନ୍ ତମ୍ପିଙ୍କର ଯାବତୀୟ କାର୍ଯ୍ୟ ବିଷୟରେ ଏତେ ଟିକିଏ ବି ଖିଆଲ୍ ଆସିଲା ନାହିଁ । ସେହି ଜାଦୁଟି ଏପରି ଭାବରେ ......

ବେମାରିଆ ଶରୀରଟା ଏହି ସବୁଥିରେ ସହଯୋଗ କରିବାରେ ଲାଗିଥିଲା—. ଏକଥାରେ ଆଶ୍ଚର୍ଯ୍ୟ ହେବାର କିଛି ନଥିଲା । ମାତ୍ର, ଯେତେବେଳେ ମାଆବାପା ମଲେ, ସେହି ସମୟରେ କିଛି ଦିନ; ହସ୍‌ପିଟାଲ୍‌ରେ ରହୁଥିବା ବେଳେ କିଛିଦିନ; ମୂଖିଦ କୁମାରୀର ବାପଘରକୁ ଛିଶ୍ୱଶୁର ଯାଇଥିବାର ସେହି ଗୋଟିଏ ହପ୍ତା,—ଅଗତ୍ୟା ବିତାଇଥିବା ଏହି କେତୋଟି ଦିନକୁ ଛାଡ଼ିଦେଲେ, ଏହି ଦଶଟିଯାକ ବର୍ଷର ପ୍ରତ୍ୟେକଟି ଦିନ କାତ୍ୟାୟିନୀ ସହିତ ଦାମ୍ପତ୍ୟ-ଜୀବନ ମଧ୍ୟରେ ହିଁ କଟି ଯାଇଥିଲା । ମାତ୍ର ଲଗାଏତ ଏକଚାଳିଶଟା ଦିନ ତା'ର ଦେହଗତା ଉଷ୍ଣତାକୁ ନପାଇ ମଧ୍ୟ ଆପଣାର ଗୋଟିଏ ବନ୍ଧନକୁ ସ୍ୱୀକାର କରିନେଇ ସିଏ ଯେ ଏଭଳି ଏକ ଏକାକୀତା ମଧ୍ୟରେ ରହି ପାରିଲେ,—ଏହାହିଁ ବଡ଼ ଆଶ୍ଚର୍ଯ୍ୟର କଥା ହୋଇ ରହିଥିଲା...... ।

କୌଣସି ବ୍ୟକ୍ତ ନଥାସି ଏକ ପବିତ୍ର ବ୍ରତ ଠିକଣା ରୂପରେ ପୂର୍ଣ୍ଣ ହୋଇପାରିଲା । ଏହିପରି ଏକ ଉଲ୍ଲାସ ସହିତ ସବୁ ଶେଷଦିନ ସକାଳେ ସେ ଜଣେ କର୍ମଠ ବ୍ୟକ୍ତିର ଆତ୍ମତୃପ୍ତି ନେଇ ମନ୍ଦିରରୁ ଘରକୁ ଫେରିଲେ । ତାଙ୍କର ଇନ୍ଦ୍ରିୟଗୁଡ଼ିକ ସେଠାରେ ଇତି ମଧ୍ୟରେ ଏକ ଅଦ୍ଭୁତ ପରିବର୍ତ୍ତନ ହୋଇ ଯାଇଥିବାର ଘ୍ରାଣ କରି ପାରୁଥିଲେ ।

ମାତ୍ର···

ସେହି ପରିବର୍ତ୍ତନଟି ଯେ କ'ଣ ଥିଲା······କିଛି ବୁଝି ହେଉନଥିଲା···ଘରେ ପୂର୍ଣ୍ଣ ନୀରବତା ରହିଥିଲା, କିନ୍ତୁ ନିଦ୍ରାରେ ନିମଗ୍ନ ପ୍ରଭାକରନ୍ ଏବଂ ମା ଧ ବୀ କୁ ଦେଖିବା ପରେ ଯାଇ ହୃଦୟ ଟିକିଏ ଆଶ୍ୱସ୍ତ ହେଲା ।

"କାତ୍ୟାୟିନୀ······।"

ତାଙ୍କର ଏକୁଟିଆ କଣ୍ଠସ୍ୱରଟି ଘର ଭିତରେ ଥରେ ଗୁଞ୍ଜି ଉଠିଲା ଓ ପୁଣି ଲେଉଟି ଆସିଲା । ସେହି ଶବ୍ଦରେ ପିଲାମାନେ ଥରେ କଡ଼ ଲେଉଟାଇ ଦେଲେ···ବାସ୍ ।

କାତ୍ୟାୟିନୀଙ୍କୁ ଆଉ ଦେଖିବାକୁ ମିଳିଲା ନାହିଁ······

ଏହି କେତେଟା ଦିନରେ ସବୁକଥା କେତେ ପରିପକ୍ୱ ହୋଇଗଲାଣି, ତଥାପି ମନଭିତରେ ଗୋଟାଏ ଧକ୍କା······

କିଞ୍ଚିତ୍ ଚକିତ ଭାବରେ ବାରଣ୍ଡାରେ ଠିଆ ହୋଇ ସେ ଦେଖିଲେ ଯେ ଅଗଣାରେ ଦଉଡ଼ି ଉପରେ ପବନରେ ଫରଫର ହୋଇ ସକାଳର ଖରାରେ ସେହି ସବୁଜ ରଙ୍ଗର ଚଉଡ଼ା ଧଡ଼ିବାଲା ଶାଢ଼ୀଟି ଶୁଖିବାରେ ଲାଗିଛି । ସେଇଟି ଉପରେ ଝଟ୍ କରି ନଜର ପଡ଼ିଗଲା······

ସେଇଟା ତ ତାଙ୍କର ଶାଢ଼ୀ ନୁହେଁ······

ସିଏ ଯେ କାହାର ହୋଇଥିବ, ସେ କଥା ତାଙ୍କୁ ଜଣାଥିଲା···

ତା' ହେଲେ ଆଉ କ'ଣ······ ?

ସେ ସବୁକିଛି ବୁଝିଗଲେ······ ।

ଅନନ୍ତନ୍ ନାମ୍ବୁର୍ ଯେତେବେଳେ ଘରେ ଆସି ପହଞ୍ଚିଲେ, ସେତେବେଳେ ବାରଣ୍ଡା ଉପରେ ମାଧବୀ ଆଉ ପ୍ରଭାକରନ୍ ସାମନାସାମନି ହୋଇ ବସିଥିଲେ ।

ସେମାନଙ୍କର ମୁଖମୁଦ୍ରାରୁ ସ୍ପଷ୍ଟ ହୋଇ ଯାଉଥିଲା ଯେ ସେମାନେ ଖୁବ ଗମ୍ଭୀର କୌଣସି ଗୋଟିଏ ବିଷୟ ଉପରେ କ'ଣ ସବୁ ଚର୍ଚ୍ଚା କରିବାରେ ଲାଗିଛନ୍ତି ।

ଅନନ୍ତନ୍ ନାୟର୍‌ଙ୍କୁ ଦେଖିବା ମାତ୍ରକେ ମାଧବୀ ଠିଆହୋଇ ଆଗକୁ ଆସିଲା ଓ କହିଲା, "ଆମେ ଆପଣଙ୍କ ଲାଗି ହିଁ ଅପେକ୍ଷା କରୁଥିଲୁ······।"

କେତେ କେତେ ପ୍ରଶ୍ନରେ ପୂର୍ଣ୍ଣ ଆଖିଗୁଡ଼ିକୁ ସେ ସେହିମାନଙ୍କ ଉପରେ ନିବଦ୍ଧ ରଖି ଲୁଗା ପାଲଟିବାରେ ଲାଗିଲେ ।

"ନାହିଁ । ଆମେ ଚିନ୍ତାକରୁଥିଲୁ କି ଆପଣ ଆଜି ମଧ୍ୟ କାଲି ପରି ଖୁବ୍ ଡେରି କରି ଆସିବେ······।" ମାଧବୀ କହିଲା ।

"ଓ ହୋ ! ହେ ଶ୍ରୀପଦ୍ମନାଭ······ " କହୁ କହୁ ସିଏ ବିଛଣା ଉପରେ ଗଡ଼ିପଡ଼ିଲେ ।

"ବାପା, ଆସନ୍ତୁ । ଅନେକ ଡେରି ହୋଇଗଲାଣି······ଆପଣ କିଛି ଖାଇ ନିଅନ୍ତୁ···।" ମାଧବୀ ତାଙ୍କୁ ଡାକିଲା ।

"ନାହିଁ ଝିଅ । ଯଦି ଗରମର ଦଲିଆ ହୋଇଥିବ ତ ଆଣ···ଆଜି ମୁଁ ଆଉ କିଛି ଖାଇବି ନାହିଁ— ।" ସେ ମନା କରି କହିଲେ ।

ମାଧବୀ ତାଙ୍କର ସ୍ୱଭାବଟିକୁ ଭଲ କରି ଜାଣିଥିଲା, ତେଣୁ ଆଉ ଅଧିକ କିଛି କହିଲା ନାହିଁ । ସେ ଘର ଭିତରକୁ ଗଲା ଓ ଦୁଧ ଦେଇ କିଛି ଦଲିଆ ତିଆରି କରିବା କାର୍ଯ୍ୟରେ କାମାକ୍ଷୀକୁ ସାହାଯ୍ୟ କଲା ।

ତାଙ୍କର ମୁଣ୍ଡଟିକୁ ଦେଖିବା ମାତ୍ରକେ ପ୍ରଭାକରନ୍ ନିଜ କୋଠରୀଟି ଭିତରକୁ ପଶି ଯାଇଥିଲା, ଇତି ମଧ୍ୟରେ ସିଏ ବି ଧୀରେ ଧୀରେ ସେଠାରେ ଆସି ପହଞ୍ଚିଲା ।

ଅଣ୍ଟା ଉପରେ ଲୁଙ୍ଗି, ସେଣ୍ଡୋ ବେନିଅନ୍,- ଜଙ୍ଘ ପର୍ଯ୍ୟନ୍ତ ହାତକୁ ଲମ୍ବାଇ ସିଏ ସେଇଠି ଠିଆହୋଇ ରହିଥାଏ । ତାକୁ ଦେଖି ଅନନ୍ତନ୍ ନାୟର୍‌ଙ୍କର,— ତାକୁ ଯାହା ପଚାରିବାର ଥିଲା, ସେ ଯେପରି ସବୁକିଛି ଭୁଲିଗଲେ, ଠିକ୍ ସେହିପରି ଏକ ବିଭ୍ରମ ହେବାକୁ ଲାଗିଲା······

"ବାପା···ମୋତେ ଆପଣ ଡାକୁଥିଲେ ବୋଲି ମାଧବୀ କହୁଥିଲା···ମାମୀ ବି କହିଲେ···।" ବୟସ୍କତାରୁ ପ୍ରାପ୍ତ ଏକ ଗାରିମା ଶବ୍ଦରେ ପୂରି ରହିଥିବା ସ୍ୱରରେ ସେ ପଚାରିଲା । କଥା କିପରି ଆରମ୍ଭ କରିବାକୁ ହେବ,—ଏହିପରି ଏକ ଦ୍ୱିଧାରେ ପଡ଼ି ଶୂନ୍ୟ ଦୃଷ୍ଟିରେ ତାକୁ ହିଁ ଦେଖୁ ଦେଖୁ ସେ ବସି ରହିଲେ ।

ହୁଁ ! ଇଏ ବି କେତେ ଶୀଘ୍ର ବଡ଼ ହୋଇଗଲା···ଠିକ୍ କାଲିପରି ଲାଗୁଛି, ସାନ ପିଲାଟିଏ ହୋଇ ଖେଳୁଥିଲା ବୁଲୁଥିଲା··· । ବର୍ତ୍ତମାନ ତ ଏହିକାଳର ଫେଶନ ଅନୁସାରେ, ଏକ ବିଶେଷ ଢଙ୍ଗରେ କଟାହୋଇ ଉପର ଆଡ଼କୁ ଉଠାଇ ଦିଆ

ଯାଇଥିବା ମୁଣ୍ଡର ବାଳ, ଗ୍ରେଞ୍ଚିଆ କରି ଟିକିଏ ଦାଢ଼ି, କମ୍ ଚଉଡ଼ା ହୋଇଥିଲେ ମଧ୍ୟ ହେଲେ ଗହନ ନାକ, ମୋହଭଙ୍ଗ ଓ ଆଶାହୀନତାର ପ୍ରତିବିମ୍ବକୁ ବହନ କରିଥିବା ଆଖି –ସିଏ କିଛିସମୟ ଅନାଇକରି ଦେଖିଲେ । ତା'ପରେ କହିଲେ, "ପ୍ରଭାକରନ୍ । ଏଇଠି ଆସିବ । ତୋ ସହିତ କିଛି କଥା ଅଛି... । ତୋତେ ନିଦ ମାଡ଼ୁନାହିଁ ତ.... ?"

"ନାହିଁ" ବୋଲି କହି ସେ ଆଗରେ ପଡ଼ିଥିବା ଚଉକୀଟିରେ ଆସି ବସିଲା

"ଟମାସ୍ ସହିତ ତୋର ଦେଖା ହେଲା ?" ହଠାତ୍ ମନେ ପଡ଼ିବାରୁ ସେ ପଚାରିଲା ।

"ହଁ, ଦେଖାହେଲା" ଦୁଇଟି ଶବ୍ଦରେ ଉତ୍ତର ଦେଇ ତାଙ୍କ ମୁହଁଆଡ଼କୁ ଅନାଇବା ଲାଗି ଟିକିଏ ସଙ୍କୋଚ ହେବାରୁ ସେଠାରେ ପଡ଼ିଥିବା ଖବରକାଗଜ ଖଣ୍ଡିକ ଉଠାଇ ନେଇ ସେଇ ଆଡ଼କୁ ଅନାଇ ଅନାଇ ତାଙ୍କ କଥାକୁ ଶୁଣିବା ଲାଗି ସେ ଅପେକ୍ଷା କରି ରହିଲା । ଇତିମଧ୍ୟରେ ମାଧବୀ ଦଳିଆ ନେଇ ପହଞ୍ଚିଗଲା, ସିଏ ବହୁତ କରି କହିଲା, ତଥାପି ସେ ଗୋଟିଏ ଗିନାରୁ ଅଧିକ ମୋଟେ ଖାଇ ପାରିଲେ ନାହିଁ ।

"ଆଚ୍ଛା - ମାଧବୀ, ମାମୀକୁ କହିଦେ' ସିଏ ଶୋଇବାକୁ ଯାଉ । ତା'ପରେ ତୁ ବି ଏଠିକି ଆ... ।" ମାଧବୀ ଭିତରକୁ ଯାଇ ସଙ୍ଗେସଙ୍ଗେ ଫେରିଆସିଲା ।

"ବାପା, ରାତି ବହୁତ ଡେରି ହୋଇଗଲାଣି । କାଲି ମଧ୍ୟ ଆପଣ ଠିକ୍ ସମୟରେ ଶୋଇ ନଥିଲେ···ଆଜି ଶୋଇବେ ଯାଆନ୍ତୁ ନା·· କାଲି ସକାଳେ କଥାବାର୍ତ୍ତା ହେଲେ କ'ଣ ହେବନାହିଁ ?" ସେ କହିଲା ।

"ନାହିଁ, ମାଧବୀ, ଆଜି ରାତିରେ ଯେତେ ଡେରି ହେଲେ ହେବ ପଛକେ, ଆଜି ଆମେ କେତୋଟି ବିଷୟ ନିଶ୍ଚୟ ସ୍ଥିର କରିନେବା । ଏଥିରେ ସମସ୍ତଙ୍କର ଭଲ ହେବ···ଅନ୍ତତଃ ମୁଁ ଏହିପରି ଭାବୁଛି ।" ସିଏ ଯେତେବେଳେ ଏପରି କହିଲେ ସେତେବେଳେ ମାଧବୀ ଆଉ ପ୍ରଭାକରନ୍ ପରସ୍ପର ମଧ୍ୟରେ ଦୃଷ୍ଟି ବିନିମୟ କରୁଥିଲେ— ସେ କଥାଟି ତାଙ୍କ ଆଖିରେ ମଧ୍ୟ ପଡ଼ିଗଲା ।

"ଆଚ୍ଛା' ତୁ ବି ସେଠି ବସ, ଛିଅ ।" ଟିକିଏ ସଙ୍କୋଚ ସହିତ ମାଧବୀ ଆର ଚଉକୀଟି ଉପରେ ଯାଇ ବସିଲା ।

"ହଁ···ସକାଳେ ତୁ ଯୋଉ କଥାଟି କହୁଥିଲୁ, ଆଗ ସେଇଟିକୁ ସମ୍ପୂର୍ଣ୍ଣ କରି କହିଦେ । ହଁ···ପ୍ରଭାକରନ୍ କ'ଣ ସେ ବିଷୟରେ କିଛି ଜାଣିଛି ?··· ସେ ଯେତେବେଳେ ମାଧବୀକୁ ଏକଥା ପଚାରିଲେ । ସେତେବେଳେ ପ୍ରଭାକରନ୍ କହିଲା,

"ବର୍ତ୍ତମାନ ପର୍ଯ୍ୟନ୍ତ ଆମେ ସେହି ବିଷୟରେ କଥାବାର୍ତ୍ତା କରୁଥିଲୁ । ସିଏ କ'ଣ ଆପଣା ମନକୁ ମୋତେ କେବେ କହିଥାନ୍ତା ? ମୁଁ ନିଜେ ଆଗ ସବୁକଥା ଜାଣି ସାରିବା ପରେ ତାକୁ ଯାଇ ପଚାରିଲି ଓ ଏହାର ନିଷ୍ପତ୍ତି ଶୁଣିବାକୁ ଇଚ୍ଛା କଲି ।"ଅନନ୍ତନ୍ ନାୟର ମାଧବୀ ଆଡ଼କୁ ଅନାଇ ଦେଖିଲେ । ତା' ମୁହଁରୁ 'ହଁ' ର ସଙ୍କେତ ମିଳୁଥିଲା ।

"ତା'ହେଲେ ଖୁବ ଭଲ ହେଲା । ବାକିତକ କଥା ତୁ କହିଦେ ଝିଅ । ପ୍ରଭାକରନ୍‌ର ମଧ୍ୟ ଜାଣି ନେଇଥିବା ଉଚିତ...ସିଏ ତୋ'ର ବଡ଼ଭାଇନା ସେ ତାକୁ ପ୍ରୋତ୍ସାହିତ କଲେ ।

ତା'ପରେ ଆହୁରି କ'ଣ ମନେ ପକାଇଲା ପରି କହିଲେ, "ଆଜି ସକାଳେ ମୁଁ ତୋତେ ପଚାରିଥିଲି, ତୁ କେବେ ତା' ଘରକୁ ଯାଇଛୁ କି ? ବର୍ତ୍ତମାନ ତୋତେ ସେହି କଥାଟିର ଉତ୍ତର ଦେବାକୁ ହେବ ।" ସେ କଥାବାର୍ତ୍ତା'ର କ୍ରମଟିକୁ ସ୍ମରଣ କରାଇଦେଲେ ।

ଜଣେ ବୟଃପ୍ରାପ୍ତା ଯୁବତୀ, ନିଜ ଭିତରେ ସୁରକ୍ଷିତ ଭାବରେ ଲୁଚାଇ ରଖିଥିବା ଯେଉଁ ରହସ୍ୟଟିରେ ଆନନ୍ଦ ଅନୁଭବ କରୁଥାଏ, ସେହିପରି ଗୋଟିଏ ଗୂଢ଼ ରହସ୍ୟକୁ ନିଜର ବାପା ଆଉ ଭାଇଙ୍କ ମୁହଁରେ କିପରି କହିବ, କିପରି ତା'ର ଆଲୋଚନା କରିବ, ସେହିକଥା ଭାବି ମାଧବୀ ବଡ଼ ସଙ୍କୋଚରେ ପଡ଼ି ଯାଇଥିଲା । ତାକୁ ମୌନ ଦେଖି ଅନନ୍ତନ୍ ନାୟର୍ ସେହିକଥା ଭାବୁଥିଲେ ।

ନଡ଼ିଆଗଛ ପତ୍ରର ସିଁରସିଁର ଶବ୍ଦ ବାହାରେ ବହୁଥିବା ପବନର ସଙ୍କେତ ଦେଇ ଯାଉଥିଲା । ବିଜୁଳି ଆଲୁଅଗୁଡ଼ାକ କାହିଁକି ଏପରି କାନ୍ଦିବାପରି ଦେଖା ଯାଉଥିଲେ, ସିଏ ମୋଟେ ତା'ର କାରଣଟିକୁ ଜାଣି ପାରୁନଥାନ୍ତି ।

"ଝିଅ ! ତୁ ପଢ଼ାଶୁଣା କରିଛୁ...ତେଣୁ ସିଧା କହିଦେ' ପ୍ରକୃତ କଥା କ'ଣ । ସକାଳେ ମୋତେ ସେହିକଥା କହୁଥିଲୁ ନା ! ଅଳ୍ପସମୟ ପୂର୍ବରୁ ପ୍ରଭାକରନ୍ ସହିତ ମଧ୍ୟ ସେହିକଥା ବିଷୟରେ କଥାବାର୍ତ୍ତା ହୋଇଛୁ । ତେବେ ଆଉ ସଙ୍କୋଚ କ'ଣ... ! ବର୍ତ୍ତମାନ ଆମେ ତିନିହେଁ ଯାହା ଏଠି ଏକାଠି ବସିଛୁ...ସେଠକ୍ରମାନ୍ତ ପଂରିକ... । ତୁ କହିଦେଲେ ସିନା ତୋର ମନ ଭିତରର କଥାଟିକୁ ମୁଁ ଜାଣି ପାରିବି ? —ଏଥିରେ ତୋର ଭଲ ହେବ ଆଉ ମୋର ବି ଆଉ ଡେରି କରିନା...ଆଜି ଆମକୁ ଅନେକ ବିଷୟରେ ବିଚାର କରିବାକୁ ହେବ । କହିଦେ ଝିଅ...।" ସିଏ ଏପରି ବାରବାର ପଚାରିବା ପରେ ବଡ଼ ସଙ୍କୋଚ ସହିତ ପାତଳା କଣ୍ଠରେ ସେ ଦୃଢ଼ ହୋଇ ଉତ୍ତର ଦେଲା," ତାଙ୍କ ଘରକୁ ମୁଁ ବି ଚାରିଥର ଯାଇଛି ।"

"ଓ ହୋ !" ପ୍ରଭାକରନ୍ ଏପରି ଶବ୍ଦ କରିବାରୁ ଅନନ୍ତନ୍ ନାୟର୍‌ଙ୍କର ମନେ ହେଲା ଯେ ସିଏ ଏକଥାଟିକୁ ଜାଣିଛି ।

ସକାଳେ ସିଏ ଏହି ପ୍ରଶ୍ନଟି ପଚାରିଥିଲା ବେଳେ ମାଧବୀ କିଛି ନ କହି ଚୁପ୍ ହୋଇ ବସିଥିଲା, ସେଇଥିରୁ ସେ କେତେକ ପରିମାଣରେ ସବୁକଥାକୁ ଅନୁମାନ କରି ନେଇଥିଲେ, ଏବଂ ତେଣୁ ବର୍ତ୍ତମାନ ତାଙ୍କୁ ଏକଥା ଶୁଣି ଆଉ କୌଣସି ଧକ୍କା ଲାଗିଲା ନାହିଁ । ମାତ୍ର ତାକୁ ଟିହାଇ ଆତୁର ତାମସା ଦେଖିବାର ଢଙ୍ଗରେ ପ୍ରଭାକରନ୍ ପଚାରିଲା, "ତୁ ନାୟର୍ ଘରର ଜଣେ ବୟସ ହୋଇଥିବା ଯୁବତୀ । ସେଠାକୁ ତୁ ଦୁଇଥର ଥର ଗଲୁ, ଏକଥା କହିବାକୁ ତୋତେ ଲାଜ ମାଡ଼ୁନାହିଁ ?"

,'ଏଥିରେ ଲାଜ ବା ଅପମାନ ଲାଗିବାର କିଛି ନାହିଁ, ଭାଇ ।" ମାଧବୀ ଉତ୍ତର ଦେଲା । 'ଏଥିରେ' ଶବ୍ଦଟି ଉପରେ ଦିଆ ଯାଇଥିବା ବିଶେଷ ଜୋର ଏବଂ ତା'ର ଆଖିପୁତ୍ତଳ ଉପରେ ପ୍ରକଟ ହେଉଥିବା ଉପହାସ—ଭାବଟିର ଅର୍ଥକୁ ଅନନ୍ତନ୍ ନାୟର୍ ବେଶ୍ ବୁଝିପାରିଲେ କାରଣ କାଲି ସକାଳେ ସିଏ ଏ ଦୁହିଁଙ୍କର ବାଦବିବାଦଟିକୁ ମଧ୍ୟ ଶୁଣିଥିଲେ । ପ୍ରଭାକରନ୍ ନାୟର୍‌ର ମୁହଁ ଉପରେ ଯେଉଁ କ୍ରୋଧଟି ପ୍ରକଟ ହୋଇ ଉଠୁଥିଲା, ସେଥିରୁ ସେ ଅନୁମାନ କରୁଥିଲେ ଯେ ପ୍ରଭାକରନ୍ କଥାଟିକୁ ଠିକ୍ ଭାବରେ ବୁଝିପାରିଛି । ସିଏ ମଝିରେ ଥାଇ କହିଲେ, "ତୁ କିଛି କହନା, ପ୍ରଭାକରନ୍ ! ମିଛ କହି କାହାକୁ ଠକିବା ଅପେକ୍ଷା, ଯେତେ ଲଜ୍ଜାଜନକ ହୋଇଥିଲେ ମଧ୍ୟ ସିଏ ମନ ଖୋଲି ସତ କଥାଟିକୁ ଆମ ଆଗରେ ପରିଷ୍କାର କରି କହିଦେଉ, ଏଇଥିରେ ହିଁ ସମସ୍ତଙ୍କର ଭଲ ହେବ ।" ତା'ପରେ ମାଧବୀକୁ କହିଲେ, "ହିଁ ଅ·········ଆଉସବୁ କ'ଣ ହେଲା କହିଯା' ।"

ମାଧବୀ ପୁଣି କଥା ଆରମ୍ଭ କଲା, "ମାତ୍ର ମୁଁ ଯେ ସେଠାକୁ ଦୁଇଥର ଯାଇଥିଲି, ଧର୍ମ ପାଲନ୍ ସାଙ୍ଗରେ ସାକ୍ଷାତ୍ କରିବାକୁ ମୋଟେ ଯାଇନଥିଲି······ ।"

'ତା'ହେଲେ ଯାଇଥିଲୁ କ'ଣ ପାଇଁ ?"—ପ୍ରଭାକରନ୍‌ର ଏହି ପ୍ରଶ୍ନଟିରୁ ଯେଉଁ ଉପହାସ ସ୍ପଷ୍ଟ ହୋଇ ଉଠୁଥିଲା, ସେଥିପ୍ରତି କୌଣସି ଭୃକ୍ଷେପ ନକରି ମାଧବୀ ଅଗ୍ରସର ହୋଇ କହିଲା, "କେତେ ଦିନରୁ ବିଳାସିନୀ କେତେ କରି ତା' ଘରକୁ ଯିବାକୁ କହୁଥିଲା, ସେଠିକି ଯିବାକୁ ମୋର ଏତେଟିକିଏ ଇଚ୍ଛା ନଥିଲା, ପ୍ରଥମ ଥର ପାଇଁ, ମୁଁ ତାଙ୍କ ଘରକୁ ଗଲି······"

"କାହିଁକି ଗଲୁ, ମୁଁ ତୋତେ ସେହି କଥାଟି ତ ପଚାରୁଛି... ।"

ଓଠ ଭିତରେ ହସକୁ ଚାପି ରଖି ପ୍ରଭାକରନ୍ ସେହି ପ୍ରଶ୍ନଟିକୁ ପଚାରିଲା, ତା'ର ରଙ୍ଗଢଙ୍ଗ ଦେଖି ଅନନ୍ତନ୍ ନାୟର୍‌ଙ୍କର ଏପରି ମନେହେଲା ଯେ ଯେଉଁ କଥାକୁ ସେ

ଆଗରୁ ଭଲକରି ଜାଣିଛୁ, ସେହି କଥାଟିକୁ ହିଁ ମାଧବୀର ମୁହଁରୁ ସେ ବାହାର କରିବାକୁ ଚାହୁଁଛୁ—ଏଥିପାଇଁ ତା'ଭିତରେ ଭାରି କୌତୂହଳ ହେଉଛି ।

ମାଧବୀ ସଙ୍ଗେ ସଙ୍ଗେ ସେହି ପ୍ରଶ୍ନଟିର ଜବାବ ଦେଲାନାହିଁ । ତା'ପରେ ଅନନ୍ତନ୍ ନାୟର୍‌ଙ୍କୁ ଉଦ୍ଦେଶ୍ୟ କରି ପଚାରିଲା, "ବାପା, ଯେଉଁ କଥା କହିବାଲାଗି ମୁଁ ଏଠାକୁ ଆସିଥିଲି, ଏ କଥାର ତା' ସହିତ କୌଣସି ସମ୍ବନ୍ଧ ନାହିଁ । ମୁଁ ଏପର୍ଯ୍ୟନ୍ତ ଏକଥାକୁ କାହାରି ଆଗରେ କହିନାହିଁ । ଏହି କଥାଟିକୁ କ'ଣ କହିବାକୁ ହିଁ ପଡ଼ିବ ?"

"ହଁ ଅ ! ତୁ ଆଉକେବେ ନିଶ୍ଚିନ୍ତ ହୋଇ ମୋତେ କୌଣସି କଥା କହିପାରିବୁ ଏକଥା ଭାବି ତୁ ମୋତେ କୌଣସି କଥାକୁ ନ କହି ଛାଡ଼ିଦେ' ନା । ସେସବୁ କହିବା ସକାଶେ ବର୍ତ୍ତମାନ ପରି ସୁବିଧାଜନକ ଅବସର ଆଉ କେବେ ମିଳିବ କି ନାହିଁ, ସେ କଥା କିଏ ଜାଣିଛି ?...... "

ଗୋଟାଏ ପ୍ରକାର ଭାବାବେଗରେ ପଡ଼ି ସେ ଏକଥାଟି କହିଦେଲେ ଶୁଣି ପ୍ରଭାକରନ୍ ମଧ ଟିକିଏ ସିଧା ହୋଇ ବସିପଡ଼ିଲା ।

ମାଧବୀ ବିସ୍ମୟ ଏବଂ ଜିଜ୍ଞାସା ସହିତ ତାଙ୍କ ଆଡ଼କୁ ଅନାଇବାକୁ ଲାଗିଲା । "ହଁ ଅ, ଗୁଡ଼ାଏ ସ୍ୱାଡ଼୍ ସାଡ଼୍ ଭାବି ମୋଟେ ମୁଣ୍ଡ ଖରାପ କରିବୁ ନାହିଁ......ତୁ ଖାଲି କହିଯା ।" ସିଏ କହିଲେ ।

ଅନନ୍ତନ୍ ନାୟର୍ ମାଧବୀର ଭାବନାକୁ ଭାଙ୍ଗିଦେଲେ । ସିଏ ଯେଉଁ କଥାଟିକୁ କହିବାକୁ ଆସିଥିଲା, ସେଇଟିକୁ ହିଁ କହି ପକାଇବା ଲାଗି ସେ ତାକୁ ପ୍ରୋତ୍ସାହିତ କଲେ । ମାଧବୀ କହିଲା, "ସେହି ଘରେ ବାଳାସିଂହର ମାଧ୍ୟମରେ ମୋତେ ଡ଼କାଇ ନେଇ ମୋ'-ସହିତ ସିଧା କଥାବାର୍ତ୍ତା କରିବାକୁ ଚାହୁଁଥିଲା......ମୋତେ ସିଏ ଜନ୍ମ ଦେଇଛି । ଏଇଥିପାଇଁ ମୋତେ ସେଠାକୁ ଯିବାକୁ ପଡ଼ିଲା...... "

ଏପରି ଗୋଟିଏ କଥା ଶୁଣିବେ ବୋଲି ଅନନ୍ତନ୍ ନାୟର୍ ଆଶା ବି କରି ନଥିଲେ । ତେଣୁ କଥାଟି ଶୁଣି ତାଙ୍କୁ ସତେ ଅବା ଧକ୍‌କା ଖାଇଲାପରି ଲାଗିଲା; ମାତ୍ର ପ୍ରଭାକରନ୍‌ର ମୁଖମୁଦ୍ରାଟିରୁ ତାଙ୍କର ଏପରି ମନେହେଲା ଯେ ମାଧବୀ ମୁହଁରେ ସେହି କଥାଟିକୁ ବାପାଙ୍କ ଆଗରେ ପ୍ରକାଶ କରାଇ ଦେଇ ସିଏ ବେଶ୍ ସନ୍ତୋଷ ଅନୁଭବ କରୁଥିଲା ।

ତଥାପି, ଅନନ୍ତନ୍ ନାୟର୍ ଆପଣାର ସବୁଯାକ ଉତ୍କଣ୍ଠାକୁ ଦବାଇ ରଖି ଚୁପ୍ ହୋଇ ବସିରହିଲେ ଓ ମାଧବୀ ସ୍ୱୟଂ ଆହୁରି କ'ଣ କହିବ ବୋଲି ଅପେକ୍ଷା କରି ରହିଲେ ।

# ଅଠତିରିଶ

ଅନନ୍ତନ୍ ନାସ୍ୱର୍‌ଙ୍କୁ ଲାଗୁଥାଏ ମାଧବୀ ସତେଅବା କୌଣସି ସ୍ୱପ୍ନ ଦେଖି ଦେଖି ଗ୍ଭଲିଛି । ସିଏ ବେଶ୍ ଦେଖି ପାରୁଥିଲେ ଯେ ତା'ର ମୁହଁଟି ଉପରେ ବେଦନାର ରେଖା ଗୁଡ଼ିକ କ୍ରମଶଃ ପରିବ୍ୟାପ୍ତ ହୋଇଯିବାରେ ଲାଗିଛି । ସିଏ ଭାବିଲେ, ଏହାର ହୃଦୟ ମଧ୍ୟରେ କୌଣସି ଦ୍ୱନ୍ଦ୍ୱ ହିଁ ଲାଗି ରହିଛି । କିଛି ସମୟ ପରେ, ଶେଷକରି ଏକ ଗ୍ଭସ୍ୱାକୁ ବହନ କରି ମାଧବୀ ବେଦନାମୟ କଣ୍ଠରେ ପୁଣି କହିବାକୁ ଆରମ୍ଭ କଲା, "ହଁ, ମୋତେ ଜନ୍ମ ଦେଇଥିବା ସ୍ତ୍ରୀଲୋକକୁ "ମାଆ' ବୋଲି କହି ସେହି ପବିତ୍ର ଶବ୍ଦଟିକୁ କଳଙ୍କିତ କରି ପକାଇବାକୁ ମୋତେ ଖୁବ୍ କଷ୍ଟ ଦାୟକ ବୋଧ ହେଉଛି । ତଥାପି, ଏଥିରେ ତ କୌଣସି ସନ୍ଦେହ ନାହିଁ ଯେ ସେ ମୋତେ ଜନ୍ମ ଦେଇଥିବାର ପାପଟିକୁ କରିଛି, ସେଥିଲାଗି ମୁଁ ସେହି ଶବ୍ଦଟିକୁ ହିଁ ପ୍ରୟୋଗ କରୁଛି ।" ତାହାର ଏହି କଥାଗୁଡ଼ିକ ପ୍ରଭାକରନ୍‌କୁ ଯେ ମୋଟେ ରୁଚିକର ମନେ ହେଲାନାହିଁ, ଅନନ୍ତନ୍ ନାସ୍ୱର୍ ଏକଥାଟିକୁ ବେଶ୍ ଲକ୍ଷ୍ୟ କରି ଦେଖିଲେ । ମାତ୍ର ବର୍ତ୍ତମାନ ପର୍ଯ୍ୟନ୍ତ ସିଏ ସତେଅବା ଯେପରି କେତେ କ'ଣ ହରାଇ ବସିଛନ୍ତି ବୋଲି କ'ଣ ଭାବି ଯେଉଁଭଳି ଚିନ୍ତିତ ହୋଇ ପଡ଼ିଥିଲେ, ତାହାର ପ୍ରକୃତରେ କୌଣସି ଆବଶ୍ୟକତା ନଥିଲା । ବର୍ତ୍ତମାନ ମାଧବୀର କଥାରୁ ହିଁ ତାଙ୍କୁ ଏହି ପରି ଏକ ଆଶ୍ୱାସନ ମିଳିବାକୁ ଲାଗିଲା ।

"ସେହିସବୁ ଦିନର କଥା ଯେତେବେଳେ ମୋର ମନେ ପଡ଼ିଯାଏ,—ସେତେବେଳେ ମୋ'ର ଟିକିଏ ଟିକିଏ ହେଉ ହୋଇ ଆସିଥିଲା,—ସେତେବେଳେ ମୋ'ର ମାଆର ସେହି ଦୃଶ୍ୟଟି ପରିଷ୍କାର ମନେ ପଡ଼ିଯାଏ, ଯେତେବେଳେ ସେ ମୋତେ ମାଡ଼ ମାରି ଖାଲି କନ୍ଦାଇବାରେ ଲାଗିଥିଲା । ତା'ପରେ, ମାଆ ବୟସରେ ମୋତେ ଯାହାସବୁ ଜାଣିବାକୁ ମିଳିଲା, ତାହା କାମାକ୍ଷୀଠାରୁ ମିଳିଲା, ସ୍କୁଲର ପିଲାଙ୍କଠାରୁ ମିଳିଲା, ଓ ସହରର ଅନ୍ୟ ଲୋକମାନଙ୍କ ଠାରୁ ବି ମିଳିଲା, ··· । ମଆ ବୟସରେ କିଛି ପଗ୍ଭରିବି ବୋଲି ମୁଁ ଯେତେବେଳେ ଆପଣଙ୍କ ପାଖକୁ ଆସୁଥିଲି, ସେତେବେଳେ ଆପଣ ହୁଏତ ଚୁପ୍ ହୋଇ ରହି ଯାଉଥିଲେ ଅଥବା କଥାକୁ ବଦଳାଇ ଦେଉଥିଲେ ···" ମାଧବୀ ଅଟକିଗଲା ।

"ଝିଅ, କେବଳ ନିଜଆଡ଼ୁ ନିଜ କଥାଟା ତୋତେ ଶୁଣାଇବା ସକାଶେ ମୋ'ର ଇଚ୍ଛା ନଥିଲା । ସେଇଆ ଭାବି ମୁଁ ଆଜିଯାଏ କେବଳ ଟାଳିଟାଳି ଆସିଲି । କିନ୍ତୁ ମୁଁ ସେତେବେଳେ ମଧ୍ୟ ଜାଣିଥିଲି ଯେ ଯେତେବେଳେ ତୁମମାନଙ୍କର ବୟସ ହୋଇଯିବ, ସେତେବେଳେ ମୋତେ ତୁମମାନଙ୍କର ପ୍ରତ୍ୟେକ ପ୍ରଶ୍ନର ଉତ୍ତର ଦେବାକୁ ହିଁ ପଡ଼ିବ ···" ମାଧବୀ ଉଦାସ ହସିଲା ।

"ବାପା ! ଆମେ ଆପଣଙ୍କ ପାଖରେ ଏତେଦିନ ରହିଲୁ, ତଥାପି ଆମେ ଦୁହେଁ, ମାଆ ଆମକୁ ଛାଡ଼ି, କାହିଁକି ଚାଲିଗଲା, ସେ ବିଷୟରେ ଆପଣଙ୍କ କଥାଟିକୁ ଶୁଣିବା ଯାହା ବାକି ରହିଯାଇଛି, ନହେଲେ ସାରା ସଂସାରର ସବୁ ସାକ୍ଷୀଙ୍କର ବକ୍ତବ୍ୟକୁ ଆମେ ଶୁଣିସାରିଛୁ ।"

ଅନନ୍ତନ୍ ନାୟର୍ କିଛିସମୟ ପାଇଁ ଚୁପ୍ ହୋଇ ରହିଲେ । ତା'ପରେ ପ୍ରଭାକରନ୍ ଆଡ଼କୁ ଅନାଇଲେ । ମନେହେଲା ଯେପରି ସିଏ ମଧ୍ୟ ସେହି କଥାଟିର ଅନୁମୋଦନ କରୁଛି ।

ମୁଁ ଏତେଦିନ ଯାଏ ମଉନ ହୋଇ ରହିଲି ବୋଲି ତୁମେସବୁ ଏପରି ଜାଣିପାରି କରିନେଲ ଯେ ମୁଁହିଁ ହେଉଛି ଅପରାଧୀ, ନୁହେଁ···?" ଯେତେବେଳେ ସେ ଏକଥାଟି ପଚାରିଲେ, ସେତେବେଳେ ଏକା ମାଧବୀ, 'ନୁହେଁ, ମୋଟେ ନୁହେଁ" ବୋଲି କହି ପ୍ରତିବାଦ କରିବାକୁ ଲାଗିଲା—ସିଏ ଏକଥାଟିକୁ ମଧ୍ୟ ଲକ୍ଷ୍ୟ କଲେ ।

ତୁମମାନଙ୍କର ପିଲାମୁଣ୍ଡରେ ତୁମମାନଙ୍କୁ ଜନ୍ମ ଦେଇଥିବା ସ୍ତ୍ରୀଟି ବିଷୟରେ କେବଳ ନିଜଆଡ଼ର ଯୁକ୍ତିଗୁଡ଼ିକୁ ଜବରଦସ୍ତି ଲଦିଦେଇ ମୁଁ ତୁମମାନଙ୍କର ସ୍ୱାଭାବିକ ଚିନ୍ତାଶକ୍ତିକୁ କୌଣସି ପ୍ରକାରେ କୁଣ୍ଠିତ କରି ପକାଇବାକୁ ଇଚ୍ଛା କରୁନଥିଲି ।··· ··· ଏକଥା ତୁମେଦୁହେଁ ବିଶ୍ୱାସ କରିପାର ବା ନକରିପାର, ତଥାପି, ବର୍ତ୍ତମାନ ତୁମେ ଦୁହେଁ, ତୁମର ଯାହାକିଛି କହିବାର ଅଛି, ମୋପାଖରେ କହିଦିଅ । ପୁଣି, ମୋତେ କିଛି ପଚାରିବାର ଅଛି ତ ପଚାର । ମୁଁ ସବୁ ପ୍ରଶ୍ନର ଉତ୍ତର ଦେବି, ମୁଁ ଏପର୍ଯ୍ୟନ୍ତ ଯେଉଁଥିଲାଗି ଅପେକ୍ଷା କରିଥିଲି, ତୁମ ଦୁହିଁଙ୍କର ବର୍ତ୍ତମାନ ସେହି ବୟସ ହୋଇଗଲାଣି ।"

କହି ସେ ମାଧବୀକୁ ତା'ପରେ କ'ଣ ହେଲା କହିବାକୁ କହିଲେ ।

ମାଧବୀ କହିଲା, "ଆପଣ ଯେପରି କୌଣସି କଥା ଆମକୁ କହିନଥିଲେ । ତଥାପି, ବାହାର ସଂସାରରୁ ମୁଁ ଯେଉଁସବୁ ବିବରଣ ସଂଗ୍ରହ କରିଥିଲି, ସେଇଟି ଫଳରେ ଓ ମାଆର ବାତ୍ସଲ୍ୟକୁ ହରାଇ ବଢ଼ିବା ଫଳରେ ମୋ'ର ସେହି ପିଲାମନଟିରେ ମାଆପ୍ରତି ଗୋଟିଏ ପ୍ରକାରର ଘୃଣା ଓ ଆକ୍ରୋଶ ଜାତ ହୋଇଥିଲା । ସେହି ଘୃଣା ଓ ରାଗ କେତେବେଳେ ପଦାକୁ ଫୁଟି ବାହାରି ପଡ଼ିବ, ମୁଁ ସେହି ଅବସରର ପ୍ରତୀକ୍ଷାରେ ରହିଥିଲି । ସେତିକବେଳେ ଦିନେ, ଯେତେବେଳେ ମୁଁ ହାଇସ୍କୁଲ ପରୀକ୍ଷା ସକାଶେ ପଢ଼ାପଢ଼ି କରୁଥିଲି, ଲିଲାସିମି ଓ ମୁଁ ସ୍କୁଲରୁ ବାହାରି ମୋଟେ ଖଣ୍ଡେଦୂର ଯାଇଛୁ କି ନାହିଁ, ଗୋଟାଏ ବଡ଼ ମୋଟରଗାଡ଼ି ଆସି ଆମ ପାଖରେ ଠିଆ ହୋଇଗଲା । ଗାଡ଼ିରୁ ଓହ୍ଲାଇ ମୋ' ପାଖକୁ ଆସି '·ଆଲେ ଝିଅ···ମାଧବୀ·· ମତେ ତୁ ଚିହ୍ନିପାରୁଛୁ ?"

ବୋଲି କହି ମୋତେ ପଗ୍ଭରୁଥିବା ସେହି ସ୍ତ୍ରୀଲୋକଟିକୁ ମୁଁ ମୁଣ୍ଡ ଟେକି ଦେଖିଲି । ମୋ'ର ହୃଦୟ ବେଦନାରେ ଟଳମଳ ହେଉଥିଲା । ଗାଡ଼ି ଭିତରୁ ଜଣେ ପୁରୁଷବାଣ୍ଡ ମୋ'ଣ ଆଡ଼କୁ ଗୃହିଁ ରହିଥିଲେ । ହଠାତ୍ ମୋ' ଉତ୍ ଆଳରୁ ଯେପରି ଏକ ଅଜ୍ଞାତ ଉନ୍ମତ୍ତତା ପଦାକୁ ବାହାରି ଆସିଲା । ମୁଁ 'ନାଇଁ' ବୋଲି କହିଦେଲି ଏବଂ ଖିଲାସିନୀ ମୋ' ସାଙ୍ଗରେ ଗ୍ଭଲୁଥିଲା କି ନାହିଁ ସେକଥା ମଧ୍ୟ ନଦେଖି ସଡ଼କରୁ ଗ୍ଭଲିପଡ଼ି ଗୋଟାଏ ଗଳିଭିତରେ ପଶିଗଲି ଏବଂ ଶୀଘ୍ର ଶୀଘ୍ର ଧାଇଁଆସି ଘରେ ପହଞ୍ଚିଲି ।''

ଟିକଏ ଅଟକି ମାଧବୀ ଲୁହ ପୋଛିଦେଲା—ଏକଥା ଅନନ୍ତନ୍ ନାୟର୍ଙ୍କର ଆଖିରେ ପଡ଼ିଲା ।

ଇଏ ତ କେଡ଼େ ସାଧାସିଧା ହୋଇ ମୋ' ଆଗରେ ଯାଉଥିଲା ଆସୁଥିଲା— ତା'ର ଏପରି ଗୋଟିଏ ମୁଖମଧ୍ୟ ରହିଛି । ଅନନ୍ତନ୍ ନାୟର୍ଙ୍କର ବିଶ୍ୱାସ ହେଉନଥିଲା ।

"ଝିଅ, ମୋତେ ସେତେବେଳେ ତ ତୁ ଏକଥା କହି ନଥିଲୁ ।"

ମାଧବୀ ଧୀରେ ଧୀରେ ହସିଲା ।

"ଖାଲି ଏତିକି ନୁହେଁ··· ବର୍ତ୍ତମାନ ଆପଣ ଯାହା କରିବାକୁ ଯାଉଛନ୍ତି, ମୁଁ ସେ କଥାଟି ମଧ୍ୟ ଏଥିପୂର୍ବରୁ ଆପଣଙ୍କୁ କେବେହେଲେ କହିନାହିଁ । ଜାଣି କରି ମୁଁ କହିନାହିଁ··· । ମୁଁ ବୟସରେ ଜିଷ୍ଟସ୍ସ ସାନ ଥିଲି, ତଥାପି ମୋତେ ଏକଥାଟି ଖୁବ ଭଲଭାବରେ ମାଲୁମ ଥିଲା ଯେ ଆପଣ ପ୍ରତି ମୁହୂର୍ତ୍ତରେ ସତେ ଯେପରି ଏକ ମାନସିକ ବେଦନାର ଜ୍ୱାଳାରେ ଦଗ୍ଧହେବାରେ ଲଗିଥିଲେ ।"

ଏକଥା ଶୁଣି ବିସ୍ମୟ ହେତୁ ତାଙ୍କ ମୁହଁରୁ ଆଉ କୌଣସି ଶବ୍ଦ ହିଁ ବାହାରିଲା ନାହିଁ । ସେ ଆଗରୁ ଯେପରି ଭାବି ନେଇଥିଲେ,—ସମ୍ଭବତଃ ତାଙ୍କର ଜୀବନ କଦାପି ସେପରି ବୃଥା ହୋଇ କଟି ଯାଇନାହିଁ ।

ଅନନ୍ତନ୍ ନାୟର୍ ଦେଖିଲେ । ବାହାରୁ ଉଡ଼ି ଉଡ଼ି ବିଜୁଳି ଆଲୁଅଟି ଆଡ଼କୁ ପତଙ୍ଗଟିଏ ଆସିଲା, ଦୁଇ ତିନଥର ଆଲୁଅଟିର ଗ୍ଭରିପାଖରେ ଉଡ଼ି ଆଲୁଅର କାଚଟିରେ ଆସି ଧକ୍କା ବାଜିଲା ଓ ତା'ପରେ ତଳେ ଯାଇ ପଡ଼ିଗଲା । ପ୍ରଭାକରନ୍ ଉଠିଯାଇ ତାକୁ ଗୋଡ଼ରେ ବାହାରକୁ ଫୋପାଡ଼ିଦେଲା ଓ ତା'ପରେ ନିଜ ଜାଗାଟିରେ ଆସି ବସିଲା ।

କିଛିସମୟ ମୌନ ରହି ମାଧବୀ ପୁନର୍ବାର ଆରମ୍ଭ କଲା, "ତା'ଆରଦିନ ମୋତେ ସ୍କୁଲରେ ଦେଖି ଖିଲାସିନୀ କହିଲା, 'ଆଲୋ, କାଲି ତୋ'ର ମା ଆ ମୋତେ ସବୁଯାକ କଥା କହିଲେ ଓ କେତେ ଦୁଃଖ କଲେ···ତାଙ୍କୁ ସେପରି ଭାବରେ ଉପେକ୍ଷା

କରିଦେଇ ତୋ'ର ପଳାଇ ଆସିବା ମୋଟେ ଉଚିତ ହେଲନାହିଁ । ଯାହାକିଛି ହୋଇଥାଉ ପଛକେ, ସେଇ ତ ତୋତେ ନଅମାସ ଗର୍ଭରେ ଧରିଛି, ତୋତେ ଜନ୍ମ ଦେଇଛି ଓ ପାଞ୍ଚବର୍ଷ ପକାଶେ ହେଲେ ମଧ୍ୟ ତୋ'ର ପାଳନ କରିଛି !' ସତେଯେପରି କୌଣସି ବୁଢ଼ୀ ଜଣେ ଉପଦେଶ ଦେଉଥିଲା ପରି ସିଏ ସବୁକଥା କହି ଯାଉଥାଏ । ତଥାପି, କାହିଁକି କେଜାଣି, ତା'ଉପରେ ମୋ'ର ଟିକିଏ ହେଲେ ଦୟା ହେଲନାହିଁ । ଯେତେବେଳେ ମୋ'ର ବୟସ ପ୍ରାୟ ଷୋଳବର୍ଷ ହୋଇଥିବ । ମୋ'ର କ'ଣ ହଜିଯାଇଛି, —ସେହି କଥାଟିକୁ ସ୍ପଷ୍ଟ ଭାବରେ ନଜାଣିଥିଲେ ମଧ୍ୟ, ମୋ'ର ଯାହାକିଛି ନଷ୍ଟ ବା କ୍ଷତି ହୋଇଛି, ଏଇ ହେଉଛି ତା'ର କାରଣ,—ମାଆପ୍ରତି ମୋ'ର ଏହିପରି ଏକ ଭାବ ଜାତ ହେଲା ଏବଂ ତା'ପ୍ରତି ଘୃଣା ବି ଅସିଗଲା । ତେଣୁ, ହାଇସ୍କୁଲ ପରେ ମୁଁ ଯେତେବେଳେ ମହିଳା କଲେଜରେ ଯାଇ ନାଆଁ ଲେଖାଇଲି, ସେତେବେଳେ ମଧ୍ୟ ସିଏ ଜବରଦସ୍ତି କରି ମୋ' ପାଖକୁ ଆସିଥିଲା, ମାତ୍ର ମୁଁ ସେହି ପ୍ରଥମଥର ପରି ସବୁଥର ତା' ପ୍ରତି ସେହି ଏକା ବ୍ୟବହାର ଦେଖାଇଥିଲି । ଏହିପରି ଏକ ସ୍ଥିତିରେ ଘରକୁ ଆସିବା ପରେ ବ୍ୟାକୁଳ ହୋଇ ଉଠୁଥିବା ଆପଣାର ହୃଦୟଟିକୁ, ସମସ୍ତଙ୍କ ଲୁଚାଇ ଟିକିଏ କାନ୍ଦିନେବା ଦ୍ୱାରା ଗୋଟାଏ ପ୍ରକାରେ ନିଜକୁ ଦୃଢ଼ କରି ରଖିବାଲାଗି ମୋତେ ଅନେକ କିଛି କରିବାକୁ ପଡ଼ିଛି । ମୋ' ସାଙ୍ଗ ବିଳାସିନୀ ହିଁ ତା'ର ଏକମାତ୍ର ସାକ୍ଷୀ ହୋଇ ରହିଥିଲା··· ।"

ସତେଅବା କ'ଣ ଗୋଟାଏ ହଠାତ୍ ମନେ ପଡ଼ି ଗଲାପରି ମାଧବୀ ମନକୁ ମନ ଚୁପ୍ ହୋଇଗଲା । ବିଚିତ୍ର···ପିଲାବେଳେ ସେ ଏହି ଘଟଣାଟିରୁ ଅନେକ ଦୁଃଖ ପାଇଲା ବୋଲି ଭାବି ଅନନ୍ତନ୍ ନାୟରଙ୍କୁ ଗୋଟାଏ ପକ୍ଷରେ ଆଶ୍ଚର୍ଯ୍ୟ ଲାଗିଲା, ଆଉ ଗୋଟାଏ ପକ୍ଷରେ ଭାରି ଦୁଃଖ ବି ହେଲା । ଗୋଟାଏ ପ୍ରକାରର ବିରକ୍ତିମୟ ଜୀବନକୁ ଆଦରି ନେଇ ସିଏ ଏସବୁ ବିଷୟଆଡ଼େ ମୋଟେ ଦୃଷ୍ଟି ଦେଇ ପାରି ନଥିଲେ,—ଏଥିଲାଗି ତାଙ୍କ ମନରେ ଭାରି ଦୁଃଖ ହେଲା ।

"ହଁ, ହଁ, ଆଉ ବେଶୀଗୁଡ଼ାଏ ନ ବଢ଼ାଇ ଏଥର ଟଞ୍ଚଲ ଶେଷ କରିବେ' ।" ପ୍ରଭାକରନ୍‌ର ଏହି କଥାଗୁଡ଼ାକ ବେଶ୍ ପ୍ରକଟ କରି ଦେଉଥିଲା ଯେ ମାଧବୀର ଏହି ପ୍ରବୃତ୍ତିଟିକୁ ସିଏ ଆଦୌ ପସନ୍ଦ କରୁ ନଥିଲା ।

"ଶେଷକୁ, ବିଳାସିନୀ ଆଉ ମୋ' ଭିତରେ ଘନିଷ୍ଠ ବନ୍ଧୁତା ରହିଛି ବୋଲି ଜାଣି କରି ମାଆ କୌଣସି ପ୍ରକାରେ ତା'ର ଘରଟିକୁ ଠାବ କରିନେଲା । ଏବଂ ବିଳାସିନୀକୁ ମାଧ୍ୟମ କରି ମୋ'ର ମନକୁ ବଦଳାଇବାକୁ ଚେଷ୍ଟା କଲା । ମୋତେ ବିଳାସିନୀ କେତେଥର ଆସି କହିଲା,—'ତୁ ଆଉ ବର୍ତ୍ତମାନ ଛୋଟ ପିଲା ହୋଇ ନାହିଁ । ମୁଁ ତା'ର ମୁହଁ ଦେଖିବିନାହିଁ—ବୋଲି କହି ପଳାଇବାଟା ଭୀରୁର କାର୍ଯ୍ୟ । ସିଧା ଆଗରେ

ଠିଆ ହୋଇ, ତୋ'ର ଯାହାକିଛି କହିବାକୁ ଥିବ, ତୁ ତାଙ୍କୁ କହିଦେ। ସିଏ କ'ଣ କହିବାକୁ ଚାହୁଁଛନ୍ତି ସେଇଟି ଶୁଣିବାର ଏକ ସୁଯୋଗ ମଧ୍ୟ ତୋତେ ମିଳିପାରିବ'— ଏହିପରି କହି ସିଏ ମୋ' ମନକୁ ବଦଳାଇ ଦେଲା। ଏହିପରି, ମୁଁ ବି.ଏ. ପ୍ରଥମ ବର୍ଷରେ ପଢୁଥିବା ସମୟରେ ମାଆ ସହିତ କଥାବାର୍ତ୍ତା ହେବାର ଯୋଜନାଟିଏ କରାହେବା ପରେ ମୁଁ ଦିନେ କଲେଜରୁ ସିଧା ବାଳାସିନୀଙ୍କ ଘରକୁ ଯାଇଥିଲି। ତାକୁ ମୁଁ ନିଜର ସମ୍ମତି ମଧ୍ୟ ଶୁଣାଇ ଦେଇଥିଲି ଯେ ମାଆ ସାଙ୍ଗରେ ସେଠାକୁ ଆଉ ଅନ୍ୟକେହି ଆସିନଥିବେ।"

ନିଜ କଥାଟିକୁ ଅଧାରୁ ବନ୍ଦ କରି, "ଶୋଷ ହେଲାଣି—ଟିକିଏ ପାଣି ପିଇ ଆସେ..." କହି ମାଧବୀ ଘର ଭିତରକୁ ଗଲା। ଅନନ୍ତନ୍ ନାୟରଙ୍କ ମନ ଶୂନ୍ୟତା ଭିତରେ ଇତସ୍ତତଃ ହେବାରେ ଲାଗିଥାଏ।

ପ୍ରଭାକରନ୍‌ର ଧୈର୍ଯ୍ୟଚ୍ୟୁତ ଘଟୁଥିଲା ପରି ମନେ ହେଉଥିଲା—ଏ କଥା ଦେଖି ତାଙ୍କ ମନରେ ବେଶ୍ ଟିକିଏ କୌତୁହଳ ହେଉଥିଲା।

କିଛି ସମୟ ପରେ ମାଧବୀ ପୁଣି ଆସି ଆପଣାର ଜାଗାରେ ବସିଲା।

"ବାଳାସିନୀର କୋଠରୀରେ ମାଆ ମୋ'ଲାଗି ଅପେକ୍ଷା କରୁଥିଲା। ଆମ ଦୁଇଜଣଙ୍କୁ ସେଠାରେ ଏକୁଟିଆ ଛାଡ଼ିଦେଇ ବାଳାସିନୀ ଘର ଭିତରକୁ ଚାଲିଗଲା।"

କିଛିତ୍ ଭାବାବିଷ୍ଟ ହୋଇଗଲା ପରି ମାଧବୀ ସତେଅବା କିଛି କହି ନପାରି ଚୁପ୍ ରହିଲା। ପୁଣି କହିବାକୁ ଲାଗିଲା," ନିଜର ସବୁ ଶକ୍ତିକୁ ଏକାଠି କରି ମୁଁ ମାଆ ଆଡ଼କୁ ଅନାଇଲି। ତା'ର ଆଖିଦୁଇଟା ଛଳ ଛଳ ହୋଇ ଆସୁଥା'ନ୍ତି। ମୁଁ ଅନୁଭବ କରୁଥାଏ ସତେ ଯେପରି ମୋ' ପରୀକ୍ଷାର ସମୟଟି ଏଥର ଆରମ୍ଭ ହୋଇଗଲା। ମୋତେ ବି କାନ୍ଦ ମାଡ଼ିଲା। କିନ୍ତୁ ତା'ର ଲୁହ ଆଗରେ ମୁଁ ବି ଯଦି ଲୁହ ଗଡ଼ାଇବାରେ ଲାଗିଥାନ୍ତି, ତେବେ ତା'ର ଅର୍ଥ ହୋଇଥାନ୍ତା ଯେ ମୁଁ ତା'ର ଅଶ୍ରୁ ଭୁଡ଼ାକର ଗୋଲାମ ହିଁ ହୋଇ ପଡ଼ିଲି। ସେଥିଲାଗି ଦାନ୍ତକୁ ଚପି ମୁଁ ମୋ' କାନ୍ଦକୁ ନିଜର ଭିତରେ ହିଁ ଦବାଇ ରଖିଲି ଓ ମନଟାକୁ ଟାଣ କରିନେବାକୁ ଚେଷ୍ଟା କଲି।"

"ଝିଅ, ମୋ' ଉପରେ ତୁ କାହିଁକି ରାଗିଛୁ କହିଲୁ? କ'ଣ ମୁଁ ତୋତେ ଛାଡ଼ିକରି ଚାଲିଆସିଲି ବୋଲି?"—ଏହିପରି ପ୍ରଳାପ କରୁ କରୁ ସିଏ ମୋ'ର ହାତକୁ ଆସି ଧରି ପକାଇଲା। ସେତେବେଳେ ହୃଦୟକୁ ଶକ୍ତ କରି ମୁଁ ହାତକୁ ଝଟ୍‌କରି ନେଇଗଲି ଓ ଠିଆହୋଇ ପଡ଼ିଲି। ତା'ପରେ କଣ୍ଠସ୍ୱରକୁ ଅନେକ ଚେଷ୍ଟାରେ ସ୍ୱର କଡ଼ା

କରି କହିଲି, "ଏପରି ଆଗରୁ ବସି କାନ୍ଦିବାଲାଗି କ'ଣ ଆପଣ ମୋତେ ଡାକିଥିଲେ ?" ତା'ପରେ ଯାଇ ସେ କେତେକ ପରିମାଣରେ ଶାନ୍ତ ହୋଇଗଲି ।

"ହୁଁ—ସେଇ ବାପର ଝିଅ ନା ?" ଏପରି ଭାବରେ ବଡ଼ ବଡ଼ କରି ସେ କହିବାକୁ ଲାଗିଲି, "ଝିଅ । ତୁ ମୋ' ଉପରେ ଏତେ ରାଗ କାହିଁକି କରୁଛୁ କହିଲୁ ? ମୁଁ ତୋ'ର କ'ଣ ଲୋକସାନ କଲି ?"

ଆପଣାର ହୃଦସ୍ପନ୍ଦକୁ ମୁଁ ଆହୁରି ଅଧିକ ଶକ୍ତ କରି କହିଲି,"ଏକଥା ପଚାରିବାକୁ ଆପଣଙ୍କୁ ଲଜ୍ଜା ଲାଗୁନାହିଁ ?"

"ଆରେ, ତୁ କାହୁଁ ଜାଣିବୁ ସେଦିନ ମୁଁ କି ଦଶାରେ ପଡ଼ିଥିଲି !" କହି ସିଏ ଚୁପ୍ ହୋଇଗଲି । ସେତେବେଳେ ମୁଁ କହିଲି, "ମୁଁ ସବୁକଥା ଜାଣିଛି । କିନ୍ତୁ ଆମେ, ଆପଣଙ୍କର ପିଲାମାନେ, ଆପଣଙ୍କର କ'ଣ କ୍ଷତି କରିଥିଲୁ ?"

ସେଦିନକବେଳେ ସିଏ ଏକ ଅବୋଧ ପ୍ରଶ୍ନ କରି ବସିଲି, "ତୁ କ'ଣ ଏ କଥା କହିବାକୁ ଇଚ୍ଛା କରୁଛୁ ଯେ ତୋତେ ମଧ୍ୟ ନିଜ ସାଙ୍ଗରେ ନେଇ ନଯାଇ ମୁଁ ଭୁଲ୍‌କରି ପକାଇଛି ?" ମୋର ଆତ୍ମସମ୍ମାନ ଲାଗି ଏଇଟି ଏକ କଠୋର ଆହ୍ୱାନ ଥିଲି । ମୁଁ କ୍ରୋଧରେ ଚିତ୍କାର କରି କହିଲି, "ସେପରି ହୋଇଥାନ୍ତା ତ ମୁଁ କୋଉଦିନଠାରୁ ଆତ୍ମହତ୍ୟା କରି ଦେଇଥାନ୍ତି ।" ସେତେବେଳେ, ମୁଁ ଯେଉଁଟିକୁ ବାନ୍ଧ ଦେଇ ନିୟନ୍ତ୍ରିତ କରି ରଖିଥିଲି, ସଂସାରକୁ ବୁଝିପାରିବା ଦିନଠାରୁ ସଞ୍ଚିତ ହୋଇ ରହିଥିବା ସେହି ଆକ୍ରୋଶକୁ, ନିଜକୁ ସବୁଯାକ ସଂଯମକୁ ହରାଇ ଅବାଧ ଭାବରେ ଆଣି ତା' ଉପରେ ଥଳାଡ଼ି ଦେବାକୁ ଗୋଟାଏ ପ୍ରବଳ ଆବେଗ ମୋ'ର ମୁଣ୍ଡକୁ ଅଧିକାର କରି ବସିଲି । ଯଦି ବାପା ଆପଣଙ୍କର ପସନ୍ଦ ନ ହେଲେ, ତେବେ ବ୍ୟାଧିରେ ପୀଡ଼ିତ ହେଉଥିବା ତାଙ୍କୁ ଏବଂ ନିଜର ଦୁଇଟିଯାକ ସନ୍ତାନଙ୍କୁ ସେପରି ଭାବରେ ପକାଇଦେଇ ଚାଲିଆସିବା ହିଁ ଯେ ତା'ର ଏକମାତ୍ର ସମାଧାନ ଥିଲି,—ମୁଁ ଏପରି ମୋଟେ ଚିନ୍ତା କରି ପାରୁନାହିଁ । ଆପଣ ଆଜି ସେଦିନ କରି ଅଟକି ଯାଇଥିଲେ ମଧ୍ୟ କିଛି ଶାନ୍ତି ବି ମିଳିଥାନ୍ତା । ମାତ୍ର ଆପଣ ଆଉଜଣେ ପର ମଣିଷ ପ୍ରତି ମୁଗ୍ଧ ହୋଇପଡ଼ିଲେ ଏବଂ ତା' ସହିତ ଲୁଚିକରି ପଳାଇ ଯିବାପାଇଁ ଆମ ତିନିଙ୍କୁ 'ଥୁ' କରି ଫୋପାଡ଼ି ଦେଇ ଆସିଲେ । ଆପଣ ଯେତେ ଯାହା କାହାଣୀ ବାହାର କରି କାନ୍ଦିଲେ ପଛକେ, ଆପଣାର ନୂଆ ଗୃହସ୍ଥର ଆଡ଼ମ୍ବରକୁ ଦେଖାଇ ଜାଲ ପକାନ୍ତୁ ପଛକେ, ମୁଁ ତଥାପି ନିଜର ବାପାଙ୍କ ପକ୍ଷରେ ହିଁ ରହିବି । ମୁଁ ବେଳି ଆପଣଙ୍କର ଏକ ଝିଅ ଅଛି, ଆପଣ ଏକଥା ଭୁଲି ଯାଆନ୍ତୁ ।" ଏହିପରି ମୁଁ ଅନେକ କିଛି କହି ପକାଇଲି ।

ବିଲାସିନୀ ଆସି ମୋତେ ବନ୍ଦ କରାଇଲା, ମୁଁ ତେବେଯାଇ ବନ୍ଦ ହେଲି । ମୁଁ ସେତେବେଳେ ଝାଳରେ ଗୋଟାସୁଦ୍ଧା ଗାଧୋଇ ପଡ଼ିଥିଲି । ମୋ'ର ହାତଗୋଡ଼ କମ୍ପିବାରେ ଲାଗିଥିଲା । ବଡ଼ ଅପମାନିତ ବୋଧ କରି ବିଲାସିନୀଙ୍କୁ ମଧ୍ୟ ନ କହି ମାଆ ମଟରରେ ବସି ବାହାରି ଚାଲିଗଲେ ଏବଂ ତାଙ୍କୁ ଦେଖି ମୋ' ଭିତରେ ସେପର୍ଯ୍ୟନ୍ତ ଅଟକି ରହିଥିବା କାନ୍ଦଟା କହିଁ କହିଁ ହୋଇ ବାହାରି ଆସିଲା । ମୁଁ ଚୁପ୍ କରି ବସି କାନ୍ଦିବାରେ ଲାଗିଲି । ବିଲାସିନୀ ଦୋଷାରୋପଣ କରିବାକୁ ଲାଗିଲା ଯେ ମୁଁ ପ୍ରକୃତରେ ସୀମା ବାହାରକୁ ଚାଲି ଯାଇଥିଲି । ସେ କଥା ଶୁଣି ମୋର ହୃଦୟ ଆହୁରି ଖଣ୍ଡ ଖଣ୍ଡ ହୋଇଗଲା ପରି ଲାଗିଲା । ଏହି ସମୟରେ ସେଠି ଧର୍ମପାଳନ୍ ମଧ୍ୟ ଆସି ପହଞ୍ଚିଗଲେ । ମୁଁ ତାଙ୍କୁ ସେତିକିବେଳେ ପ୍ରଥମଥର ପାଇଁ ଦେଖିଲି ।"

"ମୋତେ କ୍ଷମା କରିବେ । ଆପଣ କଦାପି ଭାବନ୍ତୁ ନାହିଁ ଯେ ଅନାବଶ୍ୟକ ଭାବରେ ମୁଁ ଏପରି ଆସି ଆପଣଙ୍କ ପାରିବାରିକ ବିଷୟରେ ଅନଧିକାର ଚର୍ଚ୍ଚା କରି ବସୁଛି । ଆପଣ ନିଜ ମାଆଙ୍କ ଆଗରେ ଯାହାସବୁ କହିଲେ, ସେଇଟିକୁ ମୁଁ ମଧ୍ୟ ଅଧାଅଧି ଶୁଣିବାକୁ ପାଇଛି । ଆପଣଙ୍କର ମନର ଅବସ୍ଥା ଦୃଷ୍ଟିରୁ ଆପଣ କହିଥିବା କଥା ଉପରେ ବିଚାର କରାଯିବ ତ ମୁଁ ଆପଣଙ୍କର କଥାରେ ଆଦୌ କୌଣସି ଦୋଷ ଦେଖି ପାରୁନାହିଁ । ତାଙ୍କ ସହିତ କଥାବାର୍ତ୍ତା କରିବା ସମୟରେ ଆପଣଙ୍କର ଯେଉଁ ବିବେକ ସ୍ନେହବନ୍ଧନର ସକଳ ଭାବନାକୁ ପରାସ୍ତ କରି ଉପରକୁ ବ୍ୟକ୍ତ ହୋଇ ଆସୁଥିଲା, ସେହି ନୈତିକ ଆନ୍ଦୋଳନଟିର ସମ୍ମୁଖରେ ମୁଁ ମସ୍ତକ ନତ କରୁଛି ।" ସିଏ ଆସି ଏତିକି କହିବାପରେ ଯାଇ ମୋର ମନ ଶାନ୍ତ ହେଲା ।

ଘଣ୍ଟେ ଅବା ବର୍ଷା ଝଡ଼ ଲାଗିଥିଲା, ବର୍ତ୍ତମାନ ଶାନ୍ତ ହୋଇଗଲା—ଏହିପରି ଏକ ସ୍ଥିତି। ବାହାରେ ଝିଙ୍କାରୀଙ୍କର ଶବ୍ଦ ଆଉ ଦୂରରୁ ରହି ରହି ମଝିରେ ମଝିରେ ବେଙ୍ଗମାନଙ୍କର ସଙ୍ଗୀତ ବେଶ୍ ଶୁଣିବାକୁ ମିଳୁଛି।

ଅନନ୍ତନ୍ ନାୟରଙ୍କର ମନ ଛଟପଟ ହୋଇ ଉଠିଲା। ଇଏ ମାଧବୀ ତ କେଉଁଭଳି କଥା କହିଦେଇ ଆସିଲା। ମୁଁ ନିଜେ କାତ୍ୟାୟନୀକୁ ଯେଉଁସବୁ କଥା ପଚାରିଥାନ୍ତି, ପଚାରିବାର ଇଚ୍ଛା ଥାଇ ମଧ୍ୟ ମୁଁ ଯାହା ପଚାରିପାରି ନଥିଲି, ମୋ' ପକ୍ଷରୁ ଏହି ମାଧବୀ ତାକୁ ସେହିସବୁ ପ୍ରଶ୍ନକୁ ପଚାରି ପାରିଲା। ଆରେ ବାହାରେ ମୋ' ସୁନାଝିଅ, ମୁଁ···ମୁଁ··· କି ଉପାୟରେ ତୋ'ର ଏହି ଉପକାରକୁ ପରିଶୋଧ କରିପାରିବି ?– ଅନନ୍ତନ୍ ନାୟରଙ୍କର ମନ ଏହିପରି କହି ଉଠୁଥିଲା।

ଇଏତ ନିଜର ଝିଅ। ତଥାପି, ଏହାପ୍ରତି ଆପଣାର ସ୍ନେହ ଆପଣାର ଅସୀମ କୃତଜ୍ଞତାକୁ ଆଉ କିପରି ପ୍ରକଟ କରିଯାଇ ପାରନ୍ତା ? ଅନନ୍ତନ୍ ନାୟରଙ୍କୁ ପ୍ରଥମ ଥର ସକାଶେ ନିଜ ଝିଅର ବୟସ ସତେଅବା ବାଧକ ପରି ମନେହେଲା, ଯଦି ଇଏ ସାନ ଝିଅଟିଏ ହୋଇଥାନ୍ତା, ତେବେ ମୁଁ ବର୍ତ୍ତମାନ···ହୁଁ···ବାପଝିଅ ହେଲେ କ'ଣ ହେଲା, ବୟସ ପ୍ରକୃତରେ ଏକ ବଡ଼ ପ୍ରତିବନ୍ଧକ ପରି କାମ କରୁଛି ··।

ପଡ଼ିଶାରୁ କାହା ଘରୁ ଘଣ୍ଟାରେ ବାରଟା ବାଜୁଥିବାର ଶୁଣାଗଲା। ସତେଅବା କୌଣସି ବିଭ୍ରମ ଭିତରୁ ମୁକୁଳି ଆସିଲା ପରି ସେ ହଠାତ୍ କହି ପକାଇଲେ, "ହଁ। ତୁ କହୁଥିଲୁ, ଆଉଥରେ ବି ତୁ ଧର୍ମପାଳନ୍‌ଙ୍କ ଘରକୁ ଯାଇଥିଲୁ। ସେଇଟି ବିଷୟରେ ମଧ୍ୟ ଖୋଲି କରି କହି ଦେ' ଝିଅ !"

ମାଧବୀ କହିଲା, ଯେତେବେଳେ ମୁଁ ଦ୍ୱିତୀୟଥର ଲାଗି ସେଠାକୁ ଯାଇଥିଲି, ସେହିଥର ହିଁ ବିଳାସିନୀ ସହିତ ମୋ'ର ଶେଷ ଦେଖା ହୋଇଥିଲା।"

"କ'ଣ ହେଲା··· ?" ପ୍ରଭାକରନ୍ କହିଉଠିଲା।

"ହଁ ଭାଇ। ବି.ଏ ଶେଷ ବର୍ଷ ଷାଣ୍ମାସିକ ପରୀକ୍ଷା ପର୍ଯ୍ୟନ୍ତ ବିଳାସିନୀ ଅନ୍ୟମାନଙ୍କ ପରି ଥିଲା। କିନ୍ତୁ ବଡ଼ଦିନ ଛୁଟିପରେ ସିଏ ଭାରି ଝଡ଼ି ଗଲାପରି ଦେଖା-ଯାଉଥିଲା। ତାହାର ଦେହ ଗୋଟାସୁଦ୍ଧା ସେତା ପଡ଼ିଯାଇଥିଲା। ତା'ର ଆଗର ସେହି ସୌନ୍ଦର୍ଯ୍ୟ ଓ ସ୍ଫୁର୍ତ୍ତି କେଜାଣି କାହିଁକି କୁଆଡ଼େ ଲୁଚିଗଲା ପରି ଲାଗୁଥିଲା। ସିଏ ଦି'ପହରେ ଆମ ସାଙ୍ଗରେ ଆସି ଏକାଠି ଖାଇବା ମଧ୍ୟ ବନ୍ଦ କରିଦେଲା। ପାଖ

ଦୋକାନକୁ ଯାଇ ଗୋଟାଏ ଲେମ୍ବୁକୁ ଗିଲାସେ ପାଣିରେ ଚପୁଡ଼ି ଦେଇ ବଡ଼ କଷ୍ଟରେ ସେତକ ପିଇପାରୁଥିଲା। କ୍ଲାସରେ ବସିଥିବା ସମୟରେ, ମୁଣ୍ଡ ବୁଲାଇବା, ଛାତିରେ ଯନ୍ତ୍ରଣା ହେବା ଓ ପେଟ କାଟିବା ପ୍ରଭୃତିରେ ଛଟପଟ ହେବାକୁ ଲାଗିଥିଲା। କ୍ଲାସ୍‌ରୁ ଉଠି ବାହାରକୁ ଚାଲିଯାଉଥିଲା ଓ ଯାହାକଛୁ ପାଣି ପିଇଥିଲ, ତାକୁ ଅ' ଅ' କରି ବାହାର କରି ଆଣୁଥିଲା। ତା' ମୁହଁରୁ ଝାଳ ବୋହି ଯାଉଥିଲା। ଏକଥା କ୍ରମେ ନିତିଦିନର ଏକ ଘଟଣା ହୋଇଗଲା। ଏସବୁର ରହସ୍ୟ କ'ଣ ଥିଲା କେଜାଣି ? କଲେଜରେ କେତେ ଲୋକ କେତେପ୍ରକାର କଥା କହୁଥିଲେ। ଏହିପରି ଦିନେ ତା'ର ଭାଇଙ୍କ ସହିତ ରାସ୍ତାରେ ଦେଖାହେଲା। ସିଏ ଖୁବ ଚିନ୍ତିତ ଓ ଉଦାସୀନ ଦେଖାଯାଉଥିଲେ। ତାଙ୍କୁ ମୁଁ ବିଳାସିନୀର କଥା ପଚାରିବାରୁ ତାଙ୍କର ଆଖି ଛଳଛଳ ହୋଇ ଆସିଲା। କୌଣସି ଉତ୍ତର ଦେଲେ-ନାହିଁ। ମୁଁ ଆଉଥରେ ଜୋର୍ ଦେଇ ପଚାରିଲି। ସେତେବେଳେ ଯାଇ ସେ ଉତ୍ତର ଦେଲେ, 'ବର୍ତ୍ତମାନ ପର୍ଯ୍ୟନ୍ତ ତାକୁ ମଧ୍ୟ ଆମେ ଏକଥା କହିନାହୁଁ। ଆପଣ କେବେହେଲେ ତାକୁ ଏକଥା କହିବେ ନାହିଁ। ତାକୁ କ୍ୟାନ୍‌ସର୍ ହୋଇଛି। ଏଠି ତ ଓ୍ୱାଶଅର୍‌ଙ୍କଠାରୁ ବଳି ବଡ଼ ଡାକ୍ତର ଆଉ କେହି ନାହାନ୍ତି। ସେ ଚିକିତ୍ସା କରୁଛନ୍ତି। କିନ୍ତୁ ରୋଗର ଉପଶମ ହୋଇନାହିଁ। ବର୍ତ୍ତମାନ ଡାକ୍ତର କହୁଛନ୍ତି ଯେ ଭେଲୋର୍ ନେଇ ଅପରେଶନ୍ କରାଇବାକୁ ପଡ଼ିବ। ଅପରେଶନ୍ ହେଲେ ଯେ ତା'ର ଜୀବନରକ୍ଷା ହୋଇପିବ, ସେଥିରେ କୌଣସି ନିଶ୍ଚିତତା ନାହିଁ। ମୋ'ର ଏହି ଯନ୍ତ୍ରବତ୍ ଜୀବନରେ ଘର ଓ ବନ୍ଧନ ବୋଲି ଯଦି କିଛିଥାଏ, ତାହା ହେଉଛି ଏକା ସେହି ବିଳାସିନୀ ...।" ଧର୍ମପାଲନ୍‌ଙ୍କର ଏହି କଥାଗୁଡ଼ିକ ଶୁଣି ମୋ'ର ହୃଦସ୍ପନ୍ଦନଟା କ'ଣ ହୋଇ ଉଠିଲା।"

ମାଧବୀର କଣ୍ଠସ୍ୱର ଥରଥର ହୋଇ ଆସିଲା ଓ ସେ ଚୁପ୍ ହୋଇଗଲା। ଅନନ୍ତନ୍ ନାଥର୍ ଜାଣିପାରିଲେ, ସିଏ ବର୍ତ୍ତମାନ ଆପଣାର ବ୍ୟଥାକୁ ଭୁଲିଯାଇ ବିଳାସିନୀ ସକାଶେ ହିଁ କାନ୍ଦୁଛି।

"ଏତେ ବେମାରି ଭିତରେ ବି ବିଳାସିନୀ ଦୃଢ଼ତାର ସହିତ କହିଦେଲା ଯେ 'ଯେକୌଣସି ପ୍ରକାରେ ଏହି ପରୀକ୍ଷାରେ ପାସ୍‌କରି ରୋଲନମ୍ବରଟିକୁ ଆଗ ଦେଖିବାକୁ ପଡ଼ିବ, ତା'ପରେ ଯାଇ ହୁଏତ ମୁଁ କୁଆଡ଼େ ଯାଇପାରିବି, ତା' ପୂର୍ବରୁ କଦାପି ନୁହେଁ।' ହଁ, ସିଏ ଯେଉଁ କୋଠରୀରେ ବସି ପରୀକ୍ଷା ଦେଲା, ସେହି କୋଠରୀରେ ମୁଁ ବି ପରୀକ୍ଷା ଦେଲି। ବର୍ତ୍ତମାନ ମଧ୍ୟ ମନେପଡ଼ୁଛି, ସତେ ଯେପରି କାଲି ସବୁକିଛି ଘଟିଯାଇଛି। କଲେଜର ଅଧ୍ୟାପିକାମାନଙ୍କୁ ଏବଂ ପ୍ରିନ୍‌ସିପାଲ୍‌ଙ୍କୁ ମଧ୍ୟ ଏକଥା ଜଣାଥିଲା ଯେ ପାଠପଢ଼ାରେ ତାକୁ କେହି ଟପିକରି କଦାପି ଆଗକୁ ଯାଇପାରିବେ ନାହିଁ। ମାତ୍ର ତା'ର ଏପରି ଦୁରବସ୍ଥା ଆସି ହେଲା ଯେ ବସିକରି ମଧ୍ୟ ପଢ଼ି ପାରୁନଥାଏ। ଏତେସବୁ ଅସୁବିଧା ଭିତରେ କ୍ଲାସ୍‌ରେ ଯେତିକି ପଢ଼ା ଶୁଣୁଥିଲା, କେବଳ ସେତିକିମାତ୍ର ତା'ର

ପୁଞ୍ଜି ହୋଇ ରହୁଥିଲା । ଉପର କର୍ତ୍ତୃପକ୍ଷଙ୍କର ଅନୁମତ ନେଇ ପ୍ରିନ୍‌ସିପାଲ୍ ବାଳାସିଙ୍ଗୀ ପାଇଁ କେତୋଟି ବିଶେଷ ସୁବିଧା କରାଇ ନେଇଥିଲେ । ତାକୁ ଗୋଟିଏ ପୂରା ବେଞ୍ଚ୍ ଆଉ ପୂରା ଡେସ୍କ୍ ମିଳିଥିଲା । ପରୀକ୍ଷା ଆରମ୍ଭ ହେବାର ଘଣ୍ଟାଏ ବାକିବା ମାତ୍ରେ ଧର୍ମପାଳନ୍ ତାକୁ ଗୋଟିଏ ଟ୍ୟାକ୍‌ସିରେ ଆଣି ଛାଡ଼ିଦେଇ ଯାଆନ୍ତି, ଗୋଟିଏ ଥର୍ମସ୍‌ରେ ଲେମ୍ବୁପାଣି ଭର୍ତ୍ତିକରି ତା'ପାଖରେ ରଖିଦିଅନ୍ତି ଓ ବାହାରକୁ ଯାଇ ଠିଆହୋଇ ରହନ୍ତି । ବାଳାସିଙ୍ଗୀ ଦଶମିନଟ୍ ପର୍ଯ୍ୟନ୍ତ ପରୀକ୍ଷାରେ ଉତ୍ତର ଲେଖେ, ତା'ପରେ ତା'ମୁହଁରୁ ଝାଳ ବୋହିବାକୁ ଆରମ୍ଭ କରେ, ହାତଗୋଡ଼ ଢିଲା ହୋଇଗଲାପରି ଲାଗେ, ସେ ସେଇଠି ସେଇ ବେଞ୍ଚ୍ ଉପରେ ଲମ୍ବ ହୋଇ ଶୋଇପଡ଼େ । କେତେବେଳେ ଉଠି ଓ୍ୱାଶ୍-ବେସିନ୍‌ରେ ଥ' ଥ' କରି ବାନ୍ତି କରିଆସେ । ତା'ପରେ ପୁଣି କେତେ ମିନଟ୍ ଲେଖେ । ତାହାର ସେହି ଯନ୍ତ୍ରଣାମୟ ଅବସ୍ଥାକୁ ସ୍ମରଣ କଲେ ବର୍ତ୍ତମାନ ମଧ୍ୟ ମୋ'ର ରୋମ ଟାଙ୍କୁରି ଆସିବାପରି ଲାଗେ ।"

ସେ ଚୁପ୍ ହୋଇଗଲା । ଅନନ୍ତନ୍ ନାୟର୍‌ଙ୍କର ମନେହେଲା, ମନଟାକୁ ଟିକିଏ ଦୃଢ଼କରି ନେବାପାଇଁ ହିଁ ସିଏ ଏପରି ମୌନ ହୋଇଯାଉଛି ।

"ତା'ପରେ ପୁଣି କ'ଣ, ରେଜଲ୍‌ଟ ଆସିଲା । ବାଳାସିଙ୍ଗୀ ପ୍ରଥମ ଶ୍ରେଣୀରେ ପାସ୍ କରିଥିଲା । ଯେତେବେଳେ ମୁଁ ମାର୍କଶୀଟ୍ ଓ ପ୍ରୋଭିଜନାଲ୍ ସାର୍ଟିଫିକେଟ୍ ଆଣିବାକୁ ଯାଇଥିଲି, ସେତେବେଳେ ସେଠାକୁ ଧର୍ମପାଳନ୍ ମଧ୍ୟ ଆସିଥିଲେ । ସବୁ ବିଷୟରେ ବାଳାସିଙ୍ଗୀକୁ ଭଲ ନମ୍ବର ମିଳିଥିଲା । ସେ ମୋତେ କହିଲେ ଯେ ତା' ଆରଦିନ ସେ ଅପରେଶନ୍ ସକାଶେ ବାଳାସିଙ୍ଗୀକୁ ନେଇ ଭେଲୋର୍ ଯାଉଛନ୍ତି । ବାଳାସିଙ୍ଗୀକୁ ଦେଖିବାଲାଗି ମୁଁ ତାଙ୍କ ଘରକୁ ଗଲି । ଏହିପରି ଭାବରେ ତାଙ୍କ ଘରକୁ ମୋ'ର ଦ୍ୱିତୀୟଥର ପାଇଁ ଯିବା ସମ୍ଭବ ହେଲା ।

ମାଧବୀ ଏତକ କହି ଥରେ ନିଜର ବାପା ଓ ଭାଇଙ୍କ ଆଡ଼କୁ ଅନାଇ ଦେଖିଲା, ତା'ପରେ ପୁଣି ମୁଣ୍ଡ ତଳକୁ କରିଦେଲା । ତା'ର ଆଖି ଅଶ୍ରୁପୂର୍ଣ୍ଣ ହୋଇ ରହିଥାଏ । ସେହି ଥରଥର କଣ୍ଠରେ ସେ ପୁଣି କହିବାକୁ ଲାଗିଲା, "ବାଳାସିଙ୍ଗୀ ସତେଅବା ମଉଳି ଯାଇଥିବା ଫୁଲମାଳଟିଏ ପରି ପଡ଼ି ରହିଥାଏ । ମୁଁ ସେହିପରି ଠିଆହୋଇ ରହି କିଛି ସମୟ ପାଇଁ ତାକୁ ଅନାଇ ରହିଲି । ମୋ'ଭିତରେ କେଜାଣି କେତେ କ'ଣ ହଜାର ହଜାର ଭାବନା ଆସି ଆନ୍ଦୋଳିତ ହୋଇ ଉଠିଲେ ।"

"...ସ୍କୁଲରେ ପଢ଼ିବା ସମୟରେ, ଶୈଶବର ସେହି ଦିନଗୁଡ଼ିକରେ, ସମସ୍ତଙ୍କ ଠାରୁ ଅଲଗା ହୋଇ ପଡ଼ିଥିବା ମୋ'ର ଜୀବନରେ ଯିଏ ସାନ୍ତ୍ୱନା ଦେବାକୁ ଆସିଥିଲା, ଇଏ କ'ଣ ସେଇ ବାଳାସିଙ୍ଗୀ ? ମୋର ଆଶା ଆଉ ନିରାଶାର ସମଭାଗିନୀ । ମୋ'ର

ବିପଦ ସମୟରେ ସିଏ ମୋ'ପାଖରେ ଆସି ଠିଆ ହେଉଥିଲା । ମୋତେ ମାଆ ସହିତ ଭେଟ କରାଇଦେବ ବୋଲି ସିଏ କେତେ ଯତ୍ନ କରିନଥିଲା ! ଏହିପରି ଭାବରେ କେଜାଣି କେତେ କେତେ ଭାବନା ମୋ' ହୃଦୟ ଭିତରୁ ସନ୍ତାପିତ ହୋଇ ଉଠି ମୋତେ ଆଘାତ କରିବାକୁ ଲାଗିଲେ । ମୋ' ହୃଦୟଟାକୁ ସେଗୁଡ଼ାକ ଯେପରି ଏକାବେଳେକେ ଦୁହିଁ ଚିପୁଡ଼ି ପକାଉଥିଲେ । ମୁହିଁ ଫିଟାଇଲେ ମୁଁ କାନ୍ଦି ପକାଇବି, ସେଥିପାଇଁ କେବଳ ବସି ବସି ମୁଁ ତାକୁ ଦେଖିବାକୁ ହିଁ ଲାଗିଲି । ମାର୍କ-ଲିଷ୍ଟ କୁ ସେ ଧର୍ମପାଳନ୍‌ଙ୍କ ହାତରୁ ନେଇ ଦେଖିଲା ଏବଂ ଅଶ୍ରୁଭରା ଆଖିରେ ଯେତେବେଳେ ହସିବାକୁ ଚେଷ୍ଟାକଲା, ସେତେବେଳେ ମୋ'ର ମନ ଭିତରଟା କ'ଣ ହୋଇଗଲା ।"

"ମାଧବୀ ! ଭେଲୋର୍ ଯିବା ପୂର୍ବରୁ ମୁଁ ବି.ଏ. ପାସ୍ କରିବି ଓ ଏହି ମାର୍କଲିଷ୍ଟ ଓ ପ୍ରୋଭିଜନାଲ୍ ସାର୍ଟିଫିକେଟ୍‌କୁ ଥରେ ନିଜ ଆଖିରେ ଦେଖିବି, —ପାଗଳଙ୍କ ପରି ଏହିପରି ଗୋଟାଏ ପ୍ରବଳ ଇଚ୍ଛା କୋଉଠୁ ମୋ'ଭିତରେ ଆସି ପଶିଯାଇଥିଲା । ମୁଁ ସବୁ ଜାଣିଛି । ମୁଁ ଆଗ ତେଣୁ ଫେରି ଆସିଲେ ତ··· !" କହି ସେ ଚୁପ୍ ହୋଇଗଲା । ପୁଣି, 'ବିଚରା, ମୋ' ଭାଇ' ବୋଲି କହି ଦୀର୍ଘନିଶ୍ୱାସ ପକାଇଲା । ସେତେବେଳେ ତା' ଆଖିର କେଉଁ ଗଭୀର ତଳେ ଏପରି ଏକ ରହସ୍ୟମୟ ପ୍ରାର୍ଥନା ଅଭିବ୍ୟକ୍ତ ହୋଇ ଉଠୁଥିଲା ଯାହାକି ମୋର ସମସ୍ତ ଇନ୍ଦ୍ରିୟକୁ ଝଙ୍କୃତ କରି ପକାଉଥିଲା ଏବଂ ନିଜକୁ ଅତି ସ୍ପଷ୍ଟ ଭାବରେ ବାହାର ପର୍ଯ୍ୟନ୍ତ ପ୍ରକାଶିତ କରି ଆଣିବାକୁ ପ୍ରାଣାନ୍ତ ଚେଷ୍ଟା କରୁଥିଲା । ମୋ'ର ବୋଧ ହେଲା, ଯେପରି କେବଳ ମୁଇଁ ସେଇଟିକୁ ଦେଖିବାକୁ ପାଉଥିଲି । କେଜାଣି କାହିଁକି, ସେତେବେଳେ ମୁଁ ଏକ ବିଶେଷ ଭାବ ସହିତ ମୋ'ପଛରେ ଠିଆ ହୋଇଥିବା ଧର୍ମପାଳନ୍‌ଙ୍କ ଆଡ଼କୁ ଥରେ ଅନାଇ ଦେଖିଲି, ଏବଂ ତା'ପରେ ବିଳାସିନୀର ହାତକୁ ଧରି ଯେତେବେଳେ ତା'ର ଆଖିରେ ନିଜର ଦୃଷ୍ଟିକୁ ନେଇ ମିଳାଇଲି, ସେତେବେଳେ ମୋ' ଆଖି ଭିତରେ ସେ ପ୍ରକୃତରେ କ'ଣ ଦେଖିପାରିଲା କେଜାଣି, ମୋତେ ଦେଖାଗଲା, ତା'ର ଆଖିରେ ସତେଯେପରି ତୃପ୍ତିର ଏକ ରେଖା ଅଙ୍କିତ ହୋଇଯିବାକୁ ଲାଗିଲା ।

"ଏହିପରି, ମରିବାକୁ ପ୍ରସ୍ତୁତ ହୋଇ ରହିଥିବା ତା'ଭିତରେ ଆଉ ନମ୍ରିଠିଆ ହୋଇ ରହିଥିବା ମୋ' ଭିତରେ କୌଣସି ପ୍ରକାର ଶବ୍ଦ ନକୁହା ହୋଇ ଏକ ମୌନ ବୁଝାମଣାର ବିନିମୟ ହୋଇଗଲା—ଏହିଭଳି ଗୋଟିଏ ପବିତ୍ର ଭାବନା ନେଇ ମୁଁ ସେଠାରୁ ବିଦାୟ ନେଇ ଆସିଲି ।

"ତା'ପରେ ଆଉ ମୁଁ ବିଳାସିନୀକୁ ଦେଖିନାହିଁ । ମାସକ ପରେ ଧର୍ମପାଳନ୍ ମୋତେ କହିବାରୁ ଯାଇ ମୁଁ ଜାଣିଲି ଯେ ଭେଲୋର୍‌ରେ ଅପରେସନ୍ ପରେ ତା'ର ଆଉ ଚେତା ଫେରିଲା ନାହିଁ, ଓ··· ।"

କିଛି ସମୟ ପର୍ଯ୍ୟନ୍ତ କେହି କିଛି କହିଲେ ନାହିଁ । ଅନନ୍ତନ୍ ନାୟରଙ୍କୁ ଏପରି ପ୍ରତୀତ ହେବାକୁ ଲାଗିଲା ଯେତେଯେପରି ସେଠାରେ ବ୍ୟାପ୍ତ ହୋଇ ରହିଥିବା ନୀରବତା ଭିତରେ ବି ଆର୍ଦ୍ରତା ଭରିଯାଇ ସାରିଲାଣି ।

ପ୍ରଭାକରନ୍ ନାୟର୍ ପ୍ରଥମେ କହିଉଠିଲା, "ଟୁ ସେଣ୍ଟିମେଣ୍ଟାଲ୍ ।"

ନୀରବ ଚିନ୍ତନ ଭିତରେ ନିମଗ୍ନ ହୋଇ ରହିଥିବା ମାଧବୀ ମନକୁ ସେହି ଶବ୍ଦ ଦୁଇଟି ପରିହାସର ରୂପ ଧାରଣ କରି ଦୁଏତ ସ୍ପର୍ଶ ବି କଲାନାହିଁ । ସେ ସଙ୍ଗେ ସଙ୍ଗେ ଉପରକୁ ମୁଣ୍ଡ ଟେକି ତା' ଆଡ଼କୁ ଅନାଇଲା । ପ୍ରଭାକରନ୍‌ର ସେହି ହସ ତାର ହୃଦୟ ବେଦନାକୁ ଯେତେ ଥିବା ଆହୁରି ଅଧିକ ପରିମାଣରେ ବଢ଼ାଇ ବ୍ୟକ୍ତ କରି ଦେଉଥିଲା ।

"ହିଁ, ଭାଇ, ହୋଇପାରେ— ! ଆମ ସ୍ତ୍ରୀଲୋକଙ୍କର ଜୀବନ ସେହିପରି ସେଣ୍ଟିମେଣ୍ଟାଲ୍ ନୁହେଁ ତ ଆଉ କ'ଣ ! — ପୁଣି ବିଳାସିନୀ ଆଉ ମୁଁ ଏଥିରେ ବ୍ୟତିକ୍ରମ ବା ହୋଇଥାନ୍ତା କିପରି ?"

ଅନନ୍ତନ୍ ନାୟର୍ଙ୍କର ହୃଦୟ ପଥର ପରି ଭରି ହୋଇଗଲା । ସିଏ କିଛି କହି ପାରିଲେ ନାହିଁ – ଏତେବେଣୀ ଶିଥିଳ ଲାଗୁଥିଲା···

କିଛି ସମୟ ପରେ ସିଏତ କ'ଣ କହିବେ ବୋଲି ମୁହଁ ଖୋଲିବାକୁ ଯାଉଛନ୍ତି, ଠିକ୍ ଏହି ସମୟରେ ମାଧବୀ କହିବାକୁ ଆରମ୍ଭ କଲା, "ବାପା ମୁଁ ତାଙ୍କ ଘରକୁ ସେହି ଦୁଇଥର ଯାଇଛି, ତା'ର ବିବରଣ ମଧ୍ୟ ଆପଣଙ୍କୁ ଦେଲି, ମାତ୍ର ଏହି ବିଷୟରେ ମୁଁ ଆଉ ଗୋଟିଏ କଥା ମଧ୍ୟ ଆଜିଯାଏ ଆପଣଙ୍କୁ କହିନାହିଁ । ସେଇଟା ବି ଆଜି କହିଦେଉଛି,— ତେବେ ଏତେ ବେଳଯାଏ ମୁଁ ଯେ ଖାଲି କଥା କହୁଥିଲି, ସେହି କଥାଟି ମଧ୍ୟ ସମ୍ପୂର୍ଣ୍ଣ ହୋଇସିବ "

ଅନନ୍ତନ୍ ନାୟର୍ । 'କହିଦେ, ଝିଅ' ବୋଲି ନ କହି ଆଉ ରହି ପାରିଲେ ନାହିଁ ।

"ଆଉ ଅନ୍ୟକିଛି କଥା ନୁହେଁ । ଦୁଇ ତିନିମାସ ତଳେ – ଦିନେ ଦି'ପହରେ ପ୍ରାୟ ତିନିଟା ସମୟ ହେବ । ମୁଁ ଆମ ଅଫିସ୍‌ରେ କାମ କରୁଥିଲି । ସେତିକିବେଳେ ଅନୁସନ୍ଧାନ' ବିଭାଗର କାଉଣ୍ଟର୍‌ରୁ ଫୋନ୍ ଆସିଲି ଯେ ମୋତେ କେହି ଜଣେ ଦେଖା କରିବାକୁ ଆସିଛନ୍ତି । 'କିଏ 'ହୋଇଥିବ ?' ବୋଲି ଭାବି ମୁଁ ଟିକିଏ ଅଡୁଆରେ ପଡ଼ିଗଲି ଓ ରିସେପ୍‌ସନ୍ ରୁମ୍‌କୁ ଗଲି । ସେଠାରେ ମାଆ ବସିଥିଲା । ମୁଁ ଚମକି ପଡ଼ିଲି । ମୋତେ ଦେଖିବା ମାତ୍ରକେ ସିଏ ବି ଟିକିଏ ଘାବରେଇ ଗଲାପରି ମନେ ହେଉଥିଲା, ତା'ଭିତରେ ସେତେବେଳେ ଯାଏ ମଧ୍ୟ ସେହିପରି ଏକ ଅଶାନ୍ତି ରହିଥିଲା, ମୁଁ ବେଶ୍ ଲକ୍ଷ କରି ପାରିଲି । ସେ କହିବାକୁ ତା'ପାଖରେ ପଡ଼ିଥିବା ଚଉକିଟିରେ ଯାଇ ବସି ପଡ଼ିଲି । କିଛି ସମୟପରେ ଚୁପ୍ ରହି ସେ ତା'ପରେ କହିଲା, "ଝିଅ, ବାଳାସିଂହ କୁଆଡ଼େ ମରିଗଲା— ? ଏଇଟା କ'ଣ ସତ କଥା ?"

ମୁଁ କହିଲି, "ହଁ , ସତକଥା ।"

"ବିଚରା, ଭାରି ବୁଦ୍ଧିମନ୍ତ ଝିଅଟାଏ ଥିଲା ।" ସହାନୁଭୂତି ଦେଖାଇ କିଛି ସମୟ ପର୍ଯ୍ୟନ୍ତ ଚୁପ୍ ହୋଇ ରହିବା ପରେ, ଯେପରି ଆଉ କେହି ଶୁଣି ନ ପାରିବେ, ବଡ଼ ଧୀରେ ଧୀରେ ସେ କହିବାକୁ ଆରମ୍ଭ କଲା, "ହଁ , ମୁଁ ଗୋଟାଏ ଖବର ଶୁଣିବାକୁ ପାଇଲି । ସତ କି ମିଛ ଭଲ କରି ଜାଣିନାହିଁ –"

ମୁଁ ପଚାରିଲି, "କୋଉ ଖବର ?"

"ଆଉ କିଛି ନୁହେଁ; ମୁଁ ଶୁଣିଥିଲି ଯେ ଧର୍ମପାଳନ୍ ଆଉ ତୋ'ଭିତରେ ସ୍ନେହର ସମ୍ପର୍କ ହୋଇଯାଇଛି ଓ ତୁ ତାହାର ସହିତ ବିବାହ କରିବୁ ବୋଲି ଭାବୁଛୁ । ମୋ' କାନରେ ଆସି ଏମିତି ଗୋଟାଏ ଉଡ଼ା ଖବର ପଡ଼ିଲା । ଏଇ କଥାଟା କ'ଣ ସତ ? ଆଉସବୁ ଯାହା ହୋଇଥାଉ ପଛକେ,ସେ ଇନ୍ଦଓ୍ୱି ଜାତିର ପିଲା ନା ?"

ତା'ର ଏହି କଥା ମୋତେ ଠିକ୍ କଣ୍ଟା ପରି ଲାଗୁଥାଏ । ଭାରି ରାଗ ହେଲା । ତଥାପି, ମୁଁ ସଂଯମ ରଖି ଦୃଢ଼ ଭାବରେ କହିଲି, "ଆପଣ ଏକଥା ବି ତ ଭଲ କରି ଜାଣନ୍ତି ଯେ ସେହି ଇନ୍ଦଓ୍ୱି ଜାତିର ଗୋଟିଏ ଝିଅ ଯଦି ଇଚ୍ଛା କରି ନଥାନ୍ତା, ତେବେ ଆପଣ ଏପରି ଭାବରେ ମୋତେ ଦେଖା କରି କଥା ବି ହୋଇପାରି ନଥାନ୍ତେ··· ।" ମାଆଁର ମୁହଁ ସେତେବେଳେ ଦେଖୁ ଦେଖୁ ଲାଲ୍ ହୋଇ ଆସୁଥିଲା । ତଥାପି ନିଜକୁ ସମ୍ଭାଳି ରଖି "ଏଥିପାଇଁ କ'ଣ ତୁ ତା' ଭାଇ ସହିତ ଯାଇ ବାହାହେବୁ ?" ସେ ମୋତେ ପୁଣି ପଚାରି ବସିଲା ।

ମୁଁ ମଧ୍ୟ ଓଲଟା ଜବାବ ଦେଇ କହିଲି, "ତୁମଠାରୁ ସେପରି କୌଣସି କୃତଜ୍ଞତାର ପ୍ରତ୍ୟାଶା କରି ବସିବା ପାଗଳାମି ହେବ, ନୁହେଁ ?"

ତାର ମୁହଁ ଲାଲ୍ ପଡ଼ି ଆସିଲା । ସେ କିଛି ସମୟ ପରେ କହିଲା, "ହଁ ଲୋ ହଁ, ସେଇ କୃତଜ୍ଞତା ନଥିଲା ବୋଲି ତ ମୁଁ କୁଆଡ଼େ ତୋ' ବାପାଙ୍କୁ ଛାଡ଼ି ବି ପଳାଇ ଆସିଲି– ସେଥିପାଇଁ, ଯଦି ଇଚ୍ଛା ହେଉଛି, ତେବେ ଗୋଡରୁ ଜୋତା କାଢ଼ି ମଧ୍ୟ ତୁ ମୋତେ ମାରିପାରିବୁ । କିନ୍ତୁ ଏପରି ଦଂଶନ କରି ପଳାଇଲା ଭଳି କଥା କହିବା ମୋଟେ ଉଚିତ ହେଉ ନାହିଁ ।" ସିଏ କାନ୍ଦି କାନ୍ଦି ହୋଇ ଆସିଲା । ମୁଁ କୌଣସି ଉତ୍ତର ନ ଦେଇ ବସି ରହିଲି । ତା'ର କାନ୍ଦଣା ଦେଖି ବି ମୋ'ର ଏତେଟିକିଏ ଦୟା ହେଉ ନଥାଏ । ଓଲଟି, କ୍ରୋଧ ଆହୁରି ବଢ଼ିବାରେ ଲାଗିଥାଏ ।

"ମୁଁ ଯାହାକୁ ଇଚ୍ଛା କରିବି, ଭଲ ପାଇବି, ବାହା ହେବି । ସେ କଥା ମୋତେ ପଚାରିବାକୁ ଆପଣଙ୍କର କେଉଁ ଅଧିକାର ଅଛି ?" ଜାଣିଶୁଣି ଧୃଷ୍ଟତା ଦେଖାଇ ମୁଁ ଏହି ପ୍ରଶ୍ନଟି ପଚାରିଲି । ସିଏ ସ୍ତବ୍ଧ ହୋଇ ବସିରହିଲା । ବେଶ୍ କିଛି ସମୟ ପର୍ଯ୍ୟନ୍ତ ମୁହଁ ଖୋଲି କିଛି ବି କହିପାରିଲା ନାହିଁ ।

•

"ତେବେ ତୁ ବର୍ତ୍ତମାନ ମଧ୍ୟ ସେଇ ମାଧବୀ ହୋଇ ରହିଛୁ, ସେଇ କ୍ରୋଧ ଆଉ ଆକ୍ରୋଶ । ତୋ' ମିଜାଜ ତ ଟିକିଏ ହେଲେ ବଦଳି ନାହିଁ ଲୋ ! ସେ ଭାରି ଆତୁର ହୋଇ ପଡ଼ିଲା ।

"ଆପଣଙ୍କ ଉପରେ ମୁଁ କ୍ରୋଧ କରି ପାରିବି, ଆପଣଙ୍କ ସହିତ ମୋର ଆଦୌ ସେପରି କୌଣସି ସମ୍ବନ୍ଧ ନାହିଁ । ଆପଣ ଏହି ବିଷୟଟିକୁ ନେଇ ବୃଥା ଚିନ୍ତିତ ହେବେ ନାହିଁ । ହଁ, ଆଉ ଗୋଟାଏ କଥା,—ଆଜଯାଏ ମୋତେ ପାଳପୋଷି ଯିଏ ଏତୁଟିରୁ ଏତଟିଏ କରିଛନ୍ତି, ସେହି ବାପାଙ୍କର ସମ୍ମତି ବିନା ମୁଁ କାହାରି ସହିତ କଦାପି ବିବାହ କରିବି ନାହିଁ । ଆପଣ ମୋ ଉପରେ ଏତିକି ବିଶ୍ୱାସ ରଖିଥିବେ ।" ଯେକୌଣସି ପ୍ରକାରେ ଏତିକି କହିଦେଇ ପାରିଲି । ତା'ପରେ, "ମୋର ତେଣେ ଅନେକ କାମ ଅଛି ..ହୁଏତ ଅଫିସର୍ ଡ଼କାଇ ପଠାଇବେ, "ବୋଲି କହି ମୁଁ ମାଆଠାରୁ ବିଦାୟ ନେଇ ନିଜର ବିଭାଗକୁ ଚାଲିଗଲି ।"

ଅନନ୍ତନ୍ ନାୟର୍ ଦେଖିଲେ, ମାଧବୀ କହିବା ଶେଷ କରି ସତେଅବା ଆଉ କୋଉ ଗୋଟାଏ କଥା ଭିତରେ ନିମଗ୍ନ ହୋଇଯାଇଛି ।

ଓ ହୋ···! କାତ୍ୟାୟିନୀ ମଧ୍ୟ ଏ କଥାଟିରେ ଉତ୍ସାହ ଦେଖାଇଲାଣି ! ନିଜର ଝିଅପାଇଁ ପ୍ରକୃତରେ କେତେ ଚିନ୍ତା, ଝିଅର ଜାତିଟିକୁ ରକ୍ଷା କରିବାଲାଗି ପୁଣି କି ଚିନ୍ତା ! ଉପହାସର ଭାବ ସହିତ ସେ ମନେମନେ ହସିବାକୁ ଲାଗିଲେ ।

ତାକୁ ଆଚ୍ଛାକରି ଦି'ପଦ ଶୁଣାଇ ଦେବାର ସାହାସ ବି ଏଇ ମାଧବୀ ଭିତରେ କେଉଁଠାରୁ ଆସିଲା ! ଏହିପରି ଏକ ବିସ୍ମୟରେ ଝିଅ ପ୍ରତି ତାଙ୍କର ସ୍ନେହ ଓ ବତ୍ସଳତା ସତେ ଯେପରି କେତେଗୁଣ ଅଧିକ ହୋଇଯିବାକୁ ଲାଗିଲା ।

ତା' ସହିତ, ମନଭିତରେ ସେହି ସର୍ବକ୍ଷଣର ଓଲଟପାଲଟ ।

"ବାପା ! ମାଧବୀ ତ ସବୁ କଥାକୁ ଠିକ୍ ଗୋଟାଏ କାହାଣୀ ପରି ବିସ୍ତୃତ କରି ଶୁଣାଇଦେଲା । ବର୍ତ୍ତମାନ କହନ୍ତୁ, ମୋତେ କାହିଁକି ଡ଼କାଇ ପଠାଇଥିଲେ, ମତେ ଭାରି ନିଦ ମାଡ଼ିଲାଣି··· ।" ଆଉ ଧୈର୍ଯ୍ୟ ରଖି ନପାରି ହାଇ ମାରି ପ୍ରଭାକରନ୍ କହିଲା । ପୁଣି ଅନନ୍ତନ୍ ନାୟର୍ ଟିକିଏ ସିଧାହୋଇ ବସିଗଲେ ।

"ହଁ ହଁ । ବର୍ତ୍ତମାନ ତୋ'ର କଥା ବାକି ଅଛି··· । ମାତ୍ର ମୁଁ ପ୍ରଥମରୁ ଗୋଟାଏ କଥା ପରିଷ୍କାର କରି କହିଦେବାକୁ ଚାହୁଁଛି ଯେ ମୋ'ଠାରୁ ଯଦି କୌଣସି କଥାକୁ ଲୁଚାଇ ରଖିବାର ଇଚ୍ଛା ଅଛି, ତେବେ ମୋ' ଆଗରେ ମୋଟେ କିଛି ବି କହିବା ଦରକାର ନାହିଁ । ସେଥିରେ କୌଣସି ଲାଭ ବି ନାହିଁ । ମୋର ଏଥିରେ ଆଦୌ କୌଣସି ଆପତ୍ତି ନାହିଁ ଯେ ତୁ ନିଜ ଇଚ୍ଛା ଅନୁସାରେ ଯେକୌଣସି ବିଷୟରେ ମଧ୍ୟ ମନକୁ ଖୋଲି ମୋ ସହିତ ସମ୍ପୂର୍ଣ୍ଣ ଆଲୋଚନା ମଧ୍ୟ କରିପାରିବୁ... ।"

ତା'ର ମୁଖମୁଦ୍ରାରୁ ବେଶ ପ୍ରକଟ ହୋଇଯାଇଥିଲା ଯେ ଅନନ୍ତନ୍ ନାୟରଙ୍କର ସେହି କଥାଟି ତାକୁ ଆଦୌ ସେତେଦୂର ରୁଚକର ଲାଗିଲା ନାହିଁ ।

"ଆପଣଙ୍କ ପାଖରୁ କୌଣସି କଥା ଲୁଚାଇବା ଲାଗି ମୋର ଆଦୌ କୌଣସି ଇଚ୍ଛା ନାହିଁ । ପୁଣି ମୋ କ୍ଷେତ୍ରରେ ତା'ର କୌଣସି ଆବଶ୍ୟକତା ମଧ୍ୟ ନାହିଁ । ଆପଣ ଯାହା ଇଚ୍ଛା କରୁଛନ୍ତି, ମୋତେ ତାହା ପଚାରିପାରନ୍ତି । ଯଦି ମାଧବୀ ଆପଣଙ୍କ ଆଗରେ ଏତେ କଥା କହିଦେଇ ପାରିଲା, ତେବେ ମୁଁ ଗୋଟାଏ ପୁଅ ପିଲା ପୁଣି କୋଉଥି ସକାଶେ ଡରିବି ।" ତା'ର ଏକଥା ଶୁଣି ଅନନ୍ତନ୍ ନାୟର୍ ମନେମନେ ହସି ପକାଇଲେ ଓ ଆଉ ବୁଲାଇ ବଙ୍କାଇ କଥା ନକହି ସିଧା ପ୍ରଶ୍ନଟି ଉପରକୁ ଆସିଗଲେ ।

"କାତ୍ୟାୟିନୀ ସହିତ ତୋ'ର କେତେ ଦିନରୁ ସମ୍ପର୍କ ରହିଛି ?"

ସିଏ ଈଷତ୍ ହସିଲା, "ଆପଣ ଯାହାକୁ 'କାତ୍ୟାୟିନୀ' ବୋଲି କହୁଛନ୍ତି, ସେଥିରୁ ମୁଁ ବୁଝୁଛି ଯେ ଆପଣ ତଦ୍ଦ୍ୱାରା ସେହି ବ୍ୟକ୍ତିଟିକୁ ସୂଚିତ କରାଇ ଦେଉଛନ୍ତି, ଯିଏ ମୋତେ ଜନ୍ମ ଦେଇଛି ଓ ମୋତେ ଦଶବର୍ଷଯାଏ ପାଳିଛି ।"

ନାଟକୀୟ ଢଙ୍ଗରେ ତା'ର ଏପରି ପଚାରିବାଟା ଅନନ୍ତନ୍ ନାୟରଙ୍କୁ ମୋଟେ ଭଲ ଲାଗିଲା ନାହିଁ । ତଥାପି ସିଏ ମୌନ ଭାବରେ 'ହଁ' ବୋଲି କହି ମୁଣ୍ଡଟିକୁ ହଲାଇଲେ ।

"ବର୍ତ୍ତମାନ ମୋତେ ଯେତିକି ବୟସ ହୋଇଛି, ଆପଣ ଇଚ୍ଛାକଲେ ତା'ସହିତ ଆହୁରି ନଅମାସ ଯୋଡ଼ି ହିସାବ କରି ନିଅନ୍ତୁ..."କହି ସିଏ ହସିଦେଲା ତ ଅନନ୍ତନ୍ ନାୟର୍ ବିରକ୍ତ ହୋଇଉଠିଲେ । ମାଧବୀର ମୁଖମୁଦ୍ରାରୁ ଜାଣିବାକୁ ପାଇଲେ ଯେ ସିଏ ବି ଏହି ପରିହାସ-କଥା ଗୁଡ଼ାକୁ ମୋଟେ ପସନ୍ଦ କରୁନାହିଁ । ତଥାପି, ବର୍ତ୍ତମାନ ହାଉଡ଼ାଉଡ଼ି ଅନ୍ୟକଥା ପକାଇ କାମ ବିଗାଡ଼ିଦେବା ଆଦୌ ଠିକ୍ ହେବନାହିଁ ବୋଲି ଭାବି ସେ ଜାଣିଶୁଣି ଧୈର୍ଯ୍ୟ ରକ୍ଷି କହିଲେ, "ମୁଁ ସେକଥା ପଚାରୁନାହିଁ । ତୋତେ, ତୋ' ଭଉଣୀକୁ ଆଉ ମୋତେ ଛାଡ଼ିଦେଇ ବିକ୍ରମନ୍ ତମ୍ପି ସାଙ୍ଗରେ ତୋ'ର ମାଆ ଯେଉଁଦିନ ଏଠାରୁ ଚାଲିଗଲା, ତା'ପରେ, କେବେ ଆଉ କପରି ତୁମ ଦୁହିଁଙ୍କ ମଧ୍ୟରେ ସାକ୍ଷାତ ହେଉଥିଲା ?" ଏହି ଶବ୍ଦଗୁଡ଼ିକୁ ସିଏ ବଡ଼ ଧୀର ଭାବରେ କହୁଥିଲେ ସତ, ତଥାପି ତାଙ୍କ ହୃଦୟ ଭିତରେ ପ୍ରଜ୍ଜ୍ୱଳିତ ହୋଇ ଉଠୁଥିବା ନିଆଁ, ଆକୁଳତା ଓ କ୍ରୋଧ-ଏସବୁଥିରୁ ଖାଲି ଅଗ୍ନିକଣା ବାହାରି ଆସିବାରେ ଲାଗିଥାନ୍ତି—ଏକଥା ସେ ସ୍ୱୟଂ ବି ବେଶ୍ ଅନୁଭବ କରୁଥାନ୍ତି ।

କିଛି ସମୟ ଚୁପ୍ ରହିବାପରେ ପ୍ରଭାକରନ୍ କହିଲା, "ମାଧବୀ ପରି ବୁଲାଇ ବଙ୍କାଇ ମୋତେ କାହାଣୀ କହି ଆସେନାହିଁ । ମୋ' ପଲିସି ହେଉଛି, ସିଧା ଆସ ଆଉ ସିଧା ଯାଅ । ଏକଥା ଆପଣ ମଧ୍ୟ ଜାଣିଛନ୍ତି । ତେଣୁ ଗୋଟିଏ ବାକ୍ୟରେ ମୁଁ ପ୍ରଶ୍ନର ଉତ୍ତର ଦେଇଦେଉଛି...ଯେତେବେଳେ ମୁଁ ଇଞ୍ଜିନିଅରିଙ୍ଗ୍ କଲେଜରେ ନାଆଁ ଲେଖାଇବାକୁ ଗଲି, ତା'ପର ବର୍ଷଠାରୁ ହିଁ ମା'ଆ ସହିତ ପୁନର୍ବାର ସମ୍ପର୍କ ସ୍ଥାପନ କରିବାକୁ ଆରମ୍ଭ କରିଦେଲି ।" ତା'କଥାରେ ଯେଉଁ 'ପୁନର୍ବାର' ଶବ୍ଦଟି ରହିଥିଲା, ତାହା ତା'ର 'ଦଶବର୍ଷ ବୟସର ପରେ' ର ସୂଚନା ଦେଉଥିଲା—ଏକଥା ଅନନ୍ତନ୍ ନାୟର୍ ସ୍ପଷ୍ଟ କରି ବୁଝି ପାରିଲେ । ମାତ୍ର ବର୍ତ୍ତମାନ ତାଙ୍କ ମନରେ ବିରକ୍ତ ତୁଳନାରେ ବିସ୍ମୟ ହିଁ ଅଧିକ ହେବାକୁ ଲାଗିଲା ।

"ଆରେ ଅଭାଗା ! ତେବେ ସାତବର୍ଷ ହେଲାଣି ···?"

ସେ କହିଲା, "ହଁ, ସାତ ବର୍ଷ ହେଲାଣି ।"

କିଛି ସମୟଯାଏ କେହି କଥା କହିଲେ ନାହିଁ । ତା'ପରେ ସିଏ ହଠାତ୍ କହି ଉଠିଲେ, "ତା'ସହିତ ଦେଖାକରି ତୋ'ର କଣ ଏପରି ମନେ ହେଲାନାହିଁ ଯେ ସିଏ ଆଉ ଦୁଇଜଣ ବ୍ୟକ୍ତିଙ୍କ ସହିତ ତୋତେ ବି ଧୋକା ଦେଇଯାଇଥିଲା··· ?"

"ନା—ହୋଇନଥିଲା ·· ।"

"ତେବେ ?"

"ମୋ'ର ତା'ପ୍ରତି ପ୍ରକୃତରେ ସହାନୁଭୂତି ହିଁ ହୋଇଥିଲା ଯେ ସିଏ ନିଜର ପତିଠାରୁ ଏପରି ଦାରୁଣ ଭାବରେ ବଞ୍ଚିତ ହୋଇ ରହିଲା ଯେ ନିଜର ଜନ୍ମକଲା ପିଲା-ମାନଙ୍କୁ ମଧ୍ୟ ଛାଡ଼ିକରି ଜଣେ ଅନ୍ୟ ବ୍ୟକ୍ତି ସହିତ ଚାଲିଯିବାକୁ ବାଧ୍ୟ ହେଲା ·· ।" ଅନନ୍ତନ୍ ନାୟର୍‌ଙ୍କର ଇନ୍ଦ୍ରିୟଗୁଡ଼ାକ ସଚେତନତା ମୂଳରୁ ହିଁ ହଲିଯିବା ପରି ଲାଗିଲେ । ଇଏ··· ଇଏ କ'ଣ ସବୁ କଥା କହୁଛି··· ।

ତାଙ୍କୁ ଏପରି ଲାଗିଲା ଯେ ତା'ମୁହଁରୁ ବାହାରୁଥିବା ପ୍ରତ୍ୟେକଟି ଶବ୍ଦ ସଚେତ-ଅବା ଜଙ୍ଗଲର କୌଣସି ଝରଣା ପରି ବେଗରେ ଆସି ତାଙ୍କ ମୁହଁ ଉପରେ ବାଡ଼େଇ ହୋଇଯାଉଛି ଏବଂ ତାହାର ଧାରରେ ଏବେ ମାଧବୀଠାରୁ ମିଳିଥିବା ସବୁଯାକ ଆଶ୍ୱାସନା ଓ ସାନ୍ତ୍ୱନା କୁଆଡ଼େ ଭାସି ଚାଲିଯିବାକୁ ଲାଗିଛି ।

"ତୋତେ ଏପରି ଲାଗିବାର କାରଣ ?"

"...ସଂସାର ଭିତରେ ପ୍ରତ୍ୟେକ ବ୍ୟକ୍ତିକୁ ଭିନ୍ନ ଭିନ୍ନ ପ୍ରକାରର ଦିଗ୍ଭ୍ରମ ହୋଇପାରେ, ବ୍ୟାଧି ହୋଇପାରେ, ଚିନ୍ତା ବି ହୋଇପାରେ । ତେଣୁ ସେହି କାରଣରୁ ଅନ୍ୟମାନଙ୍କୁ, ସେମାନେ ଏପରିକି ନିଜର ପତ୍ନୀ ବା ସନ୍ତାନ ହୋଇଥାନ୍ତୁ ପଛକେ, ସତେଅବା ଜଣେ 'ସିନିକ୍' ପରି ଉତ୍ପୀଡ଼ିତ କରିବା ପରି ଦେଖିବାଟା ମୋ' ବିଚାରରେ ସମ୍ପୂର୍ଣ୍ଣ ସମାଜବିରୋଧୀ କାର୍ଯ୍ୟ ମୁଁ ଠିକ୍ ଏହିପରି ଭାବୁଛି ।"

"ତୁ କ'ଣସବୁ କହୁଛୁ ...ଏପରି କହ ଯେମିତି କି ମୁଁ ବି ବୁଝିପାରିବି ।"

"ଯିଏ ଶୋଇଛି, ତାକୁ ଯିବା କିଏ ଉଠାଇବାକୁ ଯିବ— । ମାତ୍ର ଯିଏ ନ ଶୋଇକରି ମଧ୍ୟ ଶୋଇଥିବାର ଅଭିନୟ କରିବ, ତାକୁ ଉଠାଇବା ପ୍ରକୃତରେ ବଡ଼ କଷ୍ଟ । ମୁଁ ଆହୁରି ପରିଷ୍କାର କରି କହୁଛି । ଆପଣଙ୍କୁ ଟି.ବି. ହେଲା, ପଇସା ଅଭାବ ହେଲା, ମାତ୍ର ସେଥିପାଇଁ ବିଚାରୀ ମାଆ କ'ଣ କରିଥାନ୍ତା ? ସେଇ ମାଆଙ୍କୁ, ସିଧାଭାବେ ନ ହେଲେ ମଧ୍ୟ ପରୋକ୍ଷ ଭାବରେ ଉପକରଣ ପରି ବ୍ୟବହାର କରି ଆପଣ ପଦୋନ୍ନତି ହାସଲ କଲେ – ! ତା'ଛଡ଼ା ମାଆ ଆମ ଦୁହିଁଙ୍କୁ ମଧ୍ୟ ଆପଣଙ୍କୁ ଜନ୍ମକରି ଦେଇଥିଲା । ଏସବୁ ହୋଇ ମଧ୍ୟ ଆପଣଙ୍କଠାରୁ ଯେଉଁ ପ୍ରତିଫଳ ମିଳିଲା, ଯିଏ ହେଉଛି ଖାଲି ଅଭିଯୋଗ, ନିଷ୍ଠୁରତା, ମାଡ଼ ଆଉ ଅପମାନ ଏଇଗୁଡ଼ାକ ତ ହେଉଥିଲା – !"

ଅନନ୍ତନ୍ ନାମ୍ବିଅରଙ୍କ ହୃଦୟ ଆକ୍ରୋଶ ଏବଂ ଅପମାନ-ବୋଧରେ ଜଳି ଉଠିଲା । "ତେବେ ତୁମେ କହିବାକୁ ଚାହୁଁଛ ଯେ ତୁମ ମାଆର କୌଣସି ଦୋଷ ନଥିଲା— ?" ମାଧବୀ ସରୋଷ ପ୍ରଶ୍ନ କଲା । ପ୍ରଭାକରନ୍ ଉଗ୍ର ହୋଇପଡ଼ି କହିଲା, "ଥାଇପାରେ । କିନ୍ତୁ -- ଲୋକେ ଯେତିକି ଆଶା କରନ୍ତି, ଯିଏ ତା'ଠାରୁ ହୀନ ଥିଲା, ଅବୋଧ ଥିଲା । ଇଏ ତା'ର ହୃଦୟଟିକୁ ମୋଟେ ବୁଝିପାରିଲେ ନାହିଁ ।

—ଏହାହିଁ ମୋ'ର ଅଭିଯୋଗ —"

ଅନନ୍ତନ୍ ନାମ୍ବିଅରଙ୍କର ଆଖି ଛଳ ଛଳ ହୋଇଆସିଲା ।

"ଆରେ ପୁଅ ! ଏସବୁ କଥା ଶେଷକୁ ତୋତେ ଆସି ମୋ ଆଗରେ କହିବାକୁ ଥିଲା ? ଏଇଥି ସକାଶେ ମୁଁ ଏଇ ପନ୍ଦରବର୍ଷ କାଳ ରକ୍ତର ଲୁହ ଗଡ଼ାଇ ଅପେକ୍ଷା କରି ରହିଥିଲି ? ସେଇ ଏହି କଥାଗୁଡ଼ାକ ତୋତେ ଶିଖାଇ ଦେଇଛି, ନୁହେଁ ?" ସେ ପଚାରିଲେ । ପ୍ରଭାକରନ୍ ଜବାବ ଦେଲା, "ବର୍ତ୍ତମାନ ମଧ୍ୟ ଆପଣ ମିଛଟାରେ ମାଆ ଉପରେ ଦୋଷଗୁଡ଼ାକୁ ନେଇ ଢାଳଦେବାକୁ ଇଚ୍ଛା କରୁଛନ୍ତି । ମାଧବୀ ବର୍ତ୍ତମାନ ପର୍ଯ୍ୟନ୍ତ ମାଆ ବିଷୟରେ ଆପଣଙ୍କୁ ମାହାକଛି କହିଲା. ତାକୁ କ'ଣ ଆପଣ ଶିଖାଇ ଦେଇଥିବାରୁ

ସେ ଏପରି କଲା ? ମୁଁ ଏତେଦୂର ବେକୁବ୍ ହୋଇନାହିଁ ଯେ ଏସବୁ କଥାକୁ ମୁଁ ନିଜେ ବୁଝି ପାରିବ ନାହିଁ... ।" ଅନନ୍ତନ୍ ନାୟରଙ୍କର ମନେହେଲା ସିଏ ଯେପରି ତାଙ୍କୁ ନିୟନ୍ତ୍ରଣରେ ରଖିବାକୁ ଚେଷ୍ଟା କରୁଛି ।

"ହେଲା, ମାନି ନିଆଯାଉ ଯେ ପ୍ରକୃତରେ ବାପା ହିଁ ତା' ଉପରେ ଅତ୍ୟାଚାର କରିଥିଲେ । ତା' ବୋଲି ଏପରି ଆଉଜଣେ ଲୋକ ସହିତ ଘରୁ ବାହାରି ଚାଲିଯିବାଟା କ'ଣ ତାର ଏକମାତ୍ର ସମାଧାନ ହେଲା ?" ମାଧବୀ ମନ୍ତବ୍ୟ କଲା ।

ପ୍ରଭାକରନ୍ ଅର୍ଥପୂର୍ଣ୍ଣ ଭାବରେ ହସିବାକୁ ଲାଗିଲା ।

"ନଲ୍ଲତଙ୍ଗାଲ୍"[1] ହୋଇ ସିଏ ଆମ ଦୁହିଁଙ୍କୁ କୂଅ ଭିତରକୁ ଠେଲି ଦେଇଥାନ୍ତା ଆଉ ନିଜେ ତା'ପରେ ତାହାରି ଭିତରକୁ ଡେଇଁ ପଡ଼ିଥାନ୍ତା,—ତୁ ଏଇଆ କହୁଛୁ ନା ? ମାଆ ଯୋଉ ଉପାୟଟି କଲା, ସେଥିରୁ କେବଳ ଏହି ଉପାୟଟି ହିଁ ଟିକିଏ ଭଲ ବୋଲି ମୁଁ ନିଶ୍ଚିତ ଭାବରେ କହୁଛି ।"

ଅନନ୍ତନ୍ ନାୟରଙ୍କର ସନ୍ଦେହ ହେବାକୁ ଲାଗିଲା ଯେ ଏହା ସହିତ ମୁକ୍ତ କରି ସ୍ତ୍ରୀକୁ ପ୍ରକୃତରେ କୌଣସି କଥା ବୁଝାଇହେବ । ସିଏତ ଏପରି ଦୃଢ଼ତା ଓ ତୀବ୍ରତା ଦେଖାଇ କଥାବାର୍ତ୍ତା କରୁଛି ଯେ······

"ତେବେ ଏତେଦିନ ଧରି ଦେମାରି, ଅଭାବ ପ୍ରକୃତ ସତ୍ତ୍ୱେ ବାପା ଯେ ପାଠ ପଢ଼ାଇ ଆମକୁ ଯୋଗ୍ୟ କଲେ, ସେ କଥା କ'ଣ ମିଛ ?"

"ସେ କଥା ମିଛ ବୋଲି କିଏ କେତେବେଳେ କହିଲା ? ଏଥିପାଇଁ ଆମ ଭିତରେ ଯେଉଁ କୃତଜ୍ଞତା ରହିଛି, ମାଆକୁ ଘୃଣା କଲେ କ'ଣ ତାହାକୁ ପ୍ରକଟ କରାଯାଇ ପାରିବ ? ତୁ କ'ଣ ଭାବୁଛୁ ଯେ ଇଞ୍ଜିନିଅରିଙ୍ଗ୍ କଲେଜରେ ମୁଁ ନାଆଁ ଲେଖାଇବା ପରେ ମୋ'ର କଲେଜ ଖରଚ ଓ ଅନ୍ୟାନ୍ୟ କେତେ ପ୍ରକାରର ବ୍ୟକ୍ତିଗତ ଖର୍ଚ୍ଚ ସବୁପାଇଁ ବାପା ଦେଉଥିବା ପଇସା ହିଁ ଯଥେଷ୍ଟ ହୋଇ ଯାଉଥିଲା ?—"

---

[1] ଦକ୍ଷିଣାଞ୍ଚଳରେ ପ୍ରସିଦ୍ଧ ଗୋଟିଏ ଲୋକକଥା ଅନୁସାରେ 'ନଲ୍ଲଙ୍ଗୋଲ୍' ନାମକ ଜଣେ ପତିବ୍ରତା ସ୍ତ୍ରୀ ଆପଣା ପତିଠାରୁ ଅଲଗା ହୋଇଯିବାରୁ ନିଜର ସବୁଯାକ ପିଲାଙ୍କୁ କୂଅରେ ନେଇ ପକାଇଦେଲା ଓ ନିଜେ ମଧ୍ୟ ତାହାରି ଭିତରକୁ ଡେଇଁ ପଡ଼ି ଆତ୍ମହତ୍ୟା କରିବାକୁ ଯାଉଥିଲା, ଏବଂ ତା'ପରେ ଆପଣା ପାତିବ୍ରତ୍ୟର ମହିମାରୁ ହିଁ ରକ୍ଷା ପାଇଗଲା ।

ଅନନ୍ତନ୍ ନାୟର୍ ଚମକି ପଡ଼ି କହିଲେ, ତେବେ— ?"

"ହଁ ବାପା ! ମାଆ କୌଣସି କୃପଣତା ନକରି ମୋତେ ପଇସା ଦେଇ ସାହାଯ୍ୟ କରିଛି । ସିଏ ଯଦି ନ ଦେଇଥାନ୍ତା, ତେବେ ମୁଁ ଆଜି କଦାପି ଇଞ୍ଜିନିଅରିଙ୍ଗ୍ ଡିଗ୍ରୀ ପାଇ ପାରି ନଥାନ୍ତି—ବର୍ତ୍ତମାନ ଆପଣ ଏହି କଥାଟିକୁ ଜାଣିଦେଲେ ହିଁ ଯଥେଷ୍ଟ ହେବ— ।"

ଦ୍ୱିତୀୟ ବଜ୍ରପାତ— ।

ଅନନ୍ତନ୍ ନାୟର୍ ସ୍ତବ୍ଧ ହୋଇ ରହିଗଲେ । କ'ଣ କହିବେ କିଛି ଠିକ୍ କରି ପାରିଲେ ନାହିଁ ।

କିଛି ସମୟ ପରେ ପ୍ରଭାକରନ୍ କଣ୍ଠସ୍ୱର କିଞ୍ଚିତ୍ ଧୀର ହୋଇ ଆସିଲା, "ବାପା—ଇଞ୍ଜିନିଅରିଙ୍ଗ୍ ପାସ୍ କରି ମୁଁ ଏହି ତିନି ବର୍ଷ ହେଲା ବେକାର ହୋଇ ବୁଲୁଛି । — ଏହି କାଳଟି ମଧ୍ୟରେ ମୁଁ, ଆପଣ ଯେପରି ଭାବୁଛନ୍ତି, କଦାପି ସେତେଦୂର ନିକମା ହୋଇ ବସିନାହିଁ । କଲେଜ ଅଧ୍ୟାପକମାନେ ବା ବହିସବୁ ଯାହା କଦାପି ଶିଖାଇ ନଥାନ୍ତି, ଏଭଳି ଅନେକ ବଡ଼ ବଡ଼ ନାନା ତଥ୍ୟର ପ୍ରତ୍ୟକ୍ଷ ଜଗତରେ ମୁଁ ନିଜେ ଚିନ୍ତା କରି ଅନେକ କିଛି ଶିକ୍ଷା କରିଛି । ଏ ଯୁଗ ହେଉଛି ମୋହ ଭଙ୍ଗର ଯୁଗ । ଏହି ଜଗତରେ ଜାତ ହୋଇଥିବା ପ୍ରତ୍ୟେକ ପ୍ରାଣୀ, ମନୁଷ୍ୟ ସମେତ ବି, ମରିବା ପାଇଁ ହିଁ ଜନ୍ମ ଗ୍ରହଣ କରିଛି । ସ୍ୱାଭିମାନ, ଯଶ, ଏଇଟା ବା ସେଇଟା ବୋଲି କହି ନିଜକୁ ଖାଲି ନଷ୍ଟ କରି ଦେଉଥିବା ଗୋଟିଏ ଜୀବନରେ କିଛି ହେଲେ ଭୋଗ ନକରି ଖାଲି ମରିକରି ମାଟି ଦେହରେ ମିଶିଗଲେ ସେଥିରେ ଯେ କୌଣସି ସାମର୍ଥ୍ୟର ପ୍ରମାଣ ମିଳିବ, ଏକଥା ମୁଁ ମୋଟେ ଉଚିତ ବୋଲି ଭାବୁନାହିଁ...... । ଆମେ ଯେତେ ବଡ଼ ପାଟି କରି ଯେତେଯାହା ଚିତ୍କାର କରି କହୁନା କାହିଁକି, ତଥାପି ଯଦି ହାତରେ ପଇସା ନଥିବ, ତେବେ କୌଣସି କାମ ହୋଇ ପାରିବନାହିଁ । ତେବେ ମୁଁ କାହିଁକି ଆପଣଙ୍କର ବନ୍ଧନଟା ଭିତରେ ଲୁଚି ରହି ଆପଣଙ୍କର ଦାରିଦ୍ର୍ୟରେ ଭାଗୀଦାର ହୋଇ ଯାଇଥାନ୍ତି ? ମାଆ ପରି ଏକ ନୂଆ ସ୍ୱର୍ଣ୍ଣଭୂମି ଖୋଜିନେଇ ମୁଁ ବାହାରି ଚାଲିଗଲି ତ ସେଥିରେ ପୁଣି ଦୋଷ କ'ଣ ?

ଏହାର କଥାଗୁଡ଼ାକ କେଉଁ ଅର୍ଥରେ ଅନ୍ତର୍ଗତ, ସେକଥା ଭାବି ଅନନ୍ତନ୍ ନାୟରଙ୍କର ମୁଣ୍ଡ ବୁଲାଇ ଯିବାକୁ ଲାଗିଲା,—ତାହାର କୌଣସି ଅନ୍ତ ନପାଇ ସେ ଭାରି ଛଟପଟ ହୋଇ ଉଠିଲେ । ତାଙ୍କର ମନ ସଚେତବା କହି ଉଠୁଥିଲା ଯେ, "ନିକମା ମଣିଷର ମୁଣ୍ଡ ଭିତରେ ଭୂତ ଆସି ବସା ବାନ୍ଧେ' ବୋଲି ଯେଉଁ କଥାଟି ରହିଛି, ତାହା ପ୍ରକୃତରେ ସତ ।

"ଆଉ, ସିଏ କାଲି ତୁମ ଘରକୁ ଘରଣୀ ହୋଇ ଆସିବ ଓ ତୁମଠାରୁ ଯେଉଁ ସନ୍ତାନ ହେବେ, ସେମାନେ ଏହିପରି ଭାବରେ ତୁମକୁ ଛାଡ଼ି ନୂଆ ଚରିବା ଭୂଇଁ ଖୋଜି ବାହାରି ଚାଲିଯିବେ ତ ତୁମେ ସେଥିରେ ମୋଟେ କୌଣସି ଆପତ୍ତି କରିବ ନାହିଁ ?"

ପ୍ରଭାକରନ୍ ଟିକିଏ ହସିଦେଲା ଓ ଧୀରେ ଧୀରେ କହିଲା, "ମୋ' ଭଉଣୀଟା ! ଭାରୁଛି ମୋତେ କଥା କହି ଦବାଇଦେବୁ—। ଆରେ ଅବୋଧ ଝିଅ ! ଏପରି କଥା ମୋଟେ ହେବନାହିଁ । ଯଦି ସେମାନେ ସେପରି ଭାବରେ ଛାଡ଼ି ଚାଲିଯିବେ ତ ମୁଁ 'ଆଚ୍ଛା, ଯାହା ହେଲା' ବୋଲି କହି ହାତକୁ ଝାଡ଼ିଦେବି ଓ ଭୁଆଡ଼ୁ ଯାଇ ଆଉ ଗୋଟିଏ ସ୍ତ୍ରୀ ନେଇ ଆସିବି । ଯେ କୌଣସି ସ୍ତ୍ରୀ ସହିତ ବି ତ ରହି ହେବ, ସେଥିରେ କ'ଣ ଅଛି ? ତା' ପାଇଁ ମୁଁ ଏକ ଆବଶ୍ୟକ ପଦାର୍ଥ ହୋଇ ରହିବି ଓ ସିଏ ବି ମୋ ପାଇଁ ଏକ ଆବଶ୍ୟକ ପଦାର୍ଥ ହୋଇ ରହିବ । ବାସ୍—ଏତିକରେ ତ କଥା ସରିଲା—! ବାପାଙ୍କ ପରି ମୁଁ ନିଜର ପୁରା ଜୀବନଟାକୁ କଦାପି ନଷ୍ଟ କରି ଦେବିନାହିଁ । ଏହାଦ୍ୱାରା ଯେ କୌଣସି କାର୍ଯ୍ୟ ସିଦ୍ଧ ହେବ ବା କୌଣସି ତ୍ୟାଗ କରାଯିବ, ମୁଁ ଏକଥା ଆଦୌ ଭାବି ପାରୁନାହିଁ । ଏଇଟା ତୁଚ୍ଛା ପାଗଲାମି—ଏଇଟା ହିଁ ମୋ'ର ମତ ।"

ଅନନ୍ତନ୍ ନାୟର୍ ଲକ୍ଷ୍ୟ କରି ଦେଖିଲେ ଯେ ମାଧବୀର ମୁହଁ ଏକାବେଳକେ ଲାଲ୍ ପଡ଼ି ଯାଇଛି ।

"ତେବେ ବର୍ତ୍ତମାନ କ'ଣ କରିବାକୁ ଇଚ୍ଛା ?"

ତା'ର ଏହି ପ୍ରଶ୍ନଟିରେ କେଜାଣି କେତେ କ୍ରୋଧ ଏବଂ ଆକ୍ରୋଶ ଭରି ରହିଥିଲା—ସିଏ ବେଶ୍ ଜାଣିପାରିଲେ ।

"ଏଇ ତିନି ବର୍ଷ ହେଲା ମୋତେ ଯେଉଁ ସରକାରୀ ଚାକିରି ମିଳି ନାହିଁ,— ବର୍ତ୍ତମାନ ଆହୁରି ପଚିଶି ବର୍ଷ ପରେ ଯେ ତାହା ମିଳିବ—ମୋ'ର ଏପରି କୌଣସି ଆଶା ନାହିଁ । ମୁଁ ଏହିପରି ଗୋଟାଏ ବେକାର ମଣିଷ ହୋଇ ରହିଯିବି ତ ବର୍ତ୍ତମାନର ସମାଜର ନୈତିକ ମୂଲ୍ୟ, ସଦାଚାରର ସିଦ୍ଧାନ୍ତ ଏବଂ ନିୟମନୀତିଙ୍କୁ ଆହ୍ୱାନ ଦେଇ ମୁଁ ଜଣେ ଭ୍ରଷ୍ଟ ବ୍ୟକ୍ତି ହେବି ବା ତା' ନ ଦେଲେ ମୋତେ ଗେରୁଆ ବସ୍ତ୍ର ପରିଧାନ କରିବାକୁ ହେବ । ଏ ଦୁଇଟା ଯାକ ବାଟରୁ ମୁଁ ନିବୃତ୍ତ ହୋଇ ରହିବାକୁ ହୁଏ, ତେବେ, ଖୁବ୍ ଶୀଘ୍ର ଏହି ମାଟି ଉପରେ ଗୋଡ଼ ରଖି ଠିଆ ହୋଇ ପାରିବାଲାଗି ମୋ'ର ପାଠପଢ଼ାର ଅନୁରୂପ ଗୋଟିଏ ଚାକିରି ନିତାନ୍ତ ଦରକାର । ସେଇଟା ନ ମିଳିଲେ ଯେ ମୁଁ ଜୀବନଟାକୁ ନଷ୍ଟ କରିଦେବି, ସେ କଥା ମଧ୍ୟ ମୋର ପସନ୍ଦ

ହେଉନାହିଁ । ତେଣୁ ଏହିପରି ଗୋଟିଏ ଗୃହକରି ପାଇଁ ଆଉ ମାସରେ ଗୋଟାଏ କାର୍ଯ୍ୟ ବ୍ୟବସ୍ଥା କରି ଦେବାଲାଗି ମାଆ ମୋତେ ପ୍ରତିଶ୍ରୁତି ଦେଇଛନ୍ତି……।"

"କ'ଣ ହେଲା……?"

ମାଧବୀର କଣ୍ଠସ୍ୱରରେ ଚମକ ପଡ଼ିବାପରି ଯେଉଁ ଭାବଟି ରହିଥିଲା, ସେହି ଭାବ ତାଙ୍କ ହୃଦୟ ଭିତରେ ମଧ୍ୟ ଜାତ ହେଲା—ଅନନ୍ତନ୍ ନାୟର୍ ଏକଥା ଅନୁଭବ କରୁଥିଲେ ।

ହଁ ! ଆଉ ମାସରେ ଗୋଟିଏ ସ୍କୁଟର ଫ୍ୟାକ୍ଟରୀ ଖୋଲିବା ସକାଶେ ବିକ୍ରମନ୍ ତମ୍ପି ରାଜି ହୋଇଛନ୍ତି…ସେଥିରେ ମୋତେ ମୁଖ୍ୟ ଇଞ୍ଜିନିଅର ପଦଟି ମିଳିବ ବୋଲି ଠିକ୍ ହୋଇଯାଇଛି । ମୁଁ ଏହିପରି ଏକ ଯୋଜନା ତିଆରି କରିଛି ଯେ ମୁଁ ମାଆ ସହିତ ସେଇଠି ଯାଇ ରହିଯିବି ।—ମୁଁ ଭାବିଥିଲି ଯେ ଏହି କଥାଟିକୁ କେବେ ଆପଣ ମାନଙ୍କ ଆଗରେ ନିଶ୍ଚିତ ଭାବରେ ପ୍ରକାଶ କରି କହି ମଧ୍ୟ ଦେବି । ଆଜି ମୋତେ ସେହି ଅବସରଟି ମିଳିଗଲା,—ତେଣୁ… ।" ଏତକ କହି ଯେତେବେଳେ ପ୍ରଭାକରନ୍ କଥାକୁ ସମାପ୍ତ କଲା, ସେତେବେଳେ ଅନନ୍ତନ୍ ନାୟର୍ ଅନୁଭବ କରୁଥିଲେ ଯେ ବର୍ତ୍ତମାନ ପର୍ଯ୍ୟନ୍ତ ତାଙ୍କ ହୃଦୟ ଭିତରେ ଯେଉଁ ଝଡ଼ଟି ଦବିକରି ରହିଥିଲା, ସେଇଟି ସନ୍ଦେଅବା ଗରଜି ଉଠି ଉପରକୁ ମାଡ଼ିଆସିଲା ପରି ଦିଶୁଛି ।

"ହାୟରେ ଭାଗ୍ୟ ! ବାପାଙ୍କୁ ଏକୁଟିଆ ଛାଡ଼ି…?" ମାଧବୀ ଚିତ୍କାର କରି କହି ଉଠିଲା । ସିଏ ଆତୁର ବାହାଣପଡ଼ି ଉତ୍ତର ଦେଲା, "ବାପା ଏକୁଟିଆ ହୋଇଯିବେ କାହିଁକି ? ଧର୍ମପାଳନ୍ ସହିତ ବିବାହ କରିବାକୁତ ବାପା ତୋତେ ମୌନ ସମ୍ମତି ଦେଇ ଦେଇଛନ୍ତି… । ତେବେ ଆଉ କ'ଣ ଚିନ୍ତା କରିବାକୁ ଅଛି ! ତୁ ତାଙ୍କୁ ନିଜ ହାଙ୍ଗରେ ନେଇଯିବୁ ନାହିଁ ! ତୋତେ କିଏ ମନା କରୁଛି…?"

"ସେଥିଲାଗି ତୁମ ଉପଦେଶର କୌଣସି ଆବଶ୍ୟକତା ନାହିଁ । ତଥାପି, ମାଆର ସେହି ଦ୍ୱିତୀୟ ପତି ଓ ତା'ଠାରୁ ଜନ୍ମ ହୋଇଥିବା ମାଆର ଦୁଇଟି ପିଲା ଯେଉଁ ଘରେ ରହୁଛନ୍ତି, ତୁମେ ତା'ହେଲେ ସେହି ଘରେ ଯାଇ ରହିବ ବୋଲି ଠିକ୍ କରିଛ ? ତୁମଠାରେ ଲାଜସରମ ବୋଲି କ'ଣ କିଛି ହେଲେ ନାହିଁ ?" ବଡ଼ ଉତ୍ତେଜିତ ହୋଇ-ପଡ଼ି ମାଧବୀ ପଚାରିଲା । ତା'ର ମୁହଁ ଗୋଟା ସୁଦ୍ଧା ଲାଲ୍ ପଡ଼ି ଯାଇଥିଲା ।

ପ୍ରଭାକରନ୍ ବି ଉତ୍ତେଜିତ ହୋଇ କହିଲା, "ମୋ'ପାଇଁ ମାଆର ପ୍ରଥମ ପତି ସହିତ ରହିବା ଯାହା, ଦ୍ୱିତୀୟ ପତି ସହିତ ରହିବା ମଧ୍ୟ ସେଇଆ…ତୁ ଗୋଟାଏ ଭାରି

ବଡ଼ ହୋଇ ବାହାର ମୋ'ଉପରେ ଆଉ ତୋଡ଼ ଦେଖାନା । ମୁଁ କାଲିଠାରୁ ହିଁ ସବୁ ଦେଖି ନେଉଛି...ମନେ ରଖିଥା ମୁଁ ହେଉଛି ତୋ'ର ବଡ଼ ଭାଇ···''ଅନନ୍ତନ୍ ନାୟର୍ ଗୋଟାଏ ବିଭ୍ରମ ଭିତରୁ ଜାଗ୍ରତ ହୋଇ ଉଠିଲେ ।

"ହଁ, ହଁ, ମୋତେ ଜଣାଅଛି । ବଡ଼ମାନଙ୍କୁ ତୁମେ ଭାରି ସମ୍ମାନ ଦେଖାଇ ଜାଣିଛ !" କହି ମାଧବୀ ବାପାଙ୍କ ପ୍ରତି ପ୍ରଦର୍ଶିତ ହୋଇଥିବା ବ୍ୟବହାରଟି ଆଡ଼କୁ ସଙ୍କେତ ଦେଲା । ସେତେବେଳେ ସିଏ, ସମ୍ଭବତଃ କାତ୍ୟାୟିନୀ ପ୍ରତି ସେ କରିଥିବା ବ୍ୟବହାରଟିକୁ ମନରେ ରଖି, ଅତ୍ୟନ୍ତ କୋପରେ ଗର୍ଜନ କରି ଉଠିଲା, "ତୋ'ର କେତେ ଯୋଗ୍ୟତା, ମୋତେ ସବୁ ମାଲୁମ !" ଦୁହିଁଙ୍କ ମଝିରେ ଠିଆ ହୋଇ ସେମାନଙ୍କର କଳହକୁ ମେଣ୍ଟାଇବା ଅନନ୍ତନ୍ ନାୟର୍ଙ୍କ ପାଇଁ କାଠିକର ପାଠ ହୋଇଗଲା ।

ଶିଳା ପ୍ରତିମା ପରି ସ୍ତବ୍ଧ ହୋଇ ବସିଥିବା ଅନନ୍ତନ୍ ନାୟର୍‌ଙ୍କୁ ନିଜର ପୂର୍ବସ୍ଥିତି ଫେରି ପାଇବାକୁ ବେଶ୍ କିଛି ସମୟ ଲାଗିଲା ।

ଆଜିଯାଏ ତାଙ୍କ ପାଖରେ ରହି ଆସିଥିବା ଅନେକ କିଛି କଥା ସତେ ଯେପରି ତାଙ୍କୁ ଛାଡ଼ି ଅନେକ ଦୂରକୁ ଚାଲିଯାଇଛି – ଏହିପରି ଏକ ଅନୁଭୂତି । ସତେ ଯେପରି ସିଏ ଆହୁରି କୋଡ଼ିଏ ବର୍ଷ ବୁଢ଼ା ହୋଇଗଲେ - କେଡ଼େ ଭୟଙ୍କର କ୍ଳାନ୍ତ ··

ଆଖି ଟେକି ପ୍ରଭାକରନ୍ ଆଡ଼କୁ ଅନାଇବା ମାତ୍ରକେ ହିଁ ତାଙ୍କୁ ଅପମାନର ଅନୁଭବ ହେଉଥିଲା । ଏମିତିବି ଗୋଟାଏ ପୁଅ କୋଉଠି ରହିଥିଲା । ଇଏ ପୁଣି ତାଙ୍କର ପୁଅ ?

''କହୁଛି ଯେ ତାକୁ ଜନ୍ମ ଦେଇଥିବା ମୁଁ ଆଉ ବନମନ୍ ତମ୍ପି ମଧ୍ୟରେ କୌଣସି ଫରକ ଅଛି ବୋଲି ଦେଖାଯାଉ ନାହିଁ । ହଁ, ମୁଁ ସ୍ତ୍ରୀ' ମାଆର ପ୍ରଥମ ସ୍ୱାମୀ ଆଉ ବନମନ୍ ତମ୍ପି ଦ୍ୱିତୀୟ ସ୍ୱାମୀ; ଆଉ ସ୍ତ୍ରୀ' ପାଇଁ ଦୁହେଁ ସମାନ ! ତାଙ୍କର ଅଙ୍ଗ-ପ୍ରତ୍ୟଙ୍ଗ ଉତ୍ତେଜିତ ହୋଇଉଠିଲା । ଏପରି କହିଦେବାକୁ ମନ ହେଲା, ''ଛି, ଛି, ନିକଳି ଯା' ନର୍ଲଜ··· !'' ସିଏ ବେଶ ବୁଝିପାରିଲେ, କାତ୍ୟାୟିନୀ ଘରୁ ଚାଲିଯିବା ପରେ ନିୟନ୍ତ୍ରଣ ଓ ଅନୁଶାସନ ମଧ୍ୟରେ ରହିଥିବା ତାଙ୍କର ସବୁଯାକ ଇନ୍ଦ୍ରିୟ ବର୍ତ୍ତମାନ ଆପଣାର କେଶରର ବାଳ ଗୁଡ଼ାକୁ ହଲାଇ ସତେଅବା ଉଠି ଠିଆ ହେବାକୁ ଆରମ୍ଭ କରୁଛନ୍ତି ।

ଇଏ ପୁଣି ମୋ'ର ରକ୍ତରୁ ଜନ୍ମ ହୋଇଛି ! ମୋ'ର ନିମକ ଖାଇ ମୋଟା ହୋଇଛି, ମୋ'ର ଘରେ ଛୁଆହୋଇ ବାପର ମାନ ସମ୍ମାନ ସରାଇ ଏହି ଯାବତ କଥା ବକିଯାଇ ପାରୁଛି ଓ ବାପର ଅପମାନ କରୁଛି । ସ୍ତ୍ରୀକୁ ଖାଲି ଏମିତି ଛାଡ଼ିଦେବାଟା ମୋତେ ଉଚିତ ହେବନାହିଁ,— ତାଙ୍କର ପୌରୁଷ କ୍ଷଣକେ ପାଇଁ ମୁଣ୍ଡ ଟେକି ଉଠି ଠିଆ ହେବାକୁ ଯାଉଥିଲା ।

ଏଠି ଖାଉଛି, ତେଣୁ କାତ୍ୟାୟିନୀ ପାଖରୁ ଲୁଗାପଟା ପାଉଛି । ତାଙ୍କର ମୁହଁରୁ ଝାଳ ବୋହି ଆସିଲା । ହୃଦ୍‌ଯନ୍ତ୍ରଟାର ସ୍ପନ୍ଦନ 'ଧଡ଼୍···ଧଡ଼୍···ଧଡ଼୍' କରି କାନକୁ ଶୁଣାଯିବାକୁ ଲାଗିଲା ।

ମାତ୍ର······

ଦାନ୍ତଗୁଡ଼ାକୁ ଚିପିରଖି ସେ ଆପଣାର ସେହି ଆକସ୍ମିକ ଭାବାବେଗକୁ ଦବାଇ ରଖିଲେ । ମନକୁ ମନ କହିଲେ, ''ଏସବୁ କଥା ଯାହା ହେଉ ପଛକେ, ତୁ ମନ ଖୋଲି

ମୋ'ସହିତ ନିଶ୍ଚୟ ସବୁ କଥାବାର୍ତ୍ତା କରିନେଇ ପାରିବୁ । ଖାଲି ଏତିକି, କିଛି ମିଛ କହିବୁ ନାହିଁ " ଏବଂ ଯେତେବେଳେ ସେ ନିଜର ଅନ୍ତର ଖୋଲି କିଛି ପ୍ରକଟ ନକଲା, ସେତେବେଳେ ସେହିକଥା ଉପରେ ତା'ସହିତ ଝଗଡ଼ା କଲେ ତାହା ତାଙ୍କୁ ଆହୁରି ଅଧିକ ତଳକୁ ଖସାଇ ପକାଇବ ।

ପିଏ ଆଖି ବୁଜି ବସି ରହିଲେ ।

କିଛି ସମୟ ବିତିଗଲା ।

"ବର୍ତ୍ତମାନ ମୋତେ ଭାରି ନିଦ ମାଡ଼ିଲାଣି, ମୁଁ ଯାଉଛି ଶୋଇବି",— ପ୍ରଭାକରନ୍ କହିବାରୁ ସେ ଆଖି ଖୋଲି ଚାହିଁଲେ ।

ସତେଯେମିତି କୋଉଠି କିଛି ଘଟିନାହିଁ—ସେହିପରି ଭାବରେ ସେ ନିଜର ଶୋଇବା ଘରକୁ ଯିବାଲାଗି ପ୍ରସ୍ତୁତ ହୋଇଗଲା । ସ୍ତ୍ରୀ'ର ମନଟା ସତେ ଏତିକି ଥୋବରା !...

ମାଧବୀ ନୀରବରେ ବସି କାନ୍ଦିବାରେ ଲାଗିଥିଲା ।

"ବସ୍ ! ତୋତେ ଆଉ ଗୋଟାଏ କଥା ପଚାରିବାକୁ ଅଛି । ତେବେ ଯାଇ ମୋ'ର ପୂର୍ଣ୍ଣ ସନ୍ତୋଷ ଆସିବ ।' ଭାଙ୍ଗିରୁଜି ଯାଇଥିବା ନିର୍ବଳ କଥାରେ ସେ କହିଲେ । ସେକଥା ଶୁଣି ତାଙ୍କ ଆଡକୁ କେଜାଣି କେମିତି ଗୋଟିଏ ଢଙ୍ଗରେ ଅନାଇ ପ୍ରଭାକରନ୍ ଅନ୍ୟମନସ୍କ ଭାବରେ ପୁଣି ବସିପଡ଼ିଲା ।

କିଛି ସମୟ ପରେ ସେ ପଚାରିଲେ, "ହଁ, ଲୀଳାକୁମାରୀ ସାଙ୍ଗରେ ତୋ'ର କେବେଠାରୁ ପରିଚୟ ହେଲାଣି ?"

ତା' ମୁହଁ ଉପରେ ଉଙ୍କୁଟି ଉଠୁଥିବା ଛକପକ ଭାବଟିକୁ ଦେଖି ସେ ବେଶ୍ ବୁଝିଗଲେ ଯେ ପିଏ ଏପରି ଗୋଟିଏ ପ୍ରଶ୍ନ ଶୁଣିବ ବୋଲି ଆଦୌ ଆଶା କରିନଥିଲା ।

ମାଧବୀ ମଧ୍ୟ ଆଖି ପୋଛି ଜିଜ୍ଞାସୁ ଭାବରେ ତା'ଆଡ଼କୁ ଅନାଇବାକୁ ଲାଗିଲା ।

ଅନନ୍ତନ୍ ନାୟର୍ କିଛି ସମୟ ଚୁପ୍ ରହିଲେ । ପିଏ ପୁଣିଥରେ ସେହି ପ୍ରଶ୍ନଟିକୁ ପଚାରିବାରୁ ସେ ଗଳାକୁ ଖଙ୍କାର ସଫା କରି, ମୁଖ ମଣ୍ଡଳ ଉପରେ ଗୋଟାଏ ପ୍ରକାରର ହିମତ ଦେଖାଇବାକୁ ଚେଷ୍ଟା କରି କହିଲା, ମୋ'ରି ସହିତ ସେ ଇଞ୍ଜିନିଅରିଙ୍ଗ୍ କଲେଜରେ ଏକାଠି ପଢ଼ୁଥିଲା । ମୋ'ର ତା'ସହିତ ପରିଚୟ ସେତିକି ବେଳରୁ ।''

"ମୁଁ ସେକଥା ପଚାରୁ ନାହିଁ...ତା'ସହିତ ତା'ରି ଗାଡ଼ିରେ ଲୁଗାଦୋକାନକୁ ଯାଇ ଲୁଗା କିଣିବା ଭଳି ଘନିଷ୍ଠତା କେବେଠାରୁ ହେଲା ?"

ତା'ର ମୁଖଭାବ ଉପରେ ଚମକ ଉଠିବାର ସୂଚନା । ତାଙ୍କ ଆଡ଼କୁ ଥରେ ଅନାଇ ଦେଇ ସିଏ ମୁଣ୍ଡକୁ ତଳକୁ କରିଦେଲା ।

"ଏହି ବିଷୟରେ ମୋ'ପାଖରେ କିଛି ଲୁଚାଇବାର କୌଣସି ଆବଶ୍ୟକତା ନାହିଁ । ତୁ ମନ ଖୋଲି ଯା'ଠାରୁ ବଡ଼ ବଡ଼ କେତେ କଥା ମୋ'ଆଗରେ କହିଦେଲୁ, ପୁଣି ଏହି ଗୋଟିଏ କଥାରେ ସଙ୍କୋଚ କାହିଁକି କରିବୁ ? ମୋତେ ତୋ'ର ବାପା ବୋଲି ମନେକରି ବିବ୍ରତ ହେବାର ଆଦୌ କୌଣସି କାରଣ ନାହିଁ···ମୋତେ ତୁ ଗତ କୋଡ଼ିଏ ପଚଶିବର୍ଷ ହେଲା ଚିହ୍ନିଥିବା ଜଣେ ଲୋକ ବୋଲି ଭାବିଲେ ତାହାହିଁ ଯଥେଷ୍ଟ ହେବ ।" କୌଣସି ପ୍ରକାର ଭାବାବେଗ ନଦେଖାଇ ଅନନ୍ତନ୍ ନାୟର୍ ଯେମିତି ଏକଥାଟି କହିଲେ, ପ୍ରଭାକରନ୍‌ର ଚେହେରା ଉପରେ ସେମିତି ସତେଅବା ଅନ୍ଧାର ଘୋଟି ଆସୁଥିବା ପରି ମନେହେଲା ।

ତଥାପି, କେତେସମୟ ପରେ, ନିଜକୁ ସମ୍ଭାଳିନେଇ ସେ ଉତ୍ତର ଦେଲା, "କଲେଜରେ ଦେଖିଥିଲି, ବାସ ସେତିକି ଯାହା ପରିଚୟ ହୋଇଥିଲା । ମାତ୍ର ଦିନେ, ଦିନେ ଯେତେବେଳେ ମୁଁ କଣ୍ଟେଣ୍ଟ୍‌ରୁମ୍‌ସ୍ଟ୍‌ରେ ମାଆଘରକୁ ଯାଇଥିଲି, ସେତେବେଳେ ମାଲାକୁମାରୀ ତା'ର ମାଆ ତମଲମ୍ ତମ୍ପିରାଟ୍ଟିଙ୍କ ସାଙ୍ଗରେ ସେଠାକୁ ଆସିଥିଲା । ମାଆ ସେଦିନ ତା'ସହିତ ମୋର ପରିଚୟ କରାଇଦେଲା । ତା'ପରେ ଦୁହିଁଙ୍କ ଭିତରେ ସିଧା ସମ୍ପର୍କ ହୋଇଗଲା··· ।"

କିଛି ସମୟ ପରେ କିଞ୍ଚିତ୍ ଗମ୍ଭୀର ଭାବରେ ସେ ପଚାରିଲେ, "ତୁ ତା'ସହିତ ବିବାହ କରିବୁ, ନା ?"

କିଞ୍ଚିତ୍ ହଡ଼ବଡ଼ ହୋଇପଡ଼ି ସେ ଉତ୍ତର ଦେଲା, "ହଁ, ସେବିଷୟରେ ମାଆ ବି ମାଲାକୁମାରୀର ମାଆ ସହିତ କଥାବାର୍ତ୍ତା କରିଛି । ସିଏ ରାଜି ଅଛନ୍ତି । ପୁଣି ତମ୍ପିଙ୍କର ମଧ୍ୟ ତମଲମ୍ ତମ୍ପିରାଟ୍ଟିଙ୍କ ସହିତ ଦୂରର କୌଣସି ସମ୍ବନ୍ଧ ରହିଛି । ସେଥିଲାଗି ସିଏ ମଧ୍ୟ ଇଚ୍ଛା କରୁଛନ୍ତି, ଏହି ସମ୍ବନ୍ଧଟି କୌଣସି ପ୍ରକାରେ ହୋଇଯାଉ ।"

"ହୁଁ···! ବର୍ତ୍ତମାନ ଏବିଷୟରେ ମୋ'ଠାରୁ ତମ୍ପିର ହିଁ ଅଧିକ ଚିନ୍ତା ରହିଛି । ଆଜି ଇଏବି ମୋ'ଠାରୁ ତମ୍ପିର ହିଁ ଅଧିକ ନିକଟ ହୋଇ ରହିଛି—ନୂଆ ବାପା ନା !" ଆକ୍ରୋଶ ସହିତ ସେ ମନେମନେ କହିବାକୁ ଲାଗିଲେ ।

ଅନନ୍ତନ୍ ନାୟର୍‌ଙ୍କର ମନେହେଲା, ସତେଯେପରି ଗୁପ୍ତ ହୋଇ ରହିଥିବା କେତେକେତେ କଥା ବର୍ତ୍ତମାନ ପରିଷ୍କାର ହୋଇଯାଉଛି । ଦୂରର କୌଣସି ସମ୍ବନ୍ଧ ଅଛି ବୋଲି ସିଏ ଯୋଉ ଉଲ୍ଲେଖ କଲା, ସେ ବିଷୟରେ କ'ଣ ତାକୁ ପ୍ରକୃତ ସତକଥା କିଛି ଜଣାଅଛି ? ସିଏ ଯେ ପ୍ରକୃତରେ କିପରି ସମ୍ପର୍କ ଥିଲା, ସେକଥାଟି ତାକୁ, ସିଏ କି

ରାଜପ୍ରାସାଦ ସହିତ ଗତ ତିରିଶି ବର୍ଷ କାଳ ସମ୍ବନ୍ଧ ରଖି ଆସିଛନ୍ତି, ତାଙ୍କୁ ଭଲ କରି ଜଣାଅଛି । ସିଏ ଥରେ କରି ହସି ପକାଇଲେ ।

"ତେବେ ଏ ବିବାହରେ ତୋ'ର ବି ରାଜି ଅଛି, ନୁହେଁ··· ?"

"ଲୁଗାଦୋକାନରେ କାଲି ଆପଣ ତ ସେହି କଥାଟିକୁ ଦେଖିଛନ୍ତି !"—ସିଏ ଅକଡ଼ିଯାଇ କହିଲା, ସେତେବେଳେ, ଅଳ୍ପ ସମୟ ପୂର୍ବରୁ କାତ୍ୟାୟିନୀ ଆଗରେ ମାଧବୀ ଯାହା 'ମୁଁ ଯାହାକୁ ଇଚ୍ଛା କରିବି ତାକୁ ଭଲ ପାଇବି ତାକୁ ବାହା ବି ହେବି— ସେକଥା ପଚାରିବା ଲାଗି ଆପଣଙ୍କର କି ଅଧିକାର ଅଛି ?' ବୋଲି କହିଥିଲା, କୌଣସି ଆବଶ୍ୟକତା ନଥିଲେ ମଧ୍ୟ ଅନନ୍ତନ୍ ନାୟରଙ୍କର ସେହି କଥାଟି ମନେ ପଡ଼ିଗଲା ଓ ତାଙ୍କୁ ବିବ୍ରତ କରିବାକୁ ଲାଗିଲା । ତେଣୁ, ସିଏ ଆପଣାର ମୁହଁରୁ ବାହାରି ଆସୁଥିବା ଅନେକ କଥାକୁ ବେଶ୍ ପରିଶ୍ରମ କରି ଦବାଇ ରଖି ଅତ୍ୟନ୍ତ ଧୀରତା ସହକାରେ ପ୍ରଶ୍ନ କଲେ, "ନୀଳାକୁମାରୀର ଜନ୍ମ ବିଷୟରେ ଯେଉଁ ତଥ୍ୟଟି ରହିଛି, ତୋତେ ସେଇଟି ଜଣାଅଛି କି ?"

ପ୍ରଭାକରନ୍ ସଙ୍ଗେ ସଙ୍ଗେ କୌଣସି ଉତ୍ତର ଦେଲାନାହିଁ । ତା'ପରେ, ଗୋଟାଏ ପ୍ରକାରର ଛଳନାପୂର୍ଣ୍ଣ ତୀକ୍ଷ୍ଣତା ସହିତ କହିଲା, "ଆପଣ କ'ଣ ମାଆର ଜନ୍ମ ବିଷୟରେ କିଛି ଭାବିଥିଲେ ?" ଅନନ୍ତନ୍ ନାୟରଙ୍କର ମନେହେଲା, ସତେଅବା ତାଙ୍କୁ କେହି ଯେପରି ଚାବୁକ ଲଗାଇବାରେ ଲାଗିଛି ।

"ହାୟରେ ଦୁର୍ଭାଗ୍ୟ ! ଇଏ ପୁଣି କେତେ ଦୂରଯାଏ ଆପତ୍ତି ମାରିବାକୁ ସାହସ ନକରୁଛି !"— ମାଧବୀର ରାଗ ଏକାବେଳକେ ବଢ଼ିଯାଇଥିଲା ।

"ତେବେ ମୋ'ବିଷୟରେ ବି ସ୍ୱା'ଙ୍କର ଏତେ ଉତ୍ସାହ କାହିଁକି ?"—ସିଏ ବେଶ୍ ଅର୍ଥପୂର୍ଣ୍ଣ ଭାବରେ ହସଟିଏ ହସିଲା ।

"ଆରେ ପାଗଳ, ସେଥିରେ ଆଉ ଏଥିରେ କେତେ ଫରକ ଅଛି । ମାଆର ବାପା ଅସଲ ବ୍ରାହ୍ମଣ ଥିଲେ, ମାଆର ମାଆ ନାୟର୍ ଘରର ସ୍ତ୍ରୀ ଥିଲା । ନୀଳାକୁମାରୀର ମାଆ କେତେବେଳେ କେଉଁ କାମ କରୁଥିଲେ, ତାହାର କିଛି ଠିକ୍ ନାହିଁ ସତ, କିନ୍ତୁ ନୀଳାକୁମାରୀର ବାପା ଜାତିରେ ଅଥବା ସାମର୍ଥ୍ୟରେ ଆମ ସମ୍ପ୍ରଙ୍କଠାରୁ କୌଣସି ଗୁଣରେ କମ୍ ନୁହଁନ୍ତି,—ଏକଥାଟିକୁ ତୁମେ ନିଜେ ବାପାଙ୍କୁ ପଚାରି ବୁଝିନିଅ ।"

"ତା'ପରେ, ସାରା ସହରଟାକୁ ଇଚ୍ଛା କଲେ କିଣିନେଇ ପାରିବାଭଳି ପଇସା ନୀଳାକୁମାରୀ ପାଖରେ ରହିଛି । କିନ୍ତୁ ତୋ' କଥାବି କେମିତି କହନ୍ତୁ ! ଗୋଟିକ ପରେ

ଆଉଗୋଟିଏ ଗଛରେ ଚଢ଼ି ତାଡ଼ି କାଟୁଥିବା ଲୋକଙ୍କ କୁଳରେ ଜନ୍ମ ହୋଇଥିବା ଧର୍ମପାଳନ୍ ଗୋଟାଏ ଶ୍ରେଷ୍ଠ ଜାତିର ନା ନାହିଁ ?"

ତା'ଠାରୁ ଏପରି ଉପହାସର କଥାଗୁଡ଼ାକ ଶୁଣି ମାଧବୀର କ୍ରୋଧ ଫୁଟି ବାହାରି ପଡ଼ିଲା, "ଯାହାହେଲେ ବି ସେମାନେ ଇଜ୍ଜତ୍‌କୁ ନେଇ ରହୁଛନ୍ତି, ମୋ'ପାଇଁ ସେତିକି ଯଥେଷ୍ଟ । ମୁଁ ତୁମପରି ହୋଇନାହିଁ··· ।" ସିଏ ଚିତ୍କାର କରି ଉଠିଲା ।

"ଏଠି କାହା କାହାଙ୍କର ଇଜ୍ଜତ କେଉଁ ପ୍ରକାରର ଝଣ୍ଡା ଲଗାଇ ଉଡ଼ିଲା ଓ ଉଡ଼ୁଛି - ଏସବୁ କଥାଗୁଡ଼ାକ ଆମକୁ ଖରି ମାଲୁମ ଅଛି, ନା ?···ମୋ' କଥା ମୁଁ କହିବି,—ମୁଁ ସୁବିଧାରେ, ଆରାମରେ ରହିବାକୁ ଚାହୁଁଛି । ପାଚିଲା ପତ୍ରର ଝଡ଼ି ପଡ଼ିବା ତ ଗଛପାଇଁ ସାରର କାମ ଦେବ,—ମୋର ଦର୍ଶନ ହେଉଛି ଏତିକି ।"

"ତଥାପି ଝିଅଘରକୁ ଯାଇ ସେଇଠି ରହୁଥିବା ଜଣେ ଗୋଲାମ ହୋଇ ସିନା ରହିବ ?– ମାଧବୀ ଟିପ୍‌ପଣି କଲା ।

"ଗୋଲାମ ପୋଂଲାମ ଚୁଲିକୁ ଯାଉ । ସଂସାରରେ କିଏ କାହାର ଗୋଲାମ ନୁହେଁ ? ମାତ୍ର, ମାତ୍ର ସମସ୍ତେ ଲୁଚାଇ ଛପାଇ ଗୋଲାମ,—ବାସ୍ ଏତିକି ଫରକ ।' ସିଏ ଉତ୍ତର ଦେଇ କଥାଟିକୁ କାଟିଦେଲା ଓ ମୌନ ହେଲା ।

କିଛିସମୟ ପରେ ଅନନ୍ତନ୍ ନାୟର୍‌ଙ୍କ ଆଡ଼କୁ ଅନାଇ ସେ ସ୍ୱୟଂ କହିଲା, "ବାପା ! ଏତେବେଳ ଯାଏ ମୁଁ ଖାଲି କଥା ବନାଇ କହୁନଥିଲି । ନଈର ମୂଳ ଆଉ ଋଷିର ମୂଳ—ଏଗୁଡ଼ାକୁ ଖୋଳିକରି ବାହାର କରିବାର କୌଣସି ଆବଶ୍ୟକତା ନାହିଁ । ତା 'ପାଖରେ ଧନ ଅଛି । ଦେଖିବାକୁ ସୁନ୍ଦର । ପାଠପଢ଼ା ବି କମ୍ ନୁହେଁ । ତେବେ ତା'ର ଜନ୍ମବୃତ୍ତାନ୍ତ ବିଷୟରେ ମୁଁ ଭାବିବାକୁ ଯିବି ପୁଣି କାହିଁକି ? ମୁଁ ତ ଆଗରୁ କହିଦେଇଛି··· ଯେତେବେଳ ପର୍ଯ୍ୟନ୍ତ ମୋ'ସହିତ ସିଏ ବିଶ୍ୱାସର ସହିତ ବ୍ୟବହାର କରିବ, ମୁଁ ବି ସେତେଦିନ ପର୍ଯ୍ୟନ୍ତ ତା'ପାଖରେ ବିଶ୍ୱସ୍ତ ରହିବି··· । ଯେଉଁଦିନ ସିଏ ମୋ'ଉପରେ ସନ୍ଦେହ କରିବ, ତେବେ, ମୁଁ ମଧ୍ୟ ସେହି ଦିନଠାରୁ ତାକୁ ବିଶ୍ୱାସ କରିବା ଛାଡ଼ିଦେବି । —ମୋ'ର ଦାମ୍ପତ୍ୟ ଜୀବନରେ ଏହାହିଁ ମୂଳସୂତ୍ର ହୋଇ ରହିବ··· ।" ସେ ଆପଣାର କହିବା ଶେଷ କଲା ।

ଅନନ୍ତ୍ରନ୍ ନାସ୍ତର୍ କ'ଣ କହିବେ କିଛି ଠିକ୍ କରି ପାରୁନଥାନ୍ତି । ସିଏ ଗୋଟାଏ ଭ୍ରମରେ ପଡ଼ି ଯାଇଥାନ୍ତି । "ଆଉ ଆପଣ କିଛିହେଲେ କହନ୍ତୁ ନାହିଁ । …ଏଇଟା ହେଉଛି ମୋ'ର ଶେଷ ନିଷ୍ପତ୍ତି ।"—ଏହିପରି ଭାବରେ ସତେଯେପରି ତାଙ୍କ ଉପରେ କଣ୍ଟାସବୁ ବାଡ଼େଇ ଦିଆଯାଉଛି,—ଏହିପରି ଭାବରେ ସିଏ ଗୋଟିକ ପରେ ଗୋଟିଏ କରି ଯେଉଁ-ସବୁ କଥା କହିଗଲା, ସିଏ ତାହାର ଦ୍ୱାରା ହିଁ ସତେଅବା ଦିଗ୍‌ଭ୍ରାନ୍ତ ହୋଇ ରହିଗଲେ ।

ଇଏ କ'ଣ ମୋର ପୁଅ ?

ମାଧବୀର ଆଗରୁ ଜନ୍ମ ହୋଇଥିଲା ?

ତେବେ ସ୍ତ୍ରୀ'ର ମନଟା ଏପରି ଭାବରେ କାମ କରୁଛି କାହିଁକି ?

କ'ଣ ଏହାହିଁ ହେଉଛି ଏହି ଆଶାଶୂନ୍ୟ, ନୈରାଶ୍ୟମସ୍ତ ପୁରୁଷଟିର ମର୍ମବାଣୀ ? ତା' ନହେଲେ, ଏହାକୁ କ'ଣ ଏକ ହତବୁଦ୍ଧି ବୋଲି ବୁଝାଯିବ, ଯାହାକି କୌଣସି ଗୋଟିଏ ପ୍ରକାରର ସମ୍ପର୍କ ଜୀବନ ଅତିବାହିତ କରିବାକୁ ଚିନ୍ତା କରୁଛି?

କୌଣସି ଗୋଟିଏ ସାହାଯ୍ୟ ନପାଇ ସେ ଛଟପଟ ହେଉଥାନ୍ତି । ଏପରି ମନେ ହେଉଥାଏ, ସତେଯେପରି ସ୍ତ୍ରୀକୁ ପଚାରିବା ପାଇଁ ଆଉ କିଛିହେଲେ ବାକି ନାହିଁ । ତାଙ୍କ ନିଜ ପାଖରୁ ଛୁଟିକିଯାଇ ସିଏ ଏହା ମଧ୍ୟରେ ଏତେ ଦୂରରେ ଯାଇ ପହଞ୍ଚି ସାରିଲାଣି, ଯେଉଁଠାରେ କି ତାଙ୍କର ହାତ କଦାପି ଯାଇ ପହଞ୍ଚି ପାରିବନାହିଁ । ଅତ୍ୟନ୍ତ ବେଦନାର ସହିତ ସିଏ ଏହି କଥାଟିକୁ ଠଉରାଇ ନେଇ ପାରିଲେ । ମାତ୍ର ତାଙ୍କର ଯେତିକି କହି-ଦେବାକୁ ରହିଥିଲା, ସେତିକି କହିଦେଇ ପାରିବାର ଆବେଗରେ, ଥରଥର କଣ୍ଠରେ, ବଡ ଅର୍ଥ ପୂର୍ଣ୍ଣ ଭାବରେ ସେ କହିଲେ, "ପୁଅ । ସବୁ କଥାକୁ ଏତେଦୂର ଯାଏ ବୁଝି ତୁ ଏପରି ନିଶ୍ଚିତ ଭାବରେ ଏତେ ଦୃଢ଼ତା ସହିତ କହୁଛୁ ଯେ ତୋତେ ଆଉ କିଛି ପଚାରିବା ଉଚିତ ନୁହେଁ । ଏହିପରି ଭାବରେ ତୋର ପ୍ରତ୍ୟେକଟି କଥା ମୋ' ମନରେ କେତେ ନା କେତେ ଆଘାତ ଦେଇ ମୋ'ର ପ୍ରତ୍ୟେକ ଅଙ୍ଗରେ ଆସି ବାଜି ମୋତେ ଏକାବେଳେକେ ଦୋହଲାଇ ଦେଇଗଲା । ତଥାପି ମୁଁ ଆଉରି ଗୋଟିଏ କଥା କହିବି । ତୁ ଏହିଭଳି ଯେତେ ଯାହା କଥା ମୋତେ କହିବାରେ ଲାଗିଥିଲେ ମଧ୍ୟ, ତୁମ ଦୁହିଁଙ୍କ ଉପରେ ହିଁ ମୁଁ ମୋ' ପ୍ରାଣଟିକୁ ନେଇ ରଖି ଆସିଥିଲି ଓ ସବୁଦିନେ ରଖିଥିବି ।"

ଭାବାବେଗରେ ତାଙ୍କର କଣ୍ଠରୁଦ୍ଧ ହୋଇ ଆସିଲା; ସିଏ ଆଉ ଅଧିକ କିଛି କହି ପାରିଲେ ନାହିଁ । କିଛି ସମୟ ଲାଗି ନିଶ୍ୱାସ ବନ୍ଦ ହୋଇ ଆସିବାପରି ଲାଗିବାରୁ ସିଏ

ଛଟପଟ ହୋଇ ପଡ଼ିଲେ । ପୁଣି ପ୍ରଶ୍ନକର୍ତ୍ତାଙ୍କୁ ଆଡ଼କୁ ଅନାଇ କହିଲେ, "ପୁଅ ! ସେହି ସ୍ମୃତି ସହିତ ମୋ'ର ଯେଉଁ ଜୀବନ କଟିଛି, ସେହି କାହାଣୀ ଟିକୁ ଏତେବେଳ ଯାଏ ତୁମେ ତୁହେଁ ଯାକ ବସ୍ତୁତ ଭାବରେ କହୁଥିଲ, ତା' ଉପରେ କେତେ ଟୀକାଟିପ୍ପଣୀ କଲ, ଏବଂ ତାହାର ବିଷୟରେ ତୃପ୍ତିଲାଭ କରିବାର ପାଇଁ କହି ମୁଁ ବର୍ତ୍ତମାନ କୌଣସି ଶବପରୀକ୍ଷା କରିବାକୁ ସିବନାହିଁ ବା ମୋ'ର କୌଣସି କୈଫିୟତ୍ ବି ଶୁଣାଇବି ନାହିଁ ଆମେ ଯେତେ ଇଚ୍ଛା ସେତେ ଆଲୋଚନା କରିବା ଓ ବର୍ତ୍ତମାନ ତାହାର କୌଣସି କୈଫିୟତ୍ କରିବା ନାହିଁ — ଏହି ସର୍ତ୍ତରେ ମୁଁ ଆଉ ମାଧବୀ ଗୋଟିଏ ପାଖରେ ରହିଲୁ, ତୁ ଆଉ ତୋ'ର ମାଆ ଅନ୍ୟ ପାଖରେ ରହିଲ । ସତେଅବା ଦୁଇଟା ବିପରୀତ ଧ୍ରୁବ ପରି ହୋଇ ଆମେ ସାମନାସାମନି ହୋଇ ରହିଗଲୁ । ଏଣୁ, ସେହି ଘଟଣାଟି ପରେ ମୋ' ମନର ଦୁର୍ଦ୍ଦଶା କପରି ହୋଇ ରହିଥିଲା, ମୁଁ କେବଳ ଏତିକି କହିବାକୁ ହିଁ ଇଚ୍ଛା କରିବି—କହି ସିଏ ମୌନ ରହିଲେ ।

ତାଙ୍କର ହୃଦୟସ୍ଥ ପଛଆଡ଼କୁ ଦୃଷ୍ଟିପାତ କରିବାକୁ ଲାଗିଲା । କିଛି ସମୟ ପର୍ଯ୍ୟନ୍ତ ବାହାରେ ଝିପିଝିପି ଟିକିଏ ବର୍ଷା ବି ହୋଇଗଲା ।

"ସେଦିନ ମୁଁ ଏକ ସୃଜନଶୀଳ ଦିନ ଶ୍ରୀକଣ୍ଠେଶ୍ୱରଙ୍କ ମନ୍ଦିରରେ ନିର୍ମାଲ୍ୟ ଦର୍ଶନ ସାରି ଏଠି ନିଜ ଘରେ ଆସି ପହଞ୍ଚିଲା ବେଳକୁ, କାତ୍ୟାୟିନୀ ଯେ ଘରେ ନାହିଁ, ଏହି କଥାଟି ମୋ'ର ମସ୍ତିଷ୍କକୁ ଧକ୍କା ଦେଇ ଆସି ମୋ' ପାଖରେ ପହଞ୍ଚିଲା । ସେତେବେଳେ ମୋତେ ଯେଉଁ ଆଘାତ ଲାଗିଥିଲା, ଯେଉଁ ମନୋ ବ୍ୟଥା ହେଲା, ତାହାକୁ ଏମିତି-ସେମିତି ବୋଲି କହି ହେବନାହିଁ । କେତେଦିନ ପର୍ଯ୍ୟନ୍ତ ମୁଁ ଶ୍ରୀକଣ୍ଠେଶ୍ୱରଙ୍କୁ ମଧ୍ୟ 'ହେ ଚଣ୍ଡାଳଦେବ !' ବୋଲି କହି ଅଭିଶାପ ଦେଇ ଦିନ କଟାଇବାକୁ ଲାଗିଲି । କିନ୍ତୁ, ଦିନପରେ ଦିନ ଗଡ଼ି ଯାଉଥିବା ସଙ୍ଗେ ସଙ୍ଗେ ମୋ' ମନର ପ୍ରାରମ୍ଭିକ ଆଘାତଟି ଗୋଟାଏ ପ୍ରକାର କମ୍ ହୋଇଗଲା ଏବଂ ମୁଁ କ୍ରମେ ସ୍ୱାଭାବିକ ଅବସ୍ଥାକୁ ଆସିବାକୁ ଲାଗିଲି । ସେତିକିବେଳେ ଯାଇ ମୋ'ର ଅନୁମାନ ହେଲା ଯେ ଭଗବାନ୍ ମୋତେ ପ୍ରକୃତରେ ଗୁଡ଼ ଯାଇନାହାନ୍ତି । ତାଙ୍କୁ ମୁଁ ଯେଉଁ ବର ମାଗିଥିଲି, ମୋତେ ସିଏ ସେଇଟିକୁ ହିଁ ପ୍ରଦାନ କରିଛନ୍ତି । ସେହି ବରଟିକୁ ଗ୍ରହଣ କରିବାଲାଗି ମୋ'ର ଭିତରେ ହିଁ ଆବଶ୍ୟକ ଶକ୍ତି ନଥିଲା । ମୋ' ଭିତରେ ସେତେ ଦୃଢ଼ ପରିପକ୍ୱତା ନଥିଲା ।"

ଅତ୍ୟଧିକ ଭାବାବେଶ ହେତୁ ତାଙ୍କର ଜିଭ ଥରି ଉଠୁଥାଏ । ତା'ପରେ ସେ ପୁଣି ମୌନ ହୋଇଗଲେ । କିଛି ସମୟ ପରେ କହିଲେ, "ମୋ ଦାମ୍ପତ୍ୟ ଜୀବନରେ ତମ୍ବିର ହସ୍ତକ୍ଷେପ ଏବଂ ତ'ର କୌଣସି ପ୍ରତିକାର କରି ପାରୁନଥିବା ମୋ'ର ଭୀରୁତା । କିନ୍ତୁ ସେଥିରୁ ଯେଉଁ ମାନସିକ ବ୍ୟଥାମାନ ଉତ୍ପନ୍ନ ହେଉଥିଲା, ସେହି ବ୍ୟଥାର ପ୍ରତିକ୍ରିୟା ଗୁଡ଼ାକୁ ନେଇ କାତ୍ୟାୟିନୀର ମୁଣ୍ଡ ଉପରେ ଫୁଟାଇ ଦେଉଥିବା ହେତୁ ଘରେ ସବୁବେଳେ

ଲଗି ରହିଥିବା ଜଳହ ଆଉ ଝଗଡା, ଦରିଦ୍ର ହାତରେ ଆସି ବନ୍ଧା ହୋଇଥିବା ସେହି ହାତର କାହାଣୀ ପରି ଜଣେ ବ୍ୟାଧିପୀଡ଼ିତ ବ୍ୟକ୍ତି ସହିତ ଏକତ୍ର ବାସ କରୁଥିବା ସେହି ସ୍ତ୍ରୀକୁ କୌଣସି ପ୍ରକାରେ ଅନ୍ତଃପୁରକୁ ଆଣି ପାରୁନଥିବା ବା ନିୟନ୍ତ୍ରଣ କରିବାର ବାଟ ପାଉନଥିବା ମୋ'ର ବଳହୀନତା, ଏବଂ ସେହି କାରଣରୁ ମୋ' ଭିତରେ ବଢ଼ିବାରେ ଲାଗିଥିବା ଗ୍ଳାନତାର ଭାବନା ଓ ଅଶେଷ ଯାତନା—ଏହି ପ୍ରକାର ଆଉ କେତେକେତେ କଷ୍ଟରୁ ମୁଁ କୌଣସି ପ୍ରକାରେ ମୁକ୍ତ ହୋଇ ଯାଉଥିଲି । ସେହିପରି ତୁମ ଦୁହିଁଙ୍କୁ ଛାଡ଼ି ଦେଇ କାତ୍ୟାୟିନୀ ଡମ୍ପିପାଖକୁ ଚାଲି ଯିବାରୁ···। ସେହି ଅବସ୍ଥାରେ ଏହିଠାରୁ ବଳି ଆଉ ମୋତେ କି ଅଧିକ ଶାନ୍ତି ମିଳି ପାରିଥାନ୍ତା, ଆଉ କେଉଁ ଶାନ୍ତିଲଗି କାମନା ବି କରିଯାଇ ପାରିଥାନ୍ତା—ଯେତେବେଳେ ମୁଁ ଏକଥା ଭାବୁଥିଲି, ସେତେବେଳେ ଏକଥାଟିକୁ ମୁଁ ବେଶ୍ ବୁଝିପାରିଲି ଯେ ବାସ୍ତବରେ ନିର୍ମାଲ୍ୟ ପୂଜାର ଦର୍ଶନ ଜନିତ ମହିମାରୁ ହିଁ ମୋତେ ଏସବୁ ପ୍ରାପ୍ତ ହୋଇ ପାରିଲା ।"

କିଛି ସମୟ ଲଗି ଚୁପ୍ ରହି, ସତେଅବା କିଛି ମନେ ପକାଉଥିବା ପରି ସେ ମାଧବୀକୁ କହିଲେ, "ଝିଅ ! ତୁ ମାଆକୁ 'ଆମେସବୁ କେଉଁ ପାପ କରିଥିଲୁ ? ବୋଲି ପଚାରିଲୁ ବୋଲି କହିଲୁ ନା ? ମାତ୍ର ମୁଁ ତା' ପାଖରେ ଆଉ ଭଗବାନଙ୍କ ପାଖରେ କେବଳ ଏତିକି ପ୍ରାର୍ଥନା କରୁଥିଲି ଯେ ମୁଁ ଯେପରି କୌଣସି କାରଣରୁ ମଧ୍ୟ ତୁମ ଦୁହିଁଙ୍କୁ ହରାଇ ନ ବସେ । ମୋ' ପ୍ରାର୍ଥନାର ହିଁ ପ୍ରଭାବ ଥିଲା ବା ସିଏ ମୋ'ର ମାନସିକ ବୃତ୍ତିଟିକୁ ଠିକ୍ ଭାବରେ ବୁଝି ପାରିଥିଲା କେଜାଣି, ସେହି ଅନ୍ତିମ କାଳରେ ମଧ୍ୟ କାତ୍ୟାୟିନୀ ମୋ' ଉପରେ ପ୍ରକୃତରେ ଦୟା ଦେଖାଇଥିଲା । ହିଁ ତୁମମାନଙ୍କୁ ଏଇଠି ମୋ' ପାଖରେ ଛାଡ଼ି ସେ ଏକୁଟିଆ ଘରୁ ଚାଲି ଯାଇଥିଲା । ମୁଁ ତୁମମାନଙ୍କୁ ସେହି କଥା ହିଁ କହୁଛି । ଏହି ଗୋଟିଏ କାରଣରୁ ହିଁ ମୁଁ ଏତେଦିନ ବଞ୍ଚି ରହି ପାରିଲି । ତୁମ ଦୁହିଁଙ୍କୁ ମୁଁ ଏତେବେଶୀ ସ୍ନେହ କରୁଥିଲି । ପ୍ରଭାକରନ୍ ଦୟା କରି ଅନ୍ତତଃ ଏତିକି କଥାରେ ତୁ ମୋ'-ଉପରେ କେବେହେଲେ ସନ୍ଦେହ କରିବୁନାହିଁ—।" କହୁ କହୁ ଅନନ୍ତନ୍ ନାମ୍ବୁଦ୍ରିଙ୍କର କଣ୍ଠ ଥର ଥର ହୋଇ ଆସିଲା । ସିଏ ଚୁପ୍ ହୋଇଗଲେ ।

ତା'ପରେ ହଠାତ୍ କୌଣସି ଏକ ଭାବର ଆବେଗ ମଧ୍ୟକୁ ଆସି କହିବାକୁ ଲାଗିଲେ, "ପ୍ରଭାକରନ୍ !—ତୁ କହୁ କହୁ କେତେ କ'ଣ କହିଦେଲୁ । 'ତୋ' ମାଆ ଓ ତୋ' ପୂର୍ବରୁ ମଧ୍ୟ, ମୁଁ ଯଦି ଇଚ୍ଛା କରିଥାନ୍ତି, ତେବେ ତୁମ ସମସ୍ତଙ୍କୁ ଛାଡ଼ି କୁଆଡ଼େ ବି ପଳାଇଯାଇ ପାରିଥାନ୍ତି । କିନ୍ତୁ—କେତେକେତେ କଠୋର ଅବସ୍ଥାର ନିମ୍ନକୁ ହେବାକୁ ପଡ଼ିଥିଲେ ମଧ୍ୟ, ଛଟପଟ ହୋଇ ପଡ଼ି ରହିବାର ଏହି ପରିସ୍ଥିତିରେ ମଧ୍ୟ, ମୁଁ ସ୍ୱପ୍ନରେ ମଧ୍ୟ ସେପରି କଥା ଚିନ୍ତା କରି ପାରିଲିନାହିଁ । ଜଣେ ଏକୁଟିଆ ମଣିଷକୁ ଏହି ପୃଥିବୀଟା ଭିତରେ ଗୋଟାଏ କୋଉ କୋଣରେ ଭିକମାଗି ହେଉ ପଛକେ, ଜୀବନ ଧରି ରହିବାଟା

କ'ଣ ଖୁବ୍ ଗୋଟାଏ ବଡ଼ ସମସ୍ୟା ହୋଇଥାନ୍ତା ? ମାତ୍ର ତୁମମାନଙ୍କଠାରୁ ଅଲଗା ହୋଇ-ଯିବା, ବା ତୁ ଯେପରି କହୁଥିଲୁ, ତୋ' ମାଆ ଘର ଛାଡ଼ି ଚାଲିଯିବା ପରେ କୌଣସି ଅନ୍ୟ ସ୍ତ୍ରୀକୁ ଆଣି ତୋ' ମାଆର ଖାଲି ଥାନଟିକୁ ପୁଣି ଭରି ଦେବାପାଇଁ ମୁଁ ଏତେଟି-କଏ ବି ଇଚ୍ଛା କରିନାହିଁ ।'' ସିଏ ଆଉ କିଛି କହି ପାରିଲେ ନାହିଁ । ତାଙ୍କର ନିଶ୍ୱାସ ଫୁଲି ଉଠୁଥିଲା । ସିଏ ଚୁପ୍ ହୋଇଗଲେ ।

କିଛି ସମୟ ପରେ ପୁଣି କହିବାକୁ ଲାଗିଲେ, ''କେତେ ଲୋକ କେତେ କଥା କହି ଉପହାସ କଲେ, ତଥାପି, ମୁଁ ନିଶ୍ଚିତ ଭାବରେ ଜାଣି ନେଇଥିଲି ଯେ ଏହାହିଁ ହେଉଛି ମୋ'ର ନିଜସ୍ୱ । ଜଣେ ପିତାର କର୍ତ୍ତବ୍ୟକୁ ମୁଁ ସୁଚାରୁରୂପେ କରିବାରେ ଲାଗିଥିଲି ଏବଂ ମୋ'ର ଏହି କର୍ତ୍ତବ୍ୟ ଗତ ଦୃଢ଼ତାର ଏହି ବିଶ୍ୱାସ ହିଁ ଆଧାର ହୋଇ ରହିଥିଲା ଯେ ଯେତେବେଳେ ତୁମେ ଦୁହେଁଯାକ ବଡ଼ ହୋଇ, 'ବାପା···। ଯାହାହେଲେ ପଛେ କ'ଣ ହେଲା, ବ୍ୟାଧିଦ୍ୱାରା ପୀଡ଼ିତ ହେଉଥିବା ଆପଣଙ୍କୁ, ଆମଭଳି ସାନ ସାନ ପିଲାଙ୍କୁ ଏହିପରି ଭାବରେ ଛଟପଟ କରି ଛାଡ଼ିଯାଇ ମାଆ ଏଠୁ ଚାଲିଗଲା ବୋଲି କହି ତା' ଉପରେ ଦୋଷାରୋପଣ କରିବ, ସେତେବେଳେ ମୁଁ ହିଁ ହେଉଛି ତା'ର କାରଣ' ମୋତେ ପଶ୍ଚାତ୍ତାପ ସହିତ ଏହି କଥାଟି କହିବାର ଅବସର ମିଳିବ । ବେଶ୍ ଅଳ୍ପକ୍ଷଣ ପୂର୍ବ ପର୍ଯ୍ୟନ୍ତ ମୋ'ର ସେହି ବିଶ୍ୱାସଟି ସ୍ଥାୟୀ ବି ହୋଇ ରହିଥିଲା । ମାତ୍ର, ତୁ ମୋର ନିଜ ପୁଅ ହିଁ କର୍ତ୍ତବ୍ୟର ସେହି ଦୃଢ଼ତାକୁ 'ଋଚ୍ଛା, ପାଗଳାମି' ବୋଲି କହି ଉପହାସ କଲୁ । ଏତିକି ନୁହେଁ ସିଏ ଏକଥା ମଧ୍ୟ କହି ପକାଇଲା ଯେ 'ତୁମେ ହେଉଛ ସମ୍ପୂର୍ଣ୍ଣ ଅପରାଧୀ, ମୁଁ ମୋ ମାଆ ପାଖକୁ ଚାଲିଯାଉଛି । ଯାହାକୁ ଆଶ୍ରା କରି ମୁଁ ଆଜି ପର୍ଯ୍ୟନ୍ତ ଲଟକି ରହିଥିଲି, ସେହି ଗୋଟିଏ ବୋଲି ପାତଳ ଦଉଡ଼ି ବର୍ତ୍ତମାନ ଛିଣ୍ଡିଗଲା, ମୁଁ ଯାଇ ଅତଳ ପାତାଳ ଭିତରେ ପଡ଼ିଗଲି । ବର୍ତ୍ତମାନ ମୋ'ର ମନ କହିଉଠୁଛି ଯେ, ଯାହାର ବିଶ୍ୱାସରେ ମୁଁ ଏହି ପନ୍ଦରବର୍ଷ ହେଲା ନିଆଁ ଖାଇ ଖାଇ ଜୀଇ ରହିଲି, ତୁମ ଦୁହିଁଙ୍କ ସାଙ୍ଗରେ ରହିଲି । ତା' ତଳେ ଏମିତି କୋଉଠି ଗୋଟିଏ ଦୋଷ ରହିଗଲା, ଯାହାକୁ କି ଆଉ ମୋଟେ ସୁଧାରି ହେବନାହିଁ – ଏହି ବିଚାରଟି ମୋତେ ଜୀଅନ୍ତା ମାରିଦେବାରେ ଲଗିଛି···।''

ସିଏ ଚୁପ୍ ରହିଲେ । କେତେ ବ୍ୟଥା ସହିତ ଅବିରାମ କଥା କହିବାରେ ଲାଗିଥିଲେ । ବର୍ତ୍ତମାନ କ'ଣ ଗୋଟାଏ ଭାବାବେଗ ଆସି ତାଙ୍କୁ ଆଉ ଆଗକୁ ବଢ଼ିବାକୁ ଦେଲାନାହିଁ ଓ ତାଙ୍କୁ ଅଟକାଇ ରଖିଲା ।

ନୀରବତାରେ ଦୁଇ ତିନି କ୍ଷଣ ବିତିଗଲା ।

''ହଉ ହେଲା । ମୁଁ ଭାବୁଛି, ତୁମ ଦୁହିଁଙ୍କ ସହିତ ଯେଉଁସବୁ ପ୍ରଧାନ ପ୍ରଧାନ ବିଷୟ କହିବାର ଥିଲା, ତାକୁ ମୁଁ କହିଦେଲି । ବର୍ତ୍ତମାନ ତୁମ ମାନଙ୍କର ମୋତେ କିଛି

ପଚ୍ଚାରିବାକୁ ଅଛି କି ?... ବଡ଼ ଦସ୍ତୁମାସ୍ତ ଭାବରେ ଅନନ୍ତନ୍ ନାସ୍ତର୍ ଏହି ପ୍ରଶ୍ନଟି ପଚ୍ଚାରିଲେ, ସେତେବେଳେ ପ୍ରଭାକରନ୍ ହାଇମାର 'ନାହିଁ' ବୋଲି ସୂଚନା ଦେଇ ମୁଣ୍ଡଟିକୁ ହଲାଇ ଦେଲା ।

ମାଧବୀର ମୁହଁ ଉପରେ ଏକ ଅସହ୍ୟ ଶୋକଭାବ ନିଶ୍ୱାସ ବନ୍ଦକରି ଠିଆହୋଇ ରହିଥିବା ପରି ଦେଖାଗଲା ।

"ଝିଅ, ତୁ କିଛି ପଚ୍ଚାରୁନୁ !" ଟିକିଏ ଥଲଥଲ କମ୍ପିତ ସ୍ୱରରେ ସେ କହିଲେ, ମାଧବୀର ଦୁଃଖ ଆତୁର ବଢ଼ିବାକୁ ଲାଗିଲା ।

କିଛି ସମୟ ପରେ, ସତେଅବା କିଛି ବଳ୍ପର କରି ନେଇଥିବା ପରି, ମାଧବୀ ବ୍ୟାପୂର୍ଣ୍ଣ ଧ୍ୱନିରେ ପଚ୍ଚାରିଲା, "ପନ୍ଦର ବର୍ଷ ତଳେ ଯେତେବେଳେ ମାଆ ଆମକୁ ଛାଡ଼ି ଚାଲିଗଲା, ତା'ପରେ ଆପଣ ଦୁଇ ଜଣଙ୍କ ମଧ୍ୟରେ କ'ଣ କେବେହେଲେ ସାକ୍ଷାତ ହୋଇନାହିଁ ?"

ଅନନ୍ତନ୍ ନାସ୍ତର୍ ବର୍ତ୍ତମାନ ଗମ୍ଭୀର ଚିନ୍ତାରେ ବୁଡ଼ି ରହିଲେ । ତା'ପରେ କହିଲେ, "ସେ ଘରୁ ଚାଲିଯିବା ପରେ ପାଞ୍ଚବର୍ଷ ଯାଏ ଆମେ କେବେହେଲେ କେହି କାହାରିକୁ ଭେଟି ନଥିଲୁ । ସମ୍ଭବତଃ, ମୋ'ମନରେ ଯାହା ରହିଥିଲା, ତା'ର ମନରେ ବି ବର୍ତ୍ତମାନ ମୁଁ କଦାପି ତା'ର ମୁହଁ ଦେଖିବିନାହିଁ ବୋଲି ସେହିପରି ଏକ ଭାବ ରହିଥିଲା ! ମାତ୍ର ଦଶବର୍ଷ ପୂର୍ବେ ଆମ ଦୁହିଁଙ୍କ ଭିତରେ ହଠାତ୍ ଦିନେ ଭେଟ ହୋଇଗଲା ; ସେହି ବିଷୟରେ କାତ୍ୟାୟିନୀ ତୋତେ କିଛି କହିଛି କି ?" ମାଧବୀ ଆଉ ପ୍ରଭାକରନ୍ ଦୁହେଁ ଆଶ୍ଚର୍ଯ୍ୟ ହୋଇ ଜଣେ ଆଉ ଜଣକ ମୁହଁକୁ ଚାହିଁ 'ନାହିଁ' ବୋଲି କହି ଉଠିଲେ । ସିଏ ଦୁଃଖପୂର୍ଣ୍ଣ ଭାବରେ ଟିକିଏ ହସିଦେଲେ ।

"ଦଶ ବର୍ଷ ତଳର ଅର୍ଥ ହେଉଛି, କାତ୍ୟାୟିନୀ ତା'ପରେ ଯାଇ ତୁମ ଦୁହିଁଙ୍କ ସହିତ ଦେଖାକରି କଥାବାର୍ତ୍ତା ହୋଇଛି । ତୁମ ମାନଙ୍କ ଆଗରେ ସେ ଏହି କଥାଟିକୁ ପ୍ରକାଶ ବି କରିନାହିଁ । ଏଥିପାଇଁ ତୁମେ ଦୁହେଁ ମଧ୍ୟ ଏ ବିଷୟରେ କିଛି ଜାଣିଛ ବୋଲି ତାକୁ କହିବ ନାହିଁ ।" ସେମାନଙ୍କୁ ଏ କଥାଟି ଟିକିଏ ବିଚିତ୍ର ପରି ଯେ ଲାଗିଲା, ତାହା ସେମାନଙ୍କର ମୁଖ ମୁଦ୍ରାରୁ ଜଣା ପଡ଼ିଗଲା ।

"ହଁ !—ତା'ପରେ କାଲି ଅକସ୍ମାତ୍ ତେନ୍‌କାଡ଼ିର ଶାନ୍ତାମନ୍ଦିରରେ ମଧ୍ୟ ମୁଁ ତାକୁ ଦେଖିଲି । "କାଲି ସିଏ ମୋତେ ଦେଖିଛି ବୋଲି ମୋ'ର ମନେ ହେଉନାହିଁ ।" ... ସତେଯେପରି ନିଜେ ନିଜକୁ କହୁଥିଲେ ପରି ଏତିକି କହି ସେ ମୌନ ହୋଇଗଲେ ।

ବାହାରେ ପବନ ସିଁଶସିଁଶ କରି ବୋହୁଥିଲା । ବାରଣ୍ଡାରେ ଥଣ୍ଡା ଲାଗୁଥାଏ ।

କିଛି ସମୟ ପରେ ଅନନ୍ତନ୍ ନାମ୍ବର୍ କହିଲେ,—"ସେପରି ଦେଖିବାକୁ ଗଲେ ମୋ'ର ବି ଏକଥାଟିକୁ ତୁମମାନଙ୍କୁ କହିବାର କୌଣସି ପ୍ରୟୋଜନ ନାହିଁ । ମାତ୍ର ତୁମର ମାଆ କେବଳ ମୋ'ର ଅତ୍ୟାଚାର ସକାଶେ ହିଁ ଘରୁ ବାହାରି ଚାଲିଗଲା ବୋଲି ପ୍ରଶ୍ନକରନ୍ ଏଇ ଯେଉଁ କଥାଟି ତ କହିଲୁ, ଏହାଦ୍ୱାରା ତୁ କେବଳ ମୋ'ଉପରେ ସମ୍ପୂର୍ଣ୍ଣ ଭାବରେ ଗୋଟିଏ ଦୋଷାରୋପ ହିଁ କଲୁ । ମାତ୍ର ଡେଣେ ବ୍ରହ୍ମପନ୍ ତମ୍ପିର ଘରେ ବାହାରର ସକଳ ଚାକଚକ୍ୟ ପଛରେ ତା'ର ଜୀବନ କିପରି ଯେ କଟୁଛି,—ଏ କଥାଟିକୁ ମଧ୍ୟ ତୁମ ଦୁହିଁଙ୍କର ଜାଣିନେବା ଉଚିତ ହେବ ।"—କହି ସେ ଦୀର୍ଘ ନିଶ୍ୱାସ ପକାଇଲେ ।

"କାତ୍ୟାୟିନୀ ଯେତେବେଳେ ଆମକୁ ଛାଡ଼ିକରି ପଳାଇଗଲା, ସେତେବେଳେ ତା'ପରେ ମୋ'ଜୀବନର କମଟି ହିଁ ବଦଳିଗଲା । ପ୍ରଥମ କାଳୀନ ଆଘାତଟି କ୍ରମେ କମ୍ ହୋଇଆସିଲା । ମୁଁ ଏକ ଦୈନିକ ନୀରବ ଜୀବନରେ ଅଭ୍ୟସ୍ତ ହୋଇଗଲି । ଠିକ୍ ଗୋଟାଏ ଯନ୍ତ୍ରପରି, ଅଫିସ୍ ଆଉ ଘର, ବାସ୍ ଏହିପରି ଭାବରେହିଁ ମୋ'ର ଜୀବନ କଟି ଯାଉଥିଲା । ତୁମେ ଦୁଇଜଣହିଁ ମୋ'ର୍ ଏକମାତ୍ର ସାହା ହୋଇ ରହିଥିଲ । ତଥାପି ମୋ'ମନଟା ବେଳେବେଳେ ଗୋଟାଏ ଅସହ୍ୟ ଅସହାୟ ଭାବରେ ପୂର୍ଣ୍ଣ ହୋଇ ଯାଉଥିଲା । ସେଥିରୁ ରକ୍ଷା ପାଇବାଲାଗି ମୁଁ ପ୍ରତି ରବିବାର ଦିନ ସମୁଦ୍ର ବାଲିରେ ଅବସ୍ଥିତ ପୁଲୁରେ ଆଶ୍ରମକୁ ବି ଚାଲି ଯାଉଥିଲି ଏବଂ ଲୌକିକ ଚିନ୍ତାସବୁକୁ ଭୁଲି ଗୋଟାଏ ପ୍ରକାରର ଆଧ୍ୟାତ୍ମିକତା ଉପଲବ୍ଧି କରିବା ପାଇଁ ଖୁବ୍ ତୀବ୍ର ଭାବରେ ଚେଷ୍ଟା କରୁଥିଲି ।

"ମୋ'ର ଏପରି ସ୍ୱଭାବ ହୋଇ ଯାଇଥିଲା ଯେ ସବୁବେଳେ ଆଖି ଆଗରେ ଦେଖା ଯାଉଥିବା ଯଥାର୍ଥ ଜୀବନଟି ମଧ୍ୟରେହିଁ ଠିଆହୋଇ ପାରିବା ମୋ'ର ଅଭ୍ୟାସ ଥିଲା । ବର୍ତ୍ତମାନ, ଏହି ଜୀବନର ଆହୁରି ସେପାଖକୁ ଅବସ୍ଥିତ ଅନ୍ୟ ଧରାତଳ ଗୁଡ଼ିକରେ ସଞ୍ଚରଣ କରିବା ମୋ'ଲାଗି ଭାରି ଆୟାସ ସାଧ୍ୟ ଥିଲା । ତଥାପି, ଦୃଷ୍ଟି ସମକ୍ଷରେ ରହିଥିବା ଯଥାର୍ଥ ଜୀବନଟି ଭିତରେ ଯେଉଁ କଟୁତା ଥିଲା, ଖୁବ୍ ଅଳ୍ପ ସମୟ ପାଇଁ ହେଲେ ମଧ୍ୟ ତାହାକୁ ଭୁଲିକରି ରହିବାରେ ସେହି ପୁଲୁରେ ଆଶ୍ରମ ବଡ଼ ସହାୟକ ପରି କାର୍ଯ୍ୟ କରୁଥିଲା । ସେତେବେଳେ, ଆଜିକୁ ଦଶ ବର୍ଷ ତଳେ, ଅର୍ଥାତ୍ କାତ୍ୟାୟିନୀ ଚାଲିଯିବାର ପାଞ୍ଚବର୍ଷ ପରେ, ମୁଁ ଆଶ୍ରମକୁ ଯାଉଛି ବୋଲି କୌଣସି ପ୍ରକାରେ ଜାଣିବାକୁ ପାଇ ସିଏ ବି ଗୋଟିଏ ରବିବାର ଦିନ ମଟର ଗାଡ଼ିରେ ଯାଇ ସେଠି ପହଞ୍ଚିଲା ।"

"କିଏ, ମାଆ ?" ମାଧବୀ ଆଶ୍ଚର୍ଯ୍ୟ ହୋଇ ପଚାରିଲା । "ହଁ...ସେଇ, ଏକାକୀ ଯାଇଥିଲା ।" ମୁଁ ତାକୁ ଦେଖିବି ନାହିଁ,—'ତା'ସହିତ କଥା କହିବି ନାହିଁ —ବନ୍ଧନଟା ବି

କାଳେ ମୋ'ମନର ପରିପକ୍ୱତାର ଅଭାବଟାକୁ ହିଁ ଦେଖାଇ ଦେବାକୁ ଯିବ, ଏହିଭଳି ଏକ ଅନୁମାନ କରି ମୁଁ ମନରେ କୌଣସି ପ୍ରକାରର ଅଭିମାନ ନରଖି କୃତ୍ରିମ ଭାବରେ ଏକ ମାନସିକ ଦୃଢ଼ତା ଉତ୍ପନ୍ନ କରାଇ ଆସିଲି ଏବଂ ପଦ୍ମାସନ ଲଗାଇ ବସି ରହିଲି । ତଥାପି ଦେହରୁ ଝାଳ ବୋହି ଯାଉଥିଲା..."

କିଛି ସମୟ ଚୂପ୍ ରହି ସେ ପୁନର୍ବାର କହିଲେ, "ସିଏ ଆସି ମୋ'ସାମନାରେ ଥିବା ବାଲି ଉପରେ ବସିପଡ଼ିଲା ଓ ମୋ'ରି ଆଡ଼କୁ ଅନାଇକରି ରହିଲା । ମୁଁ ଦେଖିଲି, ତା'ର ଆଖି ଲୁହରେ ଛଳଛଳ ହେଉଥାଏ ।"

"କାତ୍ୟାୟିନୀ ! ନୂଆ ଜୀବନ ସୁଖରେ କଟିଯାଉଛି ତ ? କଣ୍ଠ ସ୍ୱରରେ କୌଣସି ପ୍ରକାର ବିଶେଷ ଭାବ ଆଣିବାକୁ ଚେଷ୍ଟା ନକରି ମୁଁ ପଚାରିଲି । ସିଏ ଚୂପ୍‌ଚାପ୍ ମୋ'ଆଡ଼କୁ ଅନାଇ ଦେଖିବାରେ ଲାଗିଥାଏ । ଆଗଠାରୁ ଟିକିଏ ଅଧିକ ହୃଷ୍ଟପୁଷ୍ଟ ଦେଖାଯାଉଥାଏ । ମୋ'ର ସନ୍ଦେହ ହେବାକୁ ଲାଗିଲା ଯେ ତା'ର ଆଖିରେ ଆଗରୁ ସର୍ବଦା ଯେଉଁ ଶୋକଭାବଟି ଆଚ୍ଛନ୍ନ ହୋଇ ରହୁଥିଲା, ସେଇଟି ବର୍ତ୍ତମାନ ଆହୁରି ବଢ଼ି ଯାଇଥିଲା ।"

"ସିଏ ହଠାତ୍ ପଚାରିଲା, 'ମୁଁ ଫେରିକରି ଆଉଥରେ ଆପଣଙ୍କ ପାଖକୁ ଚାଲି ଆସିବି କି ?' ମୁଁ ଚମକି ପଡ଼ିଲି । ମନେମନେ ଭାରି ଆଶ୍ଚର୍ଯ୍ୟ ହୋଇଗଲି । ମୁଁ ଯେଉଁ ପ୍ରଶ୍ନଟି ନିଜେ ପଚାରିଥିଲି, ଏଇଟି କ'ଣ ତା'ର ଜବାବ ?"

'କାହିଁକି ଆସିବ ? ସେଠି ତୁମର କ'ଣ ଅଭାବ ଅଛି ?"—ମୋ'ର ଏହି ପ୍ରଶ୍ନଟିର ଉତ୍ତର ସେ ସଙ୍ଗେ ସଙ୍ଗେ ଦେଲାନାହିଁ ।

"ଯଦି ସେ ବିଷୟରେ ଆପଣଙ୍କୁ କହିବାକୁ ହିଁ ପଡ଼େ, ତେବେ ମୁଁ ନିଶ୍ଚୟ କହିବି; ମାତ୍ର ସେଇଟା କ'ଣ ଏତେ ଆବଶ୍ୟକ···?" ସିଏ କିଛିସମୟ ପରେ ପଚାରିଲା । ମୁଁ କହିଲି, "ହଁ, କହିଦିଅ !– ମୁଁ ବି ଜାଣିଥାଏ ।" ସିଏ ଚୂପ୍ ହୋଇ ରହିଲା ।

"ସମୁଦ୍ରରେ ଲହଡ଼ି ଗର୍ଜନ କରୁଥାନ୍ତି । ସେହି ଗର୍ଜନଶବ୍ଦ ମଧ୍ୟରେ ସେ କୋମଳ ସ୍ୱରରେ କହିଲା, 'ସିଏ ମୁଆଡ଼େ ଯିବେ, ଯେଉଁ କାମରେ ହୋଇଥାଉ ପଛକେ,—ଇଣ୍ଟେଟ୍‌ର କଥା ହୋଇଥାଉ, ଘର କିଣିବା ବା ବିକିବାର କାମ ହୋଇଥାଉ ପଛକେ, ମୋତେ ମଧ୍ୟ ତାଙ୍କସହିତ ଯିବାକୁ ପଡ଼ିବ—ଏହିପରି ହେଉଛି ତାଙ୍କର ବନ୍ଧନ । ଆପଣ ତାହାର କାରଣ ଜାଣିଛନ୍ତି ।'

"ତମ୍ଭିଙ୍କ ସ୍ୱଭାବକୁ ମୁଁ ଆଗରୁ ଜାଣିଥିଲି । ତେଣୁ 'ନା' ବୋଲି କହିଲି ନାହିଁ ।"

"ଏବେ ଆପଣଙ୍କୁ ଗୁଣ୍ଡ ପଳାଇ ଆସିଥିବା ଜୀବନ ପୁଣିଥରେ ସେହି ଜୀବନକୁ ଛିନ୍ନଭିନ୍ନ କରିଦେବା ଅନୁଚିତ ହେବ, ଏହିପରି ଭାବି ତାଙ୍କ ବାହ୍ୟ ଜୀବନଟାର ବି ମୌନସାକ୍ଷୀ ହୋଇ ମୁଁ ରହିଗଲି । ହୁଁ —ଯେତେବେଳେ ଆପଣଙ୍କ ସହିତ ରହୁଥିଲି, ଖାଲି ଘରଭିତରେ ପଡ଼ି ରହିବାର ସେହି ଜୀବନଟା ଭାରି ନୀରସ ଲାଗୁଥିଲା । ମାତ୍ର —ବର୍ତ୍ତମାନ ଅସୀମିତ ଭାବରେ ବାହାରେ ବୁଲିବାର ଯେଉଁ ଜୀବନ ମୋତେ ମିଳିଲା, ସେଇଟା···' କଥାଟାକୁ ଅଧାରଖି ସିଏ ଚୁପ୍ ହୋଇଗଲା । ତା'ପରେ, ପୁଣି ନିଜେ କହିଲା, "ତା'ପରେ ଅଧିକାଂଶ ସମୟରେ, ଭୋଜି ନିମନ୍ତ୍ରଣରେ ମୋତେ ବଡ଼ ବଡ଼ ଲୋକଙ୍କ ଘରକୁ ସାଙ୍ଗରେ ନେବାକୁ ବି ଲାଗିଲେ । ଧନ ନାହିଁ, ଗୀତ ନାହିଁ, ଖାଲି ମଦ ପିଇ ମାତାଲାମି କଲେ । ତା'ପରେ ତାଙ୍କର ଆଗରେ ବସି ମୋତେ ବି ମଦ ପିଇବାକୁ ବାଧ୍ୟ କରାଗଲା ଡ଼ରେଇଲେ, ଧମକ ଦେଲେ । ଆଉ କୌଣସି ରାସ୍ତା ନଦେଖି ମୁଁ ଆଜିକାଲି ସେସବୁର ବି ଅନୁସରଣ କରିବାରେ ଲାଗିଲେଣି···।''

"ତା'ପରେ ସିଏ ପୁଣି ଝରକାର ଭିତରେ ବୁଡ଼ି ରହିଲା ।

''କଥା ସେତିକିରେ ସରିଲାନାହିଁ । ମଦ ପିଇ ମାତାଲାମି କରୁ କରୁ ତାଙ୍କର ଜଣେ ବନ୍ଧୁ, ତାଙ୍କ ନାଆଁ ମୁଁ କହିବି ନାହିଁ,-- ଏହି ସହରରେ ସିଏ ଜଣେ ପ୍ରମୁଖ ଲୋକ – ମୋ'ସହିତ ଯେଉଁ ବ୍ୟବହାର କରିବାକୁ ଲାଗିଲେ, ସେଇଟା ମୋତେ ମୋଟେ ଭଲ ଲାଗିଲାନାହିଁ । ମୁଁ ଯାଇ ତାଙ୍କୁ କହିଲି ତ ସିଏ, 'ଆରେ ମୂର୍ଖ, ଏଇ ଛୋଟ କଥାଟାକୁ ଏଡ଼େ ବଡ଼ କରି ପକାଉଛ ? ତାଙ୍କ ପତ୍ନୀ ପାଇଁ ତ ସିଏ ଯେମିତି, ମୁଁ ବି ସେମିତି···। ସେଥିରେ ସେ କୌଣସି ଆପତ୍ତି କରନ୍ତିନାହିଁ – ଜାଣିଛ ?' ବୋଲି କହିଲେ ଓ ଅର୍ଥପୂର୍ଣ୍ଣ ଭାବରେ ମୌନ ହୋଇଗଲେ ।''

''କାତ୍ୟାୟିନୀ ଚୁପ୍ ହୋଇଗଲା । ତା' କଥାଗୁଡ଼ିକ ଶୁଣି ମୋତେ ଆଦୌ ଆଶ୍ଚର୍ଯ୍ୟ ଲାଗିଲାନାହିଁ ।

''ମୁଁ ଭାବୁଛି, କାଲି ଯେଉଁ ଘଟଣା ଘଟିଲା, ସେକଥା ମୁଁ କିପରି ଆପଣଙ୍କ ଆଗରେ କହିପାରିବି !' ସିଏ ପୁଣି କହିଲା ।

''କହିଦିଅ କାତ୍ୟାୟିନୀ...ତୁମେ ଯାହା ମନ ତାହା କହିଲେ ମଧ୍ୟ ସେଥିରେ ମୁଁ ମୋଟେ ଆଶ୍ଚର୍ଯ୍ୟ ହେବିନାହିଁ ।''

ଏହି ସନ୍ଦର୍ଭଟିରେ ଅନନ୍ତନ୍ ନାୟର୍ ମଧ୍ୟ ସତେଅବା କୌଣସି ଦ୍ୱିଧାରେ ପଡ଼ିଯାଇ ହଠାତ୍ କିଛି କହି ପାରିଲେ ନାହିଁ ।

''ଜଣେ ବାପ ନିଜ ପିଲାଙ୍କ ପାଖରେ ସେହି ପିଲାଙ୍କର ମାଆଠାରୁ ଜାଣିଥିବା କଥାଗୁଡ଼ିକୁ ଆସି କହିବ—ଏଇଟା କେଡ଼େ କଠିନ କାମ ତୁମେମାନେ ଜାଣିଛ ?

ଯେକୌଣସି ପ୍ରକାରେ ମୁଁ ଏପର୍ଯ୍ୟନ୍ତ କହିଦେଇ ପାରିଲି । ମାତ୍ର, ତା'ପରେ ଯିଏ ମୋତେ ଯାହାସବୁ କହିଲା, ସେଗୁଡ଼ାକ କହିଲା ବେଳକୁ ମୋ ର ଜିଭ ମୋଟେ ନଚଳିବା ପରି ମନେହେଉଛି । ତଥାପି, ଯଦି ତୁମମାନଙ୍କୁ ନ କହିବି, ତେବେ ସେଇଟା ତୁମମାନଙ୍କୁ ଧୋକା ଦେଲାପରି ହେବ । ତେଣୁ, ମୋତେ ସେ ଯେଉଁ କଥାଟି କହିଲା, ସେଇଟିକୁ ମୁଁ ତୁମମାନଙ୍କ ଆଗରେ ଯେମିତ ସେମିତ କହିଦେବି । ମୋତେ ତୁମେମାନେ ସେଥିପାଇଁ କ୍ଷମା କରିବ—।" କହି ଅନନ୍ତନ୍ ନାୟର୍ ପ୍ରଭାକରନ୍ ଏବଂ ମାଧବୀ ଆଡ଼କୁ ଥରେ ଅନାଇ ଦୀର୍ଘନିଶ୍ୱାସ ପକାଇଲେ । ତା'ପରେ ସେମାନଙ୍କର ମୁହଁ ଆଡ଼କୁ ଅନାଇବାକୁ ସଙ୍କୋଚ ଅନୁଭବ କରି, ଆଉ କୁଆଡ଼କୁ ଦୃଷ୍ଟି ଫେରାଇନେଇ, ଭାବପ୍ରବଣ କଣ୍ଠରେ କହିବାକୁ ଆରମ୍ଭ କଲେ, "କାତ୍ୟାୟିନୀ କିଛିସମୟ ପର୍ଯ୍ୟନ୍ତ ଆଖିରୁ ଲୁହ ଗଡ଼ାଇ ବସିରହିଲା ଏବଂ ତା'ପରେ କହିଲା, 'କାଲି ରାତିରେ ଯେତେବେଳେ ମଦ ପିଇବା ଆରମ୍ଭ ହେଲା, ସେତେବେଳେ ସବୁଦିନ ପରି ମୋତେ ବି ସେଥିରେ ଆସି ସମ୍ମିଳିତ ହେବାକୁ ପଡ଼ିଲା । ସିଏ ଦି' ଜଣଯାକ ମୋତେ ଉତ୍ସାହିତ କରାଇବାରେ ଲାଗିଥାନ୍ତି । ମୋ' ମନରେ ଆପଣଙ୍କ ବିଷୟରେ, ପିଲାଙ୍କ ବିଷୟରେ କେତେ ନା କେତେ ବ୍ୟଥାପୂର୍ଣ୍ଣ ଭାବନା ଭର୍ତ୍ତି ହୋଇ ରହିଥିଲା । ତାଙ୍କର ସେହି ବନ୍ଧୁଙ୍କର ଅପ୍ରତ୍ୟାଶିତ ଆଚରଣ ସକାଶେ ମନରେ ଚିନ୍ତା ବି ଥିଲା । ତଥାପି ମୁଁ ବି ସେମାନଙ୍କଠାରୁ ଆଦୌ ପଛରେ ରହିଲି ନାହିଁ ଓ ଖୁବ୍ ପିଇବାକୁ ଲାଗିଲି ···...ରାତିରେ ମୁଁ କେଉଁସବୁ ପ୍ରକାରର ଆଚରଣ କଲି, କ'ଣ କ'ଣ ସବୁ ଘଟିଲା,—ଏସବୁଡ଼ାକ କିଛି ହେଲେ ମୋର ପରିଷ୍କାର ଭାବରେ ଆଦୌ ମନେ ହେଉନାହିଁ । ମାତ୍ର ଆଜି ସକାଳଠାରୁ ଆରମ୍ଭ କରି, ସତେ ଯେପରି ସ୍ୱପ୍ନରେ କିଛି ଘଟିଯାଇଛି, ଗୋଟିଏ ଦୃଶ୍ୟ ଥାଇଥାଇ ମୋ'ର ଇନ୍ଦ୍ରିୟଗୁଡ଼ିକୁ ଓ ମୋ'ର ଶିରାପ୍ରଶିରାକୁ ଯନ୍ତ୍ରଣା ଦେବାରେ ଲାଗିଛି । ସିଏ ମୋଟେ ଆଉକିଛି ଦୃଶ୍ୟ ନୁହେଁ, ତାଙ୍କର ସେହି ପ୍ରମୁଖ ବନ୍ଧୁଙ୍କ ପାଖରେ ମୁଁ ଆପେ ଆପଣାକୁ ଅର୍ପିତ କରି ଦେଇଛି,— ସେହି ଦୃଶ୍ୟଟି······ ।' କହି ସେ କହିଁ କହିଁ ହୋଇ କାନ୍ଦିବାକୁ ଲାଗିଲା ।

ଅନନ୍ତନ୍ ନାୟର୍ ମୁଣ୍ଡ ତଳକୁ କରିଦେଲେ ନିଜ ପିଲାଙ୍କର ମୁହଁ ଆଡ଼କୁ ଅନାଇବାକୁ ତାଙ୍କୁ ସଙ୍କୋଚ ଲାଗୁଥାଏ । ଏ କଥାକୁ କ'ଣ କୌଣସି ବାପ ଆପଣାର ପିଲାଙ୍କ ଆଗରେ କହିବାକୁ ଯିବ ? —ତାଙ୍କର ମନ ତାଙ୍କୁ ବାରମ୍ବାର ଏହି ପ୍ରଶ୍ନଟି କରିବାରେ ଲାଗିଥିଲା । ତଥାପି, ପ୍ରଭାକରନ୍ ନାୟର୍ କହିଥିବା କଥା ଗୁଡ଼ିକରୁ ସେ କରିଥିବା ନିଷ୍ପତ୍ତିଟିରୁ ଆଘାତ ପାଇ ସନ୍ତପ୍ତ ହୋଇ ଉଠିଥିବା ତାଙ୍କର ହୃଦୟ ଭିତରେ ଏକ ସୂକ୍ଷ୍ମ ଆଶାର ରେଖା—ମୁକ୍ତ ବାର୍ତ୍ତାଳାପ ନାମକ ଏହି ଅନ୍ତିମ ଅସ୍ତ୍ରଟି ଦ୍ୱାରା ପ୍ରଭାକରନ୍‌କୁ ତାଙ୍କ ଆପଣା ଆଡ଼କୁ ସହାନୁଭୂତିପୂର୍ଣ୍ଣ କରାଇ ନେବାର ଏକ ଆଶା । ଗୋଟାଏ ପ୍ରକାରର ଆଶ୍ୱାସନା ଲାଭ କରିବାର ଏକ ଆକାଂକ୍ଷା...... ।

ଅନନ୍ତନ୍ ନାୟର୍ ଶେଷ କଥାଗୁଡ଼ିକୁ ବି କହି ପକାଇଲେ, "ଏକଥା ସତ ଯେ କାତ୍ୟାୟିନୀର କଥାମାନ ଶୁଣି ମୋତେ ଆଦୌ ଆଶ୍ଚର୍ଯ୍ୟ ଲାଗିଲା ନାହିଁ । କିନ୍ତୁ ଏଥିରେ ହୃଦୟ ଭିତରେ ବଡ଼ ବ୍ୟଥା ହେଲା । ଯାହାକିଛି ହେଉଥାଉ ପଛକେ, ମୋତେ ଆପଣାର ସ୍ତ୍ରୀତ୍ୱ ପ୍ରଦାନ କରି ଯିଏ ମୋ ସହିତ କୁଟୁମ୍ବ ଚଳାଇଥିଲା, ଯିଏ ମୋର ଦୁଇ ପିଲାଙ୍କର ମାଆ ହୋଇ ରହିଥିଲା, କିନ୍ତୁ ମୁଁ ତାକୁ କିପରି ଏସବୁଥିରୁ ଉଦ୍ଧାର କରି ଆଣିପାରିବି ? ବିକ୍ରମନ୍ ତମ୍ପି ସହିତ ବାଦ ଲଗାଇବାକୁ ସାହସ ନ ହେବାରୁ ହିଁ ମୁଁ ସେହି ସ୍ତ୍ରୀକୁ ହରାଇଥିଲି । ସେହିପରି ଜଣେ ମଣିଷ ମୁଁ, ସିଭିଲ୍ ମ୍ୟାରେଜ୍ କରି ନିଜକୁ ଆଉ ଜଣକର ପତ୍ନୀ ବନାଇଥିବା ଜଣେ ସ୍ତ୍ରୀଲୋକର ବ୍ୟକ୍ତିଗତ ବିଷୟରେ ମୁଁ ହସ୍ତକ୍ଷେପ କରିପାରିବି ? ଏହା ବ୍ୟତୀତ, ସେତେବେଳେ ମୁଁ ଏତେ ଦୂରକୁ ଚାଲି ଯାଇଥିଲି ଯେ ପୁନର୍ବାର ଦାମ୍ପତ୍ୟ ଜୀବନ ଯାପନ କରିବାର କଳ୍ପନା ମଧ୍ୟ କରି ପାରୁ ନଥିଲି । ତେଣୁ ତାକୁ କହିଲି, "କାତ୍ୟାୟିନୀ, ଠିକ୍ ଗାତରେ ମୁଣ୍ଡ ରଖିବାପରେ ଠିକ୍ ପାହାରକୁ ଡରିଲେ ଆଉ କ'ଣ ହେବ ? କୁକୁରର ରୂପ ଧାରଣ କରିନେବା ପରେ ଭୁକିବାକୁ ହିଁ ପଡ଼ିବ । 'ହାଇ ସୋସାଇଟି'ର ସଂସ୍କାର ଆସି ପଡ଼ିଯିବା ପରେ ଏଗୁଡ଼ିକ ଆଉ ମୋଟେ କଷ୍ଟଦାୟକ ମନେ ହେବନାହିଁ । ଚାଲୁ ଚାଲୁ କ୍ରମେ ସବୁ ଠିକ୍ ହୋଇଯିବ...... । ମୋ ସହିତ ଏଇଟି ହିଁ ତୁମର ପ୍ରଥମ ଏବଂ ସର୍ବଶେଷ ସାକ୍ଷାତ ହୋଇ ରହିବା ଉଚିତ । ଯଦି ତମ୍ପିକୁ ଏକଥା ମାଲୁମ ହୋଇଯିବ, ତେବେ ଏହାହିଁ ତୁମ ଜୀବନ ସକାଶେ ଏକ ବଡ଼ ବିପଦ ହୋଇ ଠିଆହେବ । ଯାହା ହୋଇଗଲା, ହୋଇଗଲା, ସେହି ସ୍ଥାନ ଯେତେ ବଡ଼ ଯେଉଁ ନରକ ହୋଇଥାଉ ପଛକେ, ଅନ୍ତତଃ ଏହାପରେ ତୁମେ ଯେପରି ଅଛ ସେହିପରି ଜୀବନ କଟାଅ ଏବଂ ଏହି ଜନ୍ମଟିକୁ ପୂରା କରିଦିଅ ।" — ମୁଁ ତାକୁ ଏହି ଆଶ୍ୱାସନାଟି ଦେଇ ଫେରାଇଦେଲି ।" ଅନନ୍ତନ୍ ନାୟର୍ କହିବା ଶେଷ କଲେ ।

ମାଧବୀର ମୁହଁ ସିଏ ଏକାବେଳେକେ ଯାବସ୍ତଇ ଯାଇଥିବା ପରି ଦେଖା ଯାଉଥିଲା । ପ୍ରଭାକରନ୍‌ର ମୁଖମୁଦ୍ରା ଭାବସ୍ତନ ହୋଇ ପଡ଼ି ବେଶ୍ ଗମ୍ଭୀର ହୋଇ ରହିଥିଲା ।

କିଛିକ୍ଷଣ ପରେ ପ୍ରଭାକରନ୍ କହିଲା, "ବାପା, କ୍ୟାପ୍ଟେନ୍ ଭର୍ମା ସହିତ ମାଆଙ୍କୁ ଯେଉଁ ନିଷ୍ଠୁର ଜୀବନଯାପନ କରିବାକୁ ହେଉଛି ଏବଂ ଯେଉଁଟି ବିଷୟରେ ଆପଣ ବର୍ତ୍ତମାନ କହିଲେ, ସେଇଟା କ'ଣ ଆପଣଙ୍କ ସହିତ ସେ ବିତାଇ ଥିବା କଠୋର ଜୀବନକୁ କିଛି ନୁହେଁ ବୋଲି ସାବ୍ୟସ୍ତ କରିଦେଇ ପାରିବ ? ମୋ'ର ମନେହେଉଛି ଯେ ଆପଣ ସେହିପରି ବିଚାର କରୁଛନ୍ତି...... ।"

ଅନନ୍ତନ୍ ନାୟର୍ କ'ଣ ଉତ୍ତର ଦେବେ କିଛି ବୁଝି ପାରିଲେ ନାହିଁ । ଖାଲି ସନ୍ତପ୍ତ ହୋଇ ପଡ଼ିଲେ ।

"ତା' ଛଡ଼ା, ମାଆର ବର୍ତ୍ତିମାନର ନୀଚ ଜୀବନଟି ବିଷୟରେ ଆପଣଙ୍କଠାରୁ ଏସବୁ କଥା ଶୁଣି ମୋ' ମନରେ ବାରବାର ଏହି କଥାଟି ଆସୁଛି ଯେ ଜଣେ କୁଳୀନ ସ୍ତ୍ରୀ ନିଜର ଘର କରଣା ଆଉ ପରିବାରକୁ ନେଇ ଆପଣାର ଜୀବନ କଟାଉଥିବା ବେଳେ ତା' ସହିତ ଶତ୍ରୁତା କରି ତାକୁ କାହିଁକି ଘରୁ ଚାଲିଯିବା ପାଇଁ ବାଧ୍ୟ କରିଗଲା ଏବଂ ଏତେଦୂର ଶସ୍ତା ହେବାପାଇଁ ଗ୍ରୁଡ଼ି ଦିଆଗଲା । ଆପଣ ହେଉଛନ୍ତି, ଏହାର ପ୍ରଥମ କାରଣ । ଏହାଦ୍ୱାରା ଆପଣଙ୍କ ଉପରେ ମୋର ରାଗ ଆହୁରି ବଢିଯାଉଛି । ମାତ୍ର ମାଆ ପ୍ରତି ଏତେ ଟିକିଏ ବି ଘୃଣା ହେଉନାହିଁ । ଓଲଟା ମୋ'ର ହୃଦୟ ତା'ଲାଗି ରୋଦନ କରି ଉଠୁଛି ।"

କିଛି ସମୟ ଅଟକିଯାଇ ସେ ପୁଣି କହିଲା, "ଏହା'ଛଡ଼ା, ସେତେବେଳେ ଆପଣଙ୍କର ମାଆଙ୍କୁ ପୁଣି ସ୍ୱୀକାର କରିନେବା ଉଚିତ୍ ଥିଲା ଏବଂ ତଦ୍ୱାରା ଆପଣ ସେ ପର୍ଯ୍ୟନ୍ତ ଦେଖାଇ ଆସିଥିବା ଆପଣଙ୍କର ଭୀରୁତାର ପ୍ରାୟଶ୍ଚିତ୍ତ ବି କରି ନେଇଥାନ୍ତେ । ..... ମାତ୍ର ଆପଣ ସେଥିରେ ବି ପଛେଇ ରହିଗଲେ ।"

କୌଣସି ପ୍ରକାର ସାଲିସ୍ କରିବାକୁ ବି ସେ ତିଆର ନୁହେଁ, ଏହି ଅନୁମାନରେ ତାଙ୍କଦ୍ୱାରା ପ୍ରୟୋଗ କରା ଯାଇଥିବା ସେହି ଅନ୍ତିମ ଅସ୍ତ୍ରଟି ଦ୍ୱାରା ହିଁ ଆଘାତ କରି ତାଙ୍କୁ ତଳେ ପକାଇଦେବାକୁ ଇଏ ଉଦ୍ୟମ କରୁଛି—ଏକଥା ଦେଖି ଅନନ୍ତନ୍ ନାୟର୍‌ଙ୍କର ହୃଦୟ ବିକଳ ହୋଇ ଉଠିଲା ।

ସ୍ତ୍ରୀ' ସହିତ କୌଣସି ପ୍ରକାର କଥାବାର୍ତ୍ତା କଲେ ବି ସେଥିରୁ ଆଉ କୌଣସି ଫଳ ହେବନାହିଁ, ଏକଥା ଭାବି ସେ ସବୁକଥା ହରାଇବାକୁ ଯାଉଛନ୍ତି ବୋଲି ଆଶଙ୍କା କରି ଝଟ୍‌କରି 'ତେବେ ତୋ'ର କଥା ହିଁ ଠିକ୍, ତୋର କଥା ହିଁ ଠିକ୍-ହିଁ ଖୁବ ଡେରି, ହୋଇଗଲାଣି···ଯାଆ, ଶୋଇବୁ ଯାଆ...'' ବୋଲି କହି ସେ କଥା ଶେଷ କରିଦେଲେ। ତାଙ୍କ ମୁହଁରୁ ଏକଥାଟି ବାହାରିବା ମାତ୍ରକେ, ସତେଅବା କିଛି ନ ହୋଇଥିବା ପରି ପ୍ରଭାକରନ୍ ଉଠି ଠିଆହୋଇ ଓ ନିଜର ଶୋଇବା ଘରକୁ ଚାଲିଗଲା।

ତାଙ୍କର ବିଛଣାଟିକୁ ଝାଡ଼ି ବେଞ୍ଚ୍ ଉପରେ ବିଛାଇ ଦେଉ ଦେଉ ମାଧବୀ ଆଶ୍ୱାସନା ଦେଇ କହିଲା, "ବାପା, ଦ'ଟାରୁ ଅଧିକ ସମୟ ହୋଇଗଲାଣି। ଏଇଟା, ସେଇଟା ଭାବି ଭାବି ଆପଣ ଆଉ ମନଟାକୁ ବିବ୍ରତ କରି ପକାନ୍ତୁ ନାହିଁ। ସମସ୍ତଙ୍କ ପାଇଁ ସେହି ଭଗବାନ ଅଛନ୍ତି...।'' ଓ ତାଙ୍କ ପାଇଁ ସୁରେଇରେ ପାଣି ଭର୍ତ୍ତି କରି ରଖିଦେଲା।

"ଆଲୁଅ ନିଭାଇ ଦେଇ ତୁ ବି ଶୋଇବୁ ଯାଆ, ଝିଅ !''– କହି ସେ ତାକୁ ବିଦାୟ ଦେଲେ।

ମାଧବୀ ଥରେ ତାଙ୍କ ଉପରୁ ତଳଯାଏ ଅନାଇ ଦେଖିଲା। ତା'ର ଆଖି ଏକାବେଳେକେ ଛଳ ଛଳ ହୋଇ ଆସୁଥାଏ। ସିଏ ଝଟ୍ କରି ମୁହଁ ବୁଲାଇନେଲା। ସେହି ଘରର ବିଜୁଳି ଆଲୁଅ ନିଭାଇ ଦେଲା ଓ କବାଟ ଲଗାଇ ଘର ଭିତରକୁ ଚାଲିଗଲା।

"ଶ୍ରୀ ପଦ୍ମନାଭ···'' କହୁ କହୁ ଅନନ୍ତନ୍ ନାୟର୍ ବିଛଣା ଉପରେ ଗଡ଼ିପଡ଼ିଲେ।

ବାରଣ୍ଡାରେ ଘନ କଳାଅନ୍ଧାର ଆଚ୍ଛନ୍ନ କରି ରହିଥିଲା। ସତେ ଯେପରି ଭୟଙ୍କର ଝଡ଼ତୋଫାନ ପରେ କାହାକୁ ସେଠି ଏକାନ୍ତରେ ଛାଡ଼ି ଦିଆଯାଇଥିଲା–ଏହିପରି ଏକ ଅବସ୍ଥା···

ବାହାରେ ଗଛବୁଦାଙ୍କର ଶାଖାରେ ସିରସିର ଶବ୍ଦ କରି ପବନ ବହୁଥିଲା।

ବିଛଣା ଉପରେ ସେହିପରି ଶୋଇ ରହି ସେ ବାରଣ୍ଡା ସେ ପାଖରେ ଥିବା ସାନ ପାଚେରୀଟି ଉପରେ ଦେଖା ଯାଉଥିବା ଆକାଶ ଆଡ଼କୁ ଦୃଷ୍ଟି ପକାଇଲେ।

ଆକାଶରେ ଗୋଟିଏ ବୋଲି ତା'ର ନଥିଲେ । ଗ୍ରଣଆଡ଼େ ଅନ୍ଧାର; ଶୂନ୍ୟ ଅଥଚ ବିଶାଳ ଆକାଶ···

ବୋଧ ହୁଏ ବର୍ଷା ହେବ...।

ସେଥିପାଇଁ ତାଙ୍କର ଚିନ୍ତା ନଥିଲା । ତଥାପି ଇତି ମଧ୍ୟରେ ତାଙ୍କର ହୃଦୟରେ ବଡ଼ କଠୋର ଭାବରେ ଉଚ୍ଛୁଳି ଆସୁଥିବା ବେଦନା ପୂର୍ଣ୍ଣ ଶକ୍ତି ହୋଇ ନିଜର କରାମତି ଦେଖାଇବାକୁ ଲାଗିଲା...

ସବୁଯାକ ଭାବନା ସେ ନୂଆକରି ଉପରେ ଭାଗରେ ସୀମାକୁ ଆସି ଜାଗ୍ରତ ହୋଇ ଉଠିଛନ୍ତି ।

ତାଙ୍କର ପ୍ରତୀକ୍ଷା ସମାପ୍ତ ହୋଇଯାଇଛି···

ଏହି କଠୋର ଯନ୍ତ୍ରଣା, ଶରୀରର ଦୁଃଖ, ଏହି ସବୁଯାକ ଗୋଟିଏ ଅପୂର୍ବ ମୁହୂର୍ତ୍ତିରେ ହିଁ ସମାପ୍ତ ହୋଇଯିବେ, ଏହିପରି ଏକ ଦୁରାଶା ପୋଷଣ କରି ତାଳୁକୁ ଯାବୁ କରି ରଖି ଏ ପର୍ଯ୍ୟନ୍ତ ସିଏ ସବୁକିଛି ସହ୍ୟ କରି ଆସିଥିଲେ । ସେହି ମୁହୂର୍ତ୍ତିଟି ସାକ୍ଷ ପ୍ରଖର ପଦ ଧ୍ୱନିରେ ଆସି ପହଞ୍ଚିଗଲା ଓ ଏଭଳି ଗୋଟିଏ ଭୟଙ୍କର ତୋଫାନର ରୂପ ଧରି ଚାଲିଗଲା ଯେ ତାଙ୍କର ଜୀବନ ଗୋଟାକୁ ତାହା ଯନ୍ତ୍ରଣା ଭୋଗି ଢଳ ଢଳ କରି ମରିବାର ଅବସ୍ଥାରେ ପକାଇଦେଇ ଗଲା···ତାଙ୍କୁ ସମୂଳ ହଲାଇ ଦେଇ ଗଲା ।

ଅନେକ ଗୁଣ ହୋଇ ବଢ଼ି ଯାଇଥିବା ସେହି ବେଦନାରୁ ମୁକ୍ତ ପାଇବାଲାଗି ବର୍ତ୍ତମାନ ଆଉ କି ଉପାୟ ରହିଛି ?

ଜାଗୃତ ଆଉ ସୁଷୁପ୍ତ —ଦୁହିଁଙ୍କଠାରୁ ଭିନ୍ନ ଏକ ମାଦକ ଅବସ୍ଥା···। ମାତ୍ର ଅଢ଼ଚାଳିଶି ଘଣ୍ଟା ପୂର୍ବେ, ପଅରଦିନ, ସେ ଯେତେବେଳେ ପଲର୍ଓ୍ୱାଙ୍କାଡ଼ରେ ଥିବା ଗଣେଶ-ମନ୍ଦିର ଆଗରେ ଠିଆ ହୋଇଥିଲେ, ସେହି ବ୍ରାହ୍ମମୁହୂର୍ତ୍ତିଟି ଆଜି ମଧ୍ୟ ଆରମ୍ଭ ହୋଇଗଲାଣି, ସେହି ମଙ୍ଗଳମୟ ବେଳାଟି ଆସି ପହଞ୍ଚି ଗଲାଣି-ଏହିପରି ଏକ ଅସ୍ପଷ୍ଟ ପରି ଲାଗୁଥିବା ସ୍ମୃତି···

ଅତଡ଼ା ଖସାଇଲା ପରି ପୁଣି କାଶର ଗୋଟାଏ ଗୁହା କୁଆଡ଼ୁ ଆସି ଆରମ୍ଭ ହୋଇଗଲା ଏବଂ ତାଙ୍କୁ ଏକାବେଳେ ହଲାଇ ପକାଇ ଛିନ୍ନଭିନ୍ନ କରି ଦେଲା···ତାଙ୍କର ନିଃଶ୍ୱାସ ଉପର ତଳକୁ ହୋଇ ବହିବାକୁ ଲାଗିଲା···

ଶରୀର ଗୋଟାକଯାକ ଧୀରଧୀର ହୋଇ ଝାଳ ବୋହି ଯାଉଥାଏ···

ଗ୍ରୀବାର ବାଆଁ ପଟକୁ ସତେଯେପରି କିଏ କଣ୍ଟା ମାରି ଦେଉଥିବା ପରି ଯନ୍ତ୍ରଣା ଅତି ସ୍ପଷ୍ଟ ଭାବରେ ଅନୁଭୂତ ହେବାକୁ ଲାଗିଲା···।

ତା' ସହିତ ତଣ୍ଟିଟା ବି ଶୁଖି ଶୁଖି ଆସୁଥାଏ···। ଭୟଙ୍କର···କଠୋର ତୃଷା···

ସେ ଏତିକିମାତ୍ର ଜାଣି ପାରିଥିଲେ ଯେ ଟଳମଳ ହୋଇ ଉଠି ସେ ଟେବୁଲ ଆଡ଼କୁ ଗଲେ । ସେଠାରେ ପାଣିର ସୁରେଇ ରଖା ହୋଇଥିଲା । ଦୁଇତିନ ପାହୁଣ୍ଡ ସେଇ ଆଡ଼କୁ ଗୋଡ ପକାଇଲେ ।··· କିନ୍ତୁ ତା'ପରେ ଯେଉଁସବୁ ଯନ୍ତ୍ରଣା ସତେଅବା ଗୋଟାଏ ଖଣ୍ଡା ପରି ତାଙ୍କର ଗ୍ରୀବାକୁ କରତ ଦେବାରେ ଲାଗିଥିଲା, ସେସବୁ ହଠାତ୍ କୁଆଡେ ଅନ୍ତର୍ହିତ ହୋଇଗଲା—ତାଙ୍କୁ ଏହିପରି ଗୋଟିଏ ଅଦ୍ଭୁତ ଅନୁଭୂତ ହେଲା ଓ···

*

'ଯାତ୍ରାର ଶେଷ' ଏକ ଉଚ୍ଚ-କୋଟୀର ଅବିସ୍ମରଣୀୟ ଉପନ୍ୟାସ । ଏଥିରେ ଏକ ବ୍ୟକ୍ତିର ହୃଦୟରେ ସାଧାରଣ ଘଟଣାଗୁଡ଼ିକର ପ୍ରତିକ୍ରିୟାରୁ ଉତ୍ପନ୍ନ ଭାବନା ଏବଂ ବିଚାରଗୁଡ଼ିକୁ ମନୋବୈଜ୍ଞାନିକ ଦୃଷ୍ଟିରୁ ଚିତ୍ରଣ କରାଯାଇଛି । ନାୟକ ଅନନ୍ତନ ନାୟର ଓ ପତ୍ନୀ କାତ୍ୟାୟନୀଙ୍କ ମଧ୍ୟରେ ଘଟିଥିବା ବିଶିଷ୍ଟ ଘଟଣାଗୁଡ଼ିକର ବର୍ଣ୍ଣନା ଅତୀବ ହୃଦୟସ୍ପର୍ଶୀ ।

ପ୍ରସ୍ତୁତ ଉପନ୍ୟାସର ମୂଳ ଶୀର୍ଷକ, ପଲ୍ଲିକୋଣ୍ଡପୁରମ୍ । ଏହାର ଲେଖକ ନୀଲ. ପଦ୍ମନାଭନ୍ ତାମିଲ ଭାଷା-ସାହିତ୍ୟର ଜଣେ ପ୍ରଖ୍ୟାତ ଗାଳ୍ପିକ ଓ ଔପନ୍ୟାସିକ ।

Cover Painting:PRATIBHA DAKOJI



ଟ 48.00

ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ